# ଦ୍ୱନ୍ଦ୍ୱବାଦର ମୂଳକଥା

ୟୁ.ଏ. ଖାରିନ୍
ଡି.ଏନ୍. ଆଜ୍‌ଗିବଚେକୋଭା

ପ୍ରଗତି
ପ୍ରକାଶନ

ଅଧ୍ୟାପକ ଡ. ୟୁ. ଏ. ଖାରିନ୍, ପିଏଚ୍. ଡି, ହେଉଛନ୍ତି ଜଣେ ପ୍ରଖ୍ୟାତ ସୋଭିଏତ୍ ଦାର୍ଶନିକ ଏବଂ ବେଲୋରୁସିଆର ମିନ୍ସ ରେଡିଓ ଇଂଜିନିୟରିଂ ପ୍ରତିଷ୍ଠାନର ଦର୍ଶନ ବିଭାଗର ମୁଖ୍ୟ । ସେ ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦ ସହିତ ସଂପୃକ୍ତ ସମସ୍ୟାବଳୀ ନେଇ ଅନେକ ପୁସ୍ତକ ଏବଂ ନିବନ୍ଧ ରଚନା କରିଛନ୍ତି ।

ତାତିୟାନା ଆକ୍‌ସିବକୋଭା, ପିଏଚ୍. ଡି, ହେଉଛନ୍ତି ଜଣେ ସହକାରୀ ଅଧ୍ୟାପିକା । ସୋଭିଏତ୍ ୟୁନିଅନ୍‌ର ଉଚ୍ଚ ଶିକ୍ଷା ତଥା ଉଚ୍ଚତର ବିଶେଷ ଶିକ୍ଷା ମନ୍ତ୍ରଣାଳୟ ଅଧୀନସ୍ଥ ଉଚ୍ଚତର ସ୍କୁଲ ସଂକ୍ରାନ୍ତ ସମସ୍ୟାବଳୀ ନେଇ ବୈଜ୍ଞାନିକ ଗବେଷଣା ପ୍ରତିଷ୍ଠାନର ବର୍ତ୍ତମାନ ଜଣେ ଉପରିସ୍ଥ ଗବେଷିକା । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ ଶିକ୍ଷା ପଦ୍ଧତି, ଉଚ୍ଚତର ସ୍କୁଲର ଛାତ୍ରମାନଙ୍କର ବୈଜ୍ଞାନିକ ବିଶ୍ୱଦୃଷ୍ଟିକୋଣ ଗଠନ ସଂକ୍ରାନ୍ତ ସମସ୍ୟାବଳୀ ଉପରେ ଗବେଷଣା କରିବା ସଙ୍ଗେ ସଙ୍ଗେ ସେ ସମାଜ ବିଜ୍ଞାନ ଉପରେ ସ୍ୱତନ୍ତ୍ର ଗବେଷଣା କରୁଛନ୍ତି ।

ଏହି ପୁସ୍ତକଟିରେ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନର ନୀତିରାଜି ସଂପର୍କରେ ଅତି ସରଳ ଲୋକବୋଧ୍ୟ ବ୍ୟାଖ୍ୟା ପ୍ରଦାନ କରାଯାଇଛି । ଆଧୁନିକ ବିଜ୍ଞାନ ତଥା ସାମାଜିକ ପ୍ରୟୋଗ କ୍ଷେତ୍ରରେ ସାଫଲ୍ୟରାଜି ଦୃଷ୍ଟିରୁ ଏଥିରେ ସଂକ୍ଷେପ ଅଥଚ ପରିଷ୍କାର ଭାବେ ଜଗତ ସଂପର୍କରେ ବୈଜ୍ଞାନିକ ବିଶ୍ୱଦୃଷ୍ଟିକୋଣ ଏବଂ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ନୀତିରାଜି, ନିୟମ ଏବଂ ପ୍ରବର୍ଗରାଜିର ବର୍ଣ୍ଣନା କରାଯାଇଛି ।

# ଦ୍ୱନ୍ଦ୍ୱବାଦର ମୂଳକଥା

ୟୁ. ଓ. ଖୋରିନ୍
ଭି. ଏନ୍. ଆର୍ଖିପତ୍ସୋଭା

ପ୍ରଗତି ପ୍ରକାଶନ
ମସ୍କୋ

ଅନୁବାଦ – ବୈଷ୍ଣବ ଚରଣ ପରିଡ଼ା

Ю. А. Харин, Т. Н. Ажгибкова

НАЧАЛА ДИАЛЕКТИКИ

*На языке ория*

Yu. A. Kharin, T. N. Adjgibkova

FUNDAMENTALS OF DIALECTICS

*In Oriya*



ମୁଖ୍ୟ ପରିବେଷକ :
ନବଯୁଗ ଗ୍ରନ୍ଥାଳୟ
ବଲୁବାଟି ରୋଡ
କଟକ – ୧

ସୋଭିଏତ୍ ୟୁନିଅନ୍‌ରେ ମୁଦ୍ରିତ

$X\frac{0302020100-550}{014(01)-83}$ 359—83

# ସୂଚୀପତ୍ର

## ସପ୍ତମ ପରିଚ୍ଛେଦ



## ଅଷ୍ଟମ ପରିଚ୍ଛେଦ



## ନବମ ପରିଚ୍ଛେଦ

ଦଶମ ପରିଚ୍ଛେଦ



ଏକାଦଶ ପରିଚ୍ଛେଦ



ଦ୍ୱାଦଶ ପରିଚ୍ଛେଦ

# ମୁଖବନ୍ଧ

ମଣିଷ ସର୍ବଦା ଜଗତକୁ ଜାଣିବା ସଙ୍ଗେ ସଙ୍ଗେ ତା'ର ଅବସ୍ଥିତିର ଅର୍ଥ ଏବଂ ଲକ୍ଷ୍ୟ ସଂପର୍କରେ ଜାଣିବାକୁ ଉଦ୍ୟମ କରି ଆସିଛି । ଏ ଜଗତ କିପରି ସୃଷ୍ଟି ହେଲା ? ସତ୍ତାର ସାରମର୍ମ କ'ଣ ? ମଣିଷର କିପରି ଉଦ୍‌ଭବ ଘଟିଲା ? ଜଗତକୁ କିଏ ନିୟନ୍ତ୍ରଣ କରେ ? ଯୁଦ୍ଧ , ଦୁଃଖ ଏବଂ ନିର୍ଯାତନର କାରଣ କ'ଣ ? ମଣିଷର ଇଚ୍ଛା କ'ଣ ସ୍ୱାଧୀନ ? ମଣିଷର ଶାନ୍ତିର ଆସ୍ୱଦ କେଉଁଠି ? ମଣିଷର ଜୀବନରୁ ହିଂସା ଏବଂ ଦୁଃଖକୁ କ'ଣ ଦୂର କରାଯାଇ ପାରେ ? ଭଲ ଏବଂ ମନ୍ଦ କ'ଣ ? ସତ୍ୟ କି ଜିନିଷ ? ସମାଜ କିପରି ହେବା ଉଚିତ ? ମଣିଷ କ'ଣ କରିବା ଉଚିତ ? ଏହିସବୁ ପ୍ରଶ୍ନ ଏବଂ ଅନ୍ୟାନ୍ୟ ପ୍ରଶ୍ନରାଜି ମଣିଷର ସମସ୍ତ ବଂଶଧରଙ୍କ ମନକୁ ଗଭୀର ଭାବେ ଆନ୍ଦୋଳିତ କରି ଆସିଛି ଯୁଗ ଯୁଗ ଧରି । ଏବେ ସେସବୁ ପ୍ରଶ୍ନ ଆଉରି ଗଭୀର ଭାବେ ପ୍ରକଟିତ ହୋଇଛି । ଇତିହାସ କେବେହେଲେ ବର୍ତ୍ତମାନ ଯୁଗ ଭଳି ଏତେ ଦ୍ରୁତତାର ସହିତ ବିରୋଧାତ୍ମକ ଭାବେ ବିକାଶ ଲାଭ କରି ନଥିଲା ।

ବିଜ୍ଞାନ କ୍ଷେତ୍ରରେ ବିପୁଳ ଅଗ୍ରଗତି ଘଟିଛି । ପରମାଣୁର ରହସ୍ୟକୁ ମଣିଷ ଭେଦ କରିଛି ଏବଂ ମହାକାଶ ଆବିଷ୍କାର କରି ଚାଲିଛି । କାରୁବିଜ୍ଞାନ କ୍ଷେତ୍ରରେ ମୌଳିକ ଗୁଣାତ୍ମକ ପରିବର୍ତ୍ତନମାନ ମଧ୍ୟ ଘଟୁଛି । ସାଂପ୍ରତିକ ବୈଜ୍ଞାନିକ ଏବଂ କାରିଗରୀ ବିପ୍ଳବ ଉତ୍ପାଦିକା ଶକ୍ତିସମୂହର ଦ୍ରୁତ ଅଭିବୃଦ୍ଧି ପାଇଁ ଯୋଗାଉଛି ଶକ୍ତିଶାଳୀ ପ୍ରୋତ୍ସାହନ । ଏଥି ସଙ୍ଗେ ସଙ୍ଗେ , ଏହା ଫଳରେ , ପୁଞ୍ଜିବାଦୀ ସମାଜରେ ଦ୍ୱନ୍ଦ୍ୱରାଜି ଆଉରି ପ୍ରକୋପିତ ହୋଇଛି ଏବଂ ନୂତନ ସାମାଜିକ ବୈରିତା ଜନ୍ମ ନେଇଛି । ପୁଞ୍ଜିବାଦର ସାଧାରଣ ସଂକଟ ଗଭୀର ହେବାରେ ଲାଗିଛି ଏବଂ ପ୍ରଗତି ଆଉ ପ୍ରତିକ୍ରିୟା , ଯୁଦ୍ଧ ଏବଂ ଶାନ୍ତିର ଶକ୍ତିମାନେ ଆଉରି ତୀବ୍ର ଭାବେ ମୁହାଁମୁହିଁ ହେଉଛନ୍ତି ।

ବିଶ୍ୱ ବୈପ୍ଳବିକ ପ୍ରକ୍ରିୟା ଆଉରି ବେଗବାନ୍ ହେବାରେ ଲାଗିଛି । ମୌଳିକ ସାମାଜିକ ପରିବର୍ତ୍ତନର ଏହି ଆଧୁନିକ ଯୁଗରେ , ବାସ୍ତବରେ ପ୍ରତିଷ୍ଠିତ ସମାଜବାଦର ଅବସ୍ଥାନ ଦୃଢ଼ ହେବାରେ ଲାଗିଛି ଏବଂ ସମାଜବାଦୀ ଦେଶମାନେ ବିଶ୍ୱ ଘଟନାବଳୀର ପ୍ରକ୍ରିୟା

ଉପରେ କ୍ରମବର୍ଦ୍ଧମାନ ପ୍ରଭାବ ପକାଇ ଚାଲିଛନ୍ତି । ଶ୍ରମଜୀବୀ ଜନସାଧାରଣ ଏକଚାଟିଆମାନଙ୍କର ଅତ୍ୟାଚାର ଆଉ ଶୋଷଣଯୁକ୍ତ ବ୍ୟବସ୍ଥା ବିରୁଦ୍ଧରେ ସେମାନଙ୍କ ସଂଗ୍ରାମକୁ ତୀବ୍ରତର କରିବାରେ ଲାଗିଛନ୍ତି । ସାମ୍ରାଜ୍ୟବାଦୀ ଉପନିବେଶବାଦୀ ବ୍ୟବସ୍ଥା ଭୁଷୁଡ଼ି ପଡ଼ିଛି । ଜାତୀୟ ମୁକ୍ତି ଏବଂ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ଶକ୍ତି ଆହରଣ କରିବାରେ ଲାଗିଛି, ଏକଛତ୍ରବାଦୀ ଶାସନଗୁଡ଼ିକୁ ଧୂଳିସାତ୍ କରି ଦେଉଛି । ବିକାଶମାନ ଦେଶମାନଙ୍କରେ ଯଥେଷ୍ଟ ପରିବର୍ତ୍ତନମାନ ଘଟି ଚାଲିଛି । ସେମାନଙ୍କ ମଧ୍ୟରେ କେତେକ ଦେଶ ସମାଜବାଦ – ଅଭିମୁଖୀ ପଥ ଅନୁସରଣ କରି ଚାଲିଛନ୍ତି ।

ଏହିସବୁ ଜଟିଳ ପ୍ରକ୍ରିୟାରାଜି ତଥା ଘଟନାବଳୀ ଏବଂ ସେସବୁର ମୁଖ୍ୟ ପ୍ରବଣତାରାଜିର ସାରମର୍ମକୁ ଗଭୀର ଭାବେ ବ୍ୟାଖ୍ୟା କରି ହେବ, ଯଦି ଏକ ବୈଜ୍ଞାନିକ ଦୃଷ୍ଟିକୋଣ ଗ୍ରହଣ କରାଯାଏ ।

ଜନସାଧାରଣଙ୍କ ଜୀବନ କ୍ଷେତ୍ରରେ ବିଶ୍ୱଦୃଷ୍ଟିକୋଣ ଏକ ସର୍ବପ୍ରଧାନ ଭୂମିକା ପାଳନ କରିଥାଏ । ଏହା ସେମାନଙ୍କର ଆଭିମୁଖ୍ୟ, ରାଜନୈତିକ ବିଶ୍ୱାସ, ସୌନ୍ଦର୍ଯ୍ୟବୋଧାତ୍ମକ ଆଦର୍ଶରାଜି, ସେମାନଙ୍କ ନୈତିକବୋଧ, ସାମାଜିକ ଆଚରଣ, ଧର୍ମ ଏବଂ ବିଜ୍ଞାନ, ଆତ୍ମିକ ମୂଲ୍ୟବୋଧ ପ୍ରତି ସେମାନଙ୍କ ଦୃଷ୍ଟିକୋଣକୁ ପ୍ରଭାବିତ କରେ ଏବଂ ଗଣ ସାମାଜିକ କାର୍ଯ୍ୟକଳାପରେ ସେମାନଙ୍କ ସଂପର୍କକୁ ପରିଚାଳିତ କରେ । ଏହି ବିଶ୍ୱଦୃଷ୍ଟିକୋଣର ଚିନ୍ତାରାଜି ମଧ୍ୟରେ କେନ୍ଦ୍ରୀୟ ତଥା ନିଷରିମୂଳକ ସ୍ଥାନ ଗ୍ରହଣ କରେ ଦର୍ଶନ । ରବୀନ୍ଦ୍ରନାଥ ଠାକୁର ସଠିକ ଭାବେ କହିଥିଲେ – ମଣିଷ ଜୀବନରେ ଦର୍ଶନ ହେଉଛି ପଥପ୍ରଦର୍ଶନକାରୀ ସୂତ୍ର ।

ଆଧୁନିକ ସମାଜରେ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ବୈଜ୍ଞାନିକ ବିଶ୍ୱଦୃଷ୍ଟିକୋଣକୁ ଆୟତ୍ତ କରିବାଟା ଏକ ବିଶେଷ ଗୁରୁତ୍ୱ ଅର୍ଜନ କରିଛି । ମାର୍କସ୍‌ବାଦ-ଲେନିନ୍‌ବାଦ ହେଉଛି ଶ୍ରମିକ ଶ୍ରେଣୀ ତଥା ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କର ଏକ ବିପ୍ଳବୀ ଶିକ୍ଷା । ଜଗତର ବିକାଶର ବସ୍ତୁଗତ ନିୟମାବଳୀ ତଥା ଶୋଷକ ଏବଂ ସାମାଜିକ ତଥା ଜାତୀୟ ନିପୀଡ଼ନ ବିରୁଦ୍ଧରେ ଜନସାଧାରଣଙ୍କ ସଂଗ୍ରାମର ଅଭିଜ୍ଞତାକୁ ଏହା ପ୍ରକାଶ କରିଥାଏ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ତତ୍ତ୍ୱ ସମାଜର ବୈପ୍ଳବିକ ରୂପାନ୍ତର ସାଧନରେ, ସର୍ବାଧିକ ନ୍ୟାୟପୂର୍ଣ୍ଣ ସମାଜ – କମ୍ୟୁନିଜମ୍, ଯା'ର ପ୍ରଥମ ପର୍ଯ୍ୟାୟ ହେଉଛି ସମାଜବାଦ – ପାଇଁ ସଂଗ୍ରାମ ଏବଂ ସେ ସମାଜର ନିର୍ମାଣରେ ଶ୍ରମିକ ଶ୍ରେଣୀର ଐତିହାସିକ ଭୂମିକାକୁ ପ୍ରଦର୍ଶନ କରିଥାଏ ।

ସମଗ୍ର ମାନବସମାଜର ଭବିତବ୍ୟ କ୍ଷେତ୍ରରେ ସର୍ବହରାର ମହାନ୍ ମୁକ୍ତିଦାୟୀ ଭୂମିକା ପାଇଁ ମାର୍କସ୍ ଏବଂ ଏଙ୍ଗେଲସ୍ ଦୃଢ଼ ବୈଜ୍ଞାନିକ ଭିତ୍ତି ଯୋଗାଇ ଦେଇଥିଲେ । ଶ୍ରମିକ ଶ୍ରେଣୀ, ତା'ର ବସ୍ତୁନିଷ୍ଠ ସାମାଜିକ-ଅର୍ଥନୈତିକ ଅବସ୍ଥାନ ହେତୁ, ସମସ୍ତ ନିର୍ଯାତିତ ତଥା ଶୋଷିତ ଜନସାଧାରଣଙ୍କର ଜାତୀୟ ଏବଂ ସାମାଜିକ ମୁକ୍ତି ପାଇଁ ରାଜନୈତିକ ସଂଗ୍ରାମକୁ ନେତୃତ୍ୱ ଦେଇଥାଏ ଏବଂ ସେ ସଂଗ୍ରାମକୁ ବିଜୟ ମଣ୍ଡିତ କରିଥାଏ ।

ପୁଞ୍ଜିବାଦରେ ନିହିତ ମାନବିକ ଶୋଷଣର ସାମାଜିକ-ଅର୍ଥନୈତିକ ଅବସ୍ଥାଗୁଡ଼ିକୁ ଉଚ୍ଛେଦ କରି ଏବଂ ବୁର୍ଜୁଆ ରାଜନୈତିକ ଏକନାୟକତ୍ୱକୁ ଭାଙ୍ଗି, ସର୍ବହରା କେବଳ ନିଜକୁ ମୁକ୍ତ କରି ପାରେ ।

ଶ୍ରମିକ ଶ୍ରେଣୀର ବିଶ୍ୱ ଐତିହାସିକ ଲକ୍ଷ୍ୟ ହେଉଛି ପୁଞ୍ଜିବାଦରୁ ସମାଜବାଦକୁ ଉତ୍ତରଣ ଘଟାଇବା । ସମାଜବାଦରେ କୌଣସି ସାମାଜିକ ତଥା ଜାତୀୟ ଅନୈକ୍ୟ ରହେ ନାହିଁ, ସଂପ୍ରଦାୟ ନିର୍ବିଶେଷରେ ଜନସଂଖ୍ୟାର ସମସ୍ତ ସଂପ୍ରଦାୟର ବୈଷୟିକ ତଥା ସାଂସ୍କୃତିକ ମାନର ମୌଳିକ ଉନ୍ନତି ତଥା ଅବିରାମ ଅଭିବୃଦ୍ଧି ଘଟେ । ଏହା ଏପରି ବ୍ୟକ୍ତିତ୍ୱର ସର୍ବତୋମୁଖୀ ବିକାଶର ପଥକୁ ଉନ୍ମୁକ୍ତ କରି ଦିଏ, ଯାହା ମଧ୍ୟରେ ବୌଦ୍ଧିକ ସଂପଦ, ନୈତିକ ବିଶୁଦ୍ଧତା ତଥା ଦୈହିକ ପୂର୍ଣ୍ଣତାର ସୁସମଞ୍ଜସ ଘଟିଥାଏ ।

ମାର୍କସ୍‌ବାଦ-ଲେନିନ୍‌ବାଦ ହେଉଛି ଶ୍ରମିକ ଶ୍ରେଣୀର ମୌଳିକ ସ୍ୱାର୍ଥ ତଥା ଲକ୍ଷ୍ୟର ଏକ ତାତ୍ତ୍ୱିକ ପରିପ୍ରକାଶ । ଏହା ତିନୋଟି ଉପାଦାନ – ରାଜନୈତିକ ଅର୍ଥଶାସ୍ତ୍ର, ବୈଜ୍ଞାନିକ କମ୍ୟୁନିଜମ୍ ତଥା ଦର୍ଶନକୁ ନେଇ ଗଠିତ ଏକ ଅଖଣ୍ଡ ବୈଜ୍ଞାନିକ ପଦ୍ଧତିକୁ ପ୍ରଦର୍ଶନ କରିଥାଏ ।

ମାର୍କସ୍‌ବାଦୀ ରାଜନୈତିକ ଅର୍ଥଶାସ୍ତ୍ର ମାନବସମାଜର ବିକାଶର ବିଭିନ୍ନ ସ୍ତରରେ, ବୈଷୟିକ ସୁଯୋଗ ସୁବିଧାଗୁଡ଼ିକର ଉତ୍ପାଦନ ତଥା ବଣ୍ଟନକୁ ନିୟନ୍ତ୍ରଣ କରୁଥିବା ନିୟମାବଳୀକୁ ଅନୁଧ୍ୟାନ କରିଥାଏ । ବ୍ୟକ୍ତିଗତ ସଂପତ୍ତି ଏବଂ ମଣିଷ ଦ୍ୱାରା ମଣିଷକୁ ଶୋଷଣ ଉପରେ ପ୍ରତିଷ୍ଠିତ ପୁଞ୍ଜିବାଦୀ ସମାଜରୁ ସମାଜବାଦକୁ ଉତ୍ତରଣର ଅର୍ଥନୈତିକ ଆବଶ୍ୟକତା କାହିଁକି, ତାହା ଦର୍ଶାଇ ଦେଇଥାଏ ମାର୍କସ୍‌ବାଦୀ ରାଜନୈତିକ ଅର୍ଥଶାସ୍ତ୍ର ।

ବୈଜ୍ଞାନିକ କମ୍ୟୁନିଜମ୍‌ର ତତ୍ତ୍ୱ ସେହିସବୁ ନିୟମାବଳୀକୁ ଅନୁଧ୍ୟାନ କରେ, ଯେଉଁଗୁଡ଼ିକ ଶ୍ରେଣୀ ସଂଗ୍ରାମ, ସମାଜବାଦୀ ବିପ୍ଳବ ଏବଂ ସମାଜବାଦ ତଥା କମ୍ୟୁନିଜମ୍ ନିର୍ମାଣର ପଥଗୁଡ଼ିକୁ ନିର୍ଦ୍ଧାରଣ କରିଥାଏ ।

ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ ବୈଜ୍ଞାନିକ ବିଶ୍ୱଦୃଷ୍ଟିକୋଣର ସାଧାରଣ ତାତ୍ତ୍ୱିକ ମୂଳଦୁଆ ରଚନା କରେ । ଏହା ପ୍ରକୃତି ଆଉ ସମାଜର ସାଧାରଣ ନିୟମାବଳୀ ଏବଂ ଆଧୁନିକ ବୈଜ୍ଞାନିକ ଚିନ୍ତାଧାରାର ଯୁକ୍ତିଯୁକ୍ତତା ପାଇଁ ପ୍ରଦାନ କରିଥାଏ ଏକ ବୋଧଗମ୍ୟତା । ଏହା ବିଶ୍ୱଜଗତକୁ ବୁଝିବା ଏବଂ ତାକୁ ପରିବର୍ତ୍ତନ କରିବା ଦିଗରେ ମଣିଷର ସୀମାହୀନ ସାମର୍ଥ୍ୟରେ ଆତ୍ମବିଶ୍ୱାସକୁ ପ୍ରମାଣିତ କରିଥାଏ ଏବଂ ସାମାଜିକ ପ୍ରଗତି ଧାରାର ମୌଳିକ କାରଣ ତଥା ମୁଖ୍ୟ ପ୍ରବଣତାଗୁଡ଼ିକୁ ବୁଝିବାରେ ସାହାଯ୍ୟ କରିଥାଏ ।

ମାର୍କସ୍‌ବାଦ-ଲେନିନ୍‌ବାଦର ଶକ୍ତିମତ୍ତା ନିହିତ ଥାଏ ଏହାର ବସ୍ତୁନିଷ୍ଠ ସତ୍ୟତା ଏବଂ ଏହାର ଅବିରାମ, ସୃଜନାତ୍ମକ ବିକାଶ ମଧ୍ୟରେ । ଏହି ବୈଜ୍ଞାନିକ ତତ୍ତ୍ୱ ଶ୍ରମିକ ଶ୍ରେଣୀ ତଥା ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କ ଦ୍ୱାରା ପୁଞ୍ଜିବାଦୀ ଶୋଷଣ ବିରୁଦ୍ଧରେ ତଥା ସାମାଜିକ ନ୍ୟାୟ ଏବଂ ସମାନତା ପାଇଁ ପରିଚାଳିତ ବିପ୍ଳବୀ ସଂଗ୍ରାମରେ ଏକ ନିର୍ଭରଯୋଗ୍ୟ ପଥପ୍ରଦର୍ଶକ ହିସାବରେ କାର୍ଯ୍ୟ କରିଥାଏ । ଅନ୍ୟ ଯେକୌଣସି

ପ୍ରକୃତି ବିଜ୍ଞାନ ଭଳି ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଶିକ୍ଷା ହେଉଛି ସ୍ୱଭାବଗତ ଭାବେ ଅଖଣ୍ଡ ଏବଂ ଆନ୍ତର୍ଜାତିକତାବାଦୀ – ଏହାର ମୁଖ୍ୟ ସିଦ୍ଧାନ୍ତ ତଥା ନିୟମାବଳୀ ଯେକୌଣସି ଦେଶର ବାସ୍ତବତା ପ୍ରତି ପ୍ରଯୋଜ୍ୟ । ମାର୍କସ୍‌ବାଦ-ଲେନିନ୍‌ବାଦକୁ ସଂପୂର୍ଣ୍ଣ ରୂପେ ପାଶ୍ଚାତ୍ୟ ସଂସ୍କୃତିର ଏକ ସୃଷ୍ଟି ବୋଲି ଅଭିଯୋଗ କରି ଏହା ସାଧାରଣ ଭାବେ ପ୍ରାଚ୍ୟର ଏବଂ ବିଶେଷ ଭାବେ ଭାରତର ଜାତୀୟ ପରମ୍ପରା ତଥା ବିକାଶର ବିଶେଷତ୍ୱର ପରିପନ୍ଥୀ ବୋଲି ଅନେକ ସମୟରେ କୁହାଯାଇଥାଏ । ଏହା ଏକ ଭ୍ରାନ୍ତ ଧାରଣା । ଏ କଥା ସତ ଯେ, ବିଭିନ୍ନ ଜାତିର ଇତିହାସ ତଥା ସଂସ୍କୃତି ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ଥିଲେ ମଧ୍ୟ ମଣିଷଜାତିର ବିକାଶ ଅଭିନ୍ନ ସାଧାରଣ ନିୟମରାଜି ଅନୁଯାୟୀ ହେଉଛି । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ତତ୍ତ୍ୱକୁ ସଚେତନ ଭାବେ ଆୟତ୍ତ କରିବା ଦ୍ୱାରା ସେହିସବୁ ନିୟମରାଜିକୁ ବୁଝି ହୁଏ ଏବଂ ଆଧୁନିକ ବୈଜ୍ଞାନିକ ଏକ ବିଶ୍ୱଦୃଷ୍ଟିକୋଣ ବିକାଶ କରି ହୁଏ ।

ଏହାକୁ ଆୟତ୍ତ କରିବାର ପ୍ରଥମ ପଦକ୍ଷେପ ହେଉଛି ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନର ଅଧ୍ୟୟନ ।

ଏହି ଦର୍ଶନ ହେଉଛି ବିଶ୍ୱଦୃଷ୍ଟିକୋଣଗତ ଚିନ୍ତାଧାରାର ବୈଜ୍ଞାନିକ ଭାବେ ପ୍ରତିଷ୍ଠିତ ଏକ ପଦ୍ଧତି, ଚତୁର୍ପାର୍ଶ୍ୱସ୍ଥ ବାସ୍ତବତା ସଂପର୍କିତ ଚିନ୍ତାଧାରାର ଏକ ଅଖଣ୍ଡ ସମଗ୍ରତା, ସର୍ବୋପରି, ବସ୍ତୁ ଆଉ ଚୈତନ୍ୟ ମଧ୍ୟରେ ସଂପର୍କ ବିଷୟକ, ବିଶ୍ୱର ବିକାଶକୁ ନିୟନ୍ତ୍ରିତ କରୁଥିବା ସାଧାରଣ ନିୟମରାଜି, ସତ୍ୟ ଏବଂ ତାକୁ ଅବଗତ ହେବା, ବୈଜ୍ଞାନିକ ଚିନ୍ତନର ପ୍ରବର୍ଗରାଜିର ଆନ୍ତଃସଂପର୍କ ତଥା ବିକାଶ, ସ୍ଥାନ ଓ କାଳ, ତତ୍ତ୍ୱ ଏବଂ ପ୍ରୟୋଗ ମଧ୍ୟରେ ଯୋଗସୂତ୍ର ଆଦି ସଂପର୍କିତ ଏକ ମତବାଦ ।

ଏହି ସମସ୍ତ ମୌଳିକ ପ୍ରଶ୍ନରାଜି ବ୍ୟତୀତ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନରେ ଏକ ଅତୀବ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥାଏ ମାନବ ସମାଜର ବିକାଶଗତ ବୈଶିଷ୍ଟ୍ୟରାଜି ସଂକ୍ରାନ୍ତ ଶିକ୍ଷା, ସାମାଜିକ ସତ୍ତା ଏବଂ ସାମାଜିକ ଚୈତନ୍ୟ ମଧ୍ୟସ୍ଥ ସଂପର୍କ, ସାମାଜିକ-ଅର୍ଥନୈତିକ ଗଠନରାଜିର ପରିବର୍ତ୍ତନକୁ ନିୟନ୍ତ୍ରଣ କରୁଥିବା ନିୟମାବଳୀ, ଶ୍ରେଣୀସମୂହ ଏବଂ ଜାତିସମୂହ ସଂପର୍କିତ ମତବାଦ, ଇତିହାସରେ ସାଧାରଣ ଜନତାର ଭୂମିକା ସଂପର୍କିତ ଶିକ୍ଷା, ଶ୍ରେଣୀ ସଂଗ୍ରାମ ଏବଂ ସାମାଜିକ ବିପ୍ଳବ, ବ୍ୟକ୍ତି ଏବଂ ସମାଜ ମଧ୍ୟରେ ସଂପର୍କ ଆଦି ସଂପର୍କିତ ଶିକ୍ଷାରାଜି ।

ସୁବିଧା ଦୃଷ୍ଟିରୁ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ ସଂପର୍କିତ ପାଠ୍ୟ ପୁସ୍ତକଗୁଡ଼ିକ ସାଧାରଣତଃ ବିଶ୍ୱଦୃଷ୍ଟିକୋଣର ସାଧାରଣ ବିଷୟରାଜି ସଂପର୍କରେ ଶିକ୍ଷାକୁ ଏବଂ ସାଧାରଣ ନିୟମାବଳୀ ତଥା ସାମାଜିକ ପ୍ରଗତିର ପରିଚାଳିକା ଶକ୍ତିସମୂହ ସଂପର୍କିତ ଶିକ୍ଷାବଳୀକୁ "ଐତିହାସିକ ବସ୍ତୁବାଦ" ବୋଲି ଆଖ୍ୟା ଦେଇଥାଏ । କିନ୍ତୁ ଏହି ଭଳି ବିଭାଜନକୁ କେବଳ ପଦ୍ଧତି ଦିଗରୁ ଯୁକ୍ତିଯୁକ୍ତ ବୋଲି ଧରାଯାଇ ପାରେ, ଏତଦ୍‌ବ୍ୟତୀତ ଏହା ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇ ନପାରେ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ

ଏବଂ ଐତିହାସିକ ବସ୍ତୁବାଦ ମିଶି ଏକ ଏକକ ଦାର୍ଶନିକ ମତବାଦ ରଚନା କରିଥାନ୍ତି, ଏହା ପରସ୍ପର ବିରୋଧୀ ନୁହନ୍ତି ।

ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନର ସାଂପ୍ରତିକ ଅଧ୍ୟୟନ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଏବଂ ଐତିହାସିକ ବସ୍ତୁବାଦ ମଧ୍ୟରେ ଅବିଚ୍ଛିନ୍ନ ଐକ୍ୟକୁ ଦର୍ଶାଇ ଥାଏ ଏବଂ ବୈଜ୍ଞାନିକ ବିଶ୍ୱଦୃଷ୍ଟିକୋଣର ସର୍ବାଧିକ ସାଧାରଣ ସମସ୍ୟାବଳୀ ଉପରେ ଦୃଷ୍ଟି ନିବଦ୍ଧ କରିଥାଏ, ଯେଉଁସବୁ ସମସ୍ୟାବଳୀ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ନୀତିରାଜି, ନିୟମାବଳୀ ଏବଂ ପ୍ରବର୍ଗରାଜି ସହିତ ସଂପୃକ୍ତ । ଏହି ପୁସ୍ତକର ପ୍ରଥମ ପରିଚ୍ଛେଦରେ ଏସବୁର ବ୍ୟାଖ୍ୟା କରାଯାଇଛି ।

# ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦନର୍ଶର ଗଢ଼ଣ *

"ମାର୍କସ୍‌ଙ୍କ ଦର୍ଶନ ହେଉଛି ଏକ ପୂର୍ଣ୍ଣତାପ୍ରାପ୍ତ ଦାର୍ଶନିକ ବସ୍ତୁବାଦ । ଏହା ମାନବ ସମାଜକୁ, ବିଶେଷ କରି ଶ୍ରମିକ ଶ୍ରେଣୀକୁ ପ୍ରଦାନ କରିଛି ଏକ ପରାକ୍ରମଶାଳୀ ଜ୍ଞାନାସ୍ତ୍ର ।"

— ଲେନିନ୍

"ମାର୍କସ୍ ଦାର୍ଶନିକ ବସ୍ତୁବାଦକୁ ଗଭୀର ଏବଂ ପରିପୂର୍ଣ୍ଣ ଭାବେ ବିକଶିତ କରିଥିଲେ ଏବଂ ପ୍ରକୃତିର ବୋଧଗମ୍ୟତାକୁ ପ୍ରସାରିତ କରିଥିଲେ ସମାଜର ବୋଧଗମ୍ୟତା ମଧ୍ୟକୁ । ତାଙ୍କର ଐତିହାସିକ ବସ୍ତୁବାଦ ଥିଲା ବୈଜ୍ଞାନିକ ଚିନ୍ତାଧାରା କ୍ଷେତ୍ରରେ ଏକ ବିରାଟ ସାଫଲ୍ୟ ।"

— ଲେନିନ୍




---

ଏହି ପୁସ୍ତକରେ ପ୍ରଦତ୍ତ କେତେକ ଗଢ଼ଣ ସଂସ୍ଥାନୀୟ-ଯୁକ୍ତିସଂଗତ ପର୍ବକୁ ବୈଜ୍ଞାନିକ-ପଦ୍ଧତିଗତ ପାଠ୍ୟ ପୁସ୍ତକ "ଦର୍ଶନ ପାଠ୍ୟକ୍ରମର ପର୍ବଗତ ଉପାୟ"ରୁ ନିଆ ଯାଇଛି । ମସ୍କୋ ବିଶ୍ୱବିଦ୍ୟାଳୟ ପ୍ରକାଶନ ଭବନ, ମସ୍କୋ, ୧୯୭୬ ।

# ପ୍ରଥମ ପରିଚ୍ଛେଦ

## ଦର୍ଶନ : ମଣିଷର ବିଶ୍ୱଦୃଷ୍ଟିକୋଣର ତାତ୍ତ୍ୱିକ ଭିତ୍ତି

### ୧ – ଦର୍ଶନ ବୋଇଲେ କ'ଣ ବୁଝାଏ ?

ଶ୍ରମିକ ଶ୍ରେଣୀର ଦର୍ଶନ ହିସାବରେ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ ହେଉଛି ବସ୍ତୁବାଦର ସର୍ବୋଚ୍ଚ ରୂପ, ଯୁଗ ଯୁଗ ଧରି ଦାର୍ଶନିକ ଚିନ୍ତା ତଥା ମାନବଜାତିର ସମଗ୍ର ଆତ୍ମିକ ସଂସ୍କୃତିର ପୂର୍ବବର୍ତ୍ତୀ ବିକାଶର ଯୁକ୍ତିସମ୍ମତ ଫଳଶ୍ରୁତି । ତେଣୁ କରି ମଣିଷର ଆତ୍ମିକ କ୍ରିୟାକଳାପର ବିଶେଷ କ୍ଷେତ୍ର ହିସାବରେ ସାଧାରଣ ଭାବେ ଦର୍ଶନ ବୋଇଲେ କ'ଣ ବୁଝାଏ – ଏହାକୁ ନିରୂପଣ କରିବା ସଙ୍ଗେ ସଙ୍ଗେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ମୂଳ କଥାଗୁଡ଼ିକୁ ଅନୁଧ୍ୟାନ କରିବା ସଠିକ ହେବ । ଏହା ଅତି ଗୁରୁତ୍ୱପୂର୍ଣ୍ଣ ଏଇଥି ପାଇଁ ଯେ, ଦାର୍ଶନିକମାନେ ଏହି କଥାଟି ଉପରେ ମୋଟେ ଏକମତ ନୁହନ୍ତି । ସେମାନଙ୍କ ମଧ୍ୟରୁ କେତେକ (ଭାରତୀୟ ଦାର୍ଶନିକମାନଙ୍କ ସମେତ) ଦର୍ଶନକୁ ବିଜ୍ଞାନରାଜି ମଧ୍ୟରେ ସ୍ଥାନ ନଦେଇ କଳାରାଜି ମଧ୍ୟରେ ସ୍ଥାନ ଦେବାକୁ ଶ୍ରେୟଃ ମନେ କରିଥାନ୍ତି । ସେମାନଙ୍କର ଏହି ମତ ସପକ୍ଷରେ ସେମାନେ କହିଥାନ୍ତି ଯେ, କୌଣସି ଅଖଣ୍ଡ ଦାର୍ଶନିକ ପଦ୍ଧତି ନାହିଁ ଏବଂ ସଂଗୀତ କ୍ଷେତ୍ରରେ ସୁରକାର ମନୋଗତ ଭାବେ ଯେପରି ତା'ର ପଦ୍ଧତି ସୃଷ୍ଟି କରିଥାଏ, ସେହି ଭଳି ଦାର୍ଶନିକ ମଧ୍ୟ ତା'ର ପଦ୍ଧତି ସୃଷ୍ଟି କରେ । ଆଉ କେତେକ ବିଶିଷ୍ଟ ବ୍ରିଟିଶ୍ ଦାର୍ଶନିକ ବର୍ଟ୍ରାଣ୍ଡ ରସେଲଙ୍କର ପକ୍ଷ ଗ୍ରହଣ କରିଥାନ୍ତି । ବର୍ଟ୍ରାଣ୍ଡ ରସେଲ ବିଶ୍ୱାସ କରୁଥିଲେ, ବିଜ୍ଞାନ ଏବଂ ଧର୍ମ (ଧର୍ମତତ୍ତ୍ୱ)ର ମଧ୍ୟବର୍ତ୍ତୀ ଏକ ଆସ୍ଥାନରେ ଦର୍ଶନର ସ୍ଥାନ, ଏବଂ "ସମସ୍ତ ନିର୍ଦ୍ଦିଷ୍ଟ ଜ୍ଞାନ – ମୋ ମତରେ – ବିଜ୍ଞାନର ଅନ୍ତର୍ଗତ; ସମସ୍ତ ନିର୍ଦ୍ଦିଷ୍ଟ ଜ୍ଞାନର ବାହାରେ ଅବସ୍ଥିତ ଅପରିବର୍ତ୍ତନୀୟ ନୀତିବାକ୍ୟ ଧର୍ମତତ୍ତ୍ୱର ଅନ୍ତର୍ଗତ । କିନ୍ତୁ ଧର୍ମତତ୍ତ୍ୱ ଏବଂ ବିଜ୍ଞାନ ମଧ୍ୟରେ ଏକ ଜନମାନବହୀନ ଭୂଖଣ୍ଡ ଅବସ୍ଥିତ, ଯିଏକି ଉଭୟ ପକ୍ଷରୁ ଶରବ୍ୟ ହୋଇଥାଏ । ଏହି ଜନମାନବହୀନ ଭୂଖଣ୍ଡ ହେଉଛି ଦର୍ଶନ ।"* ଏହା ଛଡ଼ା ଅନ୍ୟମାନେ ଦର୍ଶନକୁ ବ୍ୟାଖ୍ୟା କରିଥାନ୍ତି ଏକ ସର୍ବୋଚ୍ଚ ବିଜ୍ଞାନ (ବିଜ୍ଞାନର ବିଜ୍ଞାନ) ହିସାବରେ, ନୀତିଜ୍ଞାନ ଏବଂ ଶାନ୍ତିର, ବୈଜ୍ଞାନିକ ଏବଂ ସାଧାରଣ ଭାଷାର ମତବାଦ ହିସାବରେ, ମଣିଷର ମତବାଦରାଜିର,

---

* ବର୍ଟ୍ରାଣ୍ଡ ରସେଲ, "*A History of Western Philosophy*", Simon and Schuster, N.V., 1945,p.XIII.

ଜ୍ଞାନ ତଥା ସୁନ୍ଦର, ଆଦିର ମତବାଦ ହିସାବରେ । ଆମେ ଏହିସବୁ ତତ୍ତ୍ୱ ସଂପର୍କରେ ବିଶଦ ଭାବେ ଆଲୋଚନା କରିବାକୁ ଚାହୁଁ ନାହୁଁ । ଦର୍ଶନର ବିକାଶ ସଙ୍ଗେ ସଙ୍ଗେ ତା'ର ବିଷୟବସ୍ତୁ ପରିବର୍ତ୍ତିତ ହୋଇଛି ଏବଂ ଏହା ଅଧିକ ସୁନିର୍ଦ୍ଦିଷ୍ଟ ହୋଇଛି । ଦର୍ଶନର ଆଧୁନିକ ବିଜ୍ଞାନଗତ ଅବଧାରଣାର ପରିପ୍ରେକ୍ଷୀରେ ଉପରୋକ୍ତ ବ୍ୟାଖ୍ୟାଟା ଏକଦିଗଦର୍ଶୀ ଅଥବା ଏପରିକି ଭ୍ରାନ୍ତ ବୋଲି ପ୍ରମାଣିତ ହୋଇଛି ।

ଉଦାହରଣ ସ୍ୱରୂପ, କଳାଠାରୁ ଦର୍ଶନ ହେଉଛି ପୃଥକ୍ । କଳା ମଣିଷର ନାନ୍ଦନିକ ଆବଶ୍ୟକତାକୁ ପୂରଣ କରେ, ଶୈଳ୍ପିକ କଳ୍ପରୂପ ମାଧ୍ୟମରେ ବାସ୍ତବତାକୁ ପ୍ରକାଶ କଲାବେଳେ ଦର୍ଶନ ବିଶ୍ୱଜଗତକୁ ବ୍ୟାଖ୍ୟା କରିବା ଦିଗରେ ମଣିଷର ଆବଶ୍ୟକତାକୁ ପୂରଣ କରେ । ଏହି କାର୍ଯ୍ୟ ସାଧିତ ହୋଇ ଥାଏ ବିମୂର୍ତ୍ତ ଧାରଣା, ପ୍ରବର୍ଗ ଏବଂ ନିୟମରାଜିର ଜରିଆରେ ।

ଧର୍ମ ସହିତ ଦର୍ଶନକୁ ଏକାକାର କରି ଦେଲେ ଭୁଲ ହେବ । ଧର୍ମ ହେଉଛି ପ୍ରାକୃତିକ ତଥା ସାମାଜିକ ବାସ୍ତବତାର, ମଣିଷକୁ ତା'ର ଦୈନନ୍ଦିନ ଜୀବନରେ ପ୍ରଭାବିତ କରୁଥିବା ବାହ୍ୟିକ ଶକ୍ତିସମୂହର, କପୋଳକଳ୍ପିତ ପ୍ରତିଫଳନ । ଧର୍ମୀୟ ଚେତନାରେ ବିଶ୍ୱଜଗତ ତଥା ସତ୍ତାର ବ୍ୟାଖ୍ୟା, ଅଲୌକିକ ସତ୍ତାରାଜି ଉପରେ ବିଶ୍ୱାସ ଦ୍ୱାରା କରାଯାଇଥାଏ । ତେଣୁ କରି ଏକ ବସ୍ତୁନିଷ୍ଠ, ପ୍ରକୃତ ଜ୍ଞାନର ଏକ ବ୍ୟବସ୍ଥା ହିସାବରେ ଧର୍ମ ବିଜ୍ଞାନର ବିରୋଧିତା କରିଥାଏ । ଅବସ୍ଥିତ କଳ୍ପରୂପ ପରିବର୍ତ୍ତେ ତାତ୍ତ୍ୱିକ ବିମୂର୍ତ୍ତତା ଦ୍ୱାରା ଦର୍ଶନ କାର୍ଯ୍ୟ କରିଥାଏ । ଧର୍ମ କ୍ଷେତ୍ରରେ ଏହା ଘଟେ ନାହିଁ । ଦର୍ଶନ ସ୍ୱତଃସିଦ୍ଧ ବେଦବାକ୍ୟ ଉପରେ ନିର୍ଭର ନକରି, ବାସ୍ତବତା ଉପରେ ପ୍ରତିଷ୍ଠିତ ଜ୍ଞାନକୁ ଭିତ୍ତି କରି ସତ୍ତାକୁ ବ୍ୟାଖ୍ୟା କରିବାକୁ ଚେଷ୍ଟା କରେ । ତେଣୁ, ନିୟମତଃ, ଏହା ବିଜ୍ଞାନଗତ ବୋଲି ଦାବୀ କରିଥାଏ ଏବଂ ବୈଜ୍ଞାନିକ ପଦ୍ଧତିରାଜିକୁ ପ୍ରୟୋଗ କରିବା ପାଇଁ କହିଥାଏ ।

ହେଲେ, ଦର୍ଶନ ଏବଂ ବିଜ୍ଞାନ ମଧ୍ୟରେ ଅତ୍ୟାବଶ୍ୟକୀୟ ପାର୍ଥକ୍ୟରାଜି ରହିଛି । ବିଶେଷ ବିଶେଷ ବିଜ୍ଞାନ ଭିନ୍ନଭିନ୍ନ ଜିନିଷର ଧର୍ମରାଜି, ଅଜୈବ ବିଶ୍ୱଜଗତ, ପ୍ରକୃତି ଅଥବା ଇତିହାସର ନିର୍ଦ୍ଦିଷ୍ଟ ନିୟମାବଳୀକୁ ଅନୁଧ୍ୟାନ କରେ । ଅନ୍ୟ ଦିଗରେ ଦର୍ଶନ ସତ୍ତାର ସାଧାରଣ ଚିତ୍ର, ସାମଗ୍ରିକ ଭାବେ ବିଶ୍ୱର ଅବଧାରଣା ସହିତ – ତା'ର ବହୁବିଧତା ଆଉ ଐକ୍ୟ ସମେତ ଏହି ବିଶ୍ୱଜଗତରେ ମଣିଷର ସ୍ଥାନ, ତା'ର ମନ ଆଉ କାର୍ଯ୍ୟକଳାପ ସହିତ ସଂପୃକ୍ତ । ବିଜ୍ଞାନୀ ବସ୍ତୁନିଷ୍ଠ ସତ୍ୟକୁ ଉଦ୍‌ଘାଟନ କରିବାକୁ ଚାହିଁଲା ବେଳେ, ଦାର୍ଶନିକ କେବଳ ବାସ୍ତବତାକୁ ବ୍ୟାଖ୍ୟା କରିବାକୁ ଚେଷ୍ଟା କରେ ନାହିଁ, ସେ ନିର୍ଦ୍ଦିଷ୍ଟ ଏକ ଶ୍ରେଣୀ ଅବସ୍ଥାନରୁ ଏହାକୁ ବ୍ୟାଖ୍ୟା କରିଥାଏ ।

ଅନେକ ଲୋକଙ୍କର ବିଶ୍ୱାସ, ଦର୍ଶନର ସାରମର୍ମ ତା'ର ନୈତିକ କ୍ରିୟାକଳାପ ମଧ୍ୟରେ ନିହିତ । ଏ କଥା ସତ ଯେ, ଦର୍ଶନ ସହିତ ନୀତିଶାସ୍ତ୍ରର ଅନେକ ଅଭିନ୍ନତା ରହିଛି । ଯେକୌଣସି ଦର୍ଶନ ତା'ର ବିଶ୍ୱ ସଂପର୍କିତ ଅବଧାରଣା ଦ୍ୱାରା ମଣିଷକୁ

ସମାଜରେ ନିର୍ଦ୍ଦିଷ୍ଟ ଏକ ଧରଣର ଆଚରଣ ଆଡ଼କୁ ପରିଗ୍ରାଳିତ କରିଥାଏ; ତତ୍ତ୍ୱଗତ ଭାବେ ନୀତିଗତ ଆଦର୍ଶ, ବିଧିନିୟମ, ମଣିଷ ମଣିଷ ମଧ୍ୟରେ ନୈତିକ ସଂପର୍କର ମାନ ତଥା ସେମାନଙ୍କ ନୈତିକ କ୍ରିୟାକଳାପକୁ ପ୍ରମାଣିତ କରିଥାଏ । କିନ୍ତୁ ଏସବୁ ସତ୍ତ୍ୱେ ନୀତିଶାସ୍ତ୍ର ଆଉ ଦର୍ଶନ ମଧ୍ୟରେ ପାର୍ଥକ୍ୟ ରହିଛି । ନୀତିଶାସ୍ତ୍ର ମଣିଷ ସହିତ ତା'ର ସହନାଗରିକ ଏବଂ ସାମାଜିକ ସଂପର୍କର ବିଶେଷ କ୍ଷେତ୍ରକୁ ପ୍ରକାଶ କଲାବେଳେ, ଦର୍ଶନ କେବଳ ନୈତିକ କାର୍ଯ୍ୟକଳାପ ସହିତ ସଂପୃକ୍ତ ନୁହେଁ, ଏହା ରାଜନୀତି, ଧର୍ମ, ଅର୍ଥନୀତି, ବିଜ୍ଞାନ ଏବଂ କଳା ସହିତ ସଂପୃକ୍ତ । ଏତଦ୍‌ବ୍ୟତୀତ, ନୀତିଶାସ୍ତ୍ର ହେଉଛି ପ୍ରକୃତ ମାନବିକ ସଂପର୍କରାଜିର, ସାମାଜିକ ପ୍ରପଞ୍ଚର କ୍ଷେତ୍ର, କିନ୍ତୁ ଦର୍ଶନ ସାର୍ବଜନୀନ ପ୍ରପଞ୍ଚକୁ, ପ୍ରକୃତିର ପ୍ରକ୍ରିୟାକୁ ବିଶ୍ଳେଷଣ କରିଥାଏ । ଉଭୟ ମଧ୍ୟରେ ଆଉ ଏକ ବିଶେଷ ପାର୍ଥକ୍ୟ ହେଉଛି, ନୀତିଶାସ୍ତ୍ର ମଣିଷର ଆଚରଣକୁ ବ୍ୟାଖ୍ୟା କରିଥାଏ ଭଲ, ମନ୍ଦ, ନ୍ୟାୟ, କର୍ତ୍ତବ୍ୟ ଏବଂ ବିବେକର ଦୃଷ୍ଟିକୋଣରୁ; କିନ୍ତୁ ଦର୍ଶନ ବାସ୍ତବତାକୁ ବିଗ୍ରର କରିଥାଏ ନିୟମ, ଆବଶ୍ୟକତା, ବସ୍ତୁ, ଆତ୍ମା, ବିକାଶ, ସାରମର୍ମ ଆଦି ଦୃଷ୍ଟିରୁ ।

ତେଣୁ, ଆମେ ଦେଖି ପାରୁଛେ, ଦର୍ଶନ ହେଉଛି ଏକ ବିଶେଷ ଆତ୍ମିକ, ବୌଦ୍ଧିକ ଅଥବା, ଅନେକ ସମୟରେ ଯାହାକୁ କୁହାଯାଇଥାଏ, ସାମାଜିକ ଚେତନାର ଏକ ବିଶେଷ ରୂପ । ଏହାର ମୁଖ୍ୟ ବିଶେଷ ବୈଶିଷ୍ଟ୍ୟ ହେଉଛି, ଏହା ମଣିଷର ବିଶ୍ୱଦୃଷ୍ଟିକୋଣର ତାତ୍ତ୍ୱିକ ଭିତ୍ତି ଗଠନ କରିଥାଏ । ବିଶ୍ୱଦୃଷ୍ଟିକୋଣ ହେଉଛି ବାସ୍ତବତା, ପ୍ରାକୃତିକ ଏବଂ ସାମାଜିକ ପ୍ରପଞ୍ଚ ସଂପର୍କରେ, ତା'ର ଚତୁର୍ପାର୍ଶ୍ୱସ୍ଥ ବିଶ୍ୱଜଗତ ସହିତ ତା'ର ସଂପର୍କ ବିଷୟରେ ମଣିଷର ସାମାନ୍ୟୀକୃତ ମତାମତ ଏବଂ ଧାରଣାକୁ ନେଇ ଗଠିତ ଏକ ସ୍ୱତନ୍ତ୍ର ବ୍ୟବସ୍ଥା ବା ପଦ୍ଧତି । ବିଶ୍ୱଦୃଷ୍ଟିକୋଣର ଅବଧାରଣା ଏବଂ ଦର୍ଶନ ଅନେକ ସମୟରେ ଅଭିନ୍ନ ମନେ ହୁଅନ୍ତି, କିନ୍ତୁ ସେମାନଙ୍କୁ ପୃଥକ୍ କରି ଦେଖିବାଟା ଅଧିକ ସଠିକ । ଏହା ଛଡ଼ା, ବିଶ୍ୱଦୃଷ୍ଟିକୋଣ ରୂପ ପରିଗ୍ରହ କରିଥାଏ ବହୁବିଧ ଉପାଦାନକୁ ନେଇ, ଯେଉଁଗୁଡ଼ିକ ମୋଟେ ସମଚରିତ୍ରର ନୁହନ୍ତି । ଦୃଷ୍ଟାନ୍ତ ସ୍ୱରୂପ, ଏ ବସ୍ତୁନିଷ୍ଠ ଜଗତର ବିଭିନ୍ନ ଦିଗ ସଂପର୍କରେ ସାଧାରଣ ଅବଧାରଣା ଆମେ ଲାଭ କରିଥାଏ ପ୍ରାକୃତିକ ଏବଂ ସାମାଜିକ ବିଜ୍ଞାନସମୂହ ମଧ୍ୟରୁ । ବିଶ୍ୱଦୃଷ୍ଟିକୋଣର ଆଉ କେତେକ ଉପାଦାନ ନିହିତ ଥାଏ ସାହିତ୍ୟ, କଳା, ଆଚରଣବିଧି ଏବଂ ନିୟମ କାନୁନ୍ ମଧ୍ୟରେ । ସେସବୁ ମଧ୍ୟରୁ ପ୍ରତ୍ୟେକ ସେମାନଙ୍କ ନିଜସ୍ୱ ଦିଗରୁ ପ୍ରକୃତି ତଥା ସାମାଜିକ ବାସ୍ତବତାର ମୁଖ୍ୟ ଦିଗଗୁଡ଼ିକ ପ୍ରକାଶ କରିଥାଏ । ଧର୍ମ ବିଶ୍ୱ ସଂପର୍କରେ ଏକ ବିକୃତ ଧାରଣା ଦେଲାବେଳେ, ଦର୍ଶନ ଜଗତର ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତ ସଂପର୍କରେ ଏକ ସାଧାରଣ ଅବଧାରଣା ସୃଷ୍ଟି କରି ବିଶ୍ୱଦୃଷ୍ଟିକୋଣର ସମସ୍ତ ଉପାଦାନର ଭାବାଦର୍ଶଗତ ତଥା ତାତ୍ତ୍ୱିକ ପ୍ରାଣକୋଷ ଗଠନ କରିଥାଏ ।

ବିଶ୍ୱଦୃଷ୍ଟିକୋଣ ହେଉଛି, ତା'ର ଆଧେୟ ଦୃଷ୍ଟିରୁ, ଚିନ୍ତାଧାରାସମୂହର ଏକ ଜଟିଳ ସମାହାର । ସମାଜର ବିକାଶ ସାଥେ ସାଥେ ଏହାର ଚରିତ୍ର, ଆଧେୟ ଏବଂ ଗଢ଼ଣରେ

ପରିବର୍ତ୍ତନ ଘଟିଥାଏ । ଇତିହାସର ବିଭିନ୍ନ ପର୍ଯ୍ୟାୟରେ, ବିଭିନ୍ନ ସମାଜରେ ଏବଂ ଭିନ୍ନ ଭିନ୍ନ ଶ୍ରେଣୀ ମଧ୍ୟରେ ଭିନ୍ନ ଭିନ୍ନ ଧରଣର ବିଶ୍ୱଦୃଷ୍ଟିକୋଣ ପ୍ରାଧାନ୍ୟ ଲାଭ କରିଥାଏ । ଆଦିମ ସମାଜରେ ବିଶ୍ୱଦୃଷ୍ଟିକୋଣ ଗଠିତ ହେଉଥିଲା ଦୈନନ୍ଦିନ ଜୀବନରୁ ମିଳୁଥିବା ଅଭିଜ୍ଞତାଲବ୍ଧ ଜ୍ଞାନ ଦ୍ୱାରା ଏବଂ ଏହା ନିବିଡ଼ ଭାବେ ପୌରାଣିକ ଧାରଣା ସହିତ ମିଶ୍ରିତ ଥିଲା । ସେସବୁ ଥିଲା ବାସ୍ତବତାର ଏକ ବିକୃତ କପୋଳକଳ୍ପିତ ପ୍ରତିଫଳନ, ମୌଳିକ ଶକ୍ତିଗୁଡ଼ିକ ଆଗରେ ମଣିଷର ଶକ୍ତିହୀନତାର ପରିପ୍ରକାଶ । ଉଦାହରଣ ସ୍ୱରୂପ, ଭାରତବର୍ଷରେ ଗୋତ୍ର ପ୍ରଥା ଭାଙ୍ଗି ପଡ଼ୁଥିଲା ବେଳେ ବେଦସବୁ ରଚିତ ହୋଇଥିଲା । ଏହିସବୁ ବେଦରେ ପ୍ରକୃତି, ଭାଗ୍ୟ ତଥା ଲୋକ ଲୋକ ମଧ୍ୟରେ ସଂପର୍କ ବିଷୟରେ ପ୍ରାଚୀନ ଦୁନିଆର ଲୋକମାନଙ୍କର ମତାମତସବୁ ପ୍ରକାଶ ପାଇଛି । କିନ୍ତୁ, ତା ସତ୍ତ୍ୱେ ବି ଏହି ବିଶ୍ୱଦୃଷ୍ଟିକୋଣ ଥିଲା ମୂଳତଃ ପୌରାଣିକ ଏବଂ ଧର୍ମୀୟ; ପ୍ରକୃତ ଦର୍ଶନ ସେତେବେଳକୁ ରୂପ ପରିଗ୍ରହ କରି ନଥିଲା ।

ଏବେ ଆମ ଏହି ଯୁଗରେ ବି ଶିଳ୍ପୋନ୍ନତ ପୁଞ୍ଜିବାଦୀ ଦେଶସମୂହରେ କୋଟି କୋଟି ଲୋକ, ବିଶ୍ୱ ସଂପର୍କରେ ଖାଣ୍ଟି ପୌରାଣିକ ମତ ପୋଷଣ ନକଲେ ମଧ୍ୟ, ଅଣଦାର୍ଶନିକ ମତାମତ ପୋଷଣ କରିଥାନ୍ତି – ଅଭିଜ୍ଞତାଲବ୍ଧ, ସ୍ୱତଃସ୍ଫୂର୍ତ୍ତ ମତାମତ ଠାରୁ ଆରମ୍ଭ କରି ଧର୍ମୀୟ ମତାମତ ପର୍ଯ୍ୟନ୍ତ ।

ପ୍ରଥମ ଦାର୍ଶନିକ ବ୍ୟବସ୍ଥା ତା'ର ପ୍ରାରମ୍ଭରେ ଜନ୍ମ ଦେଇଥିଲା ଗୁଣାତ୍ମକ ଭାବେ ନୂଆ ଏକ ଧରଣର ବିଶ୍ୱଦୃଷ୍ଟିକୋଣକୁ – ଦାର୍ଶନିକ ବିଶ୍ୱଦୃଷ୍ଟିକୋଣକୁ । ଦର୍ଶନ ହେଉଛି ସାମଗ୍ରିକ ଭାବେ ଜଗତ ସଂପର୍କରେ ତାତ୍ତ୍ୱିକ ଭାବେ ସୁସିଦ୍ଧ ଏକ ଶିକ୍ଷା । ଏହା ପ୍ରକୃତି, ସମାଜ ଏବଂ ମଣିଷ ସଂପର୍କରେ ସାଧାରଣ ଅବଧାରଣାସମୂହକୁ ଏକ ଅଖଣ୍ଡ ମତବାଦ ମଧ୍ୟରେ ଐକ୍ୟବଦ୍ଧ କରିଥାଏ ।

ସ୍ୱତଃସ୍ଫୂର୍ତ୍ତ ବିଶ୍ୱଦୃଷ୍ଟିକୋଣଠାରୁ ଦର୍ଶନ ହେଉଛି ପୃଥକ୍ । ଏହା ବିଶ୍ୱଜଗତର ସାରସତ୍ତା ସଂପର୍କରେ, ମଣିଷ ଦ୍ୱାରା ତା'ର ଅବଗତି ସଂପର୍କରେ ଚିନ୍ତାରାଜିକୁ ନେଇ ଏକ ଚିର ବିକଶିତ ବ୍ୟବସ୍ଥା, ଏହା ଦୈନନ୍ଦିନ ଜୀବନରେ ମଣିଷ ଦ୍ୱାରା ଗଠିତ ମତାମତ ସକଳର କେବଳ ଏକ ସମାହାର ନୁହେଁ ।

ଦାର୍ଶନିକ ବିଶ୍ୱଦୃଷ୍ଟିକୋଣ ଧର୍ମୀୟ ବିଶ୍ୱଦୃଷ୍ଟିକୋଣଠାରୁ ଭିନ୍ନ ହେବାର କାରଣ ହେଉଛି, ଏହା କେବଳ କେତେକ ନୀତିରାଜିକୁ ଘୋଷଣା ବା ପୁନରୁକ୍ତ କରେ ନାହିଁ, ଏହା ସେସବୁକୁ ଯୁକ୍ତିଯୁକ୍ତ ଭାବେ ପ୍ରତିପାଦନ କରେ ଏବଂ ପ୍ରମାଣ କରେ । ପ୍ରତ୍ୟେକ ଦର୍ଶନ କିନ୍ତୁ ବିଜ୍ଞାନସିଦ୍ଧ ନୁହେଁ । ବିଜ୍ଞାନସିଦ୍ଧ ହେବା ପାଇଁ ଯେକୌଣସି ଦର୍ଶନକୁ ଜନସାଧାରଣଙ୍କ ଜୀବନର ସାଧାରଣୀକୃତ ଅଭିଜ୍ଞତା ଏବଂ ସେମାନଙ୍କ ଦ୍ୱାରା ଆହୃତ ବୈଜ୍ଞାନିକ ଜ୍ଞାନ ଉପରେ ପ୍ରତିଷ୍ଠିତ ହେବାକୁ ପଡ଼ିବ, ସଂପୂର୍ଣ୍ଣ ରୂପେ ସ୍ୱେଚ୍ଛାଗ୍ରରୀ, ମନମୁଖୀ ଯୁକ୍ତି ଉପରେ ପ୍ରତିଷ୍ଠିତ ହେଲେ ଚଳିବ ନାହିଁ ।

ତେଣୁ, ଆଧେୟ ଦୃଷ୍ଟିରୁ ଦାର୍ଶନିକ ବିଶ୍ୱଦୃଷ୍ଟିକୋଣ ବୈଜ୍ଞାନିକ କିମ୍ବା ଅବୈଜ୍ଞାନିକ

ହୋଇ ପାରେ । ଏହାକୁ ତା'ର ମୌଳିକ ଚିନ୍ତାଧାରା ଦୃଷ୍ଟିରୁ ଧର୍ମୀୟ ବା ନିରୀଶ୍ୱରବାଦୀ, ଆଶାବାଦୀ ବା ନିରାଶାବାଦୀ, ଅମାନବତାବାଦୀ ବା ମାନବତାବାଦୀ, ପ୍ରଗତିଶୀଳ ବା ପ୍ରତିକ୍ରିୟାଶୀଳ ବୋଲି ନାମିତ କରାଯାଇଥାଏ । ଦର୍ଶନର ମୌଳିକ ପ୍ରଶ୍ନଟିର ଜବାବ ଏହା କି ଭାବେ ଦେଉଛି ଏହା ଶେଷକୁ ତା ଉପରେ ନିର୍ଭର କରେ ।

## ୨ – ଦର୍ଶନର ମୌଳିକ ପ୍ରଶ୍ନ

ଯେକୌଣସି ଦର୍ଶନର ସର୍ବାପେକ୍ଷା ସାଧାରଣ ପ୍ରଶ୍ନଗୁଡ଼ିକ ହେଉଛି ବିଶ୍ୱଜଗତର ସୃଷ୍ଟି ଏବଂ ସାରସତ୍ତା, ମଣିଷର ସୃଷ୍ଟି ଏବଂ ତା'ର ଚେତନା ଏବଂ ମଣିଷ ଜୀବନର ଅର୍ଥ ଆଦିକୁ ନେଇ । ଏହିସବୁ ପ୍ରଶ୍ନର ଉତ୍ତର ଦର୍ଶନକୁ ସଦାସର୍ବଦା ଦେବାକୁ ପଡ଼ିଥାଏ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ, ଲୋକକଥା ଅନୁଯାୟୀ ଗ୍ରୀକ୍ ଦାର୍ଶନିକ ପିଥାଗୋରସ୍‌ଙ୍କ ଦ୍ୱାରା ସୃଷ୍ଟ 'ଫିଲସଫି' (ଦର୍ଶନ) ଶବ୍ଦଟିର ଅର୍ଥ ହେଉଛି 'ଜ୍ଞାନାନୁରାଗ' । ଦର୍ଶନର ଅବଧାରଣାକୁ ପ୍ରକାଶ କରିବା ପାଇଁ ବହୁ ସମୟରେ ବ୍ୟବହୃତ ଭାରତୀୟ ଶବ୍ଦ 'ଦର୍ଶନ'ର ସୃଷ୍ଟି ହୋଇଛି ମୂଳ ଶବ୍ଦ 'ଦୃଶ୍'ରୁ (ଦେଖିବା) । ତେଣୁ ଏହା ବିଶ୍ୱଦୃଷ୍ଟିକୋଣର ଅତୀବ ସାଧାରଣ ଚରିତ୍ରକୁ ପ୍ରକାଶ କରେ – 'ବିଶ୍ୱଜଗତର ସାରମର୍ମ ଏବଂ ବସ୍ତୁସତ୍ତାର ଅର୍ଥ ମଧ୍ୟକୁ ପ୍ରବେଶ କରି' ।

ସମସ୍ତ ଦାର୍ଶନିକ ପ୍ରଶ୍ନର ବ୍ୟାଖ୍ୟା, ଶେଷକୁ ବାହ୍ୟ ଜଗତ ସହିତ ମଣିଷର ସଂପର୍କ, ବସ୍ତୁନିଷ୍ଠ ବାସ୍ତବତା ସଙ୍ଗେ ତା'ର ଚେତନାର ସଂପର୍କ ସଂକ୍ରାନ୍ତ ଧାରଣା ସହିତ ଯୁକ୍ତ । ଏହି ପ୍ରଶ୍ନଟି ଦର୍ଶନ ପକ୍ଷରେ ମୌଳିକ ପ୍ରଶ୍ନ । ହଜାର ହଜାର ବର୍ଷ ଆଗେ ଲୋକଙ୍କର ସେମାନଙ୍କ ଶରୀର ଗଠନ ସଂପର୍କରେ କୌଣସି ଧାରଣା ନଥିଲା ଏବଂ ବିଶେଷ କରି ସ୍ୱପ୍ନର ଅର୍ଥ କ'ଣ ସେମାନେ ବୁଝି ପାରୁ ନଥିଲେ । ସେତେବେଳେ ମଧ୍ୟ ଲୋକଙ୍କ ଧାରଣା ହେଉଥିଲା ଯେ, ମଣିଷର ଚେତନା ଏବଂ କାର୍ଯ୍ୟକଳାପ ମଧ୍ୟରୁ ଜାତ ଇନ୍ଦ୍ରିୟାନୁଭୂତି ସେମାନଙ୍କ ଶରୀରରୁ ଜାତ ହୁଏ ନି, ଏସବୁ ଜାତ ହୁଏ ଶରୀରରେ ବାସ କରୁଥିବା କୌଣସି ଏକ ବିଶେଷ ଆତ୍ମାରୁ । ସେ ଆତ୍ମା ମୃତ୍ୟୁ ପରେ ଶରୀରକୁ ତ୍ୟାଗ କରି ଚାଲି ଯାଏ । ସେତେବେଳେ ମଧ୍ୟ ଲୋକେ ଏହି ଆତ୍ମା ସହିତ ବାହ୍ୟ ଜଗତର ସଂପର୍କ ବିଷୟରେ ନିଶ୍ଚୟ ଚିନ୍ତା କରିଥିଲେ । ଦର୍ଶନ ହେଉଛି ନିର୍ଦ୍ଦିଷ୍ଟ ଭାବେ ସେହି ଭଳି ବିଶ୍ୱଜଗତ ସଂପର୍କରେ ତତ୍ତ୍ୱଗତ ଭାବେ ସୁସଂବଦ୍ଧ ଏକ ଦୃଷ୍ଟିକୋଣ, ଯିଏକି ବସ୍ତୁ ଆଉ ଆତ୍ମା ମଧ୍ୟରେ ସଂପର୍କର ଏକ ବ୍ୟାଖ୍ୟାକୃତ ଅବଧାରଣା ଉପରେ ପ୍ରତିଷ୍ଠିତ । କିଏ ପ୍ରଥମ, ଚିନ୍ତନ ନା ସତ୍ତା ? ଏହାହିଁ ହେଉଛି ଦର୍ଶନର ମୌଳିକ ପ୍ରଶ୍ନର ଅତୀବ ସାଧାରଣ ସୂତ୍ରାୟନ । ଏହାକୁ ମଧ୍ୟ ଆଉରି ସଂକୀର୍ଣ୍ଣ ଭାବେ ଏବଂ ତତ୍ ସଙ୍ଗେ ସଙ୍ଗେ ଆଉରି ଅଧିକ ତୀକ୍ଷ୍ଣ ଭାବେ ସୂତ୍ରବଦ୍ଧ କରାଯାଇ ପାରେ : ଏ ଜଗତକୁ ଭଗବାନ ସୃଷ୍ଟି କରିଥିଲେ ନା ଏହା ଏହି ଭଳି ସର୍ବଦା ଅବସ୍ଥିତ ଥିଲା ? ଏଥି ସହିତ ସତ୍ତା ଆଉ ଚିନ୍ତନ

ମଧ୍ୟରେ ସଂପର୍କର ଆଉ ଏକ ଦିଗ ରହିଛି । ସେ ଦିଗଟି ହେଉଛି, ଆମର ଚତୁର୍ପାର୍ଶ୍ୱସ୍ଥ ଜଗତ ସଂପର୍କରେ ଆମର ଚିନ୍ତାଧାରା ସକଳ କିପରି ସଂଯୁକ୍ତ, ବା, ଅନ୍ୟ କଥାରେ, ଏ ଜଗତ ବୋଧଗମ୍ୟ କି ବୋଧଗମ୍ୟ ନୁହଁ ?

## ଦର୍ଶନର ମୌଳିକ ପ୍ରଶ୍ନ

ଚିନ୍ତନ ସହିତ ବସ୍ତୁସତ୍ତାର ଏବଂ ଆତ୍ମା ସହିତ ପ୍ରକୃତିର ସଂପର୍କ

ପ୍ରଥମ ଦିଗଟି,
କିଏ ପ୍ରଥମ : ବସ୍ତୁ ନା ଚେତନା ?

ଦ୍ୱିତୀୟ ଦିଗଟି,
ଜଗତ କ'ଣ ବୋଧଗମ୍ୟ ?

ଦର୍ଶନର ଏହି ମୌଳିକ ପ୍ରଶ୍ନଟିର ଏକ ନିର୍ଦ୍ଦିଷ୍ଟ ସମାଧାନ ମଣିଷର ଦୃଷ୍ଟିକୋଣର ଚରିତ୍ରକୁ, ତା'ର ଅସ୍ତିତ୍ୱ ସଂପର୍କରେ ଅବଧାରଣା, ସାମାଜିକ ପ୍ରପଞ୍ଚ ସହିତ ତା'ର ସଂପର୍କ ଏବଂ ତା କାର୍ଯ୍ୟାବଳୀର ଲକ୍ଷ୍ୟକୁ ନିର୍ଦ୍ଧାରଣ କରିଥାଏ । ପ୍ରାଚୀନ ଭାରତର ରାଜନୈତିକ ଗ୍ରନ୍ଥ "ଅର୍ଥଶାସ୍ତ୍ର" ଅନୁଯାୟୀ ଦର୍ଶନ ଆବଶ୍ୟକ, କାରଣ "ଏହା ଦୁଃଖ ଏବଂ ଆନନ୍ଦ ମଧ୍ୟରେ ମନୋବଳକୁ ଦୃଢ଼ କରିଥାଏ ଏବଂ ବୁଝିବା, କହିବା ଏବଂ କାର୍ଯ୍ୟ କରିବା ପାଇଁ ଶକ୍ତି ଦାନ କରିଥାଏ ।"* କିନ୍ତୁ ଯେଉଁ ମତବାଦ ଦର୍ଶନର ଏହି ମୌଳିକ ପ୍ରଶ୍ନଟିର ଭିନ୍ନ ଉତ୍ତର ଦେଇଥାଏ, ତାହା ଜୀବନରେ ମଣିଷର ଆସ୍ଥାନକୁ ଭିନ୍ନ ଭାବେ ସୂତ୍ରାୟନ କରିଥାଏ । ଯେଉଁମାନେ ଭାବନ୍ତି, ସବୁ କିଛି ପରମାତ୍ମା ଦ୍ୱାରା ପରିଗ୍ଢିତ ହୋଇଥାଏ, ସ୍ୱଭାବିକ ଭାବେ ସେମାନେ ଆହ୍ୱାନ ଦେବେ – ଦୁନିଆରେ ଅକଲ୍ୟାଣ ଏବଂ ଦୁଃଖର ବିନାଶ ଏକମାତ୍ର ପୂର୍ଣ୍ଣ ନୈତିକତା ଏବଂ କର୍ମର ଶାଶ୍ୱତ ନୈତିକ ନିୟମ ପାଳନ ଦ୍ୱାରା କରିବାକୁ । ଏହି ଭଳି ଏକ ଦର୍ଶନ ବ୍ୟକ୍ତିକୁ କହେ, ତା'ର ଅସ୍ତିତ୍ୱର ଅର୍ଥକୁ କେବଳ ତା'ର ଆତ୍ମଜ୍ଞାନ, ମୋକ୍ଷ ଲଭ ଏବଂ ସାମାଜିକ କାର୍ଯ୍ୟକଳାପ ବର୍ଜନ ମଧ୍ୟରେ ଦେଖିବାକୁ ।

ଏହାର ବିପରୀତରେ, ସତ୍ତାର ପ୍ରାଥମିକତାକୁ ସ୍ୱୀକାର କରି ନେବା ଏବଂ ଯେଉଁସବୁ ନିୟମ ଏହାର ପରିବର୍ତ୍ତନକୁ ନିର୍ଦ୍ଧାରଣ କରେ, ସେସବୁକୁ ଆବିଷ୍କାର କରିବାର

---

* "*Antologiya mirovoi filosofii*" (ବିଶ୍ୱ ଦର୍ଶନ ଚୟନିକା), ପ୍ରଥମ ଖଣ୍ଡ. ପ୍ରଥମ ଭାଗ ମିସ୍ଲ ପ୍ରକାଶନ ଭବନ, ମସ୍କୋ, ୧୯୬୯, ପୃ : ୧୩୮ ।

ସମ୍ଭାବ୍ୟତା ଆବଶ୍ୟକ କରେ, ଯେକେ ଅସାମ୍ୟର ପ୍ରକୃତ ସାମାଜିକ କାରଣସମୂହକୁ ଜାଣନ୍ତୁ ଏବଂ ନୂତନ ସାମାଜିକ ସଂପର୍କ ସ୍ଥାପନ ପାଇଁ ନିଷ୍ପତ୍ତିମୂଳକ ସଂଗ୍ରାମ ଚଳାନ୍ତୁ । ଏ କ୍ଷେତ୍ରରେ, ମଣିଷ ଦେଖିବାକୁ ପାଏ, ତା ଅସ୍ତିତ୍ୱର ପ୍ରକୃତ ଅର୍ଥ ନିହିତ ସାମାଜିକ ଅମଙ୍ଗଳ ବିରୁଦ୍ଧରେ ମିଳିତ କାର୍ଯ୍ୟକଳାପ ତଥା ପ୍ରଗତିଶୀଳ ସାମାଜିକ ଆଦର୍ଶରାଜିର ସ୍ଥାପନା ଏବଂ କାର୍ଯ୍ୟକାରିତା ମଧ୍ୟରେ ।

ଏହି ଦୃଷ୍ଟାନ୍ତଟି ମଧ୍ୟ ଦର୍ଶାଇ ଦେଉଛି ଯେ, ଦର୍ଶନର ମୌଳିକ ପ୍ରଶ୍ନଟିର ସାରମର୍ମର ବ୍ୟାଖ୍ୟା ଦ୍ୱାରା ଏହା ତା'ର ପକ୍ଷପାତିତାକୁ ପ୍ରକାଶ କରିବାକୁ ସକ୍ଷମ, ସମାଜରେ ଶ୍ରେଣୀ ସଂଗ୍ରାମ ସହିତ ତା'ର ଯୋଗସୂତ୍ରକୁ ଉଦ୍‌ଘାଟନ କରିବାକୁ ସମର୍ଥ ।

## ୩ — ଦର୍ଶନର ପକ୍ଷପାତିତା : ବସ୍ତୁବାଦ ଏବଂ ଭାବବାଦ

ଦାର୍ଶନିକମାନେ ଦୁଇଟି ବୃହତ୍ ପକ୍ଷରେ ବିଭକ୍ତ : ଗୋଟିଏ ହେଉଛି ବସ୍ତୁବାଦୀ ପକ୍ଷ ଆଉ ଗୋଟିଏ ହେଉଛି ଭାବବାଦୀ ପକ୍ଷ । ଏହି ବିଭାଜନ ନିର୍ଭର କରେ, ଚେତନା ଏବଂ ସତ୍ତା ମଧ୍ୟରେ ସଂପର୍କ ସଂକ୍ରାନ୍ତ ପ୍ରଶ୍ନଟିର ପ୍ରଥମ ଭାଗଟିର ଉତ୍ତର କିଏ କିପରି ଦେଉଛି । ବସ୍ତୁବାଦୀମାନେ କହନ୍ତି ପ୍ରକୃତି ଏବଂ ବସ୍ତୁ ହେଉଛି ପ୍ରାଥମିକ ଏବଂ ଚେତନା ହେଉଛି ଗୌଣ, ଅର୍ଥାତ୍, ବସ୍ତୁରୁ ଚେତନା ଉଦ୍‌ଭୂତ ଏବଂ ଏହା ହେଉଛି ବସ୍ତୁର ଧର୍ମ । ଏହାର ବିପରୀତରେ, ଭାବବାଦୀମାନେ କହନ୍ତି, ପ୍ରକୃତି ପୂର୍ବରୁ ପରମାତ୍ମା ରହିଥିଲେ ଏବଂ ପରମାତ୍ମାଙ୍କ ଦ୍ୱାରା ଏ ଜଗତ ସୃଷ୍ଟି ହୋଇଛି । ପ୍ରାକୃତିକ ବିଜ୍ଞାନ ଉପରେ ପ୍ରତିଷ୍ଠିତ ବସ୍ତୁବାଦର ସ୍ୱତଃସିଦ୍ଧଗୁଡ଼ିକ ଈଶ୍ୱର ବିଶ୍ୱାସକୁ ପ୍ରତ୍ୟାଖ୍ୟାନ କରିଥାଏ ଏବଂ ନିରୀଶ୍ୱରବାଦ ସହିତ ସେଗୁଡ଼ିକ ଅବିଚ୍ଛିନ୍ନ । ଅନ୍ୟ ଦିଗରେ, ଭାବବାଦ ସାରଗତ ଭାବେ ଧର୍ମ ସହିତ ଘନିଷ୍ଠ ଭାବେ ଯୁକ୍ତ ଏବଂ ଏହାର ଲକ୍ଷ୍ୟ ହେଉଛି ତତ୍ତ୍ୱଗତ ଭାବେ ତାକୁ ଯୁକ୍ତିଯୁକ୍ତ ବୋଲି ପ୍ରମାଣ କରିବା ।

ଆଜିକାଲି, ଆମ ଏହି ଯୁଗରେ ବିଶେଷ ଭାବେ ଗୁରୁତ୍ୱପୂର୍ଣ୍ଣ କଥାଟି ହେଉଛି, ନିର୍ଦ୍ଦିଷ୍ଟ ଏକ ଦାର୍ଶନିକ ମତବାଦର ପ୍ରକୃତ ଅର୍ଥକୁ ବୁଝିବାକୁ ହେବ ତା ଦ୍ୱାରା ପ୍ରଦତ୍ତ ଦର୍ଶନର ମୌଳିକ ପ୍ରଶ୍ନର ଉତ୍ତର କିପରି ଦିଆଯାଇଛି । ଆଧୁନିକ ଭାବବାଦ, ଦୃଷ୍ଟାନ୍ତ ସ୍ୱରୂପ, ନିଜକୁ ସାଧାରଣତଃ "ଅସ୍ତିତ୍ୱବାଦ", "ବ୍ୟକ୍ତିତ୍ୱବାଦ", "ନବପ୍ରତ୍ୟକ୍ଷବାଦ", "ବହୁଧାବାଦ" ଆଦି ପାଣ୍ଡିତ୍ୟପୂର୍ଣ୍ଣ ଶବ୍ଦର ଛଦ୍ମବେଶରେ ସଜ୍ଜିତ କରିଥାଏ । କେତେକ ବୁର୍ଜୁଆ ଦାର୍ଶନିକ ଅଭିଯୋଗ କରନ୍ତି ଯେ, ଆଧୁନିକ ଯୁଗରେ ଦର୍ଶନର ମୌଳିକ ପ୍ରଶ୍ନଟା 'ପୁରୁଣାକାଳିଆ ହୋଇ ପଡ଼ିଲାଣି' ଏବଂ ବସ୍ତୁବାଦ ଓ ଭାବବାଦ ମଧ୍ୟରେ ପାର୍ଥକ୍ୟ ଆଉ ନାହିଁ । ଏହା କ'ଣ ସତ ? ଏସବୁ ସତ୍ତ୍ୱେ, ସାମାଜିକ ଚେତନାର ଏକ ଦୃଢ଼ ଉପାଦାନ ହିସାବରେ, ଦର୍ଶନ ସଦାସର୍ବଦା ସାମାଜିକ ସତ୍ତାକୁ ପ୍ରତିଫଳିତ କରିଥାଏ । ପ୍ରଗତିଶୀଳ ଏବଂ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର ସ୍ୱାର୍ଥ, ଶୋଷିତ ଏବଂ ଶୋଷକ


ପ୍ରଥମ ଦିଗ
କିଏ ପ୍ରଥମ – ବସ୍ତୁ ନା ଚେତନା ?
ଚେତନା ସହିତ ସଂପର୍କ ଦିଗରୁ ବସ୍ତୁ ହେଉଛି ପ୍ରାଥମିକ । ଚେତନା ହେଉଛି ଅତୀବ ସୁସଂଗଠିତ ବସ୍ତୁର ଏକ ଧର୍ମ
ବସ୍ତୁ ଏବଂ ଚେତନା ହେଉଛନ୍ତି ଦୁଇଟି ମୌଳିକ ନୀତି , ଏହା ପରସ୍ପରଠାରୁ ସ୍ୱାଧୀନ ଭାବେ ଅବସ୍ଥାନ କରିଥାନ୍ତି
ଚେତନା ହେଉଛି ପ୍ରାଥମିକ । ଚେତନାଠାରୁ ସ୍ୱାଧୀନ ଭାବେ ବସ୍ତୁ ଅବସ୍ଥାନ କରି ପାରେ ନାହିଁ ।
ବସ୍ତୁବାଦ
ଦ୍ୱୈତବାଦ
ଭାବବାଦ

ଶ୍ରେଣୀମାନଙ୍କର ସ୍ୱାର୍ଥ, ବୈରିତାପୂର୍ଣ୍ଣ ସାମାଜିକ ସଂପର୍କ ଥିବା ସମାଜରେ ପରସ୍ପରର ବିରୋଧୀ । ଇତିହାସର ବିଭିନ୍ନ ସମୟରେ ବିପରୀତ ଶ୍ରେଣୀ ସ୍ୱାର୍ଥଗୁଡ଼ିକ ମଧ୍ୟରେ ସଂଘର୍ଷ, ଦାର୍ଶନିକ ଚିନ୍ତାଧାରାଗୁଡ଼ିକ ମଧ୍ୟରେ ସଂଗ୍ରାମରେ ପ୍ରତିଫଳିତ ହୋଇଥାଏ । ମାନବ ସମାଜର ଇତିହାସରୁ ଦେଖାଯାଏ, ବସ୍ତୁବାଦୀ ଦର୍ଶନ ବିସ୍ତୃତ ଭାବେ ବିକାଶ ଲାଭ କରିଛି ପ୍ରଗତିଶୀଳ ଶ୍ରେଣୀ ଏବଂ ସାମାଜିକ ଗୋଷ୍ଠୀମାନଙ୍କର ପ୍ରତିନିଧିମାନଙ୍କ ଦ୍ୱାରା । ଏହା ପ୍ରକାଶ କରିଥାଏ ଉଦୀୟମାନ, ପ୍ରଗତିଶୀଳ ସାମାଜିକ ସ୍ତରର ବିଶ୍ୱ-ଦୃଷ୍ଟିକୋଣ ଆଉ ଭାବାଦର୍ଶକୁ, ଯେଉଁମାନେ କି ପରିବର୍ତ୍ତନଶୀଳ ସାମାଜିକ ସଂପର୍କ, ବିକାଶମାନ ଉତ୍ପାଦିକା ଶକ୍ତିସମୂହ ସହିତ ସଂପୃକ୍ତ, ବୈଜ୍ଞାନିକ ଜ୍ଞାନର ବିସ୍ତାର, ଏବଂ ଅଜ୍ଞତା ତଥା ଅନ୍ଧବିଶ୍ୱାସକୁ ଅତିକ୍ରମ କରିବା ଦିଗରେ ଇଚ୍ଛୁକ । ଦର୍ଶନରେ ଭାବବାଦ ସଦାବେଳେ ସେହିସବୁ ପ୍ରତିକ୍ରିୟାଶୀଳ ଶ୍ରେଣୀ ତଥା ସାମାଜିକ ଗୋଷ୍ଠୀର ଭାବାଦର୍ଶ ହୋଇ ଆସିଛି ଯେଉଁମାନେ ବିଦ୍ୟମାନ ସାମାଜିକ ବ୍ୟବସ୍ଥାକୁ ସାଇତି ରଖିବାକୁ ଚାହାନ୍ତି ଏବଂ ଧର୍ମୀୟ ଅନ୍ଧବିଶ୍ୱାସକୁ ଆଉରି ବ୍ୟାପକ କରିବାକୁ ଚାହାନ୍ତି । ଆଧୁନିକ ସମାଜରେ ବସ୍ତୁବାଦ ଆଉ ଭାବବାଦ ମଧ୍ୟରେ ସଂଘର୍ଷଟା ଶେଷକୁ ଅଭିବ୍ୟକ୍ତି ଲାଭ କରିଥାଏ ସଂଗ୍ରାମ ମଧ୍ୟରେ ଦୁଇଟି ମୁଖ୍ୟ ଶ୍ରେଣୀ – ବୁର୍ଜୁଆ ଏବଂ ଶ୍ରମିକ ଶ୍ରେଣୀର ସ୍ୱାର୍ଥ ସଂଘର୍ଷ ମଧ୍ୟରେ ।

ଏ କଥା କହିବା ଅନାବଶ୍ୟକ ଯେ, ବସ୍ତୁବାଦ ଆଉ ଭାବବାଦ ମଧ୍ୟରେ ସଂଗ୍ରାମ ସହିତ ଶ୍ରେଣୀ ସଂଗ୍ରାମର ଯୋଗସୂତ୍ରକୁ ଅତିସରଳ କରି ଦେବା ଉଚିତ ନୁହେଁ । ଏ କଥା କେବେହେଲେ ସତ୍ୟ ନୁହେଁ ଯେ, ବସ୍ତୁବାଦ ଏବଂ ଭାବବାଦ ସର୍ବଦା ଏକ 'ବିଶୁଦ୍ଧ' ରୂପ ନେଇ ପ୍ରକାଶ ପାଇଥାନ୍ତି । ଅତୀତର ବହୁ ଦାର୍ଶନିକ ପ୍ରକୃତି ସଂପର୍କରେ ବସ୍ତୁବାଦୀ ମତରାଜିକୁ ସାମାଜିକ ପ୍ରପଞ୍ଚ ସଂପର୍କରେ ଭାବବାଦୀ ଅବଧାରଣା ସହିତ ମିଶେଇ ଦେଇଥିଲେ । ଏହା ଛଡ଼ା ଦର୍ଶନରେ ଦ୍ୱୈତବାଦୀ ବ୍ୟବସ୍ଥା ମଧ୍ୟ ରହିଛି, ଯିଏକି ଦୁଇଟି ନୀତି ବା ଉପାଦାନର, ଆତ୍ମିକ ଏବଂ ବୈଷୟିକର ସ୍ୱାଧୀନ ଅବସ୍ଥାନକୁ ମାନି ନେଇ ଜଗତ ସଂପର୍କରେ ବିପରୀତ ଦୃଷ୍ଟିକୋଣକୁ ଏକାଠି କରି ଦେବାକୁ ଚେଷ୍ଟା କରନ୍ତି । ଆଜିକାଲି ବହୁ ବୁର୍ଜୁଆ ପଣ୍ଡିତ ପ୍ରଚାର କରୁଥିବା ତଥାକଥିତ ବହୁଧାବାଦ ମଧ୍ୟ ଅସଙ୍ଗତିଶୀଳ ମତାବଳୀର ଅଯଥା ଐକ୍ୟକରଣରେ ନିଜକୁ ଲିପ୍ତ କରୁଛି । ଏହାର ଅନୁଗାମୀମାନେ ମନେ କରନ୍ତି, ଏ ବିଶ୍ୱ ବ୍ରହ୍ମାଣ୍ଡ ବହୁ (ଦୁଇରୁ ଅଧିକ) ସ୍ୱାଧୀନ ନୀତି ବା ଉପାଦାନ ଉପରେ ପ୍ରତିଷ୍ଠିତ । ପ୍ରକୃତରେ ସେମାନେ ବସ୍ତୁବାଦ ଏବଂ ଭାବବାଦ, ବିଜ୍ଞାନ ଏବଂ ଧର୍ମ, ଯୁକ୍ତି ଏବଂ ବିଶ୍ୱାସ, ସତ୍ୟ ଏବଂ ମିଥ୍ୟା ମଧ୍ୟରେ ସମସ୍ତ ପାର୍ଥକ୍ୟକୁ ଅସ୍ୱୀକାର କରନ୍ତି । ଠିକ୍ ଦ୍ୱୈତବାଦ ଭଳି ଦର୍ଶନରେ ବହୁଧାବାଦ ତା'ର ଶେଷ ବ୍ୟାଖ୍ୟାରେ ହେଉଛି ସଂପୂର୍ଣ୍ଣ ଭାବବାଦୀ ଧରଣର ମତବାଦ ।

ବୈଜ୍ଞାନିକ ବସ୍ତୁବାଦୀ ଦର୍ଶନ ହେଉଛି ଏକ ଅଦ୍ୱୈତବାଦୀ ମତବାଦ, ଅର୍ଥାତ୍, ଏହା ତା'ର ବିଶ୍ୱ ସଂବନ୍ଧୀୟ ଅବଧାରଣା କ୍ଷେତ୍ରରେ ବସ୍ତୁର ପ୍ରାଥମିକତାର ନୀତିର

# ବସ୍ତୁବାଦୀ ଦର୍ଶନର ବିକାଶରେ ମୌଳିକ ସ୍ତରସମୂହ

| କାଳ | ତତ୍ତ୍ୱ | ପ୍ରବକ୍ତାବୃନ୍ଦ | ଯେଉଁସବୁ ସାମାଜିକ ଗୋଷ୍ଠୀର ସ୍ୱାର୍ଥକୁ ପ୍ରକାଶ କରେ |
|---|---|---|---|
| ଖ୍ରୀ : ପୂ : ୬ଷ୍ଠରୁ ୩ୟ ଶତାବ୍ଦୀ | ସ୍ୱତଃସ୍ଫୂର୍ତ୍ତ, ସରଳ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ | ଥେଲେସ୍, ଡେମୋକ୍ରିଟସ୍, ହେରାକ୍ଲିଟସ୍, ଏପିକ୍ୟୁରସ୍, ଲ୍ୟୁକ୍ରିଟସ୍ କାରୁସ୍ ଏବଂ ଅନ୍ୟମାନେ | ଦାସମାଲିକାନାଯୁକ୍ତ ସମାଜର ଗଣତାନ୍ତ୍ରିକ ଗୋଷ୍ଠୀ |
| ୧୭-୧୮ଶ ଖ୍ରୀ : | ଅଧିବିଦ୍ୟାବାଦୀ ବସ୍ତୁବାଦ | ବ୍ୟାକନ୍, ଲକେ, ସ୍ପିନୋଜା, ହୋଲ୍‌ବାକ, ଦିଦେରଟ୍ ଏବଂ ଅନ୍ୟମାନେ | ସଦ୍ୟଜାତ ବୁର୍ଜୁଆ |
| ୧୯ଶ ଖ୍ରୀ : | ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କ ବସ୍ତୁବାଦ | ବେଲିନ୍‌ସ୍କି, ହେର୍‌ଜେନ୍, ଚେର୍ନିଶେଭ୍‌ସ୍କି, ଦବ୍ରୁଲ୍ୟୁବୋଭ୍ ଏବଂ ଅନ୍ୟମାନେ | ବିପ୍ଳବୀ କୃଷକ ସଂପ୍ରଦାୟ |
| ୧୯-୨୦ଶ ଖ୍ରୀ : | ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦ | ମାର୍କସ୍, ଏଙ୍ଗେଲସ୍, ଲେନିନ୍ ଏବଂ ସେମାନଙ୍କ ଅନୁଗାମୀବୃନ୍ଦ | ଶ୍ରମିକ ଶ୍ରେଣୀ |

ଅନୁଗାମୀ । ଚେତନା ହେଉଛି ପ୍ରାଥମିକ – ଏହି ଭାବବାଦୀ ନୀତିକୁ ଯେକୌଣସି ଲୋକ ନିରବଚ୍ଛିନ୍ନ ଭାବେ ଅନୁସରଣ କରି ପାରିବ, ଯଦି ସେ ସେଥିରୁ ଜାତ, ଦାର୍ଶନିକ ମତବାଦ ଆଉ ସ୍ୱୟଂ ଜୀବନ ମଧ୍ୟରେ ବିରୋଧିତାକୁ ଅବଜ୍ଞା କରି ଯାଏ ।

ବସ୍ତୁବାଦ ଏବଂ ଭାବବାଦ ମଧ୍ୟରେ ସମସ୍ତ ବିରୋଧିତା ସତ୍ତ୍ୱେ ବି ଏ କଥା ବିଶ୍ୱାସ କଲେ ଭୁଲ ହେବ ଯେ, କୌଣସି ନିର୍ଦ୍ଦିଷ୍ଟ ଏକ ଦାର୍ଶନିକଙ୍କ ଦ୍ୱାରା ପ୍ରସ୍ତାବିତ ସନ୍ଦର୍ଭ ପ୍ରତ୍ୟକ୍ଷ ଭାବେ ତାଙ୍କର ଶ୍ରେଣୀ ସ୍ୱାର୍ଥ ତଥା ରାଜନୈତିକ ମତାମତ ଦ୍ୱାରା ନିର୍ଦ୍ଧାରିତ ହୋଇଥାଏ । ତା ସତ୍ତ୍ୱେ, ଦର୍ଶନ କ୍ଷେତ୍ରରେ ବିରୋଧୀ ଗୋଷ୍ଠୀମାନଙ୍କ ମଧ୍ୟରେ ଏକ ବିଭାଜନ ରେଖା ଦେଖିବାକୁ ମିଳେ । ଆମେ ଚେଷ୍ଟା କରିବୁ ମାନବ ସଂସ୍କୃତିର ଇତିହାସରୁ ବହୁ ଦୃଷ୍ଟାନ୍ତ ଦେଇ ଏହାକୁ ପ୍ରମାଣ କରିବା ପାଇଁ । ବସ୍ତୁବାଦ ଏବଂ ଭାବବାଦ ମଧ୍ୟରେ ସଂଗ୍ରାମ ହେଉଛି ପରିଶେଷରେ ଶତ୍ରୁଭାବାପନ୍ନ ଶ୍ରେଣୀ ତଥା ସାମାଜିକ ଶକ୍ତିମାନଙ୍କର ପ୍ରବଣତା ତଥା ଭାବାଦର୍ଶସମୂହର ଏକ ପରିପ୍ରକାଶ ।

ପାଶ୍ଚାତ୍ୟ ଏବଂ ପ୍ରାଚ୍ୟ ସଭ୍ୟତା ନୀତିଗତ ଭାବେ ଭିନ୍ନ – ଏହି ଭ୍ରାନ୍ତ ଧାରଣାଟି ଏଠାରେ ଦର୍ଶାଇବାଟା ସମୀଚୀନ ହେବ । ଏହି ପ୍ରବଣତାକୁ କବିତା ମଧ୍ୟରେ ମଧ୍ୟ ଦେଖିବାକୁ ମିଳେ । ବିଖ୍ୟାତ କବି ରୁଡ୍ୟାର୍ଡ କିପ୍‌ଲିଂ ଲେଖିଛନ୍ତି :

ପ୍ରାଚ୍ୟ ହେଉଛି ପ୍ରାଚ୍ୟ,
ପାଶ୍ଚାତ୍ୟ ହେଉଛି ପାଶ୍ଚାତ୍ୟ
ଏ ଦିହେଁ ମିଶିବେ ନି କେବେ
ପୃଥିବୀ ଆଉ ଆକାଶ ଈଶ୍ୱରଙ୍କର ସେହି
ମହାନ୍ ବିଗ୍ରହ ଆସନରେ ସୁଖରେ ବସି ପାରିଲେ ବି*

ବୁର୍ଜୁଆ ଏବଂ ବିଶେଷ କରି ପାଶ୍ଚାତ୍ୟର ପଣ୍ଡିତମାନେ ଭୁଲ ଭାବେ ବିଭିନ୍ନ "ମାନବିକ ଆତ୍ମାର ବିକାଶ ମଡେଲଗୁଡ଼ିକ" ମଧ୍ୟରେ ବିରୋଧିତା ଦେଖାଇଥାନ୍ତି, ଯେଉଁଗୁଡ଼ିକ କାଳେ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଦର୍ଶନ ମଧ୍ୟରେ ଗଭୀର ପାର୍ଥକ୍ୟରାଜିକୁ ସୁନିର୍ଦ୍ଧାରିତ କରିଥାଏ । ସେମାନଙ୍କ ମତରେ, ପ୍ରାଚ୍ୟ ଦର୍ଶନ ମୁଖ୍ୟତଃ ରହସ୍ୟବାଦ ଦ୍ୱାରା, ସ୍ୱଜ୍ଞନଶୀଳ ଆତ୍ମ ଜ୍ଞାନ, ନିଷ୍କ୍ରିୟତାବାଦର ପ୍ରଗ୍ରହ ଏବଂ ପ୍ରକୃତି ସହିତ ମିଳନର ପ୍ରବଣତା ଦ୍ୱାରା ଆଚ୍ଛନ୍ନ । ଅନ୍ୟ ଦିଗରେ, ପାଶ୍ଚାତ୍ୟ ଦର୍ଶନ ହେଉଛି ଯୁକ୍ତିସିଦ୍ଧ, ସକ୍ରିୟ, ସମାଲୋଚନାମୂଳକ ବିଗ୍ରହ ଅଭିମୁଖୀ ଏବଂ ପ୍ରକୃତିର ରୂପାନ୍ତରଣ କରିବାକୁ ଉଦ୍ୟମଶୀଳ ।

ଭାରତୀୟ ଦର୍ଶନର ଇତିହାସ ସଂପର୍କରେ କହିବାକୁ ଯାଇ ଆଧୁନିକ ବୁର୍ଜୁଆ ପଣ୍ଡିତମାନେ ମତ ଦେଇଥାନ୍ତି ଯେ, ଏହା ଦିବ୍ୟ ସତ୍ତା ଉପରେ ବିଶ୍ୱାସ ଦ୍ୱାରା ପରିପୂର୍ଣ୍ଣ ।

---

*"*Selected Prose and Poetry of Rudyard Kipling*", Garden City Publ. Co., N.Y., 1937, p. 1.

ଏହା ଘୋଷଣା କରେ, ମଣିଷର ମୋକ୍ଷ ନିର୍ଭର କରେ ତା'ର ଅନ୍ତର୍ଜଗତକୁ ପ୍ରତ୍ୟାବର୍ତ୍ତନ ଉପରେ, ଏହା ପ୍ରତିଭା ଉପରେ ନିର୍ଭର ନକରି ନିର୍ଭର କରେ ଅବଚେତନା ଉପରେ । ଏହି ଅବସ୍ଥାନରୁ କେତେକ ପାଶ୍ଚାତ୍ୟ ଏବଂ ଭାରତୀୟ ପଣ୍ଡିତ ସିଦ୍ଧାନ୍ତ ଟାଣନ୍ତି ଯେ, ଭାରତୀୟ ଦର୍ଶନର ଇତିହାସରେ, ବସ୍ତୁବାଦ ଏବଂ ଭାବବାଦ ମଧ୍ୟରେ ସଂଘର୍ଷ ଘଟିନି, ଯାହା ପାଶ୍ଚାତ୍ୟରେ ଘଟିଥାଏ । ସେମାନଙ୍କ ମତରେ ଭାରତୀୟ ଦର୍ଶନ ସର୍ବଦା ତା'ର ସମସ୍ତ ରୂପରେ ଆଧ୍ୟାତ୍ମିକବାଦୀ ବା ରହସ୍ୟବାଦୀ, ଅର୍ଥାତ୍, ଭାବବାଦୀ । ୧୯୭୮ ମସିହାରେ ଡୁସେଲ୍‌ଡୋର୍ଫରେ (ପଶ୍ଚିମ ଜର୍ମାନୀ) ଅନୁଷ୍ଠିତ ୧୬ଶ ବିଶ୍ବ ଦର୍ଶନ କଂଗ୍ରେସରେ କେତେକ ଭାରତୀୟ ଦାର୍ଶନିକ ଯୁକ୍ତି ଦେଇଥିଲେ ଯେ, ଯୁକ୍ତିସିଦ୍ଧ ଚିନ୍ତାଧାରା, ଅର୍ଥାତ୍, ଯୁକ୍ତିସମ୍ମତ ପ୍ରମାଣ ଉପରେ ପ୍ରତିଷ୍ଠିତ ସଂପୂର୍ଣ୍ଣ ବୈଜ୍ଞାନିକ ଚିନ୍ତାଧାରା ପ୍ରାଚ୍ୟର ଦର୍ଶନ ସହିତ ସଂଗତିଶୀଳ ନୁହେଁ । ସେମାନଙ୍କ ମତରେ ଏହି ଚିନ୍ତାଧାରା ସଂପୂର୍ଣ୍ଣ ରୂପେ ପଶ୍ଚିମ ୟୁରୋପୀୟ ସଂସ୍କୃତିର ଅନ୍ତର୍ଗତ, ଏହା ଆତ୍ମଚିନ୍ତନ ଦିଗରେ ପରିଗ୍ଳାଳିତ ନହୋଇ ତର୍କସମ୍ମତ (ଯୁକ୍ତିସମ୍ମତ) ଜ୍ଞାନ ଆଡ଼କୁ, ଚିନ୍ତନ ଏବଂ ସତ୍ତାର ସଂହତି ଆଡ଼କୁ ପରିଗ୍ଳାଳିତ ନହୋଇ, ବରଂ ସେମାନଙ୍କ ମଧ୍ୟରେ ବିରୋଧିତା ଆଡ଼କୁ, ଯୁଗଯୁଗର ପ୍ରଥା ଏବଂ ପରମ୍ପରାର ସଂରକ୍ଷଣ ଆଡ଼କୁ ପରିଗ୍ଳାଳିତ ନହୋଇ, ବରଂ ସେସବୁର ପରିବର୍ତ୍ତନ ଆଡ଼କୁ ପରିଗ୍ଳାଳିତ ହୋଇଥାଏ । ଦୃଷ୍ଟାନ୍ତ ସ୍ବରୂପ, ଭାରତୀୟ ଦାର୍ଶନିକ ଆର୍. ପାନିକର ଏହି କଂଗ୍ରେସରେ କହିଥିଲେ, ବିଜ୍ଞାନ ସହିତ ଯେଉଁ ଦର୍ଶନର ମୂଳଦୁଆ ନିବିଡ଼ ଭାବେ ଯୁକ୍ତ ସେଇ ଆଧୁନିକ ସଭ୍ୟତା ହିଁ ସାଂସ୍କୃତିକ ବିକାଶ ପାଇଁ କେବଳ ଏକମାତ୍ର ସମ୍ଭାବ୍ୟ ପଥ ନୁହେଁ । ସେ ପ୍ରାଚ୍ୟର ଯୁକ୍ତିସଂଗତତା ଦୃଷ୍ଟିରୁ ପାଶ୍ଚାତ୍ୟର ଯୁକ୍ତିସଂଗତତାର ବିରୋଧିତା କରିଥିଲେ ଏବଂ ମତ ଦେଇଥିଲେ ଯେ, ପାଶ୍ଚାତ୍ୟର ଯୁକ୍ତିସଂଗତତା କର୍ତ୍ତା ଏବଂ କର୍ମର ପାର୍ଥକ୍ୟ ଉପରେ ଏବଂ ଅନୁଶୀଳନସିଦ୍ଧ ଜ୍ଞାନ ଉପରେ ପ୍ରତିଷ୍ଠିତ । କିନ୍ତୁ ପ୍ରାଚ୍ୟ ଯୁକ୍ତିସଂଗତତା ମାନବିକ ନିର୍ବାଣମୁଖୀ ପ୍ରତ୍ୟକ୍ଷ ଜ୍ଞାନ ଉପରେ ନିର୍ଭର କରେ ।

ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ମଧ୍ୟରେ ଏହି ବିରୋଧିତା କାଳେ ପରସ୍ପର ବିରୋଧୀ ସଭ୍ୟତା, ମାନବ ସମାଜର ଆଧ୍ୟାତ୍ମିକ ବିକାଶର ପ୍ରକ୍ରିୟାକୁ ସଂପୂର୍ଣ୍ଣ ରୂପେ ବିକୃତ କରି ଦେଉଛି । ଭାରତୀୟ ଦର୍ଶନର ଇତିହାସକୁ ବ୍ୟାଖ୍ୟା କରାଯାଏ ଏହି ଦୃଷ୍ଟିକୋଣରୁ ଯେ, ଏହା ସାମାଜିକ ଅର୍ଥନୈତିକ ଗଠନର ବିକାଶ ଏବଂ ସମାଜରେ ଶ୍ରେଣୀ ସଂଗ୍ରାମ ଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ, ଆଧ୍ୟାତ୍ମିକ କ୍ଷେତ୍ରରେ ବିଶୁଦ୍ଧ ଚିନ୍ତାଧାରାର ଉନ୍ମୋଚନ ଏହା କେବଳ କରିଥାଏ । ଏହି ବିରୋଧିତାକୁ ଯେଉଁମାନେ ସମର୍ଥନ କରନ୍ତି ସେମାନେ ଭୁଲରେ କହିଥାନ୍ତି, ଅତୀତର ସମସ୍ତ ଭାରତୀୟ ଦାର୍ଶନିକଙ୍କ ଠାରେ ଧର୍ମୀୟ ଦୃଷ୍ଟିକୋଣରୁ ସମସ୍ତ ପ୍ରପଞ୍ଚକୁ ବୁଝିବାର ପ୍ରବଣତା ଥିଲା ବୋଲି । ଭାରତୀୟ ଦର୍ଶନରେ ବହୁବିଧ ଗୋଷ୍ଠୀ ଏବଂ ପ୍ରବଣତା ମଧ୍ୟରେ ପାର୍ଥକ୍ୟକୁ, ଦର୍ଶନର ମୌଳିକ ପ୍ରଶ୍ନର ଉତ୍ତର ଉପରେ ଭିତ୍ତି ନକରି, ବେଦସମୂହ ସହିତ ସେମାନଙ୍କର ସଂପର୍କ ଉପରେ ଭିତ୍ତି କରି ବିଗ୍ଭର କରିଥାନ୍ତି

(ଅର୍ଥାତ୍, କୌଣସି ଦର୍ଶନ ଯଦି ବେଦକୁ ସ୍ୱୀକାର କରୁଥାଏ, ତେବେ ତାହା ରକ୍ଷଣଶୀଳ, ଯଦି ସ୍ୱୀକାର ନ କରୁଥାଏ, ତେବେ ତାହା ରକ୍ଷଣଶୀଳ ନୁହେଁ) । ଏ କଥା କହିବା ବାହୁଲ୍ୟ ଯେ, ଏହି ଭଳି ଏକ ଆଭିମୁଖ୍ୟ ବସ୍ତୁବାଦ ଆଉ ଭାବବାଦ ମଧ୍ୟରେ, ଐତିହାସିକ ଭାବେ ପ୍ରଗତିଶୀଳ ଏବଂ ପ୍ରତିକ୍ରିୟାଶୀଳ ପ୍ରବଣତା ମଧ୍ୟରେ ସଂଗ୍ରାମକୁ ଶିଥିଳ କରି ଦେବା ଦିଗରେ ନେଇ ଯାଏ । ବେଦମାନଙ୍କରେ ବିଭିନ୍ନ ଦାର୍ଶନିକ ପ୍ରବଣତାଗୁଡ଼ିକ ବିପୁଳ ଭାବେ ପ୍ରକାଶ ପାଇଛି ବୋଲି ଆମେ ମଧ୍ୟ କହୁ ନାହିଁ । ଆଉ କେତେକ ମନେ କରନ୍ତି, ପ୍ରାଚୀନ ଭାରତରେ ବସ୍ତୁବାଦର କୌଣସି ସ୍ଥାନ ନଥିଲା ।

ହେଲେ, ଆତ୍ମିକ ଦିଗରୁ ଭାରତ ତଥା ଅନ୍ୟାନ୍ୟ ଦେଶର ଦର୍ଶନର ଇତିହାସ ପକ୍ଷରେ ବସ୍ତୁବାଦ ଆକସ୍ମିକ କିମ୍ବା ଅନାବଶ୍ୟକୀୟ ନୁହଁ । ଏହା ହେଉଛି ସେମାନଙ୍କ ସାଂସ୍କୃତିକ ପରମ୍ପରାର ଏକ ଅବିଚ୍ଛିନ୍ନ ଏବଂ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । "ଏ କଥା, ଅବଶ୍ୟ, ନିଃସନ୍ଦେହ ଯେ, ଶହ ଶହ ବର୍ଷ ଧରି ଭାରତବର୍ଷରେ ବସ୍ତୁବାଦୀ ଦର୍ଶନ ପ୍ରଚଳିତ ହୋଇଛି ଏବଂ ବେଳେ ବେଳେ ଜନସାଧାରଣଙ୍କ ଉପରେ ଶକ୍ତିଶାଳୀ ପ୍ରଭାବ ପକାଇଛି ।"*

ପୂର୍ବରୁ କୁହାଯାଇଛି ଯେ, ବେଦଗୁଡ଼ିକ ହେଉଛନ୍ତି ପୌରାଣିକ ଏବଂ ଧର୍ମୀୟ ଚରିତ୍ରର । ସେସବୁ ଥିରେ ଦେଖିବାକୁ ମିଳେ ସ୍ୱତଃସ୍ଫୂର୍ତ୍ତ ବସ୍ତୁବାଦୀ ବିଶ୍ୱଦୃଷ୍ଟିକୋଣ । ଭାରତୀୟ ଦର୍ଶନର କେତେକ ସୋଭିଏତ୍ ବିଶେଷଜ୍ଞ ଏ ସଂପର୍କରେ ସଠିକ ଭାବେ ଦର୍ଶାଇଛନ୍ତି** । ଦୃଷ୍ଟାନ୍ତ ସ୍ୱରୂପ, "ସମସ୍ତ ବିଦ୍ୟମାନର ଐକ୍ୟ ପ୍ରତି" ସ୍ତୋତ୍ର ତଥା "ବ୍ରହ୍ମାଣ୍ଡ ତତ୍ତ୍ୱ" ସ୍ତୋତ୍ରରେ ବିଶ୍ୱ ଜଗତର ବ୍ୟାଖ୍ୟା ଦେଖିବାକୁ ମିଳେ :

> "ଅଗ୍ନି ହେଉଛି ଏକ, ଯାହାକୁ ବିଭିନ୍ନ ଭାବେ ପ୍ରଜ୍ୱଳିତ କରାଯାଏ,
> ସର୍ବତ୍ର ପ୍ରବେଶକାରୀ ସୂର୍ଯ୍ୟ ହେଉଛି ଗୋଟିଏ, ସବୁ କିଛିକୁ ଆଲୋକିତ କରୁଥିବା
> ଉଷା ହେଉଛି ଗୋଟିଏ,
> ସବୁ କିଛିରେ ପରିଣତ ହୋଇଥିବା ପ୍ରତ୍ୟେକ ଜିନିଷ ହେଉଛି ଗୋଟିଏ ।"***

"ବ୍ରହ୍ମାଣ୍ଡ ତତ୍ତ୍ୱ" ସ୍ତୋତ୍ରରେ କୁହାଯାଇଛି :

> "ସେ 'ଏକ' ନିଜକୁ ନିଜେ ନିଶ୍ୱାସ ନିଏ ପବନକୁ ନିଶ୍ୱାସରେ ନନେଇ ।
> ତା ବିନା ଆଉ କିଛିର ଅସ୍ତିତ୍ୱ ନାହିଁ ।"

---

* ଜବାହାରଲାଲ ନେହେରୁ, ଭାରତ ଆବିଷ୍କାର, ଏସିଆ ପବ୍ଲିସିଂ ହାଉସ୍, ବମ୍ବେ, ୧୯୬୪, ପୃ : ୧୦୦ ।

** ଦୃଷ୍ଟାନ୍ତ ସ୍ୱରୂପ, V.V.Brodovଙ୍କ ଲିଖିତ "*Modern Indian Philosophy*", Moscow University Publishers, ମସ୍କୋ, ୧୯୬୭, ପୃ : ୨୦ ଦ୍ରଷ୍ଟବ୍ୟ ।

*** "*Ancient Indian Philosophy. Early Period*", ଦ୍ୱିତୀୟ ସଂସ୍କରଣ, "Mysl" Publishers, ମସ୍କୋ, ୧୯୭୨, ପୃ : ୨୮ (ଋଗ୍‌ବେଦ, ୮ମ, ୫୮) ।

ଯାହା କିଛି ବିଦ୍ୟମାନ ତା ସଂପର୍କରେ ଏବଂ ସ୍ୱୟଂ ପ୍ରକୃତିର ଧର୍ମ ହେଉଛି ଯେଉଁ ଗତି ଏ କ'ଣ ତା ସଂପର୍କରେ ଏକ ଅନୁମାନ ନୁହଁ ? ଆଉରି ପରିଷାର ଭାବେ ଏହି ସ୍ତୋତ୍ରରେ ପ୍ରକାଶ ପାଇଛି ଯେ, ବିଶ୍ୱ ବ୍ରହ୍ମାଣ୍ଡର ଆବିର୍ଭାବ ପରେ ଯାଇ ଦେବତାମାନେ ସୃଷ୍ଟି ହେଲେ ।*

ଏହି କଥାଟି ପ୍ରତି ଦୃଷ୍ଟି ଦେଲେ, ଏ କଥା ମନେ ରଖିବାକୁ ହେବ ଯେ, ପାଶ୍ଚାତ୍ୟର ଜାତିମାନଙ୍କୁ, ସେମାନଙ୍କ ଆରୋପିତ ଯୁକ୍ତିସଂଗତ, ଯୁକ୍ତିସିଦ୍ଧ ଚିନ୍ତାକୁ ପ୍ରାଚ୍ୟର ଜାତିମାନଙ୍କ, ସେମାନଙ୍କ ବିଶ୍ୱ ସଂପର୍କରେ ଅଯୁକ୍ତିସମ୍ମତ ତଥା ରହସ୍ୟବାଦୀ ଦୃଷ୍ଟିକୋଣ ବିରୁଦ୍ଧରେ ଉପସ୍ଥାପନ କରିବାଟା ଏକେବାରେ ଭୁଲ । ଦୃଷ୍ଟାନ୍ତ ସ୍ୱରୂପ, 'ଯୁକ୍ତିସମ୍ମତ' ପାଶ୍ଚାତ୍ୟ ଚିନ୍ତାଧାରା, ଯେଉଁ ପ୍ରକୃତ ବିଜ୍ଞାନ ସୃଷ୍ଟି କରି ପାରିଛି, ତାହା ପ୍ରାଚ୍ୟ ଜାତିମାନଙ୍କ ପକ୍ଷରେ ଅଜ୍ଞାତ ଥିଲା ବୋଲି ଭାବିବାଟା ଭ୍ରାନ୍ତଜନକ । ଭାରତରେ ଗଣିତ ବିଦ୍ୟା ବେଶ୍ ବିକାଶ ଲାଭ କରିଥିଲା । ପିଥାଗୋରସ୍‌ଙ୍କ ନାମରେ ନାମିତ ବିଖ୍ୟାତ ସୂତ୍ରଟିକୁ ଗ୍ରୀକ୍‌ମାନେ ଜାଣିବାର ବହୁପୂର୍ବରୁ ଭାରତୀୟମାନେ ଆବିଷ୍କାର କରିଥିଲେ । ମହାନ୍ ବୈଜ୍ଞାନିକ ଆର୍ଯ୍ୟଭଟ୍ଟ (୫ମ ଖ୍ରୀ:) ଚାରି ରାଶି ମଧ୍ୟରେ π ସଂଖ୍ୟାକୁ ଗଣନା କରି ପାରିଥିଲେ । ସେ ମଧ୍ୟ ଜାଣିଥିଲେ ବର୍ଗଫଳ ଏବଂ ଘନଫଳର ମୂଳସଂଖ୍ୟାଟିକୁ କିପରି ବାହାର କରିବାକୁ ହୁଏ ଏବଂ ପ୍ରାଥମିକ ସ୍ତରର ସମୀକରଣ କିପରି କରିବାକୁ ହୁଏ । ଭାରତୀୟ ବୈଜ୍ଞାନିକମାନେ ଦଶମିକ ହିସାବ ପଦ୍ଧତି ଆବିଷ୍କାର କରିଥିଲେ, ତ୍ରିକୋଣମିତିର ମୂଳ ଭିତ୍ତି ସ୍ଥାପନ କରିଥିଲେ, ଶୂନ୍ୟର ଧାରଣା କରି ପାରିଥିଲେ ଏବଂ ରସାୟନ ବିଦ୍ୟା ତଥା ପଦାର୍ଥ ବିଦ୍ୟା ପ୍ରତି ବିପୁଳ ଅବଦାନ ରଖିଥିଲେ ।

ଅନ୍ୟ ଦିଗରେ ପାଶ୍ଚାତ୍ୟ ଦାର୍ଶନିକମାନେ ସେମାନଙ୍କ ଭାରତୀୟ ସହକର୍ମୀମାନଙ୍କ ଭଳି ମଣିଷର ଆତ୍ମଜଗତ ସଂପର୍କରେ ମଧ୍ୟ ଆଗ୍ରହୀ ଥିଲେ । ଉଦାହରଣ ସ୍ୱରୂପ, ଆମେ ଦେଖିବାକୁ ପାଏଁ, ଗ୍ରୀକ୍ ଦାର୍ଶନିକମାନଙ୍କର ସେହି ବିଖ୍ୟାତ ବାଣୀ, "ନିଜକୁ ଜାଣ" ।

ତେଣୁ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟକୁ ଉଭୟ ଦର୍ଶନ ତଥା, ଆଉରି ସାଧାରଣ ଭାବେ ଆତ୍ମିକ ସଂସ୍କୃତି କ୍ଷେତ୍ରରେ, ପରସ୍ପର ବିରୁଦ୍ଧରେ ସ୍ଥାପନ କରିବାଟା ଭୁଲ ।

ଏଲ୍. ଆଇ. ବ୍ରେଜ୍‌ନେଭ୍ ତାଙ୍କର ଭାରତ ଗସ୍ତ ବେଳେ (୧୯୮୦, ଡିସେମ୍ବର) ସୋଭିଏତ୍ ଏବଂ ଭାରତୀୟ ଜାତିମାନଙ୍କ ମଧ୍ୟରେ ସଂସ୍କୃତି କ୍ଷେତ୍ରରେ ସହଯୋଗିତାର ଗୁରୁତ୍ୱ ଉପରେ ଜୋର ଦେଇଥିଲେ, "ଯେଉଁ ଦୁଇ ମହାନ୍ ବିଶ୍ୱ ସଂସ୍କୃତି ଚିନ୍ତା ଜଗତର ମହାନ୍ ବ୍ୟକ୍ତିମାନଙ୍କୁ ଏବଂ କଳା ତଥା ବିଜ୍ଞାନ କ୍ଷେତ୍ରର ପ୍ରତିଭାବାନ ଲୋକମାନଙ୍କୁ ଜନ୍ମ ଦେଇଛି ।"

ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସୋଭିଏତ୍ ଗସ୍ତ (୧୯୮୨,

---

* ପୂର୍ବୋକ୍ତ ପୁସ୍ତକ, ପୃ: ୩୪ (ଋଗ୍‌ବେଦ, ୧୦, ୧୨୯) ।

ସେପ୍‌ଟେମ୍ବର) ଏହି ନୀତିକୁ ପ୍ରମାଣିତ କରିଛି । ସୋଭିଏତ୍ – ଭାରତ ଘୋଷଣାପତ୍ରରେ ଜୋର ଦେଇ କୁହାଯାଇଛି, "ସୋଭିଏତ୍ ଏବଂ ଭାରତୀୟ ଜାତିମାନଙ୍କ ମଧ୍ୟରେ ପାରସ୍ପରିକ ବୁଝାମଣା ଏବଂ ସେମାନଙ୍କ ଆତ୍ମିକ ଜୀବନର ପାରସ୍ପରିକ ବିକାଶକୁ ଗଭୀରତର କରିବା ପାଇଁ ସାଂସ୍କୃତିକ ସଂପର୍କକୁ ଦୃଢ଼ କରିବାକୁ ହେବ ଏବଂ ସାଂସ୍କୃତିକ ବିନିମୟକୁ ବିକାଶ କରିବାକୁ ପଡ଼ିବ ।"

ସମସ୍ତ ଜାତି ସେମାନଙ୍କ ସାଂସ୍କୃତିକ ବିକାଶ କ୍ଷେତ୍ରରେ ସମାନ ପଥରେ ଯାତ୍ରା କରିଥାନ୍ତି, ଯାହାକୁ ପରିଶେଷରେ ବିଶ୍ଳେଷଣ କରାଯାଇ ପାରେ ସାମାଜିକ ପ୍ରଗତି ଦ୍ୱାରା ଯିଏକି ପ୍ରତ୍ୟେକ ଦେଶରେ ବୈଷୟିକ ଉତ୍ପାଦନର ବିକାଶ ଦ୍ୱାରା ବ୍ୟାଖ୍ୟାୟିତ ହୋଇଥାଏ । ପାଶ୍ଚାତ୍ୟର ଦାର୍ଶନିକମାନେ ଯେଉଁସବୁ ପ୍ରଶ୍ନ ନେଇ ଅନୁଧ୍ୟାନ ଚଳେଇଥିଲେ, ସେସବୁ ପ୍ରଶ୍ନ ମଧ୍ୟ ଭାରତୀୟ ଦାର୍ଶନିକମାନଙ୍କ ମନକୁ ଆନ୍ଦୋଳିତ କରିଥିଲା । ଏହା, ଅବଶ୍ୟ, କହିଲେ ଠିକ୍ ହେବ ନାହିଁ ଯେ, ବିଭିନ୍ନ ସଂସ୍କୃତିରେ ଦାର୍ଶନିକ ମତବାଦ ସବୁ ଏକା ଭଳି । ସେସବୁର ଆଧେୟସବୁ ନିର୍ଦ୍ଦିଷ୍ଟ ଦେଶଟିର ଇତିହାସ, ସଂସ୍କୃତି, ପରମ୍ପରା ଆଦି ଦ୍ୱାରା ପ୍ରଭାବିତ ହୋଇଥାଏ, ତା ସତ୍ତ୍ୱେ ବିଭିନ୍ନ ଦାର୍ଶନିକ ମତବାଦର କ୍ରମବିକାଶକୁ ନିର୍ଦ୍ଧାରଣ କରୁଥିବା ସାଧାରଣ ନିୟମାବଳୀକୁ ନିଶ୍ଚିତ ଭା'ବେ ହିସାବକୁ ନେବାକୁ ହେବ ।

## ୪ – ବସ୍ତୁବାଦର ଐତିହାସିକ ରୂପରାଜି

ଆଦିମ ସମାଜ ଭାଙ୍ଗି ପଡ଼ିଲା ବେଳେ ଏବଂ ଶ୍ରେଣୀଯୁକ୍ତ ସମାଜ ମୁଣ୍ଡ ଟେକି ଉଠୁଥିବା ସମୟରେ, ଦର୍ଶନର ଅଭ୍ୟୁଦୟ ଘଟିଥିଲା ସାମାଜିକ ଚେତନାର ଏକ ବିଶେଷ ରୂପ ଧାରଣ କରି । ସେତେବେଳେ ମଧ୍ୟ ବସ୍ତୁବାଦୀ ଏବଂ ଭାବବାଦୀ ବିଶ୍ୱଦୃଷ୍ଟିକୋଣ ମଧ୍ୟରେ ଏକ ତଫାତ୍ ରହିଥିଲା । ଉଭୟଙ୍କୁ ସେମାନଙ୍କ ବିକାଶ କ୍ଷେତ୍ରରେ ବହୁବିଧ ଦୀର୍ଘ ପଥ ଅତିକ୍ରମ କରିବାକୁ ପଡ଼ିଛି ଏବଂ ଐତିହାସିକ ଅବସ୍ଥାରାଜି ମଧ୍ୟରେ ସେମାନେ ବହୁ ରୂପ ଧାରଣ କରିଛନ୍ତି ।

ପ୍ରଥମ ଦାର୍ଶନିକ ମତବାଦ ରୂପ ପରିଗ୍ରହ କରିଥିଲା ଖ୍ରୀ: ପୂ: ୨୫୦୦ ବର୍ଷ ପୂର୍ବେ ପ୍ରାଚୀନ ମିଶର, ବାବିଲନିଆ, ଭାରତ, ଚୀନ୍, ଗ୍ରୀସ୍ ଏବଂ ରୋମ୍‌ରେ । ସେତେବେଳେ ଏସବୁ ଦେଶରେ ଦାସ ବ୍ୟବସ୍ଥାର ପ୍ରାଧାନ୍ୟ ରହିଥିଲା । ଏମନ୍ତ ଅବସ୍ଥାରେ ବସ୍ତୁବାଦୀ ବିଶ୍ୱଦୃଷ୍ଟିକୋଣର ବିକାଶ ସାଧିତ ହୋଇଥିଲା ହସ୍ତଶିଳ୍ପ, ବାଣିଜ୍ୟ ଏବଂ ବୈଜ୍ଞାନିକ ଜ୍ଞାନ ତଥା ସଂସ୍କୃତିର ଅଭିବୃଦ୍ଧି ଘଟୁଥିବା ଦାସ ସମାଜର ପ୍ରଗତିଶୀଳ ଶକ୍ତିମାନଙ୍କ ସଂଗ୍ରାମ ଦ୍ୱାରା । ବସ୍ତୁବାଦ ସେମାନଙ୍କୁ ସାହାଯ୍ୟ କରିଥିଲା ଦାସମାଲିକ ସାମନ୍ତମାନଙ୍କ ରାଜନୈତିକ, ଅର୍ଥନୈତିକ ତଥା ଆତ୍ମିକ ପ୍ରାଧାନ୍ୟ ବିରୁଦ୍ଧରେ ଲଢ଼େଇ

କରିବାକୁ । ସେମାନେ ଚାହୁଁଥିଲେ ସମାଜକୁ ଏକ ସ୍ଥିତାବସ୍ଥା ମଧ୍ୟରେ ରଖିବାକୁ ଏବଂ ପ୍ରଭାବଶାଳୀ ଧର୍ମୀୟ ତଥା ପୌରାଣିକ ଏବଂ ଭାବବାଦୀ ମତକୁ ସାଇତି ରଖିବା ପାଇଁ, ଯିଏକି ମାଲିକମାନଙ୍କ ପ୍ରାଧାନ୍ୟ ଏବଂ ସାମାଜିକ ଜୀବନର ଅବସାଦକୁ ପ୍ରକାଶ କରୁଥିଲା । ଦାସ ସମାଜର ବସ୍ତୁବାଦୀ ଦର୍ଶନ ଥିଲା ବସ୍ତୁବାଦର ପ୍ରଥମ ଐତିହାସିକ ରୂପ ।

ସାରଗତଃ ଭାବେ ଏହା ଥିଲା ସ୍ୱତଃସ୍ଫୂର୍ତ୍ତ ଏବଂ ସରଳ ବସ୍ତୁବାଦ । ଭାରତର ଚାର୍ବାକମାନଙ୍କ ମତାନୁଯାୟୀ (ଖ୍ରୀ : ପୂ : ୬ଷ୍ଠ ଶତାବ୍ଦୀ), ଏ ବିଶ୍ୱଜଗତର ସବୁ କିଛି ଚାରୋଟି ଉପାଦାନକୁ ନେଇ ଗଠିତ – ଅଗ୍ନି, ବାୟୁ, ଜଳ ଆଉ କ୍ଷିତି, ଏପରିକି ମଣିଷ ସମେତ ଜୀବନ୍ତ ପ୍ରାଣୀମାନେ ବି ଏହି ଚାରୋଟି ଉପାଦାନରେ ଗଠିତ । ଚେତନା ହେଉଛି କେବଳ ମାନବର ଏକ ଗୁଣ, ଏହାର ଉତ୍ପତ୍ତି ଘଟିଛି ମାନବ ଦେହ ମଧ୍ୟରେ ଓ ଏହି ଚାରୋଟି ଉପାଦାନର ମିଶ୍ରଣ ଫଳରେ ଏବଂ ଦେହର ବିନାଶ ଘଟିଲେ, ଚେତନାର ବିଲୋପ ଘଟେ । ଆତ୍ମାମାନଙ୍କର ପୁନରାବିର୍ଭାବ (ସଂସାର) ସଂକ୍ରାନ୍ତ ଧର୍ମୀୟ ଶିକ୍ଷାରେ ଚାର୍ବାକମାନେ କୌଣସି ଅର୍ଥ ଦେଖିବାକୁ ପାଇ ନଥିଲେ ଏବଂ ଈଶ୍ୱରଙ୍କ ସ୍ଥିତିକୁ ଅସ୍ୱୀକାର କରିଥିଲେ । ଧର୍ମ ଏବଂ ପ୍ରଚଳିତ ଭାବବାଦୀ ମତବାଦସମୂହ ପ୍ରତି ସେମାନେ ଥିଲେ ଆପୋଷହୀନ । ଫଳରେ ପୁରୋହିତ ଏବଂ ରକ୍ଷଣଶୀଳ ଧର୍ମର ପ୍ରବକ୍ତାମାନେ ସେମାନଙ୍କୁ ଘୃଣା କରୁଥିଲେ ଏବଂ ସେମାନଙ୍କର ଅଧିକାଂଶ ଲେଖାକୁ ଧ୍ୱଂସ କରି ଦେଇଥିଲେ ।

ପ୍ରାଚୀନ ଦାର୍ଶନିକମାନଙ୍କର ସରଳ ବସ୍ତୁବାଦ ସାଧାରଣତଃ ବିଶ୍ୱସଂକ୍ରାନ୍ତ ସ୍ୱତଃସ୍ଫୂର୍ତ୍ତ ଦ୍ୱନ୍ଦ୍ୱମୂଳକ ମତ ସହିତ ମିଶ୍ରିତ ହୋଇ କି ଥିଲା । ଏଠାରେ ଗୁରୁତ୍ୱ ଦେଇ କହିବାର କଥା ଯେ, ଜଗତର ବ୍ୟାଖ୍ୟା ସଂକ୍ରାନ୍ତ ସମସ୍ୟାଟି ଦର୍ଶନର ମୌଳିକ ପ୍ରଶ୍ନଟିର ବସ୍ତୁବାଦୀ ବା ଭାବବାଦୀ ଉତ୍ତର ମଧ୍ୟରେ, ଯିଏକି ପ୍ରକୃତି ଏବଂ ପରମାତ୍ମା ମଧ୍ୟରେ ସଂପର୍କ, ଜଗତ ଏବଂ ଚେତନାର ପ୍ରାରମ୍ଭକୁ ପ୍ରକାଶ କରିଥାଏ । ଦର୍ଶନର ଦ୍ୱିତୀୟ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଟି ହେଉଛି ଜଗତର ନିଜସ୍ୱ ଅବସ୍ଥାକୁ ନେଇ – ଜଗତର ବିକାଶ ଘଟୁଛି ନା, ଏହା ଅପରିବର୍ତ୍ତନୀୟ ? ଏହି ପ୍ରଶ୍ନଟି ଉପରେ ଦ୍ୱନ୍ଦ୍ୱବାଦ ଏବଂ ଅଧିବିଦ୍ୟା ତଥା ଅନ୍ୟାନ୍ୟ ଦାର୍ଶନିକ ଧାରାଗୁଡ଼ିକ ସର୍ବଦା ସଂଗ୍ରାମ କରି ଆସିଛନ୍ତି ।

ଦ୍ୱନ୍ଦ୍ୱବାଦ କହିଲେ କ'ଣ ବୁଝାଏ ? ଦ୍ୱନ୍ଦ୍ୱମୂଳକ ଦୃଷ୍ଟିକୋଣ ଅନୁଯାୟୀ ଜଗତର ସମସ୍ତ ପଦାର୍ଥ ଏବଂ ପ୍ରପଞ୍ଚ, ନିରବଚ୍ଛିନ୍ନ ବିକାଶ ଏବଂ ପରିବର୍ତ୍ତନର ପ୍ରକ୍ରିୟା ମଧ୍ୟ ଦେଇ ଗତି କରୁଛନ୍ତି । ଉପଯୁକ୍ତ ସମୟରେ ସେସବୁର ଉଦ୍‌ଭବ ହୁଏ, ବିକାଶ ହୁଏ ଏବଂ ବିଲୟ ଘଟେ । ଦ୍ୱନ୍ଦ୍ୱବାଦ ବିଚାର କରେ, ଏହି ନିରବଚ୍ଛିନ୍ନ ପରିବର୍ତ୍ତନ ଏବଂ ବିକାଶର ଉତ୍ସ ନିହିତ ଥାଏ ସମସ୍ତ ପଦାର୍ଥ ତଥା ପ୍ରପଞ୍ଚର ସହଜାତ ବିରୋଧ ଦିଗଗୁଡ଼ିକ ଏବଂ ପ୍ରବଣତାରାଜିର "ସଂଗ୍ରାମ" ମଧ୍ୟରେ ଏବଂ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱସମୂହ ହେଉଛି, ଯାହା କିଛି ବିଦ୍ୟମାନ, ସେସବୁର ସ୍ୱଗତିର ମୂଳ ଉତ୍ସ– ଏହା ଦର୍ଶାଇ ଦିଏ ।

ଦ୍ୱନ୍ଦ୍ୱବାଦ ପରିବର୍ତ୍ତନ ଏବଂ ବିକାଶକୁ ପୂର୍ବରୁ ଯାହା ଘଟି ଯାଇଛି ତା'ର କେବଳ ଏକ ପୁନରାବୃତ୍ତି, ପଦାର୍ଥରାଜି ଏବଂ ପ୍ରପଞ୍ଚରାଜି, ଧର୍ମରାଶି ଏବଂ ଗୁଣସମୂହ ସର୍ବକାଳ ପାଇଁ ଏକ ଚକ୍ରାବର୍ତ୍ତ ବୋଲି ବିଚାର କରେ ନାହିଁ । ପରିବର୍ତ୍ତନ ଏବଂ ବିକାଶ ହେଉଛି ନୂଆ ନୂଆ ପଦାର୍ଥ ଏବଂ ପ୍ରପଞ୍ଚ, ନୂଆ ଧର୍ମ ଏବଂ ଗୁଣର ଅଭ୍ୟୁଦୟ । ତେଣୁ କରି ସାଂପ୍ରତିକ ଦ୍ୱନ୍ଦ୍ୱବାଦ ନିଜକୁ ପ୍ରାଚୀନ ଦ୍ୱନ୍ଦ୍ୱବାଦୀମାନଙ୍କର ସରଳ ସତ୍ର – "ସବୁ କିଛି ଅସ୍ଥିର, ସବୁ କିଛି ପରିବର୍ତ୍ତନଶୀଳ" – ମଧ୍ୟରେ ସୀମିତ ରଖେ ନି, ଏହା ପରିବର୍ତ୍ତନର ନୂଆ ଏକ ଦିଗ ପ୍ରଦର୍ଶନ କରିଥାଏ, ସରଳରୁ ଜଟିଳ, ନିମ୍ନରୁ ଉଚ୍ଚତର ପ୍ରଗତିଶୀଳ ବିକାଶକୁ ଦର୍ଶାଇଥାଏ ।

ଦ୍ୱନ୍ଦ୍ୱବାଦ ଜଗତକୁ ପରସ୍ପରଠାରୁ ବିଛିନ୍ନ ପଦାର୍ଥରାଶି ଏବଂ ପ୍ରପଞ୍ଚସମୂହର ସମାହାର ମାତ୍ର ବୋଲି ବିଚାର କରେ ନା, ଏହା ଜଗତକୁ ବିଚାର କରେ ସୁସଂହତ ଏକ ସମଗ୍ର ବୋଲି । ସେଥିରେ ପଦାର୍ଥସମୂହ ଏବଂ ପ୍ରପଞ୍ଚରାଜି ସମୟ ଏବଂ ସ୍ଥାନ ମଧ୍ୟରେ କେବଳ ସହାବସ୍ଥାନ କରେ ନାହିଁ, ସେସବୁ ପରସ୍ପର ସହିତ ସଂପୃକ୍ତ, ପରସ୍ପର ଉପରେ ନିର୍ଭରଶୀଳ ଏବଂ ପରସ୍ପରକୁ ପ୍ରଭାବିତ କରିଥାନ୍ତି ।

ଅଧିବିଦ୍ୟା ମଧ୍ୟରେ ବିଶ୍ୱ ସଂପର୍କରେ ଏକ ବିପରୀତ ମତ ନିହିତ ରହିଛି । ଅଧିବିଦ୍ୟା ଏ ବିଶ୍ୱକୁ ଦେଖେ ଏକ ଅପରିବର୍ତ୍ତନୀୟ, ସମାନ ଅବସ୍ଥାରେ ରହିଥିବା ବସ୍ତୁ ବୋଲି । ଏହା ବସ୍ତୁ ବସ୍ତୁ ମଧ୍ୟରେ କୌଣସି ସଂପର୍କକୁ ବା ପ୍ରାକୃତିକ ପ୍ରପଞ୍ଚରାଜି ମଧ୍ୟରେ କୌଣସି ଅନ୍ତର୍ଦ୍ୱନ୍ଦ୍ୱକୁ ଅସ୍ୱୀକାର କରିବା ସଙ୍ଗେ ସଙ୍ଗେ ବିଶ୍ୱଜଗତର କୌଣସି ପ୍ରକାର ବିକାଶକୁ ଅସ୍ୱୀକାର କରେ ଏବଂ ଏହାକୁ ଅତ୍ୟନ୍ତ ସଂକୀର୍ଣ୍ଣ ମନୋଭାବ ନେଇ ବିଚାର କରେ ।

ଦର୍ଶନର ଇତିହାସରେ ବସ୍ତୁବାଦୀ ଏବଂ ଭାବବାଦୀମାନେ, ହୁଏତ, ଦ୍ୱନ୍ଦ୍ୱବାଦ ବା ଅଧିବାଦ କିମ୍ବା ଏ ଦୁଇର ମିଶ୍ରିତ ମତ ପୋଷଣ କରିଥାନ୍ତି । ତେଣୁ, ଏହି ଦୁଇ ପ୍ରବଣତା ପ୍ରତି ଲୋକେ ନିର୍ଦ୍ଦିଷ୍ଟ ଏକ ଐତିହାସିକ ଆଭିମୁଖ୍ୟ ଗ୍ରହଣ କରିବା ଉଚିତ । ଏ ସଂପର୍କରେ ପରେ ଆମେ ବିଶଦ ଭାବେ ଆଲୋଚନା କରିବା ।

ପ୍ରାଚୀନ ଦାର୍ଶନିକମାନଙ୍କର ସରଳ ବସ୍ତୁବାଦ, ଆମେ ଉପରେ ଯେ ଭାବେ ଆଲୋଚନା କଲେ, ଥିଲା ସ୍ୱତଃସ୍ଫୂର୍ତ୍ତ ଭାବେ ଦ୍ୱନ୍ଦ୍ୱମୂଳକ । ତା ଅର୍ଥ, ସେମାନେ ଜଗତକୁ ଦେଖୁଥିଲେ ମଣିଷର ପ୍ରତ୍ୟକ୍ଷ ଜୀବନ୍ତ ଅନୁଚିନ୍ତନ ମଧ୍ୟରେ ଏହା ଯେପରି ମନେ ହୁଏ ଏବଂ ସେମାନେ ଚାହିଁଥିଲେ, ପ୍ରକୃତିକୁ ଏକ ସଂଚଳିତ ବିକାଶମାନ ଅଖଣ୍ଡ ଜିନିଷ ରୂପେ ଅବଧାରଣା କରିବାକୁ, ଯିଏକି ସର୍ବଦା ତା'ର ରୂପକୁ ପରିବର୍ତ୍ତିତ କରିଥାଏ । ବିଖ୍ୟାତ ଗ୍ରୀକ୍ ଦାର୍ଶନିକ ହେରାକ୍ଲିଟସ୍ (ଖ୍ରୀ : ପୂ : ୫୩୦-୪୭୦ ମଧ୍ୟରେ) ଯାହା କିଛି ସଂଘଟିତ, ସେସବୁକୁ ବସ୍ତୁଗତ ଉପାଦାନ – ଅଗ୍ନି ଉପରେ ପ୍ରତିଷ୍ଠା କରିଥିଲେ ଏବଂ ପ୍ରାକୃତିକ ପ୍ରପଞ୍ଚର ସାର୍ବିକ ଅନୁବର୍ତ୍ତନକୁ ଅଗ୍ନିରେ ପରିବର୍ତ୍ତନ ଅନୁଯାୟୀ ବ୍ୟାଖ୍ୟା କରିଥିଲେ । ସେ କହୁଥିଲେ, ଜଗତ ମଣିଷ କିମ୍ବା ଭଗବାନଙ୍କ ଦ୍ୱାରା ସୃଷ୍ଟ ନୁହେଁ । ଅତୀତରେ ଏହା

ସର୍ବଦା ଶାଶ୍ୱତ ଜୀବନ୍ତ ଅଗ୍ନି ଭଳି ଥିଲା ଏବଂ ଭବିଷ୍ୟତରେ ମଧ୍ୟ ତାହା ହିଁ ରହିବ, ନିୟମିତ ଭାବେ ପ୍ରଜ୍ୱଳିତ ଏବଂ ନିର୍ବାପିତ ହୋଇ ଚାଲିଥିବ। ତାଙ୍କ ମତରେ, ସବୁ କିଛି ପ୍ରବହମାନ ଏବଂ ସବୁ କିଛି ପରିବର୍ତ୍ତନଶୀଳ – କୌଣସି କିଛି ସ୍ଥାବର ନୁହେଁ। ସେ କହୁଥିଲେ, ଗୋଟିଏ ଅବସ୍ଥାରୁ ଆଉ ଏକ ଅବସ୍ଥାକୁ ଉତ୍ତରଣ ଘଟିଥାଏ ବିପରୀତମାନଙ୍କ ମଧ୍ୟରେ ସଂଗ୍ରାମ ଆଉ ଆବଶ୍ୟକତା ଅନୁଯାୟୀ।

ଆଉ ଜଣେ ପ୍ରଖ୍ୟାତ ଗ୍ରୀକ୍ ଦାର୍ଶନିକ ଡେମୋକ୍ରିଟସ୍ (ଖ୍ରୀ : ପୂ : ୪୬୦ – ୩୭୦ ମଧ୍ୟରେ) ଜଗତ ସଂପର୍କରେ ସ୍ୱତଃସ୍ଫୂର୍ତ୍ତ ଦ୍ୱନ୍ଦ୍ୱମୂଳକ ମତ ମଧ୍ୟ ପୋଷଣ କରୁଥିଲେ। ସେ କହୁଥିଲେ, ଜଗତ ହେଉଛି ଏକ ଅସଂଖ୍ୟ ପରମାଣୁ ପୁଞ୍ଜକୁ, ଅର୍ଥାତ୍, ଶୂନ୍ୟରେ ଚଳମାନ କ୍ଷୁଦ୍ର, ଅଦୃଶ୍ୟ ଏବଂ ଅବିଭାଜ୍ୟ ଅଣୁରାଶିକୁ ନେଇ ଗଠିତ ଏକ ଅଖଣ୍ଡ ସତ୍ତା। ତାଙ୍କ ମତରେ, ସବୁ ପରିବର୍ତ୍ତନ ହେଉଛି, ପ୍ରକୃତିର ଆବଶ୍ୟକତା ଅନୁଯାୟୀ ଶୂନ୍ୟରେ ଚଳମାନ ଅଣୁରାଶିର ଯୋଗ ଏବଂ ବିଯୋଗର ବହୁବିଧ ଏକତ୍ରୀକରଣ। ସେ ଆଉରି କହୁଥିଲେ, ପରମାଣୁରାଶିର ସଂଚଳନ ହେଉଛି ଶାଶ୍ୱତ, ଯା'ର କୌଣସି ଆରମ୍ଭ ନାହିଁ କି ଶେଷ ନାହିଁ।

ଏହି ଭାବେ, ବସ୍ତୁବାଦ ଦର୍ଶନର ଐତିହାସିକ ରୂପଟା ଥିଲା ସରଳ ଏବଂ ସ୍ୱତଃସ୍ଫୂର୍ତ୍ତ, ଯଦିଓ ଏଥିରେ ନିହିତ ଥିଲା ପ୍ରକୃତି ସଂପର୍କରେ ଏକ ଦ୍ୱନ୍ଦ୍ୱମୂଳକ ମତ।

ଦାସ ବ୍ୟବସ୍ଥା ସ୍ଥାନରେ ପ୍ରତିଷ୍ଠିତ ହୋଇଥିଲା ସାମନ୍ତବାଦ। ସାମନ୍ତବାଦ ସମୟରେ ଧର୍ମୀୟ ଭାବବାଦୀ ଦୃଷ୍ଟିକୋଣ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାଧାନ୍ୟ ଲାଭ କରିଥିଲା। ଦର୍ଶନ ପରିଣତ ହେଲା ଧର୍ମତତ୍ତ୍ୱର ଏକ ହାତପୁତଳୀରେ। କିନ୍ତୁ ବସ୍ତୁବାଦୀ ପରମ୍ପରାର ଅବସାନ ଘଟି ନଥିଲା। ଏହି ଭାବେ, ପ୍ରାଚ୍ୟର ବିଖ୍ୟାତ ଦାର୍ଶନିକ ଇବନ୍ ସିନା (୯୮୦-୧୦୩୭ ଖ୍ରୀ :) ଈଶ୍ୱରଙ୍କ ଦ୍ୱାରା ଏ ଜଗତ ସୃଷ୍ଟି ହୋଇଛି ବୋଲି ଅସ୍ୱୀକାର କରିଥିଲେ। ସେ ବିଶ୍ୱାସ କରୁଥିଲେ, ଈଶ୍ୱରଙ୍କ ଭଳି ଏ ଜଗତ ହେଉଛି ଶାଶ୍ୱତ, ଚିରନ୍ତନ। ଆରବୀୟ ଚିନ୍ତାବିତ୍ ଇବନ୍ ରସ୍ଦ (୧୧୨୬-୧୧୯୮ ଖ୍ରୀ :) ମଧ୍ୟ ଜଗତ 'ଶୂନ୍ୟରୁ' ସୃଷ୍ଟ ହୋଇଛି – ଏହି ଧର୍ମୀୟ ମତକୁ ଅସ୍ୱୀକାର କରିଥିଲେ। ସେ ବିଶ୍ୱାସଠାରୁ ଜ୍ଞାନକୁ ଏବଂ ଧର୍ମଠାରୁ ବିଜ୍ଞାନକୁ ପୃଥକ୍ କରିବା ପାଇଁ ପ୍ରଚାର କରିଥିଲେ। ଏସବୁ, ଅବଶ୍ୟ, ଥିଲା ବସ୍ତୁବାଦୀ ଦୃଷ୍ଟିକୋଣର ଉପାଦାନ ମାତ୍ର। ସାମାଜିକ କ୍ଷେତ୍ରରେ ବସ୍ତୁବାଦୀ ଦର୍ଶନର ନୂତନ ଐତିହାସିକ ରୂପର ଅଭ୍ୟୁଦୟ ଘଟାଇଥିଲା ସାମନ୍ତବାଦରୁ ପୁଞ୍ଜିବାଦକୁ ଉତ୍ତରଣ।

୧୭ଶ ଏବଂ ୧୮ଶ ଶତାବ୍ଦୀରେ ପଶ୍ଚିମ ୟୁରୋପରେ ପୁଞ୍ଜିବାଦୀ ଉତ୍ପାଦନ ପ୍ରଣାଳୀ ପ୍ରତିଷ୍ଠିତ ହେଲା ବେଳେ ବସ୍ତୁବାଦ ପୁରାତନ ଦାର୍ଶନିକମାନଙ୍କର ସରଳ ସ୍ୱତଃସ୍ଫୂର୍ତ୍ତ ମତ ଅପେକ୍ଷା ଆଉରି ଉନ୍ନତ ରୂପ ଲାଭ କଲା।

ବସ୍ତୁବାଦ ଥିଲା ବୁର୍ଜୁଆ ଶ୍ରେଣୀର ସେଇସବୁ ପ୍ରଗତିଶୀଳ ଗୋଷ୍ଠୀଙ୍କର ବିଶ୍ୱଦୃଷ୍ଟିକୋଣ, ଯେଉଁମାନେ ଉତ୍ପାଦିକା ଶକ୍ତିସମୂହର ବିକାଶ ତଥା ପୁରୁଣାକାଳିଆ ସାମନ୍ତବାଦୀ ସଂପର୍କର ବିଲୋପ ଏବଂ ମଧ୍ୟ ଯୁଗରେ ପ୍ରତିଷ୍ଠିତ ଗିର୍ଜାର ଧର୍ମୀୟ ହୁକୁମ ବିଷୟରେ ଆଗ୍ରହୀ

ଥିଲେ । ଶିଳ୍ପ ଏବଂ କାରୁବିଜ୍ଞାନର ବିକାଶ ସାଥେ ସାଥେ ପୁଞ୍ଜିବାଦୀ ଶ୍ରେଣୀର ଆବଶ୍ୟକ ପଡ଼ିଲା ବିଜ୍ଞାନଭିତ୍ତିକ ଜ୍ଞାନ ଏବଂ ତେଣୁ କରି ସେମାନେ ପରୀକ୍ଷାମୂଳକ ବିଜ୍ଞାନକୁ ସମର୍ଥନ କରିଥିଲେ । ଦାସ ଏବଂ ସାମନ୍ତବାଦୀ ସମାଜର ବିଜ୍ଞାନୀମାନଙ୍କର, ବାସ୍ତବରେ, ଦର୍ଶନ ଏବଂ ବିଶେଷୀକୃତ ଜ୍ଞାନ ମଧ୍ୟରେ ପାର୍ଥକ୍ୟ ସଂପର୍କରେ କୌଣସି ପରିଷ୍କାର ଧାରଣା ନଥିଲା । କିନ୍ତୁ ପୂର୍ବେ ବିଜ୍ଞାନର ଏକକ ହୋଇଥିବା ବିଷୟ ଏବେ ପରିଷ୍କାର ଭାବେ ବହୁବିଧ ବିଜ୍ଞାନରେ ବିଭକ୍ତ ହୋଇଗଲା, ଯଥା କାରୁବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ପଦାର୍ଥ ବିଜ୍ଞାନ, ରସାୟନ ବିଦ୍ୟା, ଶରୀରବିଜ୍ଞାନ, ଆଦି । ହେଲେ, ସେସବୁ ଥିଲା ଖୁବ୍ ଅନୁନ୍ନତ ଏବଂ ସେସବୁ ମଧ୍ୟରେ ଯୋଗସୂତ୍ର ସ୍ଥାପନ ଓ ବିଶ୍ୱଜଗତରେ ପରିବର୍ତ୍ତନରାଜିର ଅଧ୍ୟୟନ ଅପେକ୍ଷା ତଥ୍ୟରାଜି ସଂଗ୍ରହ ତଥା ସେସବୁର ସାମାନ୍ୟୀକରଣ, ବିଭିନ୍ନ ବସ୍ତୁ ତଥା ପ୍ରପଞ୍ଚର ଅଧ୍ୟୟନ, ସେସବୁର ପଂକ୍ତିକରଣ, ବିଶ୍ଳେଷଣ କାର୍ଯ୍ୟରେ ସେସବୁ ଅଧିକ ବ୍ୟାପୃତ ରହୁଥିଲେ । କାରୁବିଜ୍ଞାନ ଥିଲା ସେତେବେଳେ ସର୍ବାପେକ୍ଷା ଉନ୍ନତ ବିଜ୍ଞାନ, ପ୍ରକୃତିର (ବିଶେଷତଃ ରସାୟନ ବିଜ୍ଞାନ ଏବଂ ଶରୀରବିଜ୍ଞାନ) ବହୁ ନିୟମାନୁଗତତା ବିଷୟରେ ଅନୁଧ୍ୟାନ କରାଯାଇ ନଥିଲା । ଏସବୁର ପ୍ରଭାବ ପଡ଼ିଥିଲା ଦାର୍ଶନିକ ବିଶ୍ୱଦୃଷ୍ଟିକୋଣର ବୈଶିଷ୍ଟ୍ୟ, ତଥା ତତ୍କାଳୀନ ବୈଜ୍ଞାନିକ ଚିନ୍ତାଧାରା ଉପରେ । ତତ୍କାଳୀନ ବସ୍ତୁବାଦ, ତା'ର ଅନ୍ୟତମ ପ୍ରଖ୍ୟାତ ପ୍ରବକ୍ତା ଇଂରେଜ ଦାର୍ଶନିକ ଥୋମାସ୍ ହବସ୍‌ଙ୍କ (୧୫୮୮-୧୬୭୯) ମତବାଦରେ ଦୃଷ୍ଟାନ୍ତ ରୂପେ ପ୍ରକାଶ ପାଇଥିଲା ।

ହବସ୍ ଭାବବାଦ, ଧର୍ମତତ୍ତ୍ୱ, ପାଣ୍ଡିତ୍ୟମନ୍ୟତା ବିରୁଦ୍ଧରେ ଆପୋଷହୀନ ସଂଗ୍ରାମ କରିଥିଲେ ଏବଂ ଈଶ୍ୱର ତଥା ଆତ୍ମାର ଅମରତ୍ୱ ସମ୍ବନ୍ଧୀୟ ଧାରଣାକୁ ପ୍ରତ୍ୟାଖ୍ୟାନ କରିଥିଲେ । ବିଶ୍ୱଜଗତକୁ ସେ ଧାରଣା କରିଥିଲେ ଏକ ଏକକ ବସ୍ତୁମୟ ସତ୍ତା ହିସାବରେ । ବସ୍ତୁ ହେଉଛି ଶାଶ୍ୱତ, ସେଥିରୁ ଗଠିତ ପୃଥକ୍ ପୃଥକ୍ ପଦାର୍ଥ ହେଉଛନ୍ତି ଅନିତ୍ୟ : ସେସବୁ ଜନ୍ମ ନିଅନ୍ତି ଏବଂ ତା'ପରେ ବିଲୟ ଲାଭ କରନ୍ତି । ସେ ବସ୍ତୁକୁ ଗୁଣଗତ ଭାବେ ସମଗୁଣ ବିଶିଷ୍ଟ ବୋଲି ଧରି ନେଇଥିଲେ । ବସ୍ତୁଜାତ ପଦାର୍ଥସକଳ ସେସବୁର ବିସ୍ତାର, ଭାର, ପରିମାଣ, ଆକାରର ଧର୍ମ ତଥା ଅନ୍ୟାନ୍ୟ ପରିମାଣଗତ ଆୟତନ ଦ୍ୱାରା ବିଶେଷ ଭାବେ ଚିହ୍ନିତ ହୋଇଥାନ୍ତି । ଗତି ହେଉଛି ବସ୍ତୁର ଏକ ଧର୍ମ । କିନ୍ତୁ ହବସ୍ ଗତିକୁ ଗୋଟିଏ ମାତ୍ର ରୂପ ହିସାବରେ ସ୍ୱୀକାର କରିଥିଲେ, ଯଥା ସ୍ଥାନ ବା ସ୍ପେସ୍ ମଧ୍ୟରେ ପଦାର୍ଥରାଜିର ସ୍ଥାନ ପରିବର୍ତ୍ତନକୁ ସ୍ୱୀକାର କରିଥିଲେ । ସେ ମଣିଷକୁ ଧରି ନେଇଥିଲେ (ପ୍ରାକୃତିକ ପଦାର୍ଥରାଜିକୁ ମଧ୍ୟ) ଏକ ଯନ୍ତ୍ର ହିସାବରେ — ହୃତ୍‌ପିଣ୍ଡକୁ ଏକ ସ୍ପ୍ରିଙ୍ଗ୍, ସ୍ନାୟୁକୁ ରଜ୍ଜୁ, ଗଣ୍ଠିକୁ ଚକ ଆଦି ହିସାବରେ । ତାଙ୍କ ମତରେ ରାଷ୍ଟ୍ର ହେଉଛି ମଣିଷକୃତ । ସାମଗ୍ରିକ ଭାବେ ଶାନ୍ତି ରକ୍ଷା ଉଦ୍ଦେଶ୍ୟରେ ଲୋକଙ୍କର ପ୍ରାକୃତିକ ଅଧିକାରସମୂହକୁ ଯୁକ୍ତିଯୁକ୍ତ ଭାବେ ସୀମିତ କରିବା ପାଇଁ ସେମାନଙ୍କ ମଧ୍ୟରେ ସୃଷ୍ଟ ଏକ ରାଜିନାମା ମଧ୍ୟରୁ ଏହା ଜାତ ହୋଇଥାଏ । ବ୍ୟକ୍ତି ମଣିଷ ଭଳି ରାଷ୍ଟ୍ର ହେଉଛି ଏକ ଯାନ୍ତ୍ରିକ ବ୍ୟବସ୍ଥା, ତା'ର ଆତ୍ମା ହେଉଛି ସର୍ବୋଚ୍ଚ ଶକ୍ତି; ଗଣ୍ଠିଗୁଡ଼ିକ ହେଉଛନ୍ତି ବିଗ୍ରହ

ବିଭାଗ ଏବଂ କାର୍ଯ୍ୟନିର୍ବାହୀ ସଂସ୍ଥା ; ସ୍ନାୟୁସକଳ ହେଉଛନ୍ତି ପୁରସ୍କାର ଏବଂ ଦଣ୍ଡ , ଆଦି । ଏ ବସ୍ତୁମୟ ଜଗତ ହେଉଛି ଜ୍ଞେୟ । ପ୍ରଜ୍ଞା , ଯୁକ୍ତିଜ୍ଞାନ , ଅର୍ଥାତ୍ , ଯୁକ୍ତିସମ୍ମତ ଚିନ୍ତନ ପଦ୍ଧତି ଦ୍ୱାରା ସତ୍ୟକୁ ଲାଭ କରିବା ସମ୍ଭବ । ସେ କିନ୍ତୁ , ଯୁକ୍ତିସମ୍ମତ ଚିନ୍ତନକୁ ସରଳ ଗାଣିତିକ ହିସାବ ମଧ୍ୟରେ ସୀମିତ କରି ଦେଇଥିଲେ – ତାଙ୍କର ବିଶ୍ୱାସ ଥିଲା , ସମସ୍ତ ପ୍ରାକୃତିକ ଏବଂ ସାମାଜିକ ପ୍ରପଞ୍ଚରାଜିର ଅଧ୍ୟୟନ ହେଉଛି ବିୟୋଗ ଏବଂ ଯୋଗ ।

୧୭ଶ ଏବଂ ୧୮ଶ ଶତାବ୍ଦୀର ସମସ୍ତ ବସ୍ତୁବାଦୀ ଦାର୍ଶନିକଙ୍କ ମତ ଅବଶ୍ୟ ହବସ୍‌ଙ୍କ ସହିତ ସମାନ ନଥିଲା । ସେମାନଙ୍କ ମଧ୍ୟରୁ କେତେକ ନିର୍ଦ୍ଦିଷ୍ଟ ସମସ୍ୟାବଳୀର ଅନ୍ୟ ସମାଧାନ ଦେଉଥିଲେ , ବିଶେଷତଃ ଭୂମିକା ଉପରେ ବାସ୍ତବତାକୁ ଜାଣିବା ଦିଗରେ ଇନ୍ଦ୍ରିୟ ଅନୁଭୂତି , ପ୍ରତ୍ୟକ୍ଷଜ୍ଞାନ ଏବଂ ଅଭିଜ୍ଞତାସିଦ୍ଧ ପଦ୍ଧତି ଉପରେ (ଇଂଲଣ୍ଡର ବ୍ୟାକନ୍ ଏବଂ ଲୋକେ , ରୁଷିଆର ଲୋମନୋସଭ୍ ଏବଂ ଅନ୍ୟମାନେ) ଗୁରୁତ୍ୱ ପ୍ରଦାନ କରୁଥିଲେ । ହଲଣ୍ଡର ସ୍ପିନୋଜା ଏବଂ ଫ୍ରାନ୍‌ସର ଦିଦେରତ୍ ପ୍ରମୁଖଙ୍କର ମତରାଜିରେ ଦ୍ୱନ୍ଦ୍ୱମୂଳକ ଉପାଦାନ ରହିଥିଲା । ମୋଟ ଉପରେ , କହିବାକୁ ଗଲେ , ସେତେବେଳକାର ବସ୍ତୁବାଦ ଥିଲା ଐତିହାସିକ ଭାବେ ସୀମିତ ଏବଂ ସଂଗତିହୀନ । ଏହା ଥିଲା ଯାନ୍ତ୍ରିକ ବସ୍ତୁବାଦ , କାରଣ ତାଙ୍କର ଏହି ବସ୍ତୁବାଦ ତା'ର ଯାନ୍ତ୍ରିକତାର ଏକମାତ୍ର ମାନଦଣ୍ଡକୁ ରାସାୟନିକ , ଜୈବିକ ଏବଂ ଏପରିକି ସାମାଜିକ ପ୍ରପଞ୍ଚ କ୍ଷେତ୍ରରେ ପ୍ରଯୋଜ୍ୟ ବୋଲି ବିଚାର କରୁଥିଲା । ଦ୍ୱିତୀୟତଃ ଏହା ଥିଲା ଅଧିଭୌତିକ ବସ୍ତୁବାଦ , ଯଦ୍ୱାରା ଜଗତକୁ ବିଚ୍ଛିନ୍ନ ପଦାର୍ଥରାଜିର ଏକ ସମାହାର ବୋଲି ଧରା ଯାଉଥିଲା । ସେ ଜଗତର ମୂଳରେ ଏଭଳି ଏକ ଅପରିବର୍ତ୍ତନୀୟ ଉପାଦାନ ରହିଛି ଯା'ର କି କୌଣସି ପ୍ରକୃତ ଐତିହାସିକ ବିକାଶ ଘଟେ ନାହିଁ । ହବସ୍‌ଙ୍କ କ୍ଷେତ୍ରରେ ମଧ୍ୟ ଏହା ହିଁ ଘଟିଥିଲା , ଯିଏକି ପଦାର୍ଥ ପଦାର୍ଥ ମଧ୍ୟରେ ପରିମାଣଗତ ପାର୍ଥକ୍ୟକୁ ଦେଖୁଥିଲେ , ସେସବୁର ଗୁଣଗତ ପାର୍ଥକ୍ୟକୁ ଅସ୍ୱୀକାର କରୁଥିଲେ । କାରଣ , ସେ ଗତିର ବ୍ୟାଖ୍ୟା କରି କହିଥିଲେ , ଏହା ହେଉଛି ସ୍ଥାନ ମଧ୍ୟରେ ବସ୍ତୁମାନଙ୍କର ନିଛକ ସରଳ ସ୍ଥାନ ପରିବର୍ତ୍ତନ । ଶେଷତଃ , ପ୍ରକୃତି କ୍ଷେତ୍ରରେ ହିଁ କେବଳ ୧୭ଶ ଏବଂ ୧୮ଶ ଶତାବ୍ଦୀର ବସ୍ତୁବାଦୀମାନେ ଦର୍ଶନର ମୌଳିକ ପ୍ରଶ୍ନର ସଠିକ ଉତ୍ତର ଦେଲା ବେଳେ ସମାଜ ଏବଂ ଇତିହାସର ଅବଧାରଣା ସଂପର୍କରେ ଭାବବାଦୀ ହୋଇ ରହି ଯାଇଥିଲେ । ସମାଜର ସମସ୍ତ ପରିବର୍ତ୍ତନକୁ ବ୍ୟାଖ୍ୟା କରାଯାଉଥିଲା ଅଭୌତିକ କାରଣଗୁଡ଼ିକର କାର୍ଯ୍ୟକଳାପ ଦ୍ୱାରା – ରାଜନୈତିକ ବା ଧର୍ମୀୟ ମତ ଦ୍ୱାରା , ବିଖ୍ୟାତ ବ୍ୟକ୍ତିମାନଙ୍କର ଇଚ୍ଛା ତଥା ଜ୍ଞାନର ବିଚ୍ଛୁରଣ ଆଦି ଦ୍ୱାରା । ଏହି ସମୟର ବସ୍ତୁବାଦୀମାନେ ଜନସାଧାରଣଙ୍କର ଅଭିପ୍ରାୟ ଏବଂ ମତାମତ ପରିବର୍ତ୍ତନ ପଛରେ ଥିବା କାରଣ ତଥା ସେମାନଙ୍କ ଜୀବନରେ ବସ୍ତୁନିଷ୍ଠ ଅର୍ଥନୈତିକ ଅବସ୍ଥାର ଭୂମିକାର ବ୍ୟାଖ୍ୟା ଦେବାକୁ ସକ୍ଷମ ହୋଇ ପାରି ନଥିଲେ ।

ହବସ୍‌ଙ୍କ ଦର୍ଶନ ଏହାକୁ ସ୍ୱୀକାର କରେ । ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ସାମାଜିକ ସଂଗଠନ – ରାଷ୍ଟ୍ରର ଉଦ୍‌ଭବକୁ ସେ ବାସ୍ତବରେ ବୈଷୟିକ ଚରିତ୍ରର କାରଣରାଜିକୁ

(ବ୍ୟକ୍ତିଗତ ସଂପତ୍ତି, ମଣିଷ ଦ୍ୱାରା ମଣିଷକୁ ଶୋଷଣ, ଶ୍ରେଣୀ ସଂଗ୍ରାମର ଉଦ୍ଭବ, ଆଦି) ଏକ ବିଶିଷ୍ଟ ଭାବବାଦୀ ଢଙ୍ଗରେ ବ୍ୟାଖ୍ୟା କରିଛନ୍ତି: ସମାଜର ସଂଗଠନ ହେଉଛି ଲୋକମାନଙ୍କ ମଧ୍ୟରେ ଯୁକ୍ତିସମ୍ମତ ଏକ ରାଜିନାମା, ଏ କଥା ସେ କହିଛନ୍ତି ।

କିନ୍ତୁ ଏସବୁ ସତ୍ତ୍ୱେ, ଉଦୀୟମାନ ପୁଞ୍ଜିବାଦର ବସ୍ତୁବାଦ ଥିଲା ଦାର୍ଶନିକ ଜ୍ଞାନର କ୍ରମବିକାଶ କ୍ଷେତ୍ରରେ ଏକ ନୂତନ ପର୍ଯ୍ୟାୟ । ଏହା ପ୍ରାଚୀନ ଦୁନିଆର ସ୍ୱତଃସ୍ଫୂର୍ତ୍ତ ବସ୍ତୁବାଦ ନୁହେଁ । ଏହା ଅଧିଭୌତିକ ବସ୍ତୁବାଦ ହୋଇଥିଲେ ମଧ୍ୟ ନିର୍ଭର କରୁଥିଲା ପ୍ରାକୃତିକ ବିଜ୍ଞାନର ନିର୍ଦ୍ଦିଷ୍ଟ ସାଧନରାଜି ଉପରେ ଏବଂ ସେସବୁକୁ ଯୋଗାଇ ଦେଉଥିଲା ଅନୁସନ୍ଧାନ ପାଇଁ ଦାର୍ଶନିକ ଭାବେ ସିଦ୍ଧ ଏକ ପଦ୍ଧତି ।

ଅଧିଭୌତିକ ବସ୍ତୁବାଦର ବହୁ ସୀମିତତାକୁ ଅତିକ୍ରମ କରି ପାରିଥିଲେ ୧୯ଶ ଶତାବ୍ଦୀ ରୁଷିଆର ବିପ୍ଳବୀ ଗଣତନ୍ତ୍ରବାଦୀ ବେଲିନ୍‌ସ୍କି, ହେର୍‌ଜେନ୍, ଚେର୍ନିଶେଭ୍‌ସ୍କି, ଦବ୍ରୋଲ୍ୟୁବୋଭ୍ ଏବଂ ଅନ୍ୟମାନେ । ଏମାନଙ୍କ ମତାମତ ଥିଲା ଦର୍ଶନର ଇତିହାସରେ ବସ୍ତୁବାଦର ତୃତୀୟ ମୁଖ୍ୟ ରୂପ । ସାମାଜିକ କ୍ଷେତ୍ରରେ ସେମାନଙ୍କ ଚିନ୍ତାଧାରାରେ ପ୍ରତିଫଳିତ ହୋଇଥିଲା ସ୍ୱୈରତନ୍ତ୍ର ତଥା ସାମନ୍ତବାଦୀ ଅବଶେଷାଂଶ ବିରୁଦ୍ଧରେ ରୁଷିଆର କୃଷକ ତଥା ସମସ୍ତ ପ୍ରଗତିଶୀଳ ଲୋକଙ୍କ ସଂଗ୍ରାମ । ସେମାନେ ଭାବବାଦ ଏବଂ ଧର୍ମୀୟ ରହସ୍ୟବାଦକୁ ବର୍ଜନ କରିଥିଲେ ଏବଂ ପ୍ରାକୃତିକ ବିଜ୍ଞାନ ଉପରେ ନିର୍ଭର କରି ଭୌତିକ ଜଗତର ଗୁଣଗତ ଭାବେ ବହୁରୂପକତା ତଥା ଚିରନ୍ତନ ବିକାଶର କଥା ପ୍ରଚାର କରିଥିଲେ । ବିକାଶକୁ ସେମାନେ ଭାବିଥିଲେ ବୈପରୀତ୍ୟରାଜି ତଥା ବିକାଶର ପୁରୁଣା ରୂପସମୂହର ନେତୀକରଣ ମଧ୍ୟରେ ସଂଗ୍ରାମ ଯୁକ୍ତ ଏକ ଦ୍ୱନ୍ଦ୍ୱମୂଳକ ପ୍ରକ୍ରିୟା ବୋଲି । ଏହା ଦ୍ୱାରା ସେମାନେ ଅଧିଭୌତିକ ମତବାଦ ପୋଷଣକାରୀମାନଙ୍କ ଠାରୁ ମୌଳିକ ଭାବେ ଭିନ୍ନ ମତ ପ୍ରକାଶ କରୁଥିଲେ । ସମାଜ ସଂପର୍କରେ ମଧ୍ୟ ବିପ୍ଳବୀ ଗଣତନ୍ତ୍ରବାଦୀମାନେ କେତେକ ବସ୍ତୁବାଦୀ ଚିନ୍ତାଧାରା ପ୍ରକାଶ କରିଥିଲେ, କିନ୍ତୁ ମୋଟାମୋଟି ଭାବେ, ସମାଜ ତଥା ତା'ର ବିକାଶ ସଂପର୍କରେ ସେମାନଙ୍କ ମତାମତ ଥିଲା ଭାବବାଦୀ । କାରଣ, ସେମାନେ ସମାଜ ବିକାଶର ବସ୍ତୁଗତ କାରଣଗୁଡ଼ିକୁ ଉଦ୍‌ଘାଟନ କରିବା ଏବଂ ଶୋଷଣ ମୁକ୍ତ ଏକ ସମାଜ ଗଢ଼ିବାର ପଥ ପାଇଁ ଏକ ବୈଜ୍ଞାନିକ ପ୍ରମାଣ ପ୍ରତିପନ୍ନ କରିବାକୁ ଅକ୍ଷମ ଥିଲେ ।

ଏହି ଭାବେ ସଂକ୍ଷେପରେ ଆମେ ମାର୍କସ୍‌ବାଦୀ ବସ୍ତୁବାଦର ମୁଖ୍ୟ ପୂର୍ବ ରୂପଗୁଡ଼ିକର ଚରିତ୍ର ବର୍ଣ୍ଣନା କଲେ । ଏହା ତା'ର ଦୀର୍ଘ ବିକାଶ ପଥରେ ଭାବବାଦୀ ଦର୍ଶନ ଦ୍ୱାରା ବାଧା ପ୍ରାପ୍ତ ହୋଇଥିଲା । ଏହି ଦୁଇ ମୁଖ୍ୟ ପ୍ରବଣତା ମଧ୍ୟସ୍ଥ ସଂଗ୍ରାମରେ ସଂପୃକ୍ତ ଥିଲା ବାସ୍ତବତା ସଂପର୍କିତ ଦାର୍ଶନିକ ଅବଧାରଣା ।

# ୫ – ଭାବବାଦର ରୂପରାଜି

ବସ୍ତୁବାଦ ଦର୍ଶନର ମୌଳିକ ପ୍ରଶ୍ନର ଯେଉଁ ଉତ୍ତର ଦିଏ, ତା'ର ବିପରୀତ ଉତ୍ତର ଦେଉଥିବା ଭାବବାଦର ବିଭିନ୍ନ ରୂପ ରହିଛି । ସେସବୁ ମଧ୍ୟରୁ ମୁଖ୍ୟ ରୂପ ହେଉଛି ବସ୍ତୁନିଷ୍ଠ ଭାବବାଦ ଏବଂ ମନୋଗତ ଭାବବାଦ । ଏ ଦିହେଁ ବସ୍ତୁ ପରିବର୍ତ୍ତେ ଚୈତନ୍ୟକୁ ପ୍ରାଥମିକ ବୋଲି ବିଗ୍ରହ କରନ୍ତି । ଭାବବାଦୀ ଦର୍ଶନର ଉପରୋକ୍ତ ନାମାବଳୀ ମଧ୍ୟରେ ପାର୍ଥକ୍ୟଟା ଚେତନା ଏବଂ ଚିନ୍ତନର ବିଭିନ୍ନ ବ୍ୟାଖ୍ୟା ସହିତ କେବଳ ସଂପୃକ୍ତ । ଏହା ଦର୍ଶନର ଇତିହାସରୁ ମିଳୁଥିବା ସାକ୍ଷ୍ୟରାଜି ଦ୍ୱାରା ଭଲ ଭାବେ ଅନୁଭୂତ ହୋଇଥାଏ ।

ପ୍ରାଚୀନ ଗ୍ରୀସ୍‌ରେ ବସ୍ତୁବାଦର ଅବିଚଳ ବିରୋଧୀ ଥିଲେ ପ୍ଲେଟୋ (ଖ୍ରୀ: ପୂ: ୪୨୭-୩୪୭) । ସେ ଥିଲେ ଦାସ-ମାଲିକ ସମ୍ଭ୍ରାନ୍ତତନ୍ତ୍ରର ଭାବ!ଦର୍ଶବାଦୀ ଏବଂ ବସ୍ତୁନିଷ୍ଠ ଭାବବାଦର ପ୍ରଥମ ପ୍ରଣାଳୀର ସ୍ରଷ୍ଟା । ବସ୍ତୁବାଦୀ ଡେମୋକ୍ରିଟସ୍‌ଙ୍କ ସହିତ ତର୍କ ଯୁଦ୍ଧରେ ଅବତୀର୍ଣ୍ଣ ହୋଇ ପ୍ଲେଟୋ ଶାଶ୍ୱତ, ଅପରିବର୍ତ୍ତନୀୟ ଏବଂ ସ୍ୱାଧୀନ ଭାବେ ପ୍ରତିଷ୍ଠିତ ଭାବରାଜି, ଆଧ୍ୟାତ୍ମିକ ସତ୍ତାର ପ୍ରାଥମିକତାକୁ ପ୍ରତିଷ୍ଠା କରିଥିଲେ । ସେ କହୁଥିଲେ, ଇନ୍ଦ୍ରିୟ ଅନୁଭୂତ ପଦାର୍ଥରାଜିର ଜଗତ ହେଉଛି ଗୌଣ ଏବଂ ଭାବରାଜିର ଅପାର୍ଥିବ ଆଧ୍ୟାତ୍ମିକ ଜଗତ ଉପରେ ନିର୍ଭରଶୀଳ, ଯିଏକି ହେଉଛି ଏକ ପ୍ରକୃତ ଅସ୍ତିତ୍ୱ । "ଭାବରାଜି" ଅବସ୍ଥାନ କରେ "ସ୍ୱର୍ଗ ଉପରେ ଥିବା ସ୍ୱର୍ଗରେ" । "ସେଠାରେ ଅବସ୍ଥାନ କରେ ସେଇ ସତ୍ତା, ଯା ସହିତ ପ୍ରକୃତ ଜ୍ଞାନ ସଂପୃକ୍ତ । ସେ ହେଉଛି: ବର୍ଣ୍ଣହୀନ, ରୂପହୀନ, ଅଦୃଶ୍ୟ ନିର୍ଯ୍ୟାସ, କେବଳ ମନ ଦ୍ୱାରା ଦୃଷ୍ଟ, ଆତ୍ମାର ପରିଚାଳକ ।"*

ପ୍ଲେଟୋ ବିଶ୍ୱାସ କରୁଥିଲେ, ବସ୍ତୁ ହେଉଛି ସତ୍ତାବିହୀନ । ତେଣୁ କରି ଇନ୍ଦ୍ରିୟାନୁଭବଯୋଗ୍ୟ ପଦାର୍ଥସକଳ, ଯାହାକୁ କି ସେ ଭାବରାଜିର ପ୍ରତିଫଳନ ବୋଲି ବ୍ୟାଖ୍ୟା କରୁଥିଲେ ଏବଂ ସତ୍ତାବିହୀନ–ବସ୍ତୁ ହେଉଛି ପରିବର୍ତ୍ତନଶୀଳ, କ୍ଷଣସ୍ଥାୟୀ । ଏସବୁର ବିପରୀତରେ ଅଛି ଅପାର୍ଥିବ ଆଧ୍ୟାତ୍ମିକ ନିର୍ଯ୍ୟାସରାଜିର ଏକମାତ୍ର ଅକୃତ୍ରିମ ଅପରିବର୍ତ୍ତନୀୟ, ଶାଶ୍ୱତ ସତ୍ତା । ପ୍ଲେଟୋ ଘୋଷଣା କରିଥିଲେ, ଭାବରାଜିର ଜଗତ ହେଉଛି ମଙ୍ଗଳ ଏବଂ ସୌନ୍ଦର୍ଯ୍ୟର ଅପାର୍ଥିବ ରାଜ୍ୟ, ଅଖଣ୍ଡ ସତ୍ୟର ରାଜ୍ୟ । ଏହା ହିଁ ହେଉଛି ଜନ୍ମ ପୂର୍ବରୁ ମଣିଷ ଆତ୍ମାର ବାସସ୍ଥଳୀ ଏବଂ ମୃତ୍ୟୁ ପରେ ସେ ଆତ୍ମା ଭୌତିକ ଦେହଠାରୁ ବିଚ୍ୟୁତ ହୋଇ ଅପାର୍ଥିବ ଜଗତକୁ ଚାଲିଯାଏ ।

ପ୍ଲେଟୋଙ୍କ ଦାର୍ଶନିକ ମତାବଳୀ ସହିତ ପ୍ରାଚୀନ ଭାରତରେ ପ୍ରଥମ ବସ୍ତୁନିଷ୍ଠ ଭାବବାଦୀ ମତବାଦର ବହୁ ସାମଞ୍ଜସ୍ୟ ରହିଛି । ଏହି ଭାବେ ବ୍ରହ୍ମବାଦର ତାତ୍ତ୍ୱିକ

---

* *"The Works of Plato"*, ଇର୍‌ୱିନ୍ ଏଡ୍‌ମଣ୍ଡଙ୍କ ଦ୍ୱାରା ସଂପାଦିତ, Carlton House, N.J., 1928, ପୃ: ୨୮ ।

# ଦର୍ଶନର ମୌଳିକ ପ୍ରଶ୍ନ

**ପ୍ରାଚୀନ ଦାର୍ଶନିକମାନଙ୍କର ସରଳ ବସ୍ତୁବାଦ :**

ଜଗତ ହେଉଛି ପ୍ରାଥମିକ ମୂଳ ଉପାଦାନ (ଜଳ, ଅଗ୍ନି, ଆଦି) ସମୂହର ସମାହାର, ଆତ୍ମା ହେଉଛି ଦେହର ଧର୍ମ ।

**ବସ୍ତୁବାଦ :**

ସତ୍ତା ହେଉଛି ପ୍ରାଥମିକ, ପ୍ରକୃତି ହେଉଛି ସୀମାହୀନ ; ଚିନ୍ତନ ଏବଂ ଆତ୍ମା ହେଉଛି ବସ୍ତୁର ଧର୍ମ

**ଅଧିବିଦ୍ୟାବାଦୀ ବସ୍ତୁବାଦ :**

ଜଗତ ହେଉଛି ଏକ ଗତିହୀନ ଭୌତିକ ଉପାଦାନ ; ଚିନ୍ତନ ହେଉଛି ପ୍ରକୃତିର ଧର୍ମ ।

**ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ :**

ଜଗତ ହେଉଛି ଯୁକ୍ତିସମ୍ମତ ଭାବେ ଗତିଶୀଳ ବସ୍ତୁ ; ଚେତନା ସମସ୍ତ ବସ୍ତୁର ଧର୍ମ ନୁହଁ, କେବଳ ଅତୀବ ସୁସଂଗଠିତ ବସ୍ତୁର ଧର୍ମ ।

ସତ୍ତା ସହିତ ଚିନ୍ତନ ଏବଂ ପ୍ରକୃତି ସହିତ ଆତ୍ମା କିପରି ଯୁକ୍ତ ?

**ବସ୍ତୁନିଷ୍ଠ ଭାବବାଦ :**

ଜଗତ ହେଉଛି ଅଖଣ୍ଡ ଆତ୍ମା, ଦି ଆଇଡ଼ିଆ ବା ବ୍ରହ୍ମର ବାସ୍ତବତା ; ପ୍ରକୃତି ଈଶ୍ୱରଙ୍କ ଦ୍ୱାରା ସୃଷ୍ଟ ।

**ଭାବବାଦ :**

ପ୍ରକୃତି ପୂର୍ବରୁ ଆତ୍ମା ଅବସ୍ଥାନ କରୁଥିଲ

**ମନୋଗତ ଭାବବାଦ :**

ମଣିଷର ପ୍ରତ୍ୟକ୍ଷଜ୍ଞାନ ଏବଂ ଚେତନାର ବାହାରେ ଜଗତ ଅବସ୍ଥାନ କରେ ନାହିଁ ।

ଯୁକ୍ତିଯୁକ୍ତତାକୁ ପ୍ରତିପାଦନ କରିଥିବା ବେଦାନ୍ତ ଦର୍ଶନ ଘୋଷଣା କରିଥିଲା ଅବ୍ୟକ୍ତିକ ବିଶ୍ୱ ଆତ୍ମା – ବ୍ରହ୍ମ ହେଉଛି ପ୍ରାଥମିକ ବାସ୍ତବତା ଏବଂ ଏକମାତ୍ର ସାରସତ୍ତା । ଏହା ପ୍ରାକୃତିକ ପଦାର୍ଥସକଳର ଜଗତକୁ ଦେଖିଥିଲା ଏହି ଆତ୍ମା ଦ୍ୱାରା ସୃଷ୍ଟ ଏକ ବସ୍ତୁ ହିସାବରେ, ଏକ "ଅଳୀକ କଳ୍ପନା" ବା "ବ୍ରହ୍ମର ସ୍ୱପ୍ନ ହିସାବରେ" । ମାୟା, ଅର୍ଥାତ୍, ପ୍ରାକୃତିକ ପ୍ରପଞ୍ଚ ଜଗତ ହେଉଛି, କେବଳ ଏକ ଛଳନା, ପଲ୍ଲବଗ୍ରାହିତା, ଅଖଣ୍ଡ ସତ୍ତା, ବ୍ରହ୍ମକୁ ମଣିଷଠାରୁ ଗୋପନ କରି ରଖିଥିବା "ଢେଉରାଶି, ବୁଦ୍‌ବୁଦରାଶି ଏବଂ ଫେଣରାଶି" ଭଳି । ମଣିଷର ଦେହକୁ ସେମାନେ ବିଗ୍ରହ କରୁଥିଲେ ମୃତ୍ୟୁହୀନ ଆତ୍ମାର ଏକ ବାହ୍ୟିକ ଆବରଣ ବୋଲି । ସେ ଆତ୍ମା ହେଉଛି ବ୍ରହ୍ମର ଏକ କ୍ଷୁଦ୍ର ଅଣୁ ବା ଅବତାର ।

"ସେ ମୃତ୍ୟୁହୀନ ବ୍ରହ୍ମ ଅଛି ଅଗ୍ର ଦେଶରେ, ପୃଷ୍ଠ ଦେଶରେ, ଦକ୍ଷିଣ ଏବଂ ବାମ ପାର୍ଶ୍ୱରେ । ଏହା ନିମ୍ନ ଦେଶକୁ ଏବଂ ଉର୍ଦ୍ଧ୍ୱ ଦେଶକୁ ଯାଇଛି; ବ୍ରହ୍ମ ହିଁ ହେଉଛି ଏସବୁ, ତାହା ହିଁ ହେଉଛି ସର୍ବଶ୍ରେଷ୍ଠ ।"* ଅଦ୍ୱୈତ ବେଦାନ୍ତ ଦର୍ଶନର ପ୍ରତିଷ୍ଠାତା ଭାରତୀୟ ଦାର୍ଶନିକ ଶଙ୍କର (୭୮୮-୮୨୦ ଖ୍ରୀ:) ଲେଖିଛନ୍ତି, "ବ୍ରହ୍ମ ବ୍ୟତୀତ ଅନ୍ୟ କୌଣସି ପ୍ରକଟିତ ବସ୍ତୁ ନାହିଁ । ତେଣୁ ଯାହା କିଛି ପ୍ରକଟିତ ହୁଏ ସେସବୁ ହେଉଛି ବ୍ରହ୍ମ ଏବଂ ତଦ୍‌ଭିନ୍ନ ଅନ୍ୟ କିଛି ନୁହଁ... ସମସ୍ତ ପ୍ରାଣୀ ସେହି ବ୍ରହ୍ମ, ଅପାର୍ଥିବ ଆତ୍ମାରୁ ଜାତ । ତେଣୁ ସେସବୁ ହେଉଛନ୍ତି ବ୍ରହ୍ମ–ଏହାକୁ ହୃଦୟଙ୍ଗମ କରିବାକୁ ହେବ ।"**

ପ୍ଲେଟୋଙ୍କ ମତବାଦ ଭଳି ବେଦାନ୍ତରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ଆଧ୍ୟାତ୍ମିକ ନୀତି, ଯିଏକି ମଣିଷର ଚୈତନ୍ୟ, ବସ୍ତୁ ଏବଂ ପ୍ରକୃତିର ବାହାରେ ଏବଂ ସେସବୁଠାରୁ ସ୍ୱାଧୀନ ଭାବେ, ଅଥବା ସେସବୁ ସୃଷ୍ଟି ହେବାର ପୂର୍ବରୁ ଅବସ୍ଥିତ । ସର୍ବଶେଷ ବିଶ୍ଳେଷଣରେ ଦେଖିବାକୁ ମିଳେ, ବସ୍ତୁନିଷ୍ଠ ଭାବବାଦ ହେଉଛି ଦାର୍ଶନିକ ଭାଷା ଏବଂ ଅବଧାରଣା ମଧ୍ୟରେ ଧର୍ମୀୟ ବିଶ୍ୱଦୃଷ୍ଟିକୋଣର ଏକ ପରିପ୍ରକାଶ । ଏହା ହେଉଛି ମୌଳିକ ଭାବେ ବିଜ୍ଞାନ ତଥା ମଣିଷର ସାମାଜିକ ଐତିହାସିକ ଅଭିଜ୍ଞତାର ବିରୋଧୀ । ଏ କଥା କହିବା ବାହୁଲ୍ୟ ଯେ, ପ୍ରଗତିଶୀଳ ବସ୍ତୁବାଦୀ ଦାର୍ଶନିକମାନେ ବୈଜ୍ଞାନିକ ଜ୍ଞାନ ଉପରେ ଭିତ୍ତି କରି, ଜଗତର ଅଧିଭୌତିକ, ଆଧ୍ୟାତ୍ମିକ ଭିତ୍ତି ସଂପର୍କିତ ଭାବବାଦୀ ଧାରଣାକୁ ଦୃଢ଼ ଭାବେ ଖଣ୍ଡନ କରିଛନ୍ତି ।

ମନୋଗତ ଭାବବାଦୀମାନେ, ଅବଶ୍ୟ, ଅବୈକ୍ତିକ ଆତ୍ମାକୁ ପ୍ରାଥମିକ ବୋଲି ନଧରି ମଣିଷର, ଅର୍ଥାତ୍, କର୍ତ୍ତାର ଚେତନାକୁ ପ୍ରାଥମିକ ବୋଲି ଧରିଥାନ୍ତି । ୧୮ଶ ଶତାବ୍ଦୀରେ, ଦୃଷ୍ଟାନ୍ତ ସ୍ୱରୂପ, ବସ୍ତୁବାଦକୁ ସମାଲୋଚନା କରିଥିଲେ ଇଂରେଜ ଦାର୍ଶନିକ

---

* "ଉପନିଷଦ", ଦ୍ୱିତୀୟ ଭାଗ, ଦିଲ୍ଲୀ, ମୋତିଲାଲ ବନାରସିଦାସ, ୧୯୬୫, ପୃ: ୩୭ ।

** ଶଙ୍କର, Direct Apprehension, "*Voprosy filosofii*", ନଂ ୫, ୧୯୭୨, ପୃ: ୧୧୧ ।

ଜର୍ଜ ବେର୍କେଲେ (୧୬୮୫-୧୭୫୩) । ସେ କହୁଥିଲେ, ଯେଉଁସବୁ ଜିନିଷ ବ୍ୟକ୍ତିର ଇନ୍ଦ୍ରିୟବୋଧ୍ୟ ଅଭିଜ୍ଞତା ତଥା ଚେତନା ମଧ୍ୟରେ ବିଦ୍ୟମାନ, ସେଇସବୁ ଜିନିଷର ଅସ୍ତିତ୍ୱ ରହିଛି ବୋଲି ଧରିବାକୁ ହେବ । ତାଙ୍କ ମତରେ, ଅସ୍ତିତ୍ୱ ଅଛି ଅର୍ଥ ତାକୁ ଉପଲବ୍ଧି କରି ହେଉଛି *(esse est percipi)* । ତଦନୁଯାୟୀ, ସେ ପଦାର୍ଥରାଜିକୁ ମଣିଷର ଇନ୍ଦ୍ରିୟଗ୍ରାହିତାର ସମାହାର ବୋଲି ଭାବୁଥିଲେ ଏବଂ ଫଳରେ ମଣିଷର ଚେତନାଠାରୁ ସ୍ୱାଧୀନ ଭାବେ କୌଣସି ପଦାର୍ଥ ତିଷ୍ଠି ପାରେ ବୋଲି ଅସ୍ୱୀକାର କରିଥିଲେ । ମନୋଗତ ଭାବବାଦୀମାନେ ଶିକ୍ଷା ଦେଉଥିଲେ, ମଣିଷର ମନର ବାହାରେ ପଦାର୍ଥରାଜି ତଥା ପ୍ରପଞ୍ଚରାଜି ମଧ୍ୟରେ କୌଣସି ନିୟମ ବା କାରଣଗତ ଯୋଗସୂତ୍ର ନାହିଁ, କାରଣ, ଏହିସବୁ ପ୍ରପଞ୍ଚରାଜି ନିଜେ ମଣିଷର ପ୍ରତ୍ୟକ୍ଷ ଉପଲବ୍ଧିରୁ ଜାତ । ଏହି ମତର ଯୁକ୍ତିଯୁକ୍ତ ସିଦ୍ଧାନ୍ତଟିକୁ ଅନୁସରଣ କଲେ ସ୍ୱାଭାବିକ ହାସ୍ୟାସ୍ପଦତାରେ ଯାଇ ପହଞ୍ଚିବାକୁ ହୁଏ । ବେର୍କେଲେ ନିଜେ ମଧ୍ୟ ତାଙ୍କ ଅବଧାରଣାର ହାସ୍ୟାସ୍ପଦ ଉଗ୍ରତାସମୂହକୁ ଲକ୍ଷ୍ୟ କରିଥିଲେ । ସବୁ କିଛି ବସ୍ତୁ ଯଦି କର୍ତ୍ତାର ଇନ୍ଦ୍ରିୟାନୁଭବତା ହୁଏ, ତାହେଲେ ଅନ୍ୟ କୌଣସି ଲୋକ, ଏପରିକି କର୍ତ୍ତାର ନିଜସ୍ୱ ପିତାମାତା ବି, ତା'ର ପ୍ରତ୍ୟକ୍ଷ ଉପଲବ୍ଧିର ବାହାରେ ରହି ନ ପାରନ୍ତି । ବେର୍କେଲେ ଏହି କଥାଟିକୁ ଲକ୍ଷ୍ୟ କରିଥିଲେ, ତେଣୁ ଚେଷ୍ଟା କରିଥିଲେ, ତାଙ୍କ ଦର୍ଶନର ଯୁକ୍ତିକୁ ଖୋଲଖୋଲି ଭାବେ ଲଘନ କରି ଏବଂ ତା'ର ମୌଳିକ ନୀତିକୁ ବର୍ଜନ କରି ଏକ ଆଧ୍ୟାତ୍ମିକ ସତ୍ତା, ଈଶ୍ୱରଙ୍କର ସ୍ଥିତିକୁ ପ୍ରମାଣ କରିବାକୁ । ସେ ଘୋଷଣା କରିଥିଲେ, ଈଶ୍ୱର ସମସ୍ତ ବସ୍ତୁକୁ ସୃଷ୍ଟି କଲେ ସେତିକିବେଳେ, ଯେତେବେଳେ ସେ ବିଧିବଦ୍ଧ କଲେ ଯେ, ସେସବୁ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ନିୟମାବଳୀ ଅନୁଯାୟୀ ମଣିଷର ପ୍ରତ୍ୟକ୍ଷ ଉପଲବ୍ଧି ଦ୍ୱାରା ଜାଣି ହେବ । ବେର୍କେଲେଙ୍କ ଦର୍ଶନ, ତେଣୁ ବାସ୍ତବରେ ସଂଗତିହୀନ, ଏହା ଦ୍ୱାରା ସେ ନିଜକୁ ପ୍ଲେଟୋଙ୍କ ବସ୍ତୁନିଷ୍ଠ ଭାବବାଦୀ ଅବସ୍ଥାନକୁ ନେଇ ଯାଇଛନ୍ତି । ମନୋଗତ ଭାବବାଦ କେବଳ ଏଇଥି ପାଇଁ ଭିତ୍ତିହୀନ ନୁହେଁ ଯେ, ଏହା ଯୁକ୍ତିଗତ ଦ୍ୱନ୍ଦ୍ୱସମୂହ ସହିତ ଯୁକ୍ତ । ସ୍ୱୟଂ ଜୀବନ ଏବଂ ମାନବିକ ବାସ୍ତବ କାର୍ଯ୍ୟାବଳୀ ଦ୍ୱାରା ଏହା ଅସମର୍ଥିତ । ବାସ୍ତବ ଉତ୍ପାଦନରେ ମଣିଷର ଅଂଶଗ୍ରହଣ ଏବଂ ବୈଜ୍ଞାନିକ କୃତିରାଜି ନିଃସନ୍ଦେହରେ ଦର୍ଶାଇ ଦେଇଛି ଯେ, ମଣିଷର ଚେତନାଠାରୁ ସ୍ୱାଧୀନ ଭାବେ ଜଗତ ତିଷ୍ଠି ରହିଛି । ତେଣୁ କରି, ସ୍ୱାଭାବିକ ଭାବେ, ୧୭ଶ ଏବଂ ୧୮ଶ ଶତାବ୍ଦୀର ବସ୍ତୁବାଦୀ ଦାର୍ଶନିକମାନେ ବେର୍କେଲେଙ୍କ ଦର୍ଶନକୁ ପ୍ରତ୍ୟାଖ୍ୟାନ କରିଥିଲେ, କାରଣ ତାଙ୍କର ସେ ଦର୍ଶନ ବିଜ୍ଞାନ ତଥା ଲୋକଙ୍କ ଜୀବନ ଅଭିଜ୍ଞତା ସହିତ ମେଳ ଖାଉ ନଥିଲା ।

ଉପରୋକ୍ତ ଦୃଷ୍ଟାନ୍ତଗୁଡ଼ିକ ଆମକୁ ପୁରାତନ ବସ୍ତୁବାଦର ପ୍ରଧାନ ପ୍ରଧାନ ରୂପ ଆଉ ଭାବବାଦର ମୁଖ୍ୟ ପ୍ରକାଶଗୁଡ଼ିକ ସଂପର୍କରେ ଏକ ସାଧାରଣ ଧାରଣା ପ୍ରଦାନ କରେ । ଏବେ ଆମେ ଦ୍ୱନ୍ଦ୍ୱମୂଳକ ତଥା ଐତିହାସିକ ବସ୍ତୁବାଦ ଦର୍ଶନର ମୌଳିକ ଭାବେ ନୂତନ ବୈଶିଷ୍ଟ୍ୟଗୁଡ଼ିକୁ ବିଚାର କରିବା ।

# ଦ୍ୱିତୀୟ ପରିଚ୍ଛେଦ

# ବୈଜ୍ଞାନିକ ଦର୍ଶନର ପ୍ରତିଷ୍ଠା ଏବଂ ବିକାଶ

## ୧ – ଦାର୍ଶନିକ ବିଶ୍ୱଦୃଷ୍ଟିକୋଣର ଏକ ନୂଆ ଧରଣର ସାମାଜିକ ଆବଶ୍ୟକତା

କାର୍ଲ ମାର୍କସ୍ (୧୮୧୮-୧୮୮୩) ଏବଂ ଫ୍ରେଡେରିକ୍ ଏଙ୍ଗେଲସ୍ (୧୮୨୦-୧୮୯୫) ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦ ପ୍ରତିଷ୍ଠା କରିଥିଲେ ଏବଂ ଭ୍ଲାଦିମିର୍ ଇଲିଚ୍ ଲେନିନ୍ (୧୮୭୦-୧୯୨୪) ନୂତନ ଐତିହାସିକ ପରିସ୍ଥିତିରେ ତାକୁ ଆଉରି ବିକଶିତ କରିଥିଲେ ।

୧୮୪୦ ଦଶକର ଅର୍ଦ୍ଧଭାଗରେ ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦର ଅଭ୍ୟୁଦୟଟା ଥିଲା ଐତିହାସିକ ଭାବେ ଅପରିହାର୍ଯ୍ୟ । କାରଣ ଏହି ସମୟରେ ଜଗତ ସଂପର୍କରେ ଏକ ଅକୃତ୍ରିମ ବୈଜ୍ଞାନିକ ଆଭିମୁଖ୍ୟ ପାଇଁ ଏକ ସାମାଜିକ ଆବଶ୍ୟକତା ଏବଂ ବସ୍ତୁନିଷ୍ଠ ପୂର୍ବାବସ୍ଥା ବିକାଶ ଲାଭ କରିଥିଲା । ସାମଗ୍ରିକ ଭାବେ ମାର୍କସ୍‌ବାଦକୁ ତଥା ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଓ ଐତିହାସିକ ବସ୍ତୁବାଦକୁ ଜନ୍ମ ଦେଇଥିଲା, ସର୍ବୋପରି, ସାମାଜିକ ଅର୍ଥନୈତିକ କାରଣଗୁଡ଼ିକ : ପୁଞ୍ଜିବାଦର ବିକାଶ ଏବଂ ତା'ର ବିରୋଧସମୂହ, ଶ୍ରମ ଏବଂ ପୁଞ୍ଜି ମଧ୍ୟରେ ତଥା ସର୍ବହରା ଆଉ ବୁର୍ଜୁଆ ମଧ୍ୟରେ ସଂଗ୍ରାମର ଅଭିବୃଦ୍ଧି ଏବଂ ତୀବ୍ରତା । ପୁଞ୍ଜିବାଦୀ ଉତ୍ପାଦନ ପଦ୍ଧତି ସ୍ଥାପନ ଫଳରେ ଶ୍ରମିକ ଶ୍ରେଣୀ ରୂପ ପରିଗ୍ରହ କରିବାକୁ ଆରମ୍ଭ କରିଥିଲା । ପୁଞ୍ଜିବାଦୀ ଶୋଷଣ ବିରୁଦ୍ଧରେ ଶ୍ରେଣୀ ସଂଗ୍ରାମ ଏବଂ ସାମାଜିକ ନିର୍ଯ୍ୟାତନ ବିରୁଦ୍ଧରେ ବିଶାଳ ଆନ୍ଦୋଳନ, ସର୍ବହରାର ଧର୍ମଘଟ ଏବଂ ବୈପ୍ଳବିକ କାର୍ଯ୍ୟକଳାପ ମଧ୍ୟ ଦେଇ ଏହା ତା'ର ରାଜନୈତିକ ଚେତନାବୋଧ ଏବଂ ସାଂଗଠନିକ ଦକ୍ଷତାକୁ ବିକଶିତ କରିଥିଲା । ଇତିହାସରେ ଶ୍ରମିକ ଶ୍ରେଣୀ ଏକ ସ୍ୱାଧୀନ ଶକ୍ତିରେ ପରିଣତ ହେଲା ଏବଂ ତା'ର ସାମାଜିକ ଅବସ୍ଥିତି ପ୍ରତିଫଳିତ ହେଲା ତା'ର ବିଶ୍ୱଦୃଷ୍ଟିକୋଣରେ । ଏହି ନବୀନ ଶ୍ରେଣୀଟି ଆବଶ୍ୟକ କରୁଥିଲା ସାମାଜିକ ବିକାଶର ନିୟମରାଜିର ପରିଷ୍କାର ଅବଗତି, ସାମାଜିକ ମୁକ୍ତି ପାଇଁ ପୁଞ୍ଜିବାଦୀ ନିର୍ଯ୍ୟାତନ ବିରୁଦ୍ଧରେ ସଂଗ୍ରାମରେ ତା'ର ଲକ୍ଷ୍ୟରାଜିର ବୈଜ୍ଞାନିକ ସୁବିଦିତା । ମାର୍କସ୍‌ବାଦୀ ଦର୍ଶନ ହେଉଛି ବିପ୍ଳବୀ ସର୍ବହରାର ବିଶ୍ୱଦୃଷ୍ଟିକୋଣର ଏହି ବୈଜ୍ଞାନିକ ପ୍ରତିଫଳନ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଇତିହାସରେ ଏହାର ପୂର୍ବବର୍ତ୍ତୀ ଯୁଗରେ ଦେଖା ଦେଇ ପାରି ନଥାନ୍ତା, କାରଣ, ଏହା ତା'ର ଚିନ୍ତାରାଜିର ସମଗ୍ରତା ଦିଗରୁ, ସର୍ବଶେଷରେ ନିର୍ଦ୍ଦିଷ୍ଟ ଭାବେ ଶ୍ରମିକ ଶ୍ରେଣୀର

# ମାର୍କସ୍‌ବାଦୀ ଦର୍ଶନର ଅଭ୍ୟୁଦୟ ପାଇଁ ଅବସ୍ଥାରାଜି

| ସାମାଜିକ ଏବଂ ରାଜନୈତିକ ଅବସ୍ଥାରାଜି | ତାତ୍ତ୍ୱିକ ଉତ୍ସସମୂହ | ପ୍ରାକୃତିକ-ବୈଜ୍ଞାନିକ ଅବସ୍ଥାରାଜି |
|---|---|---|
| ପୁଞ୍ଜିବାଦୀ ଦ୍ୱନ୍ଦ୍ୱସମୂହର ବିକାଶ ଏବଂ ସର୍ବହରାର ଶ୍ରେଣୀ ସଂଗ୍ରାମର ପ୍ରାରମ୍ଭ । | ଚିରାୟତ ଜର୍ମାନ୍ ଦର୍ଶନ, ହେଗେଲ୍‌ଙ୍କ ଭାବବାଦୀ ଦ୍ୱନ୍ଦ୍ୱବାଦ ଏବଂ ଫଏରବାଖ୍‌ଙ୍କ ଦାର୍ଶନିକ ବସ୍ତୁବାଦ । | ୧୯ଶ ଶତାବ୍ଦୀର ବିରାଟ ଆବିଷ୍କାରସମୂହ : ଜୀବକୋଷ, ଶକ୍ତିର ସଂରକ୍ଷଣ ଏବଂ ରୂପାନ୍ତରଣର ଆବିଷ୍କାର ଏବଂ ଡାରୱିନ୍‌ଙ୍କ ଜୀବସମୂହର ସୃଷ୍ଟି ଓ ବିବର୍ତ୍ତନ ତତ୍ତ୍ୱ । |

ସାମାଜିକ ବିକାଶର ଆବଶ୍ୟକତାସମୂହର, ବିଶେଷ କରି ସର୍ବହରାର ଆବଶ୍ୟକତାସମୂହ ପ୍ରତି ପ୍ରତିକ୍ରିୟା ଜଣାଇ ମାର୍କସ୍ ଏବଂ ଏଙ୍ଗେଲସ୍ ସମାଲୋଚନାମୂଳକ ଭାବେ ହେଗେଲ୍‌ଙ୍କ ଭାବବାଦୀ ଦ୍ୱନ୍ଦ୍ୱବାଦ ଏବଂ ଫଏରବାଖ୍‌ଙ୍କ ଅଧିବିଦ୍ୟାବାଦୀ ବସ୍ତୁବାଦର ଆବଶ୍ୟକୀୟ ସଂଶୋଧନ କରିଥିଲେ, ଏବଂ ସାମାଜିକ ବିକାଶର ପ୍ରୟୋଗ ତଥା ବୈଜ୍ଞାନିକ ଆବିଷ୍କାରସମୂହ ସଂପର୍କରେ ସାମାନ୍ୟୀକରଣ କରି ସୃଷ୍ଟି କରିଥିଲେ ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦ – ପ୍ରକୃତି, ସମାଜ ଏବଂ ଚିନ୍ତନର ବିକାଶକୁ ନିର୍ଦ୍ଧାରିତ କରୁଥିବା ସବୁଠାରୁ ସାଧାରଣ ନିୟମାବଳୀର ବିଜ୍ଞାନ ।

ଭାବାଦର୍ଶକୁ ସୁସିଦ୍ଧ କରେ, ଅନ୍ୟ କୌଣସି ସାମାଜିକ ଶକ୍ତିକୁ କରେ ନାହିଁ । ପ୍ରାଚୀନ ଭାରତ, ଚୀନ୍ ଏବଂ ଅନ୍ୟାନ୍ୟ କେତେକ ଦେଶରେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଥିଲା ବୋଲି କେତେକ ଲୋକ ଯେଉଁ ଦାବୀ କରନ୍ତି, ତାହାକୁ ଏହା ଖଣ୍ଡନ କରି ଦିଏ ।

ଏହା ଛଡ଼ା, କେବଳ ସାମାଜିକ କାରଣଗୁଡ଼ିକ ମଧ୍ୟରୁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଜନ୍ମ ନେଇ ନଥିଲା । ୧୯ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବସ୍ତୁବାଦୀ ଦର୍ଶନର ଏହି ନୂତନ ରୂପଟିର ଅଭ୍ୟୁଦୟ ପାଇଁ ପ୍ରାକୃତିକ ବୈଜ୍ଞାନିକ ପୂର୍ବସର୍ତ୍ତମାନ ଉପସ୍ଥିତ ଥିଲା । ବହୁ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ଦ୍ୱାରା ପ୍ରାକୃତିକ ବିଜ୍ଞାନ ସମୃଦ୍ଧ ହୋଇଥିଲା । ସେସବୁ ମଧ୍ୟରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା ଶକ୍ତିର ସଂରକ୍ଷଣ ଏବଂ ରୂପାନ୍ତରଣ ନିୟମାବଳୀ, ପ୍ରାଣୀ ତଥା ଉଦ୍‌ଭିଦ ଗଠନର କୋଷଗତ ତତ୍ତ୍ୱ ତଥା ମହାନ୍ ଇଂରେଜ ବିଜ୍ଞାନୀ ଚାର୍ଲସ୍ ଡାରୱିନ୍‌ଙ୍କ ଦ୍ୱାରା ସୃଷ୍ଟ ବିବର୍ତ୍ତନ ତତ୍ତ୍ୱର ଆବିଷ୍କାର । ଏହିସବୁ ଆବିଷ୍କାର ସମେତ ଅନ୍ୟାନ୍ୟ ଆବିଷ୍କାର ପ୍ରକୃତି ସଂପର୍କରେ ପରମ୍ପରାଗତ ଅଧିଭୌତିକ ମତାମତ ବିରୁଦ୍ଧରେ ଯାଇଥିଲା ଏବଂ ଏହି ସିଦ୍ଧାନ୍ତରେ ପହଞ୍ଚାଇ ଥିଲା ଯେ, ଜଗତକୁ ବିଚ୍ଛିନ୍ନ ତଥା

ଅପରିବର୍ତ୍ତନୀୟ ବସ୍ତୁରାଜିର ଏକ ସମାହାର ବୋଲି ବିଚାର କରିବାଟା ହେଉଛି ଭୁଲ । ୧୯ଶ ଶତାବ୍ଦୀର ମଧ୍ୟ ଭାଗର ପ୍ରାକୃତିକ ବିଜ୍ଞାନର ସାଫଲ୍ୟରାଜି ପ୍ରାକୃତିକ ପ୍ରପଞ୍ଚ ସଂପର୍କରେ ପ୍ରଚଳିତ ଯାନ୍ତ୍ରିକ ଅବଧାରଣାକୁ ବର୍ଜନ କରିବାକୁ ପଡ଼ିବ ବୋଲି ଦାବି କରୁଥିଲା । ସେସବୁ ଦ୍ବନ୍ଦ୍ବୋଧତାର ସହିତ ଦର୍ଶାଇଥିଲା ଗତିର ଗୁଣାତ୍ମକ ଭାବେ ବହୁବିଧ ରୂପ, ସେସବୁ ମଧ୍ୟରେ ଯୋଗସୂତ୍ର, କେତେକ ପ୍ରପଞ୍ଚରୁ ଅନ୍ୟ କେତେକ ପ୍ରପଞ୍ଚକୁ ରୂପାନ୍ତରଣ ଏବଂ ପ୍ରକୃତିର ବିଭିନ୍ନ କ୍ଷେତ୍ରରେ ବିକାଶ । ଜଗତ ସଂପର୍କରେ ଏକ ଦ୍ବନ୍ଦ୍ବମୂଳକ ଆଭିମୁଖ୍ୟ ସପକ୍ଷରେ ଏସବୁ ଏକ ଅକାଟ୍ୟ ଯୁକ୍ତି ପ୍ରଦାନ କରିଥିଲା । ଏହି ସମୟର ବିରାଟ ବିରାଟ ବୈଜ୍ଞାନିକ ସାଫଲ୍ୟରାଜିକୁ ମାର୍କସ୍ ଏବଂ ଏଙ୍ଗେଲସ୍ ତାତ୍ତ୍ୱିକ ଭାବେ ସାମାନ୍ୟୀକରଣ କରିଥିଲେ ଦ୍ବନ୍ଦ୍ବମୂଳକ ବସ୍ତୁବାଦ ସୃଷ୍ଟି କରିବାକୁ ଯାଇ ।

ଶେଷତଃ, ତାତ୍ତ୍ୱିକ ଉତ୍ସରାଜି ମଧ୍ୟ ମାର୍କସ୍‌ବାଦୀ ଦର୍ଶନ ଗଠନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା । ଏହି ଦିଗଟି ଉପରେ ଆଉରି ବିଶଦ ଆଲୋଚନା କରିବା ଦରକାର, କାରଣ, ଦ୍ବନ୍ଦ୍ବମୂଳକ ବସ୍ତୁବାଦ ସହିତ ତା'ର ପୂର୍ବବର୍ତ୍ତୀ ଦର୍ଶନର ସଂପର୍କକୁ ସର୍ବଦା ସଠିକ୍ ଭାବେ ବିଚାରକୁ ନିଆଯାଇ ନଥାଏ । ଦ୍ବନ୍ଦ୍ବମୂଳକ ବସ୍ତୁବାଦୀ, ମାର୍କସ୍‌ବାଦୀ ଦର୍ଶନର ମୌଳିକତାକୁ ଅସ୍ୱୀକାର କରିବା ଏବଂ ଏହାକୁ ଜର୍ମାନ୍ ଦାର୍ଶନିକ ହେଗେଲ୍ ଏବଂ ଫଏରବାଖ୍‌ଙ୍କ ଦ୍ୱାରା ପ୍ରଚାରିତ ଚିନ୍ତାରାଜିର ଏକ ମିଶ୍ରଣ ମାତ୍ର ବୋଲି ବ୍ୟାଖ୍ୟା କରିବାର ଏକ ପ୍ରବଣତା ରହିଛି । ଏଥି ସଙ୍ଗେ ସଙ୍ଗେ, ଅନେକ ସମୟରେ ମାର୍କସ୍‌ବାଦ ବିରୁଦ୍ଧରେ କୁହାଯାଏ ଯେ, ଏହା ମଣିଷ ଦ୍ୱାରା ସୃଷ୍ଟ ସର୍ବୋଚ୍ଚ ଆତ୍ମିକ ମୂଲ୍ୟବୋଧ ଏବଂ ସର୍ବୋଚ୍ଚ ନୈତିକ ଆଦର୍ଶରାଜିକୁ ଅବଜ୍ଞା କରିଥାଏ । ଏ ଧରଣର ଧାରଣାଟା ସଂପୂର୍ଣ୍ଣ ଭୁଲ । ଏହିସବୁ ସାଫଲ୍ୟ ବିରୁଦ୍ଧରେ ଏହା ଯାଇ ନପାରେ କି ସେସବୁଠାରୁ ଏହା ବିଚ୍ଛିନ୍ନ ନୁହେଁ ।

ଦ୍ବନ୍ଦ୍ବମୂଳକ ବସ୍ତୁବାଦର ପ୍ରତିଷ୍ଠାତାମାନେ ଅତୀତର ଅଗ୍ରଗାମୀ ଚିନ୍ତାବିତ୍‌ମାନଙ୍କ ଦ୍ୱାରା ଉତ୍‌ଥାପିତ ପ୍ରଶ୍ନରାଜିର ଉତ୍ତର ପ୍ରଦାନ କରିଥିଲେ । ଲେନିନ୍ ଲେଖିଛନ୍ତି, କାର୍ଲ ମାର୍କସ୍, "ତାଙ୍କ ରଚନାକୁ ପୁଞ୍ଜିବାଦ ଅମଳରେ ଆହୃତ ମାନବ ଜ୍ଞାନର ଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠା କରିଥିଲେ... । ମାନବିକ ଚିନ୍ତନ ଦ୍ୱାରା ସୃଷ୍ଟ ସବୁ କିଛିକୁ ସେ ପୁନର୍ବିଚାର କରିଥିଲେ, ସମାଲୋଚନା କରିଥିଲେ ଏବଂ ଶ୍ରମିକ ଆନ୍ଦୋଳନ ଦ୍ୱାରା ପରୀକ୍ଷା କରି ଦେଖିଥିଲେ ଏବଂ ସେଥିରୁ ସିଦ୍ଧାନ୍ତରାଜି ସୂତ୍ରବଦ୍ଧ କରୁଥିଲେ । ଲୋକେ ଏହିସବୁ ସିଦ୍ଧାନ୍ତରାଜିକୁ ବୁର୍ଜୁଆ ସୀମାବଦ୍ଧତା ଦ୍ୱାରା ଶ୍ୱାସରୁଦ୍ଧ ହୋଇ ବା ବୁର୍ଜୁଆ ଅନ୍ଧବିଶ୍ୱାସ ଦ୍ୱାରା ଆବଦ୍ଧ ହୋଇ ଟାଣି ପାରୁ ନଥିଲେ ।"* ମାର୍କସ୍‌ବାଦର ପ୍ରତ୍ୟକ୍ଷ ତତ୍ତ୍ୱଗତ ଉତ୍ସ

---

* ଭି. ଆଇ. ଲେନିନ୍, "ଯୁବ ଲୀଗ୍‌ର କର୍ତ୍ତବ୍ୟ", *Collected Works*, Vol. 31, ମସ୍କୋ, ୧୯୬୬, ପୃ: ୨୮୬-୨୮୭ । ଏଠାରେ ଏବଂ ଅନ୍ୟତ୍ର ଭି. ଆଇ. ଲେନିନ୍‌ଙ୍କ, *Collected Works*, Progress Publishers, ମସ୍କୋ, ଲେନିନ୍‌ଙ୍କ ଉଦ୍ଧୃତିମାନ ନିଆଯାଇଛି ।

ଥିଲ ଜର୍ମାନ୍ ଚିରାୟତ ଦର୍ଶନ, ଇଂଲିଶ୍ ରାଜନୈତିକ ଅର୍ଥଶାସ୍ତ୍ର ଏବଂ ଫରାସୀ କଳ୍ପନାବିଳାସୀ ସମାଜବାଦ । ମାର୍କସ୍‌ବାଦୀ ଦର୍ଶନ ତା'ର ଭାବାଦର୍ଶଗତ ପୂର୍ବସୂରୀମାନଙ୍କ ସହିତ ଯୋଗସୂତ୍ର ଦୃଷ୍ଟିରୁ ମୂଳତଃ ଯେତିକି ସଂପୃକ୍ତ ସେଇ ଦୃଷ୍ଟିରୁ ସଂକ୍ଷେପରେ ଜର୍ମାନ୍ ଚିରାୟତ ଦର୍ଶନର ମୂଳ ସିଦ୍ଧାନ୍ତଗୁଡ଼ିକ ସଂପର୍କରେ ଆଲୋଚନା କରିବା ।

## ୨ – ମାର୍କସ୍‌ବାଦର ଦାର୍ଶନିକ ପୂର୍ବସୂରୀଗଣ

୧୮ଶ ଏବଂ ୧୯ଶ ଶତାବ୍ଦୀର ପ୍ରଧାନ ଜର୍ମାନ୍ ଦାର୍ଶନିକମାନଙ୍କ ମତବାଦକୁ ସାଧାରଣତଃ ଜର୍ମାନ୍ ଦର୍ଶନର ଇତିହାସରେ ଶାସ୍ତ୍ରୀୟ ବା "ଚିରାୟତ" ବୋଲି କୁହାଯାଇଥାଏ । ଚିରାୟତ ଜର୍ମାନ୍ ଦର୍ଶନର ପ୍ରତିଷ୍ଠାତା ଥିଲେ ଇମାନୁଏଲ କାଣ୍ଟ୍ (୧୭୨୪-୧୮୦୪) ଏବଂ ଏହାକୁ ଆଉରି ବିକଶିତ କରିଥିଲେ ଜୋହନ୍ ଗୋଟ୍‌ଲିୟେବ୍ ଫିଚେ ଏବଂ ଫ୍ରେଡେରିକ୍ ଭିଲହେମ୍ ଜୋସେଫ୍ ଭନ୍ ଷେଲିଂ । ମାର୍କସୀୟ ଦାର୍ଶନିକ ଚିନ୍ତାଧାରା ବିଶେଷ ଭାବେ ପ୍ରଭାବିତ ହୋଇଥିଲ ହେଗେଲ୍ (୧୭୭୦-୧୮୩୧) ଏବଂ ଫଏରବାଖ୍‌ଙ୍କ (୧୮୦୪-୧୮୭୨) ଦର୍ଶନ ଦ୍ୱାରା ।

ଜର୍ଜ ଭିଲହେମ୍ ଫ୍ରେଡେରିକ୍ ହେଗେଲ୍ ଦର୍ଶନର ମୂଳ ପ୍ରଶ୍ନର ଉତ୍ତର ଦେଇଥିଲେ ବସ୍ତୁନିଷ୍ଠ ଭାବବାଦର ଅବସ୍ଥାନରୁ । କିନ୍ତୁ ଅତୀତର ବସ୍ତୁନିଷ୍ଠ ଭାବବାଦୀ (ପ୍ଳେଟୋ)ଙ୍କ ଭଳି ନକରି, ସେ ବିକଶିତ କରିଥିଲେ ଦ୍ୱନ୍ଦ୍ୱମୂଳକ ଭାବବାଦର ଏକ ତତ୍ତ୍ୱ । ତାଙ୍କ ମତରେ, ପ୍ରକୃତ ବାସ୍ତବତା ଏବଂ ଯାହା କିଛି ପ୍ରତିଷ୍ଠିତ ସେସବୁର ଭିତ୍ତି ହେଉଛି ଏକ ଅବୈକ୍ତିକ ମାନସ ବା କାରଣ, ଯାହାକୁ ସେ ଅଖଣ୍ଡ ଆଇଡିଆ ବା ପରମ ବ୍ରହ୍ମ ବୋଲି ଆଖ୍ୟାୟିତ କରିଥିଲେ । ସେ ବିଶ୍ୱ ଚିନ୍ତା ଚିରନ୍ତନ ଭାବେ ଅବସ୍ଥିତ ଏବଂ ନିଜ ମଧ୍ୟରେ ସ୍ୱବ୍ୟକ୍ତ, ପ୍ରକୃତି ତଥା ସମାଜର ସମସ୍ତ କିଛି ସମ୍ଭାବ୍ୟ ପ୍ରପଞ୍ଚ ଦ୍ୱାରା ପରିପୂର୍ଣ୍ଣ । ସେ ଆଇଡିଆ ନିଜକୁ ବୁଝିବାକୁ ସକ୍ଷମ ଏବଂ ତେଣୁ ସ୍ୱବିକାଶମାନ । ଏହି ସ୍ୱବିକାଶ ମଧ୍ୟରେ ଏହା ବିଭିନ୍ନ ପର୍ଯ୍ୟାୟ ନେଇ ଗତି କରେ ଏବଂ ତାହା ତା'ର ଆଭ୍ୟନ୍ତରୀଣ ଆଧେୟକୁ ଆଉରି ପରିପୂର୍ଣ୍ଣ ଭାବେ ପ୍ରକାଶ କରେ । ହେଗେଲ୍ ଲେଖିଛନ୍ତି, "ସତ୍ତା ହେଉଛି ଚିନ୍ତନ" ।* "ଏହା (ଚିନ୍ତନ-ଅନୁବାଦକ) ଏକ ଗତିହୀନ କର୍ତ୍ତା ନୁହେଁ, ଯିଏକି ଅନମନୀୟ ଭାବେ ଆକସ୍ମିକତାରାଜିକୁ କାର୍ଯ୍ୟକାରୀ ନକରି ଅବଧାରଣାକୁ କାର୍ଯ୍ୟକାରୀ କରେ, ଯିଏକି ନିଜକୁ ଗତିଶୀଳ କରେ ଏବଂ ତା'ର ସଂଜ୍ଞାକୁ ନିଜ ମଧ୍ୟରେ ଗ୍ରହଣ କରେ ।"** ବିଶ୍ୱ କାରଣ, ପ୍ରଥମତଃ, ସମୟ ଆଉ ସ୍ଥାନ ବାହାରେ ବିଶୁଦ୍ଧ ଚିନ୍ତା ଜଗତରେ ନିଜକୁ

---

*G.W.F. Hegel, "*Phänomenologie des Geistes*", Akademie Verlag, Berlin, 1971, p.45.

** ଉକ୍ତ ପୁସ୍ତକ, ପୃ : ୪୯ ।

# ହେଗେଲୀୟ ଦର୍ଶନର ଫର୍ଦ୍ଦ

"ସମଗ୍ର ବ୍ୟବସ୍ଥାର ଗଢ଼ଣ ପାଇଁ" ନେତୀକରଣର ନେତୀକରଣ ନିୟମଟି "ମୌଳିକ ନିୟମ ରୂପେ ଦେଖା ଦେଉଛି ।"

— ଏଙ୍ଗେଲସ୍

- **ନ୍ୟାୟ ବିଜ୍ଞାନ** — ଅନପେକ୍ଷ ଆଇଡ଼ିଆ : ଥିସିସ୍
  - ସତ୍ତା
    - ଗୁଣ
    - ପରିମାଣ
    - ମାପ
  - ସାରସତ୍ତା
    - ନିଜକୁ ନିଜେ ସାରସତ୍ତା
      - ଏକତ୍ୱ
      - ପାର୍ଥକ୍ୟ
      - ଦ୍ୱନ୍ଦ୍ୱ
    - ପ୍ରପଞ୍ଚ
    - ବାସ୍ତବତା
  - ଅବଧାରଣା
- **ପ୍ରକୃତିର ଦର୍ଶନ** — ପ୍ରକୃତି: ବିରୁଦ୍ଧାଭାସ
  - ଯନ୍ତ୍ରବିଦ୍ୟା
  - ବସ୍ତୁବିଜ୍ଞାନ
    - ଥିସିସ୍
    - ବିରୁଦ୍ଧାଭାସ
    - ସମନ୍ୱୟତ୍ୱ
  - ଜୈବିକ ବସ୍ତୁବିଜ୍ଞାନ
- **ଆତ୍ମଦର୍ଶନ** — ଅନପେକ୍ଷ ଆତ୍ମା : ସମନ୍ୱୟତ୍ୱ
  - ମନୋଗତ ଆତ୍ମା
  - ବସ୍ତୁଗତ ଆତ୍ମା
  - ଅନପେକ୍ଷ ଆତ୍ମା
    - କଳା
    - ଧର୍ମ
    - ଦର୍ଶନ

"ତାଙ୍କ ମତରେ, ଦି ଆଇଡ଼ିଆର 'ବିଚ୍ଛିନ୍ନତା' ହିସାବରେ ପ୍ରକୃତି ଠିକ୍ ସମୟରେ ବିକାଶ ଲାଭ କରିବାକୁ ଅକ୍ଷମ — କେବଳ ସ୍ଥାନ ମଧ୍ୟରେ ତା'ର ବିବିଧତ୍ୱକୁ ସଂପ୍ରସାରିତ କରିବାକୁ ସକ୍ଷମ... । ସ୍ଥାନ ମଧ୍ୟରେ, କିନ୍ତୁ ସମୟର ବାହାରେ ବିକାଶର ଏତାଦୃଶ ଉଦ୍‌ଭଟତା... ହେଗେଲ୍ ଏପରି ଏକ ସମୟରେ ପ୍ରକୃତି ଉପରେ ଚପାଇ ଦେଇଥିଲେ ଯେତେବେଳେ ଭୂବିଦ୍ୟା, ଭ୍ରୂଣତତ୍ତ୍ୱ, ପ୍ରାଣୀ ତଥା ଉଦ୍‌ଭିଦ୍‌ମାନଙ୍କର ଶରୀରବିଦ୍ୟା ଏବଂ ଜୈବ ରସାୟନ ବିଦ୍ୟା ଗଢ଼ି ଉଠୁଥିଲା..."

— ଏଙ୍ଗେଲସ୍

ପ୍ରକାଶ କରି ଥାଏ ଏବଂ "ଅନ୍ୟ ସତ୍ତାକୁ", ଅର୍ଥାତ୍, ପ୍ରକୃତି ମଧ୍ୟକୁ ଗ୍ରହିଯାଏ (ଅଥବା, ସହଜ ଭାବେ କହିଲେ, ତାକୁ ସୃଷ୍ଟି କରେ) । ଏହି ଭାବେ, ହେଗେଲ୍‌ଙ୍କ ଦର୍ଶନରେ ବସ୍ତୁମୟ ଜଗତ ହେଉଛି ଗୌଣ ଏବଂ ଆଇଡିଆର ପ୍ରକୃତ ସତ୍ତାଠାରୁ ଭିନ୍ନ । ଦି ଆଇଡିଆ ପୁଣି ତା'ର ସେହି ନିଜସ୍ୱ ବିଶୁଦ୍ଧ ଚିନ୍ତାଜଗତକୁ ଫେରି ଆସେ ସେତିକିବେଳେ, ଯେତେବେଳେ ଦର୍ଶନ ନିଜକୁ ରାଷ୍ଟ୍ର, କଳା ଏବଂ ଧର୍ମ ରୂପରେ ପ୍ରକଟିତ କରିବାର ସ୍ତରରେ ପହଞ୍ଚି ଯାଏ ।

ହେଗେଲ୍‌ଙ୍କ ଦର୍ଶନରେ କେତେକ ଯୁକ୍ତିସମ୍ମତ, ମୂଲ୍ୟବାନ ବାଣୀ ନିହିତ ଥିଲା । ସେ ତାଙ୍କ ସମୟରେ ବିଜ୍ଞାନ ଏବଂ ଦର୍ଶନରେ ପ୍ରାଧାନ୍ୟ ଲାଭ କରିଥିବା ଜଗତର ଅଧିଭୌତିକ ମତର ବିପରୀତରେ ତାଙ୍କ ଦ୍ୱାରା ଭାବବାଦୀ ଭିତ୍ତିରେ ପ୍ରତିଷ୍ଠିତ ଦ୍ୱନ୍ଦ୍ୱମୂଳକ ପଦ୍ଧତିକୁ ପ୍ରତିଷ୍ଠା କରିଥିଲେ । ଏହି ପଦ୍ଧତି ଅନୁଯାୟୀ ବାସ୍ତବତାର ବ୍ୟାଖ୍ୟା ହୋଇଥିଲା ଆନ୍ତଃସଂପର୍କିତ ଏବଂ ଆଭ୍ୟନ୍ତରୀଣ ଭାବେ ବିପରୀତ ପ୍ରପଞ୍ଚରାଜି ହିସାବରେ । ସେସବୁ, ଏହି ଭାବେ, ଗୁଣଗତ ପରିବର୍ତ୍ତନ ଏବଂ ନେତିର ସର୍ତ୍ତାନୁଯାୟୀ ହୋଇଥାଏ । ହେଗେଲ୍‌ଙ୍କ ମତରେ, ବାସ୍ତବତା (ମନେ ରଖିବା ଦରକାର ଯେ, ବାସ୍ତବତା ବୋଇଲେ ସେ ସର୍ବଶେଷରେ ବୁଝିଥିଲେ, ଜଗତ କାରଣର ସତ୍ତାର ଆବଶ୍ୟକୀୟ ରୂପ) ବିକାଶ ଲାଭ କରିଛି ବୈପରିତ୍ୟସମୂହର ପାରସ୍ପରିକ ଅନୁପ୍ରବେଶ, ପରିମାଣରୁ ଗୁଣକୁ ପରିବର୍ତ୍ତନ ଏବଂ ଦ୍ୱନ୍ଦ୍ୱମୂଳକ ନିୟମ ଅନୁଯାୟୀ ନେତିର ନେତୀକରଣ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ତତ୍ତ୍ୱକୁ ବିକାଶ କରିବା ଦିଗରେ ହେଗେଲ୍‌ଙ୍କର ଅନ୍ୟାନ୍ୟ ଚିନ୍ତାରାଜି ସମେତ ଏହିସବୁକୁ ବ୍ୟବହାର କରାଯାଇଥିଲା ।

ତଥାପି, ମୋଟାମୋଟି ଭାବେ କହିବାକୁ ଗଲେ, ହେଗେଲ୍ ଭାବବାଦୀ ଥିବାରୁ, ଦ୍ୱନ୍ଦ୍ୱବାଦର ପ୍ରକୃତ ବୈଜ୍ଞାନିକ ଅବଧାରଣାରେ ଉପନୀତ ହୋଇ ପାରି ନଥିଲେ । ବ୍ୟବସ୍ଥା ଏବଂ ପଦ୍ଧତି ମଧ୍ୟରେ ଗଭୀର ଭାବେ ପ୍ରତିଷ୍ଠିତ ଏକ ଆଭ୍ୟନ୍ତରୀଣ ବିରୋଧର ଦୋଷରେ ତାଙ୍କ ଦର୍ଶନ ପ୍ରପୀଡ଼ିତ ହୋଇଥିଲା । ସେ ଚେଷ୍ଟା କରିଥିଲେ ପ୍ରକୃତି, ସମାଜ ତଥା ଚେତନା ସଂପର୍କରେ ପ୍ରତିଷ୍ଠିତ ସମସ୍ତ ଜ୍ଞାନକୁ ତାଙ୍କ ପଦ୍ଧତି ମଧ୍ୟକୁ ଟାଣି ଆଣିବା ପାଇଁ, ଯାହାକୁ ସେ ଦାବୀ କରୁଥିଲେ ଅଖଣ୍ଡ ଏବଂ ପରମ ସତ୍ୟରେ ପହଞ୍ଚିଛନ୍ତି ବୋଲି । ତେଣୁ କରି ତାଙ୍କର ଦାର୍ଶନିକ ପଦ୍ଧତି ଥିଲା ତା'ର ଭିତ୍ତି ଦୃଷ୍ଟିରୁ ଅଧିଭୌତିକ ବା ଅଧିବିଦ୍ୟାଗତ । ଅନ୍ୟ ଦିଗରେ, ତାଙ୍କର ପଦ୍ଧତି, ଅର୍ଥାତ୍, ଦି ଆଇଡିଆ ବା ପରମ ବ୍ରହ୍ମ ନିଜକୁ ଯେଉଁ ଭାବେ ବିକଶିତ କରେ, ସେଟା ଥିଲା ଦ୍ୱନ୍ଦ୍ୱମୂଳକ । ଦ୍ୱନ୍ଦ୍ୱବାଦ ବୋଇଲେ, ଆମେ ବୁଝିଥାଏ, ଏହା ଅନ୍ତିମ ପୂର୍ଣ୍ଣତାର ଅବସ୍ଥାକୁ ଅସ୍ୱୀକାର କରେ ଏବଂ ଦାବୀ କରେ ପ୍ରତ୍ୟେକ ଜିନିଷକୁ ସୀମାହୀନ ବିକାଶ ରୂପେ ଦେଖିବାକୁ । ହେଗେଲ୍, ଅବଶ୍ୟ, ତାଙ୍କ ଦ୍ୱନ୍ଦ୍ୱମୂଳକ ପଦ୍ଧତିର ଅସ୍ତିବାଚକ ଧକ୍କାକୁ ତାଙ୍କ ବସ୍ତୁନିଷ୍ଠ ଭାବବାଦର ରକ୍ଷଣଶୀଳ ପଦ୍ଧତିର ବିନିମୟରେ ପରିତ୍ୟାଗ କରିଥିଲେ । ତାଙ୍କ ମତରେ, ସର୍ବତ୍ର ଏବଂ ସର୍ବଦା ବିକାଶ ଘଟେ ନାହିଁ । ପ୍ରକୃତିରେ କୌଣସି ବିକାଶ ଘଟେ ନାହିଁ, ବିକାଶ କେବଳ

ଘଟିଥାଏ ଅଖଣ୍ଡ ଆଇଡିଆ ମଧ୍ୟରେ, ଯିଏକି ହେଉଛି ତା'ର ଭିତ୍ତି । ଅଖଣ୍ଡ ଆଇଡିଆ ମଧ୍ୟ ସ୍ୱୟଂ, ବିକାଶର ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ପହଞ୍ଚିଲା ପରେ ଆଉ ଉପରକୁ ଅବରୋହଣ କରେ ନାହିଁ, ପୁଣି ପଛକୁ ଫେରି ଆସେ । ଏଥିରୁ ଜଣାଯାଏ, ହେଗେଲ୍‌ଙ୍କ ଦ୍ୱନ୍ଦ୍ୱବାଦ ଥିଲା ସଂପୂର୍ଣ୍ଣ ପଶ୍ଚାଦ୍‌ମୁଖୀ । ହେଗେଲ୍ ବିଶ୍ୱାସ କରୁଥିଲେ, ସମାଜ ଇତିହାସର ମୁକ୍ତି ମିଳିଛି ପ୍ରୁସୀୟ ରାଜତନ୍ତ୍ରର ସାମ୍ବିଧାନିକ ଶାସନ ପଦ୍ଧତିରେ ଏବଂ ଦର୍ଶନର ଇତିହାସ ତା'ର ଶେଷ ବିକାଶ ବିନ୍ଦୁରେ ପହଞ୍ଚିଛି ତାଙ୍କର ଭାବବାଦୀ ପଦ୍ଧତି ମଧ୍ୟରେ । ହେଗେଲ୍ ବିକାଶକୁ ରହସ୍ୟମୟ କରି ଦେଇଥିଲେ ତାକୁ ଏକାନ୍ତ ଭାବେ ଅବଧାରଣାର ଦ୍ୱନ୍ଦ୍ୱବାଦ ମଧ୍ୟକୁ ଟାଣି ଆଣି । ତାଙ୍କର ଦ୍ୱନ୍ଦ୍ୱବାଦ ଥିଲା, ତାଙ୍କର ସମଗ୍ର ମତବାଦ ଭଳି ଭାବବାଦୀ । ମାର୍କସ୍ ଲେଖିଛନ୍ତି, "ହେଗେଲ୍ ଦ୍ୱନ୍ଦ୍ୱବାଦକୁ ତା'ର ମଥା ଉପରେ ଦଣ୍ଡାୟମାନ କରାଇଛନ୍ତି, ତାକୁ ଆଉ ଥରେ ଠିକ୍ ଭାବେ ଦଣ୍ଡାୟମାନ କରେଇ ହେବ, ଯଦି ତା'ର ସେ ରହସ୍ୟମୟ ଖୋଳପା ମଧ୍ୟରୁ ଯୁକ୍ତିସଙ୍ଗତ ଅନ୍ତଃବୀଜଟିକୁ ଆବିଷ୍କାର କରାଯାଏ ।"*

ହେଗେଲୀୟ ଦ୍ୱନ୍ଦ୍ୱବାଦୀ ତତ୍ତ୍ୱର ବସ୍ତୁବାଦୀ ପୁନଃ ରୂପକରଣ ଏବଂ ନୂତନ ଦର୍ଶନର ସୃଷ୍ଟି କରିବା ବେଳେ ମାର୍କସ୍‌ବାଦର ପ୍ରତିଷ୍ଠାତାମାନେ ଫଏରବାଖ୍‌ଙ୍କ ବସ୍ତୁବାଦୀ ଶିକ୍ଷାର ଭିତ୍ତି ଉପରେ ଛିଡ଼ା ହୋଇଥିଲେ । ହେଗେଲ୍‌ଙ୍କ ଦର୍ଶନ ପ୍ରୁସୀୟ ସାମନ୍ତବାଦୀ ସମ୍ଭ୍ରାନ୍ତମାନଙ୍କ ସହିତ ଜର୍ମାନ୍ ବୁର୍ଜୁଆମାନଙ୍କର ରାଜନୈତିକ ଆପୋଷକୁ ପ୍ରକାଶ କରୁଥିଲା ବେଳେ ଫଏରବାଖ୍ ଥିଲେ ୧୮୩୦ ଏବଂ ୧୮୪୦ ଦଶକର—ଜର୍ମାନୀରେ ୧୮୪୮ର ନବଜାତ ବୁର୍ଜୁଆ ବିପ୍ଳବର କାଳ—ବୁର୍ଜୁଆ ଶ୍ରେଣୀର ବିପ୍ଳବୀ ଅଂଶର ଭାବାଦର୍ଶବାଦୀ । ସେ ଦୃଢ଼ତାର ସହିତ ହେଗେଲ୍‌ଙ୍କ ଭାବବାଦ ଏବଂ ସାମଗ୍ରିକ ଭାବେ ଭାବବାଦୀ ଦର୍ଶନର ବିରୋଧିତା କରିଥିଲେ । ଧର୍ମତତ୍ତ୍ୱ ସହିତ ହେଗେଲ୍‌ଙ୍କ ଦର୍ଶନର ସଂପର୍କ ପ୍ରଦର୍ଶନ କରି ସେ ବିଶ୍ୱ କାରଣର ଭାବବାଦୀ ମତବାଦକୁ ବର୍ଜନ କରିଥିଲେ ଏବଂ ଯୁକ୍ତି କରିଥିଲେ, ପ୍ରକୃତି ହେଉଛି ପ୍ରାଥମିକ ଏବଂ ଚେତନା ହେଉଛି ସଉାରୁ ଜାତ । ଫଏରବାଖ୍ ଲେଖିଥିଲେ, "ଆତ୍ମାକୁ ଆରମ୍ଭ ବୋଲି, ପ୍ରାଥମିକ ଉତ୍ସ ବୋଲି କହିଲେ ପ୍ରାକୃତିକ ନିୟମକୁ ଭୁଲ ବ୍ୟାଖ୍ୟା କରାଯିବ ।"** ସେ ଦୃଢ଼ ଭାବେ ବିଶ୍ୱାସ କରୁଥିଲେ, ଦର୍ଶନର ଲକ୍ଷ୍ୟ ନୁହେଁ, ଅଖଣ୍ଡ ଆଇଡିଆ ଭଳି ଫମ୍ପା ବିମୂର୍ତ୍ତରାଜିକୁ ବିଶ୍ଳେଷଣ କରିବା, କାରଣ ମସ୍ତିଷ୍କଠାରୁ ଚିନ୍ତନକୁ ପୃଥକ୍ କରିବା, ଚିନ୍ତନକୁ ସ୍ୱାଧୀନ ବୋଲି ଧାରଣା କରିବାଟା

---

* କାର୍ଲ ମାର୍କସ୍, "କ୍ୟାପିଟାଲ", ୧ମ ଖଣ୍ଡ, ପ୍ରଗତି ପ୍ରକାଶନ, ମସ୍କୋ, ୧୯୭୭ ପୃ: ୨୯ ।

** ଲ୍ୟୁଦ୍‌ଭିଗ୍ ଫଏରବାଖ୍, "*Vorlesungen über das Wesen der Religion*", *Gessammelte Werke*, Vol. 6, Akademie Verlag, Berlin, 1967, p. 175.

ଏକେବାରେ ଭୁଲ : ପ୍ରକୃତି ଏବଂ ମଣିଷ ଯେପରି , ସେଇ ଭାବେ ସେସବୁକୁ ଅନୁଧ୍ୟାନ କରିବା ଦରକାର । ପ୍ରକୃତି ନିଜେ ଏବଂ ନିଜ ମଧ୍ୟରେ ଅବସ୍ଥିତ , ତାକୁ ସେଇ ଭାବେ ବିଶ୍ଳେଷଣ କରିବା ଦରକାର , ମଣିଷ ହେଉଛି ତା'ର ଅଂଶବିଶେଷ । ପ୍ରକୃତି ସ୍ଥାନ ଏବଂ କାଳ ମଧ୍ୟରେ ବାସ କରେ । ଏହା ଜ୍ଞେୟ , ମଣିଷର ଜ୍ଞାନେନ୍ଦ୍ରିୟ ଏବଂ ଚିନ୍ତନ ମାଧ୍ୟମରେ ବାହ୍ୟ ଜଗତର ପ୍ରତିଫଳନର ଫଳ ହେଉଛି ଜ୍ଞାନ , ଏହା ବିମୂର୍ତ୍ତ ପ୍ରବର୍ଗରାଜିର ସଂପୂର୍ଣ୍ଣ ଯୁକ୍ତିସମ୍ମତ ବିକାଶ ପ୍ରକ୍ରିୟା ନୁହେଁ । ହେଗେଲ୍‌ଙ୍କ ସହିତ ତାଙ୍କର ତର୍କ ଯୁଦ୍ଧରେ ଫଏରବାଖ୍ କହିଥିଲେ , "ପୁରାତନ ଦର୍ଶନ ମତରେ କେବଳ ଯୁକ୍ତିଯୁକ୍ତ ହିଁ ହେଉଛି ସତ୍ୟ ଏବଂ ବାସ୍ତବ , କିନ୍ତୁ ନୂତନ ଦର୍ଶନ ମତରେ , କେବଳ ମାନବତା ହିଁ ହେଉଛି ସତ୍ୟ ଏବଂ ବାସ୍ତବ ; ବାସ୍ତବରେ , ମାନବତା ହିଁ କେବଳ ଯୁକ୍ତିଯୁକ୍ତ ହୋଇ ପାରେ ; ମଣିଷ ହିଁ ହେଉଛି ଯୁକ୍ତିର ମାନଦଣ୍ଡ ।"*

ଏହି ଭାବେ , ଫଏରବାଖ୍ ତାଙ୍କ ବସ୍ତୁବାଦୀ ଶିକ୍ଷାର ଯାତ୍ରାବିନ୍ଦୁ ହିସାବରେ ଜୀବନ୍ତ , ଅନୁଭୂତିଶୀଳ ମଣିଷକୁ ଗ୍ରହଣ କରିଥିଲେ ଏବଂ ତଦ୍ୱାରା ଦର୍ଶନ ପ୍ରତି ତଥାକଥିତ ନୃତାତ୍ତ୍ୱିକ ଆଭିମୁଖ୍ୟର ବିକାଶ ସାଧନ କରିଥିଲେ । ଏହି ନୃତାତ୍ତ୍ୱିକ ଅବସ୍ଥାନରୁ ସେ ଏକମାତ୍ର ଚିନ୍ତନଶୀଳ ପ୍ରାଣୀ ହିସାବରେ କର୍ତ୍ତାର ଭାବବାଦୀ ଅବଧାରଣାକୁ ସମାଲୋଚନା କରିଥିଲେ ଏବଂ ଆତ୍ମାର ତଥା ଶରୀର ଦ୍ୱୈତ ଧର୍ମୀୟ ତତ୍ତ୍ୱକୁ କପୋଳକଳ୍ପିତ ଏବଂ ଭ୍ରାନ୍ତ ବୋଲି ଦର୍ଶାଇ ଥିଲେ । ପ୍ରାକୃତିକ ଦର୍ଶନର ଜ୍ଞାନକୁ ଭିତ୍ତି କରି ଫଏରବାଖ୍ ବସ୍ତୁବାଦକୁ ପୁନଃସ୍ଥାପିତ କରିଥିଲେ , ଯିଏକି ୧୯ଶ ଶତାବ୍ଦୀର ପ୍ରଥମ ଦଶକଗୁଡ଼ିକରେ ହେଗେଲୀୟ ଭାବବାଦ ଦ୍ୱାରା ସ୍ଥାନଚ୍ୟୁତ ହୋଇଥିଲା । ଏହା ଥିଲା ଫଏରବାଖ୍‌ଙ୍କର ବସ୍ତୁବାଦୀ ବିଶ୍ୱଦୃଷ୍ଟିକୋଣ ପ୍ରତି ବିରାଟ ଅବଦାନ ।

ସାର୍ବିକ ଭାବେ , ଅବଶ୍ୟ , ଫଏରବାଖ୍‌ଙ୍କ ଦର୍ଶନ ଥିଲା ଐତିହାସିକ ଦୃଷ୍ଟିରୁ ସୀମିତ ଏବଂ ୧୮ଶ ଶତାବ୍ଦୀର ବସ୍ତୁବାଦରେ ପୂର୍ବରୁ ନିହିତ ସମସ୍ତ ପ୍ରକାରର ଦୁର୍ବଳତା ଦ୍ୱାରା ପ୍ରପୀଡ଼ିତ ତାଙ୍କର ସେ ନୃତତ୍ତ୍ୱଗତ ନୀତି ମଧ୍ୟ ଥିଲା ଅଧିଭୌତିକ । କାରଣ , ଏହା ମଣିଷକୁ ସାମାଜିକ ଜୀବ ହିସାବରେ ବିଚାର ନକରି ବିଚାର କରୁଥିଲା ଶରୀରଧାରୀ ଏବଂ ଜୀବନଧାରୀ ପ୍ରାଣୀ ହିସାବରେ । ବାସ୍ତବ ମଣିଷକୁ , ଅବଶ୍ୟ , କେବେ ସମାଜ ଏବଂ ସାମାଜିକ ସଂପର୍କର ବାହାରେ ବିଚାର କରାଯାଇ ପାରେ ନାହିଁ । ନୃତାତ୍ତ୍ୱିକ ଅବସ୍ଥାନରୁ ସମାଜର ଇତିହାସର ଏକ ସଠିକ୍ ଅବଧାରଣାରେ ପହଞ୍ଚିବା ଅସମ୍ଭବ , ଏବଂ ଫଏରବାଖ୍ ଥିଲେ ଏ କ୍ଷେତ୍ରରେ ଏକ ଭାବବାଦୀ । ସେ ବିଶ୍ୱାସ କରୁଥିଲେ , ମାନବଜାତିର ଇତିହାସରେ ବିଭିନ୍ନ ଯୁଗ ପରସ୍ପରଠାରୁ ପୃଥକ୍ ହୋଇଥାଏ ଧର୍ମର ପରିବର୍ତ୍ତନ ଅନୁସାରେ ।

---

* ଲ୍ୟୁଦ୍‌ଭିଗ୍ ଫଏରବାଖ୍ , "*Philosophische Kritiken und Grundsätze*", *Sämmtliche Werke*, Vol. 2, Druck und Verlag von Otto Wigand, Leipzig, 1846, p. 339.

ପୂର୍ବବର୍ତ୍ତୀ ସମସ୍ତ ଧର୍ମକୁ ବର୍ଜନ କରି ନୂଆ ଏକ "ଈଶ୍ୱରବିହୀନ" ଧର୍ମ, ଏକ ପ୍ରେମ ଧର୍ମ ସ୍ଥାପନ କରିବାର ଆବଶ୍ୟକତା କଥା ଫଏରବାଖ୍ ମନେ କରୁଥିଲେ । ସେ ଲେଖିଥିଲେ, "ପ୍ରେମ ମଧ୍ୟରେ ହିଁ ଈଶ୍ୱର... ହେଉଛନ୍ତି ସତ୍ୟ ଏବଂ ବାସ୍ତବ",*... "ଯେଉଁଠି କେବଳ ଦୁଇଜଣ ଲୋକ, ସ୍ୱାମୀ ଏବଂ ସ୍ତ୍ରୀ ଅଛନ୍ତି, ସେଠାରେ ଧର୍ମ ରହିଛି ।"** ଯୌନ ପ୍ରେମ ଏବଂ ଯୌନ ସଂପର୍କକୁ ସେ ବାସ୍ତବରେ "ଧର୍ମ"ର ସ୍ତରକୁ ଉନ୍ନୀତ କରିଥିଲେ । ଏହିସବୁ ସଂପର୍କକୁ ସେସବୁର ପ୍ରାକୃତିକ ସାମାଜିକ ଅର୍ଥରେ ବିଚାର କରିବା ପରିବର୍ତ୍ତେ ସେ ଦାବୀ କରିଥିଲେ, ପ୍ରେମ ଆଉ ବନ୍ଧୁତାର ଏହିସବୁ ବିଶୁଦ୍ଧ ମାନବିକ ସଂପର୍କକୁ ନୂଆ, ପ୍ରକୃତ ଧର୍ମ ବୋଲି ଗ୍ରହଣ କରାଯାଉ । ଏହା, ଅବଶ୍ୟ, ଥିଲା ଧର୍ମୀୟ ଭାବବାଦୀ ଦୃଷ୍ଟିକୋଣ ପ୍ରତି ଏକ ରିହାତି ଦାନ ସ୍ୱରୂପ । ଫଏରବାଖ୍ଙ୍କ ମତବାଦରେ ଆଉ ଏକ ମୌଳିକ ଦୁର୍ବଳତା ଥିଲା ହେଗେଲ୍ଙ୍କ ଭାବବାଦକୁ ସମାଲୋଚନା କରିବାକୁ ଯାଇ ହେଗେଲ୍ଙ୍କ ଦ୍ୱନ୍ଦ୍ୱବାଦର ଅସ୍ତିବାଚକ ଦିଗଟିକୁ ସେ ଅବଜ୍ଞା କରିଥିଲେ । ଫଏରବାଖ୍ ସଠିକ୍ ଭାବେ ପ୍ରକୃତିର ପ୍ରାଥମିକତା ଉପରେ ଜୋର ଦେଇଥିଲେ, କିନ୍ତୁ ସେ ଅକ୍ଷମ ଥିଲେ ତା'ର ବସ୍ତୁନିଷ୍ଠ ଦ୍ୱନ୍ଦ୍ୱବାଦକୁ ହୃଦୟଙ୍ଗମ କରିବାକୁ ।

ହେଗେଲ୍ ଏବଂ ଫଏରବାଖ୍ଙ୍କ ଦାର୍ଶନିକ ମତାବଳୀର ଏହି ସଂକ୍ଷିପ୍ତ ପର୍ଯ୍ୟବେକ୍ଷଣ ଦ୍ୱାରା ଜଣେ ବିଚାର କରି ପାରିବ, ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ସୃଷ୍ଟି କ୍ଷେତ୍ରରେ ଭୂମିକା ନେଇଥିବା ପ୍ରତ୍ୟକ୍ଷ ତତ୍ତ୍ୱଗତ ମୂଳ ଉତ୍ସଗୁଡ଼ିକ ସଂପର୍କରେ । ଏ କଥା ନିଶ୍ଚିତ ଯେ, ମାର୍କସ୍‌ବାଦର ପ୍ରତିଷ୍ଠାତାମାନେ ଏହିସବୁ ଦାର୍ଶନିକମାନଙ୍କର କେତେକ ଯୁକ୍ତିସଂଗତ ଚିନ୍ତାକୁ କେବଳ ସୃଜନାତ୍ମକ ଭାବେ ବିଶ୍ଳେଷଣ କରିଥିଲେ । ସେମାନଙ୍କ ପୂର୍ବସୂରୀମାନଙ୍କ ଦ୍ୱାରା ସୃଷ୍ଟ ସବୁ କିଛି ଉପରେ ସେମାନେ ନିର୍ଭର କରିଥିଲେ । ତା'ଛଡ଼ା ସେମାନେ ପ୍ରାକୃତିକ ବିଜ୍ଞାନର ସାଫଲ୍ୟର ତତ୍ତ୍ୱଗତ ସାମାନ୍ୟୀକରଣ କରିଥିଲେ । ରାଜନୈତିକ ଅର୍ଥଶାସ୍ତ୍ର ତଥା ଇତିହାସର ବିଷୟବସ୍ତୁକୁ ସେମାନେ ଉପଯୋଗ କରିଥିଲେ ଏବଂ କଳ୍ପନାବିଳାସୀ ସମାଜବାଦୀ ଚିନ୍ତାରାଜିର ଏକ ସମାଲୋଚନାମୂଳକ ମୂଲ୍ୟାଙ୍କନ କରିଥିଲେ । ମାର୍କସ୍ ଏବଂ ଏଙ୍ଗେଲସ୍ଙ୍କ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ମତାବଳୀ ଗଠନରେ ବିରାଟ ଗୁରୁତ୍ୱ ବହନ କରିଥିଲା ସେମାନଙ୍କ କୃତ ଶୋଷକମାନଙ୍କ ବିରୁଦ୍ଧରେ ଶ୍ରମଜୀବୀ ଜନସାଧାରଣଙ୍କ ସଂଗ୍ରାମର ଅନୁଶୀଳନ, ଏବଂ ସର୍ବହରାର ନେତା ହିସାବରେ ଶ୍ରେଣୀ ସଂଗ୍ରାମରେ ସେମାନଙ୍କ ଅଂଶଗ୍ରହଣ । ଏହି ସମସ୍ତ ମିଶି ବସ୍ତୁବାଦର ସର୍ବୋଚ୍ଚ ରୂପର, ଦର୍ଶନରେ ପ୍ରକୃତ ବିପ୍ଳବର ଅଭ୍ୟୁଦୟକୁ ପୂର୍ବନିର୍ଦ୍ଧାରିତ କରିଥିଲା ।

---

* ଉପରୋକ୍ତ ପୁସ୍ତକ, ପୃ: ୩୨୩ ।

** ଲୁଡ୍‌ୱିଗ୍ ଫଏରବାଖ୍, *"Uber das Wesen des Christentums"*, in Beziehung auf den Einzigen und sein Eigentum, Kleinere Schriften, Vol. II, Akademie Verlag, Berlin, 1970, p. 436.

# ୩ – ଦର୍ଶନରେ ବିପ୍ଳବ

ମାର୍କସ୍ ଏବଂ ଏଙ୍ଗେଲସ୍ ତାଙ୍କ ସାରା ଜୀବନ ଧରି ଯେଉଁ ମାର୍କସ୍‌ବାଦୀ ଦର୍ଶନ ସୃଷ୍ଟି କରିଥିଲେ, ତାହା ପ୍ରଧାନତଃ ପ୍ରାଞ୍ଜଳ ଭାବେ ବ୍ୟାଖ୍ୟାୟିତ ହୋଇଛି ସେମାନଙ୍କର ଏହିସବୁ ଯୁଗ୍ମ ରଚନାରେ: "ପବିତ୍ର ପରିବାର" (୧୮୪୫), "ଜର୍ମାନ୍ ଭାବାଦର୍ଶ" (୧୮୪୫-୧୮୪୬), "କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର" (୧୮୪୮) ମାର୍କସ୍‌ଙ୍କ "ଫଏରବାଖ୍‌ଙ୍କ ଉପରେ ସନ୍ଦର୍ଭରାଜି" (୧୮୪୫), "ଦର୍ଶନର ଦାରିଦ୍ର୍ୟ" (୧୮୪୭), "କ୍ୟାପିଟାଲ" (୧୮୬୭), "ଗୋଥା କର୍ମସୂଚୀର ସମାଲୋଚନା" (୧୮୭୫), ଏଙ୍ଗେଲସ୍‌ଙ୍କ "ଆଣ୍ଟି-ଡ୍ୟୁହରିଂ" (୧୮୭୭-୧୮୭୮), "ଡାଇଲେକ୍‌ଟିକସ୍ ଅଫ୍ ନେଚର" (୧୮୭୩-୧୮୮୬), "ଲ୍ୟୁଦ୍‌ଭିଗ୍ ଫଏରବାଖ୍ ଓ ଚିରାୟତ ଜର୍ମାନ୍ ଦର୍ଶନର ଅବସାନ" (୧୮୮୮), "ପରିବାର, ବ୍ୟକ୍ତିଗତ ସଂପତ୍ତି ଏବଂ ରାଷ୍ଟ୍ର" (୧୮୮୪) ଏବଂ ଅନ୍ୟାନ୍ୟ ରଚନା।

ଦର୍ଶନରେ ମାର୍କସ୍‌ବାଦୀ ବିପ୍ଳବ ବୋଇଲେ କ'ଣ ବୁଝାଏ? ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଆମେ ପୁଣି ଥରେ ଗୁରୁତ୍ୱ ଆରୋପ କରି କହିବାକୁ ଚାହୁଁ ଯେ, ଜଗତ ସଂପର୍କରେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦୃଷ୍ଟିକୋଣ ପୂର୍ବବର୍ତ୍ତୀ ସମସ୍ତ ଦର୍ଶନକୁ ପ୍ରତ୍ୟାଖ୍ୟାନ କରିବା ସଙ୍ଗେ ସଙ୍ଗେ ସେଥିରେ ଏବଂ ସାଧାରଣ ଭାବେ ମାନବଜାତିର ସଂସ୍କୃତିରେ ଥିବା ସମସ୍ତ କିଛି ମୂଲ୍ୟବାନ ଏବଂ ପ୍ରଗତିଶୀଳ ଉପାଦାନକୁ ଉପଯୋଗ କରିଥିଲା।

ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦର ମୌଳିକ ବୈଶିଷ୍ଟ୍ୟ ହେଉଛି – ଏହା, ମୁଖ୍ୟତଃ, ଶ୍ରମିକ ଶ୍ରେଣୀର ଏକ ଦର୍ଶନ; ଶୋଷଣ ଏବଂ ସାମାଜିକ ତଥା ଜାତୀୟ ନିର୍ଯାତନ ବିରୁଦ୍ଧରେ ବ୍ୟାପକ ଶ୍ରମଜୀବୀ ଜନତା ଦ୍ୱାରା ପରିଚାଳିତ ସଂଗ୍ରାମକୁ ନେତୃତ୍ୱ ଦେଉଥିବା ଆଧୁନିକ ସମାଜର ସବୁଠାରୁ ଅଗ୍ରଗାମୀ ଏବଂ ନିରବଚ୍ଛିନ୍ନ ଭାବେ ବିପ୍ଳବୀ ଶ୍ରେଣୀର ବିଶ୍ୱଦୃଷ୍ଟିକୋଣର ତାତ୍ତ୍ୱିକ ଭିତ୍ତି। ଅତୀତର ଦାର୍ଶନିକ ମତବାଦସମୂହ (କେବଳ କଳ୍ପନାବିଳାସୀ ସମାଜବାଦୀ ଆଉ ରୁଷୀୟ ବିପ୍ଳବୀ ଗଣତନ୍ତ୍ରବାଦୀଙ୍କ ବ୍ୟତୀତ ଉଭୟ ଭାବବାଦୀ ଆଉ ବସ୍ତୁବାଦୀ) ଥିଲା ଜଗତ ସଂପର୍କରେ ଶୋଷକ ଶ୍ରେଣୀମାନଙ୍କର ଦୃଷ୍ଟିକୋଣ। ଦାର୍ଶନିକ ଚିନ୍ତାରାଜି ଜନସାଧାରଣଙ୍କ ସଂପଦ ହେବା ପରିବର୍ତ୍ତେ ଶୋଷକ ଶ୍ରେଣୀମାନଙ୍କ ମଧ୍ୟରେ ଥିବା "ପରମାତ୍ମାଙ୍କ ସମ୍ଭ୍ରାନ୍ତମାନଙ୍କର" ଏକ ସଂକୀର୍ଣ୍ଣ ଗୋଷ୍ଠୀର ସଂପତ୍ତିରେ ପରିଣତ ହୋଇଥିଲା। ସେସବୁ ଚିନ୍ତାରାଜି ଥିଲା ଅସ୍ପଷ୍ଟ ଏବଂ କୋଟି କୋଟି ସାଧାରଣ ଜନତାର ସ୍ୱାର୍ଥର ବିରୋଧୀ। ଶୋଷକ ଶ୍ରେଣୀମାନଙ୍କର ଭାବାଦର୍ଶବାଦୀମାନଙ୍କ ଭଳି ପୂର୍ବବର୍ତ୍ତୀ ଦାର୍ଶନିକମାନେ ସାମାଜିକ ଦିଗରୁ ସମସ୍ତ ଶୋଷଣର ଅବସାନ ପାଇଁ ସହାୟକ ହେବା ପରିବର୍ତ୍ତେ, ଅର୍ଥନୈତିକ ଏବଂ ରାଜନୈତିକ ନିର୍ଯାତନର ନୂଆ ରୂପ ପ୍ରତିଷ୍ଠା କରିବାରେ ସାହାଯ୍ୟ କରିଥିଲେ। ଉଦୀୟମାନ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଦର୍ଶନର ପ୍ରଥମ ମତାମତଠାରୁ ପରିଷ୍କାର ବିଚ୍ଛେଦର ସୂଚନା ଦେଉଥିଲା। ପ୍ରଥମ

ମତାମତସମୂହ ଦର୍ଶନକୁ ବ୍ୟକ୍ତିଗତ ଚିନ୍ତାବିଦ୍‌ମାନଙ୍କର କାର୍ଯ୍ୟ ବୋଲି ବିଗ୍ଭର କରୁଥିଲା । "ଦର୍ଶନ ଯେପରି ସର୍ବହରା ମଧ୍ୟରେ ତା'ର ବାସ୍ତବ ଅସ୍ତ୍ର ଖୋଜି ପାଇଛି, ସର୍ବହରା ମଧ୍ୟ ଦର୍ଶନ ମଧ୍ୟରେ ତା'ର ଆତ୍ମିକ ଅସ୍ତ୍ର ଖୋଜି ପାଇଛି ।"*

ପୂର୍ବବର୍ତ୍ତୀ ବସ୍ତୁବାଦୀ ତତ୍ତ୍ୱରାଜିଠାରୁ ସ୍ୱତନ୍ତ୍ର ହିସାବରେ ମାର୍କସ୍‌ବାଦୀ ଦର୍ଶନର ଗୁଣାତ୍ମକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟଟି ହେଉଛି ତା'ର ବୈପ୍ଳବିକ ଦ୍ୱନ୍ଦ୍ୱବାଦ । ମାର୍କସୀୟ ବସ୍ତୁବାଦର ପୂର୍ବବର୍ତ୍ତୀ ବସ୍ତୁବାଦ ଥିଲା ମୂଳତଃ ଅଧିଭୌତିକ । ଏହି ଅବସ୍ଥାନରୁ ପ୍ରକୃତି ତଥା ମାନବ ସମାଜ ସଂପର୍କରେ ଏକ ବୈଜ୍ଞାନିକ ଅବଧାରଣା ଲାଭ କରିବାଟା ଥିଲା ଅସମ୍ଭବ । ଅଧିଭୌତିକ ବସ୍ତୁବାଦ ସମାଜର ସମାଜବାଦୀ ରୂପାନ୍ତରଣ ପାଇଁ ସଂଗ୍ରାମରେ ସର୍ବହରାର ଆତ୍ମିକ ଅସ୍ତ୍ର ରୂପେ କାର୍ଯ୍ୟ କରି ପାରି ନଥାନ୍ତା । ମାର୍କସ୍‌ବାଦୀ ଦର୍ଶନ ଅଧିଭୌତିକ ବିଶ୍ୱଦୃଷ୍ଟିକୋଣର ପତନ ଘଟାଇଥିଲା ଏବଂ ତତ୍ ସଙ୍ଗେ ସଙ୍ଗେ ନୀତିଗତ ଭାବେ ଦ୍ୱନ୍ଦ୍ୱବାଦ ସଂପର୍କରେ ଭାବବାଦୀ ଅବଧାରଣାର ବିରୋଧ କରିଥିଲା । ଦୃଷ୍ଟାନ୍ତ ସ୍ୱରୂପ, ହେଗେଲ୍ କେବଳ ଚିନ୍ତନ ଏବଂ ଅବଧାରଣାରାଜି ନେଇ ଚର୍ଚ୍ଚା କରିଥିଲେ । ସେ ବିକାଶକୁ ବସ୍ତୁମୟ ଜଗତର ପଦାର୍ଥରାଜିର ପରିବର୍ତ୍ତନର ପ୍ରକୃତ ପ୍ରକ୍ରିୟା ହିସାବରେ ନଧରି ଧରୁଥିଲେ ଗୋଟିଏ ବୌଦ୍ଧିକ ସାରସତ୍ତା ଦ୍ୱାରା ଆଉ ଏକ ବୌଦ୍ଧିକ ସାରସତ୍ତାର ନେତୀକରଣ ବୋଲି । ହେଗେଲୀୟ ଦ୍ୱନ୍ଦ୍ୱବାଦ, ସତ କହିବାକୁ ଗଲେ, ପ୍ରକୃତରେ ବିଦ୍ୟମାନ ପଦାର୍ଥରାଜିକୁ ପ୍ରମାଣସିଦ୍ଧ ତଥା ଯୁକ୍ତିଯୁକ୍ତ ବୋଲି ଦର୍ଶାଇବାକୁ ଯାଇ ବିକାଶର ଏକ ମାୟା ସୃଷ୍ଟି କରିଥିଲା । ମାର୍କସ୍ ଏବଂ ଏଙ୍ଗେଲସ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ମାର୍କସ୍‌ବାଦୀ ଦ୍ୱନ୍ଦ୍ୱବାଦ ହିଁ ହେଉଛି ଜଗତ ସଂପର୍କରେ ଏକମାତ୍ର ବୈଜ୍ଞାନିକ ଦାର୍ଶନିକ ଦୃଷ୍ଟିକୋଣ ଏବଂ ଜଗତକୁ ଜାଣିବା ତଥା ତାକୁ ପରିବର୍ତ୍ତନ କରିବାର ଏକ କାର୍ଯ୍ୟକର ପଦ୍ଧତି । ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ପ୍ରାକୃତିକ ତଥା ସାମାଜିକ ପ୍ରପଞ୍ଚରାଜିର ଆଭ୍ୟନ୍ତରୀଣ ବିରୋଧାତ୍ମତାକୁ ଏବଂ ଉଲ୍ଲମ୍ଫନ ତଥା ନେତି ରୂପରେ ସେସବୁର ବିକାଶକୁ ପ୍ରକାଶ କରିଥାଏ । ତେଣୁ ସାରଗତଃ ଭାବେ ଏହା ହେଉଛି ସମାଲୋଚନାତ୍ମକ ଏବଂ ବିପ୍ଳବୀ ।

ଦର୍ଶନ କ୍ଷେତ୍ରରେ ମାର୍କସ୍‌ବାଦ ଯେଉଁ ମୌଳିକ ଅଭ୍ୟୁତ୍ଥାନ ଆଣିଥିଲା, ତାହା କେବଳ ପ୍ରକୃତି ସଂପର୍କରେ ନୁହେଁ (ପୂର୍ବବର୍ତ୍ତୀ ବସ୍ତୁବାଦୀଙ୍କ କ୍ଷେତ୍ରରେ ଯେଉଁଟା ବୈଶିଷ୍ଟ୍ୟପୂର୍ଣ୍ଣ ଥିଲା) ସମାଜ ସଂପର୍କରେ (ପୂର୍ବବର୍ତ୍ତୀ ସମସ୍ତ ଚିନ୍ତାବିଦ୍—ବସ୍ତୁବାଦୀ ଏବଂ ଅନ୍ୟମାନେ ଭାବବାଦୀ ଆଭିମୁଖ୍ୟ ଗ୍ରହଣ କରିଥିଲେ) ମଧ୍ୟ ଦର୍ଶନର ମୂଳ ପ୍ରଶ୍ନଟିର ବସ୍ତୁବାଦୀ ଉତ୍ତର ଦାନ କରିଥିଲା । ମାର୍କସ୍ ଏବଂ ଏଙ୍ଗେଲସ୍ ବସ୍ତୁବାଦକୁ ସଂପ୍ରସାରିତ

---

* କାର୍ଲ ମାର୍କସ, "*Contribution to the Critique of Hegel's Philosophy of Law. Introduction*". କାର୍ଲ ମାର୍କସ୍ ଏବଂ ଫ୍ରେଡେରିକ୍ ଏଙ୍ଗେଲସ୍, *Collected Works*, ୩ୟ ଖଣ୍ଡ, ପ୍ରଗତି ପ୍ରକାଶନ, ମସ୍କୋ, ୧୯୭୫, ପୃ: ୧୮୭ ।

# ମାର୍କସୀୟ ଏବଂ ହେଗେଲୀୟ ଦର୍ଶନ ମଧ୍ୟରେ ମୌଳିକ ପାର୍ଥକ୍ୟସମୂହ

| ପ୍ରଶ୍ନସମୂହ | ହେଗେଲୀୟ ଦର୍ଶନ | ମାର୍କସୀୟ ଦର୍ଶନ |
| --- | --- | --- |
| ମୁଖ୍ୟ ଦାର୍ଶନିକ ପ୍ରବଣତା ମଧ୍ୟରୁ କେଉଁଟି ଆଉରି ବିକାଶ ଲାଭ କରେ ? ଏଥିରେ କେଉଁ ନୂତନ ଉପାଦାନଟି ଅନ୍ତର୍ଭୁକ୍ତ ? | ବସ୍ତୁଗତ ଭାବବାଦ<br>ଦ୍ୱନ୍ଦ୍ୱବାଦର ନିୟମ ଏବଂ ପ୍ରବର୍ଗସକଳ | ବସ୍ତୁବାଦ<br>ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦ |
| ଚିନ୍ତନର କେଉଁ ପଦ୍ଧତିଟିକୁ ଏହା ନିୟୋଗ କରେ ଏବଂ ଏହା କିପରି ସଂଗତିପୂର୍ଣ୍ଣ ? | ଦ୍ୱନ୍ଦ୍ୱମୂଳକ ପଦ୍ଧତି , କିନ୍ତୁ ସଂଗତିହୀନ ଭାବେ ପ୍ରଯୁକ୍ତ | ଦ୍ୱନ୍ଦ୍ୱମୂଳକ-ବସ୍ତୁବାଦୀ ପଦ୍ଧତି , ସଂଗତିପୂର୍ଣ୍ଣ ଭାବେ ପ୍ରଯୁକ୍ତ |
| ସଂପୂର୍ଣ୍ଣ ଏକ ଦାର୍ଶନିକ ବ୍ୟବସ୍ଥା କ'ଣ ସମ୍ଭବ ? | ହଁ | ଅସମ୍ଭବ , କାରଣ ଜଗତ ବିକାଶ ଲାଭ କରୁଛି ସୀମାହୀନ ଭାବେ ଏବଂ ଉଭୟ ଗୁଣ ଏବଂ ପରିମାଣ ଦିଗରୁ ଅଫୁରନ୍ତ |
| ଅନ୍ୟାନ୍ୟ ବିଜ୍ଞାନ ସହିତ ଏହା କିପରି ସଂପୃକ୍ତ ? | ଏଭଳି ସିଦ୍ଧାନ୍ତସମୂହ ଚପେଇ ଦିଏ , ଯିଏକି ତା'ର ବାସ୍ତବତାର ବିରୋଧୀ | ଅନ୍ୟାନ୍ୟ ବିଜ୍ଞାନ ଉପରେ ନିର୍ଭର କରି ଏହା ନିଜକୁ ବିକଶିତ କରେ ଏବଂ ସେସବୁକୁ ଆଉରି ଜାଣିବାରେ ସହାୟକ ହୁଏ |
| କେଉଁ ଶ୍ରେଣୀର ବିଶ୍ୱଦୃଷ୍ଟିକୋଣକୁ ଏହା ପ୍ରକାଶ କରେ ? | ଜର୍ମାନ୍ ବୁର୍ଜୁଆ | ଶ୍ରମିକ ଶ୍ରେଣୀ |
| ଏହାର ସାମାଜିକ ଲକ୍ଷ୍ୟଟି କ'ଣ ? | ଜଗତ ହେଉଛି ଯୁକ୍ତିସମ୍ମତ – ଏ କଥା ପ୍ରମାଣ କରିବା ପାଇଁ ଏବଂ ଲୋକଙ୍କୁ ସାମାଜିକ ଭାବେ ନିଷ୍କ୍ରିୟ କରିବା ପାଇଁ । | ଜଗତର ବୈପ୍ଳବିକ ରୂପାନ୍ତରଣ |

କରିଥିଲେ ସାମାଜିକ ଜୀବନର ଅବଗତି କ୍ଷେତ୍ରକୁ, ଅର୍ଥାତ୍, ସେମାନେ ଐତିହାସିକ ବସ୍ତୁବାଦ ସୃଷ୍ଟି କରିଥିଲେ । ମାନବ ସମାଜର ଇତିହାସ କ୍ଷେତ୍ରରେ ଏହା କେବଳ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଏକ ପ୍ରୟୋଗ ନଥିଲା । ସମାଜର ବିକାଶକୁ ନିୟନ୍ତ୍ରିତ କରୁଥିବା ନିୟମାବଳୀର ବସ୍ତୁବାଦୀ ବ୍ୟାଖ୍ୟା ପ୍ରଦାନ ନକରି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ସ୍ୱୟଂ ଉପରକୁ ଉଠି ପାରି ନଥାନ୍ତା । ଏହି ସମସ୍ତ ନିୟମକୁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଆଭିମୁଖ୍ୟ ବ୍ୟତୀତ ବ୍ୟାଖ୍ୟା କରି ହୁଏ ନାହିଁ । ସେଇଥି ପାଇଁ ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦର ଅଭ୍ୟୁଦୟ ଘଟିଥିଲା, ଏବଂ ଏବେ ଏହା ବିକାଶ ଲାଭ କରି ଚାଲିଛି ଏକ ଏକକ ଦାର୍ଶନିକ ମାର୍କସ୍‌ବାଦୀ ଶିକ୍ଷା ହିସାବରେ । ବିକାଶମାନ ଉତ୍ପାଦିକା ଶକ୍ତିସମୂହ ଏବଂ ଉତ୍ପାଦନ ସଂପର୍କରାଜି, ଜନସାଧାରଣଙ୍କର ଶ୍ରମ ତଥା ସାମାଜିକ କ୍ରିୟାକଳାପ ଅବଶେଷରେ ସାମାଜିକ ପ୍ରକ୍ରିୟାସମୂହରେ ନିଷ୍ପତ୍ତିମୂଳକ ଭୂମିକା ପାଳନ କରେ – ଏହି କଥାଟି ଉପରେ ସମାଜ ସଂପର୍କିତ ବସ୍ତୁବାଦୀ ମତଟି ପ୍ରତିଷ୍ଠିତ । ମାନବଜାତିର ଇତିହାସ ହେଉଛି ନିୟମ ଦ୍ୱାରା ନିୟନ୍ତ୍ରିତ ଏକ ବିକାଶ ପ୍ରକ୍ରିୟା – ଏହାକୁ ଅନୁଭବ କରିବା, ପୁଞ୍ଜିବାଦୀ ଉତ୍ପାଦନ ପଦ୍ଧତିର ଅଚିରସ୍ଥାୟୀ ଚରିତ୍ରକୁ ଉଦ୍‌ଘାଟନ କରିବା ଏବଂ ଶ୍ରମିକ ଶ୍ରେଣୀକୁ ବୁର୍ଜୁଆ ଶ୍ରେଣୀର କବରଖୋଦନକାରୀ ତଥା ନୂତନ, ସମାଜବାଦୀ ସମାଜର ରଚୟିତା ରୂପେ ଦର୍ଶାଇବା ସମ୍ଭବ ହୋଇଛି ଐତିହାସିକ ବସ୍ତୁବାଦ ଯୋଗୁଁ ।

ଶେଷତଃ, ଦର୍ଶନରେ ବିପ୍ଳବ ବୋଇଲେ, ବିଶୁଦ୍ଧ ତତ୍ତ୍ୱ ହିସାବରେ ଦର୍ଶନ ଏବଂ ଶ୍ରମିକ ଶ୍ରେଣୀର ବାସ୍ତବ କାର୍ଯ୍ୟ ମଧ୍ୟରେ ଥିବା ପାର୍ଥକ୍ୟର ଅବସାନ ଘଟାଇବା ଏବଂ ବାସ୍ତବତାକୁ ଅବଗତ ହେବା ଦିଗରେ ପୂର୍ବବର୍ତ୍ତୀ ବସ୍ତୁବାଦର ଚିନ୍ତନଶୀଳତାରେ ପୂର୍ଣ୍ଣଚ୍ଛେଦ ପକାଇବାକୁ ବୁଝାଏ । ଅର୍ଥନୈତିକ ତଥା ରାଜନୈତିକ ଭାବେ ଶାସକ ଶ୍ରେଣୀମାନଙ୍କର ସ୍ୱାର୍ଥକୁ ପ୍ରତିଫଳିତ କରିଥିବା ସମସ୍ତ ଦାର୍ଶନିକ ମତବାଦକୁ ମନରେ ରଖି ମାର୍କସ୍ ତାଙ୍କର ବିଖ୍ୟାତ ସନ୍ଦର୍ଭଟି ସୂତ୍ରବଦ୍ଧ କରିଥିଲେ : "ଦାର୍ଶନିକମାନେ ଜଗତକୁ କେବଳ ବିଭିନ୍ନ ଭାବେ ବ୍ୟାଖ୍ୟା କରିଛନ୍ତି; କିନ୍ତୁ କଥାଟା ହେଉଛି, ତାକୁ ପରିବର୍ତ୍ତନ କରିବା ।"* ଜଗତର ଏକ ସଠିକ୍ ବ୍ୟାଖ୍ୟା ପ୍ରଦାନ କରିବା ମଧ୍ୟ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦର୍ଶନ ସହିତ ସଂଗତିଶୀଳ । ମାର୍କସ୍‌ଙ୍କ ସଂଜ୍ଞାଟି ଥିଲା ସଂପୂର୍ଣ୍ଣ ଭିନ୍ନ । ବିଦ୍ୟମାନ ଜଗତର କେବଳ ଏକ ତତ୍ତ୍ୱଗତ ବ୍ୟାଖ୍ୟା ଦେଇ ଆମେ ସନ୍ତୁଷ୍ଟ ହୋଇ ଗଲେ ଚଳିବ ନାହିଁ, କାରଣ ତା'ର ଅର୍ଥ ହେବ, ନିର୍ଯାତିତ ଏବଂ ଶୋଷିତ ଜନସାଧାରଣଙ୍କ ପ୍ରତି ଶତ୍ରୁଭାବାପନ୍ନ ଏକ ସାମାଜିକ ବ୍ୟବସ୍ଥାର ଯୁକ୍ତିଯୁକ୍ତତାକୁ ମାନିନେବା । ଶୋଷକ ଶ୍ରେଣୀମାନଙ୍କର ଭାବାଦର୍ଶବାଦୀମାନେ ଶହ ଶହ ବର୍ଷ ଧରି ସେମାନଙ୍କ ଦାର୍ଶନିକ ମତକୁ ଭାରତ ସମେତ ସବୁଠି ଚପେଇ ଦେଇ ଆସିଥିଲେ ସାଧାରଣ ଲୋକଙ୍କର ଅତୀବ ଆଶୁ ଗୁରୁତ୍ୱପୂର୍ଣ୍ଣ

---

* କାର୍ଲ ମାର୍କସ୍, "ଫଏରବାଖ୍‌ଙ୍କ ସଂପର୍କରେ ସନ୍ଦର୍ଭରାଜି" । କାର୍ଲ ମାର୍କସ୍ ଏବଂ ଏଙ୍ଗେଲସ୍, *Collected Works*, ୫ମ ଖଣ୍ଡ, ୧୯୭୬, ପୃ: ୮ ।

# ମୌଳିକ ପରିବର୍ତ୍ତନସମୂହ



ସମସ୍ୟାବଳୀ ଠାରୁ ଦୂରବର୍ତ୍ତୀ ଏବଂ ବିରୋଧୀ ଏକ ଜିନିଷ ହିସାବରେ । ଭାବବାଦୀ ବେଦାନ୍ତ ମତବାଦର ପ୍ରଖ୍ୟାତ ପ୍ରବର୍ତ୍ତକ ଶଙ୍କର ଲେଖିଥିଲେ, "ଦାର୍ଶନିକକୁ ଜୀବନର ବାହାରେ ଦଣ୍ଡାୟମାନ ହୋଇ ତାକୁ ଦେଖିବାକୁ ହେବ ।"* ମାର୍କସ୍‌ଙ୍କ ମତରେ, ଯେଉଁ ଦର୍ଶନ ଜଗତ ଏବଂ ତା'ର ପରିବର୍ତ୍ତନର ଉପାୟରାଜିକୁ ବିଜ୍ଞାନସମ୍ମତ ଭାବେ ବ୍ୟାଖ୍ୟା କରେ, ତାହାକୁ ନିଷ୍ଚିତ ଭାବେ ଏହି ଧରଣର ଚିନ୍ତନମୂଳକ ଦର୍ଶନର ବିରୁଦ୍ଧରେ ନିଷ୍ଚିତ ଭାବେ ଉପସ୍ଥାପିତ କରିବାକୁ ହେବ ଏବଂ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ହେଉଛି ପ୍ରକୃତରେ ସେଇ ଦର୍ଶନ । ଜଗତର ପରିବର୍ତ୍ତନ କେବଳ ଲୋକଙ୍କର ବାସ୍ତବ ବିପ୍ଳବୀ କାର୍ଯ୍ୟକଳାପ ଦ୍ୱାରା ସଂଘଟିତ ହୋଇ ପାରେ । ତେଣୁ ମାର୍କସ୍‌ବାଦ ତତ୍ତ୍ୱ (ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଏବଂ ଐତିହାସିକ ବସ୍ତୁବାଦ) ଏବଂ ପ୍ରୟୋଗକୁ (ସର୍ବହରାର ଶ୍ରେଣୀ ସଂଗ୍ରାମ ଏବଂ ସମାଜବାଦୀ ତଥା କମ୍ୟୁନିଷ୍ଟ ସମାଜ ନିର୍ମାଣ କରିବା ଦିଗରେ ଶ୍ରମଜୀବୀ ଜନସାଧାରଣଙ୍କର ଉଦ୍ୟମରାଜି) ଏକତ୍ର ବାନ୍ଧି ଦେଇଥାଏ ।

ଏହାହିଁ ହେଉଛି, ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦର ଗୁଣାତ୍ମକ ବୈଶିଷ୍ଟ୍ୟରାଜି, ଯିଏକି ସାମଗ୍ରିକ ଭାବେ, ଦର୍ଶନ କ୍ଷେତ୍ରରେ ମାର୍କସ୍‌ବାଦୀ ବିପ୍ଳବକୁ ବୁଝାଏ ।

## ୪ – ସର୍ବହରାର ବୈଜ୍ଞାନିକ ଭାବାଦର୍ଶ

ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦର ଅଭ୍ୟୁଦୟ ସଙ୍ଗେ ସଙ୍ଗେ ଦର୍ଶନ ଏକ ବିଜ୍ଞାନରେ ପରିଣତ ହୋଇଥିଲା । ଆମେ ଲକ୍ଷ୍ୟ କରିଛେ, ମାର୍କସ୍‌ଙ୍କ ପୂର୍ବବର୍ତ୍ତୀ ଦର୍ଶନ ମଧ୍ୟ ବୈଜ୍ଞାନିକ ଜ୍ଞାନ ସହିତ ସଂପୃକ୍ତ ଥିଲା । କିନ୍ତୁ ଅତୀତର ବସ୍ତୁବାଦ ଅସଂଗତିପୂର୍ଣ୍ଣ ଏବଂ ଅଧିଭୌତିକତା ଦ୍ୱାରା ସୀମିତ ହୋଇ ଥିଲା ଏବଂ ଭାବବାଦ ମୂଳତଃ ପ୍ରଦାନ କରୁଥିଲା ବାସ୍ତବତାର ଏକ ବିକୃତ ଛବି, ଯଦିଓ ତା'ର କେତେକ ପ୍ରବର୍ତ୍ତକଙ୍କ ମତବାଦରେ କେତେକ ଅସ୍ତିବାଚକ ଦିଗ ରହିଥିଲା । ଏହା ଛଡ଼ା, ମାର୍କସ୍‌ଙ୍କ ପୂର୍ବବର୍ତ୍ତୀ ଦର୍ଶନ ଅଧିକାଂଶ ସମୟରେ କେତେକ ନିର୍ଦ୍ଦିଷ୍ଟ ବିଜ୍ଞାନ ପ୍ରତି ତା'ର ସଂପର୍କର ଏକଦର୍ଶୀ ଆଭିମୁଖ୍ୟ ପୋଷଣ କରୁଥିଲା । ଦର୍ଶନ ଏବଂ ନିର୍ଦ୍ଦିଷ୍ଟ ବିଜ୍ଞାନଗୁଡ଼ିକର ବିଷୟବସ୍ତୁ ପରିଷ୍କାର ଭାବେ ପୃଥକ୍ ରୂପେ ନିର୍ଣ୍ଣୀତ ହୋଇ ନଥିଲା । ହେଗେଲ୍‌ଙ୍କ ଭଳି ଦାର୍ଶନିକମାନେ ଅନେକ ସମୟରେ ସର୍ବବ୍ୟାପକ ପଦ୍ଧତି ସୃଷ୍ଟି କରିଥିଲେ, କିନ୍ତୁ ମାର୍କସ୍‌ବାଦ ଦର୍ଶନର ବିଷୟବସ୍ତୁକୁ

---

* ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍, *"Indian Philosophy"*, Vol. 1, The Macmillan Company, George Allen and Unwin Ltd., New York and London, 1951, ପୃ: ୪୫ ।

ନୂଆ ଭାବେ ବ୍ୟାଖ୍ୟା କରିଥିଲି । ନିର୍ଦ୍ଦିଷ୍ଟ ବିଜ୍ଞାନସମୂହ, ଯଥା ପଦାର୍ଥ ବିଦ୍ୟା, ରସାୟନ ବିଦ୍ୟା, ଜୀବବିଜ୍ଞାନ, ଇତିହାସ, ଆଇନ୍, ଗଣିତ, ଆଦି ବାସ୍ତବ ଜଗତର ଭିନ୍ନ ଭିନ୍ନ କ୍ଷେତ୍ର ବା ଦିଗର ନିୟମ ଏବଂ ପ୍ରପଞ୍ଚକୁ ଅଧ୍ୟୟନ କରିଥାନ୍ତି । କିନ୍ତୁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ସହିତ ସେସବୁର ତଫାତ୍ ହେଉଛି, ଏହା ଚେତନା ଆଉ ସତ୍ତା ମଧ୍ୟରେ ସଂପର୍କର ସମସ୍ୟାରାଜିର ବିଜ୍ଞାନସିଦ୍ଧ ସମାଧାନ ପ୍ରଦାନ କରିଥାଏ, ବସ୍ତୁର ଅତୀବ ସାଧାରଣ ଧର୍ମକୁ ଉଦ୍‌ଘାଟନ କରିଥାଏ, ତା'ର ବିକାଶ ଏବଂ ରୂପର ମୌଳିକ ନିୟମଗୁଡ଼ିକୁ ଅନୁଧ୍ୟାନ କରିଥାଏ ଏବଂ ବାସ୍ତବତାକୁ ଜାଣିବା ପାଇଁ ମଣିଷ କିପରି ସେସବୁ ପଦ୍ଧତିକୁ ଅଧ୍ୟୟନ କରେ, ଏବଂ 'ସାମାଜିକ ବିକାଶର ମୌଳିକ ଚାଳିକା ଶକ୍ତିକୁ ନିର୍ଣ୍ଣୟ କରିଥାଏ । ଚୁମ୍ବକରେ କହିବାକୁ ଗଲେ, ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ପ୍ରକୃତି, ସମାଜ ତଥା ମାନବିକ ଚିନ୍ତାର ବିକାଶର ଅତି ସାଧାରଣ ନିୟମଗୁଡ଼ିକ ଅନୁଧ୍ୟାନ କରିଥାଏ । ପ୍ରାକୃତିକ ତଥା ସାମାଜିକ ବିଜ୍ଞାନରାଜିର ସର୍ବଶେଷ କୃତିରାଜି ଉପରେ ଭିତ୍ତି କରି ଏବଂ ମାନବଜାତିର ଅଭ୍ୟାସ ଏବଂ ଐତିହାସିକ ଅଭିଜ୍ଞତାରାଜିକୁ ସାଧାରଣୀକରଣ କରି ମାର୍କସ୍‌ବାଦୀ ଦର୍ଶନ ସେସବୁ ନିୟମକୁ ପରୀକ୍ଷା କରିଥାଏ ।

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ବିଜ୍ଞାନସିଦ୍ଧ ଚରିତ୍ର ଅବିଚଳ ଭାବେ ତା'ର ପକ୍ଷପାତିତା ସହିତ ସଂଯୁକ୍ତ । ମାର୍କସ୍‌ବାଦୀ ଦର୍ଶନ ହେଉଛି ଏକ ସଂଗତିଶୀଳ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଶିକ୍ଷା । ଏହା ସମସ୍ତ ପ୍ରକାରର ଭାବବାଦୀ ଏବଂ ଅଧିଭୌତିକ ମତବାଦର ବିରୋଧୀ । ଶ୍ରମିକ ଶ୍ରେଣୀର ବିଶ୍ୱଦୃଷ୍ଟିକୋଣ ତଥା ସାମାଜିକ ସଚେତନତାର ଏକ ପରିପ୍ରକାଶ ହିସାବରେ ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦ ହେଉଛି କମ୍ୟୁନିଷ୍ଟ ଭାବାଦର୍ଶର ତାତ୍ତ୍ୱିକ ଭିତ୍ତି । ଶ୍ରେଣୀ ସ୍ୱାର୍ଥ ଦୃଷ୍ଟିରୁ ବାସ୍ତବତାର ପ୍ରତିଫଳନ ହେଉଛି ଭାବାଦର୍ଶ । ସର୍ବହରା ଭାବାଦର୍ଶର ଅଛି ଏକ ବୈଜ୍ଞାନିକ ଚରିତ୍ର, କାରଣ, ଶ୍ରମିକ ଶ୍ରେଣୀର ମୌଳିକ ସ୍ୱାର୍ଥ ସାମାଜିକ ଅଗ୍ରଗତିର ନିଷ୍ପତ୍ତିମୂଳକ ପ୍ରବଣତାଗୁଡ଼ିକ ସହିତ ସଂଗତିଶୀଳ । ତେଣୁ, ସେହିସବୁ ପ୍ରବଣତାକୁ ପ୍ରକାଶ କରି ମାର୍କସ୍‌ବାଦୀ ଦର୍ଶନ ଜଗତର ବୈପ୍ଳବିକ ରୂପାନ୍ତରଣ କ୍ଷେତ୍ରରେ ଏକ ଭାବାଦର୍ଶଗତ ଅସ୍ତ୍ର ରୂପେ କାର୍ଯ୍ୟ କରିଥାଏ ।

ମାର୍କସ୍ ଏବଂ ଏଙ୍ଗେଲସ୍‌ଙ୍କ ସଂପର୍କରେ ଲେନିନ୍ ଲେଖିଛନ୍ତି, "ଶୋଷକ ଶ୍ରେଣୀ ତଥା ରାଷ୍ଟ୍ର ଦ୍ୱାରା ପଦଦଳିତ, ଏକ ବାସ୍ତବ, ମାନବିକ ବ୍ୟକ୍ତି – ଶ୍ରମିକ ନାମରେ ସେମାନେ ଅନୁଧ୍ୟାନ ଦାବୀ କରି ନଥିଲେ, ଦାବୀ କରିଥିଲେ ସମାଜର ଉନ୍ନତ ବ୍ୟବସ୍ଥା ପାଇଁ ସଂଗ୍ରାମ ।"*

ଏଠାରେ ଏ କଥା କହିବା ସଠିକ୍ ହେବ ଯେ, ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ ମାନବତାବାଦ ଏବଂ ମାନବିକ ସମସ୍ୟାବଳୀକୁ ଅବଜ୍ଞା କରେ ବୋଲି ଯେଉଁ ଅଭିଯୋଗ

---

* ଭି. ଆଇ. ଲେନିନ୍, "ଫ୍ରେଡେରିକ୍ ଏଙ୍ଗେଲସ୍", *Collected Works*, ୨ୟ ଖଣ୍ଡ, ମସ୍କୋ, ୧୯୬୩, ପୃ: ୨୩ ।

ଅନେକ ସମୟରେ କରାଯାଏ , ତା'ର କୌଣସି ଭିତ୍ତି ନାହିଁ । ଏହି କାରଣରୁ କେତେକ ଲେଖକ ପରାମର୍ଶ ଦିଅନ୍ତି ଯେ , ଭାରତୀୟ ଦର୍ଶନକୁ ମଣିଷର ଅସ୍ତିତ୍ୱ , ତା'ର ସତ୍ତାର ଗୂଢ଼ ମର୍ମ ସଂକ୍ରାନ୍ତ ସମସ୍ୟାକୁ ନେଇ ଚର୍ଚ୍ଚା କରୁଥିବା ଅସ୍ତିତ୍ୱବାଦୀ ଦର୍ଶନରେ ପରିଣତ କରିବା ଉଚିତ । ଏଥି ସଙ୍ଗେ ସଙ୍ଗେ ଏକ ଭାବବାଦୀ ତତ୍ତ୍ୱ ହିସାବରେ ଅସ୍ତିତ୍ୱବାଦ ଏହିସବୁ ସମସ୍ୟାର କୌଣସି ସଠିକ୍ ସମାଧାନ ପ୍ରଦାନ କରେ ନାହିଁ , ପୁଞ୍ଜିବାଦୀ ସମାଜର ଅବସ୍ଥାରାଜି ମଧ୍ୟରେ ବ୍ୟକ୍ତିକୁ ସଂକଟସମୂହରୁ ଉଦ୍ଧାରର ପଥ ପ୍ରଦର୍ଶନ କରି ପାରେ ନାହିଁ ।

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦର୍ଶନ ହିଁ କେବଳ ମଣିଷର ସମସ୍ୟାକୁ ତା'ର ସମସ୍ତ ଦିଗରୁ ଏକ ପ୍ରକୃତ ବୈଜ୍ଞାନିକ ବ୍ୟାଖ୍ୟା ଦେଇଥାଏ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ ମଣିଷକୁ ଅବଜ୍ଞା କରେ ବୋଲି ଭାବିବାଟା ଭୁଲ , ବରଂ , ଓଲଟା ଏହା ମଣିଷକୁ ଉନ୍ନତ କରିଥାଏ , ଜଗତକୁ ଜାଣିବା ପାଇଁ ଏବଂ ତାକୁ ବିପ୍ଳବୀ ପଥରେ ରୂପାନ୍ତରିତ କରିବା ପାଇଁ ଅସୀମ ସୁଯୋଗକୁ ପ୍ରତିପାଦିତ କରି । ମୁଖ୍ୟ କଥା ହେଉଛି , ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦ ହେଉଛି ପ୍ରକୃତ ମାନବତାବାଦର ଦର୍ଶନ । ଏହା ଅସ୍ତିତ୍ୱବାଦ ଭଳି ପୁଞ୍ଜିବାଦରେ ମଣିଷର ଦୁଃଖ ଯନ୍ତ୍ରଣା ଏବଂ ତା' ଅସ୍ତିତ୍ୱର ଦୟନୀୟ ଚରିତ୍ର କଥା ଖାଲି ବର୍ଣ୍ଣନା କରେ ନାହିଁ କି ଜନସାଧାରଣଙ୍କ ମଧ୍ୟରେ ମାନବିକ ସଂପର୍କରାଜି ପ୍ରତିଷ୍ଠା କରିବାକୁ କେବଳ ଆହ୍ୱାନ ଦିଏ ନାହିଁ । ମାନବିକ ଆଦର୍ଶରାଜିକୁ ବାସ୍ତବରେ କାର୍ଯ୍ୟକର କରିବା ପାଇଁ ଏହା ଉପାୟରାଜି ପ୍ରଦର୍ଶନ କରିଥାଏ । ଭାବବାଦୀ (ବିଶେଷ କରି ଆଧୁନିକ ଅସ୍ତିତ୍ୱବାଦ) ବା ଅତୀତର ଚିନ୍ତାସର୍ବସ୍ୱ ବସ୍ତୁବାଦୀ ବିଶ୍ୱଦୃଷ୍ଟିକୋଣ ଭଳି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ବିଶ୍ୱଦୃଷ୍ଟିକୋଣ ନୁହେଁ – ଏହା ହେଉଛି ଆଜି ସବୁଠାରୁ ଅଗ୍ରଣୀ ବିଶ୍ୱଦୃଷ୍ଟିକୋଣ । ଏହାର ମୁଖ୍ୟ ଚିନ୍ତାଧାରା ହେଉଛି , ସବୁଠାରୁ ମାନବବାଦୀ ସମାଜ – କମ୍ୟୁନିଷ୍ଟ ସମାଜ ଗଢ଼ିବା ପାଇଁ ମାନବିକ ବ୍ୟକ୍ତିତ୍ୱର ସର୍ବାତ୍ମକ ବିକାଶର ସ୍ୱାର୍ଥରେ ଶ୍ରମିକ ଶ୍ରେଣୀର ନେତୃତ୍ୱରେ ଶ୍ରମଜୀବୀ ଜନତା ଦ୍ୱାରା ସାମାଜିକ ସଂପର୍କରାଜିର ନିୟମାନୁଗ ରୂପାନ୍ତରଣ , ଏବଂ ସାମଗ୍ରିକ ଭାବେ ପ୍ରାକୃତିକ ତଥା ସାମାଜିକ ବାସ୍ତବତାର ପରିବର୍ତ୍ତନ ସାଧନ ।

## ୫ – ମାର୍କସ୍ ଏବଂ ଲେନିନ୍

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ପୂର୍ବବର୍ତ୍ତୀ ସମସ୍ତ ଦାର୍ଶନିକ ବ୍ୟବସ୍ଥା ଏବଂ ଆଧୁନିକ ବୁର୍ଜୁଆ ତଥା ସଂଶୋଧନବାଦୀ ମତବାଦଠାରୁ ପୃଥକ୍ ଏବଂ ଏହି ପୃଥକ୍‌ତା ମଧ୍ୟରେ ଏହା ପ୍ରକାଶ୍ୟ ଭାବେ ତା'ର ପକ୍ଷପାତିତ୍ୱକୁ ସ୍ୱୀକାର କରେ ଏବଂ ନୀତିଗତ ଭାବେ ଏହା ନିଜ ସଂପର୍କରେ ମଧ୍ୟ ସମାଲୋଚନାମୂଳକ । ମାର୍କସ୍‌ବାଦୀ ଦର୍ଶନ ହେଉଛି ଏକ ବିଚକ୍ଷଣ , ସୃଜନଶୀଳ ଶିକ୍ଷା । ସାମାଜିକ ପ୍ରୟୋଗ ଏବଂ ନବନବ ବୈଜ୍ଞାନିକ ସାଫଲ୍ୟରାଜିର

ଭିତିରେ ଏହା କ୍ରମଶଃ ସମୃଦ୍ଧ ଏବଂ ବିକଶିତ ହୋଇ ଚାଲିଛି । ମାର୍କସ୍ ଏବଂ ଏଙ୍ଗେଲସ୍ ଜୋର ଦେଇ କହିଥିଲେ, ସେମାନଙ୍କ ଶିକ୍ଷାକୁ ବେଦବାକ୍ୟ ବୋଲି ବିଚାର ନକରି ସାମାଜିକ କର୍ମର ପଥ ପ୍ରଦର୍ଶକ ବୋଲି ବିଚାର କରିବାକୁ ହେବ । ସେମାନଙ୍କ ସମଗ୍ର ଜୀବନ କାଳ ମଧ୍ୟରେ ସେମାନେ ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦକୁ ନେଇ ଚର୍ଚ୍ଚା କରିଥିଲେ ।

ମାର୍କସ୍‌ବାଦୀ ଦର୍ଶନର ବିକାଶ କ୍ଷେତ୍ରରେ ନୂତନ ଏକ ପର୍ଯ୍ୟାୟ ଚିହ୍ନିତ ହୋଇଛି ଲେନିନ୍‌ଙ୍କ ନାମ ସହିତ, ଯିଏକି ଏହାକୁ ସୁବିଧାବାଦୀମାନଙ୍କ ବିକୃତୀକରଣ ଏବଂ ପ୍ରତିକ୍ରିୟାଶୀଳ ବୁର୍ଜୁଆ ଭାବବାଦୀମାନଙ୍କ ଆକ୍ରମଣ ବିରୁଦ୍ଧରେ ଟେକି ଧରିଥିଲେ । ତତ୍ ସହିତ ଲେନିନ୍ ସାମ୍ରାଜ୍ୟବାଦୀ ଯୁଗର ନୂତନ ଐତିହାସିକ ଅବସ୍ଥାର ବିଶ୍ଳେଷଣ କରି, ସର୍ବହରା ବିପ୍ଳବ ତଥା ସମାଜବାଦ ନିର୍ମାଣର ଅଭିଜ୍ଞତା ଏବଂ ଆଧୁନିକ ପ୍ରାକୃତିକ ବିଜ୍ଞାନର ସାଫଲ୍ୟରାଜିକୁ ସାଧାରଣୀକରଣ କରି ମାର୍କସ୍‌ବାଦୀ ଦର୍ଶନକୁ ସୃଜନାତ୍ମକ ଭାବେ ସମୃଦ୍ଧ କରି ଯାଇଛନ୍ତି । ଲେନିନ୍‌ଙ୍କର ବିଖ୍ୟାତ ଦାର୍ଶନିକ ରଚନାବଳୀ ମଧ୍ୟରେ ଯାଏ, "'ଜନସାଧାରଣଙ୍କ ବନ୍ଧୁମାନେ' କିଏ ଏବଂ ସେମାନେ କେମିତି ସୋସାଲ-ଡେମୋକ୍ରାଟ୍‌ମାନଙ୍କ ବିରୁଦ୍ଧରେ ଲଢ଼ନ୍ତି ?" (୧୮୯୪), "କ'ଣ କରିବାକୁ ହେବ ?" (୧୯୦୨), "ମାଟେରିଆଲିଜମ୍ ଏବଂ ଇମ୍ପିରିଓ-କ୍ରିଟିସିଜମ୍" (୧୯୦୮), "ଫିଲସଫିକାଲ ନୋଟ୍‌ବୁକସ୍" (୧୯୧୪-୧୯୧୫), "ସାମ୍ରାଜ୍ୟବାଦ – ପୁଞ୍ଜିବାଦର ସର୍ବୋଚ୍ଚ ସ୍ତର" (୧୯୧୬), "ଜାତିମାନଙ୍କର ଆତ୍ମନିୟନ୍ତ୍ରଣ ଅଧିକାର" (୧୯୧୪), "ରାଷ୍ଟ୍ର ଓ ବିପ୍ଳବ" (୧୯୧୭) ଏବଂ "ଅନ୍ ଦି ସିଗ୍‌ନିଫିକାନସ୍ ଅଫ୍ ମିଲିଟାଣ୍ଟ ମାଟେରିଆଲିଜମ୍" (୧୯୨୨), ଆଦି । ଲେନିନ୍ ଦାର୍ଶନିକ ସମସ୍ୟାବଳୀର ବ୍ୟାଖ୍ୟାକୁ ବିପ୍ଳବୀ ଶ୍ରମିକ ଶ୍ରେଣୀ ଆନ୍ଦୋଳନର ଅଧୀନ କରିଥିଲେ । ତାଙ୍କ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଆଉ ଐତିହାସିକ ବସ୍ତୁବାଦର ବିକାଶ ତ ଥିଲା ତାଙ୍କ ରାଜନୈତିକ କ୍ରିୟାକଳାପ, ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ଇତିହାସ ଏବଂ ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀ ତଥା କମ୍ୟୁନିଷ୍ଟ ଆନ୍ଦୋଳନଠାରୁ ଅବିଚ୍ଛିନ୍ନ ।

ମାର୍କସ୍‌ଙ୍କ ବିପରୀତରେ ଲେନିନ୍‌ଙ୍କୁ ସ୍ଥାପନ କଲେ ଅତୀବ ଭୁଲ ହେବ – ଏହି କଥାଟି ଉପରେ ଜୋର ଦେବାକୁ ପଡ଼ିବ । କେତେକ କହନ୍ତି, ମାର୍କସ୍ ଥିଲେ ଦାର୍ଶନିକ, ତତ୍ତ୍ୱକାର ଏବଂ ଲେନିନ୍ ଥିଲେ ବାସ୍ତବଧର୍ମୀ କର୍ମୀ । ସେ ଜଟିଳ ଦାର୍ଶନିକ ସମସ୍ୟାବଳୀ ପ୍ରତି ଉଦାସୀନ ଥିଲେ । ଏ କଥା ଆଉରି ଅଭିଯୋଗ କରାଯାଏ ଯେ, ମାର୍କସ୍ ତାଙ୍କ ବସ୍ତୁନିଷ୍ଠ ଅର୍ଥନୈତିକ ଅପରିହାର୍ଯ୍ୟତା ଉପରେ ନିର୍ଭର କରୁଥିଲେ ଏବଂ ଜଣେ ମାନବତାବାଦୀ ଥିଲେ । ଅନ୍ୟ ଦିଗରେ, ଲେନିନ୍ ଇତିହାସର ନିୟମାନୁଗତାକୁ ପ୍ରତ୍ୟାଖ୍ୟାନ କରି ସଂପୂର୍ଣ୍ଣ ରୂପେ ଶକ୍ତି ଉପରେ ନିର୍ଭର କରୁଥିଲେ । ଏହା ଛଡ଼ା ଆଉରି ପରାମର୍ଶ ଦିଆଯାଏ ଯେ, ଲେନିନ୍‌ବାଦ ପୂରା "ରୁଷୀୟ ମାର୍କସ୍‌ବାଦ" ବ୍ୟତୀତ ଆଉ କିଛି ନୁହେଁ । ତେଣୁ ଅନ୍ୟସବୁ ଦେଶ ପକ୍ଷରେ, ବିଶେଷତଃ, ଭାରତବର୍ଷ ପକ୍ଷରେ ଏହା

ପ୍ରଯୋଜ୍ୟ ନୁହଁ । ଏତଦ୍‌ବ୍ୟତୀତ "ଚୀନ୍", "ଯୁଗୋସ୍ଲାଭିଆ" ତଥା ଅନ୍ୟାନ୍ୟ ମାର୍କା "ଜାତୀୟ ମାର୍କସ୍‌ବାଦ" କଥା ମଧ୍ୟ କୁହା ଯାଇଥାଏ ।

ଏହିସବୁ କଥା ଅତୀବ ଭ୍ରାନ୍ତ ବା ଇଚ୍ଛାକୃତ ଭାବେ ଅସଲ କଥାଟିର ବିକୃତୀକରଣ । ଲେନିନ୍ କେବେହେଲେ ଖାଲି ଅବସ୍ଥା ଦେଖି ବ୍ୟବସ୍ଥା କଲା ଭଳି ଲୋକ ନଥିଲେ କି ଦାର୍ଶନିକ ସମସ୍ୟାବଳୀ ପ୍ରତି ଉଦାସୀନ ନଥିଲେ । ନିର୍ଭୁଲ ତତ୍ତ୍ୱ ବିନା ବୈପ୍ଳବିକ କର୍ମରେ କେବେହେଲେ ସାଫଲ୍ୟ ମିଳି ପାରେ ନାହିଁ । ଲେନିନ୍ ସୃଜନାତ୍ମକ ଭାବେ ମାର୍କସୀୟ ମତବାଦର ସମସ୍ତ ଉପାଦାନକୁ ବିକଶିତ କରିଥିଲେ । ତାଙ୍କ ସମୟର ଦର୍ଶନ ସଂକ୍ରାନ୍ତ ସମସ୍ୟାବଳୀର ସେ ଗଭୀର ବ୍ୟାଖ୍ୟା ଦେଇଥିଲେ , ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ସମସ୍ୟାବଳୀକୁ ସାମଗ୍ରିକ ଭାବେ ବିକଶିତ କରିଥିଲେ । ବସ୍ତୁର ଏକ ବିଜ୍ଞାନସିଦ୍ଧ ସଂଜ୍ଞାକୁ ସେ ସୂତ୍ରବଦ୍ଧ କରିଥିଲେ , ଗତି ଏବଂ ବସ୍ତୁ ଅବିଚ୍ଛିନ୍ନତାର ଥିସିସ୍ ଉପରେ ବିଶ୍ଳେଷଣ କରିଥିଲେ ଏବଂ ସତ୍ୟର ଅବଗତିକୁ ନିର୍ଦ୍ଧାରଣ କରୁଥିବା ନିୟମରାଜିକୁ ଉଦ୍‌ଘାଟନ କରିଥିଲେ ।

ପ୍ରାକୃତିକ ବିଜ୍ଞାନ ଏବଂ ଦର୍ଶନ ମଧ୍ୟରେ ଅତୁଟ ବନ୍ଧନର ଅବଧାରଣାକୁ ସେ ଯେଉଁ ପ୍ରମାଣସିଦ୍ଧ କରିଥିଲେ , ତାହା ଅତୀବ ଗୁରୁତ୍ୱପୂର୍ଣ୍ଣ । ଚଳିତ ଶତାବ୍ଦୀରେ ଲେନିନ୍ ହେଉଛନ୍ତି ପ୍ରଥମ ଚିନ୍ତାବିଦ୍ , ଯିଏକି ଆଧୁନିକ ପ୍ରାକୃତିକ ବିଜ୍ଞାନ କ୍ଷେତ୍ରରେ ପ୍ରବଳ ଏକ ବୈଜ୍ଞାନିକ ବିପ୍ଳବର ପ୍ରାରମ୍ଭକୁ ପ୍ରତ୍ୟକ୍ଷ କରି ପାରିଥିଲେ । ମହାନ୍ ପ୍ରକୃତିବିଜ୍ଞାନୀମାନଙ୍କର ମୌଳିକ ଆବିଷ୍କାରଗୁଡ଼ିକର ବୈପ୍ଳବିକ ଅର୍ଥକୁ ସେ ଉଦ୍‌ଘାଟନ ଏବଂ ଦାର୍ଶନିକ ସାଧାରଣୀକରଣ କରିଥିଲେ । ବସ୍ତୁର ଅପୂରନ୍ତତା ସଂପର୍କରେ ତାଙ୍କର ଧାରଣା ଆଧୁନିକ ବିଜ୍ଞାନର ସାଧାରଣ ନୀତିରେ ପରିଣତ ହୋଇଛି ।

ମାର୍କସ୍‌ବାଦୀ ଦ୍ୱନ୍ଦ୍ୱବାଦ ଏବଂ ଐତିହାସିକ ବସ୍ତୁବାଦର ଉତ୍ତରୋତ୍ତର ବିକାଶ ଦିଗରେ ଲେନିନ୍ ବିଶେଷ ଧ୍ୟାନ ଦେଇଥିଲେ । ସେ ବ୍ୟାପକ ଭାବେ ଅନୁଧ୍ୟାନ କରିଥିଲେ ସାମାଜିକ ବିକାଶର ଦ୍ୱନ୍ଦ୍ୱବାଦକୁ , ଅର୍ଥନୀତି ଏବଂ ରାଜନୀତି ମଧ୍ୟରେ ପାରସ୍ପରିକ ପ୍ରକ୍ରିୟା ତଥା ସାମାଜିକ ସତ୍ତା ଏବଂ ସାମାଜିକ ଚେତନା ମଧ୍ୟରେ ଯୋଗସୂତ୍ରକୁ । ନୂତନ ଐତିହାସିକ ଯୁଗରେ ପୁଞ୍ଜିବାଦ ବିକାଶରେ ନୂତନ ପ୍ରପଞ୍ଚର ସେ ଏକ ମାର୍କସ୍‌ବାଦୀ ବ୍ୟାଖ୍ୟା ଦେଇଥିଲେ ଏବଂ ସାମ୍ରାଜ୍ୟବାଦ ସଂକ୍ରାନ୍ତ ତତ୍ତ୍ୱଟିକୁ ରଚନା କରିଥିଲେ । ଏହି ତତ୍ତ୍ୱଟି କମ୍ୟୁନିଷ୍ଟ ତଥା ଶ୍ରମିକ ପାର୍ଟିମାନଙ୍କର ରଣକୌଶଳ ଏବଂ ରଣନୀତିର ବୈଜ୍ଞାନିକ ଭିତ୍ତି ରୂପେ କାର୍ଯ୍ୟ ଦେଉଛି । ସେ ଦର୍ଶାଇଥିଲେ , ସାମ୍ରାଜ୍ୟବାଦ ହେଉଛି ଏକ ପରାଙ୍ଗପୁଷ୍ଟ , ମରଣମୁଖୀ ପୁଞ୍ଜିବାଦ , ତା'ର ଶେଷ ପର୍ଯ୍ୟାୟ ଏବଂ ସମାଜବାଦୀ ବିପ୍ଳବର ପ୍ରାକ୍କାଳ ।

ମାର୍କସ୍‌ଙ୍କ ଭଳି ଲେନିନ୍ ଶିକ୍ଷା ଦେଇଥିଲେ , ସାମାଜିକ ପ୍ରକ୍ରିୟା ହେଉଛି ଏକ ନିୟମାନୁଗ ପ୍ରକ୍ରିୟା ଏବଂ ପୁଞ୍ଜିବାଦୀ ସମାଜର ବୈପ୍ଳବିକ ରୂପାନ୍ତରଣ ହେଉଛି ସାମାଜିକ ଭାବେ ଅପରିହାର୍ଯ୍ୟ । ଐତିହାସିକ କାର୍ଯ୍ୟକର୍ମରେ ସାଧାରଣ ଜନତାର ନିର୍ଣ୍ଣାୟକ ଭୂମିକା ଉପରେ ମାର୍କସ୍‌ଙ୍କ ସନ୍ଦର୍ଭଟିକୁ ସେ ଆହୁରି ବିକଶିତ କରିଥିଲେ । ତେଣୁ

ସାମାଜିକ ବିକାଶର ନିୟମ ଏବଂ ମାନବତାବାଦ ଉପରେ ଲେନିନ୍ ଏବଂ ମାର୍କସ୍‌ଙ୍କ ମତ ମଧ୍ୟରେ ପାର୍ଥକ୍ୟ ଥିଲା ବୋଲି ଯୁକ୍ତି ବାଢ଼ିବାଟା ସଂପୂର୍ଣ୍ଣ ଭିତ୍ତିହୀନ । ସେମାନେ ଏ ବିଷୟରେ ଏବଂ ଅନ୍ୟାନ୍ୟ ବିଷୟରେ ଏକମତ ଥିଲେ : ପ୍ରକୃତ ମାନବତାବାଦକୁ ଯିବାର ପଥ ହେଉଛି ଗୋଟିଏ ମାତ୍ର , ଏବଂ ସେ ପଥଟି ହେଉଛି , ଐତିହାସିକ ଭାବେ ଅନିବାର୍ଯ୍ୟ ସମାଜବାଦୀ ବିପ୍ଳବର ପଥ । କମ୍ୟୁନିଷ୍ଟ ସମାଜ ଗଠନ ଏବଂ ତା'ର ଅକୃତ୍ରିମ ମାନବିକ ଲକ୍ଷ୍ୟ – ସାମ୍ୟ , ସ୍ୱାଧୀନତା , ଭ୍ରାତୃତ୍ୱ , ଏବଂ ସମସ୍ତଙ୍କ ପାଇଁ ଶ୍ରମ , ଶାନ୍ତି ଏବଂ ସୁଖର ଚିନ୍ତାରାଜିକୁ ବାସ୍ତବରେ ପରିଣତ କରିବା ପାଇଁ ଏହା ହେଉଛି ଏକ ଅପରିହାର୍ଯ୍ୟ ସର୍ତ୍ତ ।

ବୈପ୍ଳବିକ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ନିମିତ୍ତ ଲେନିନ୍ ନୂତନ ସୁଯୋଗରାଜି ଆବିଷ୍କାର କରିଥିଲେ , ଯାହାକି ଏକ ମନୋଗତ କାରଣ ସହିତ ସଂଯୁକ୍ତ – ଯେତେବେଳେ ପୁଞ୍ଜିବାଦକୁ ସମାଜବାଦ ଦ୍ୱାରା ସ୍ଥାନାନ୍ତରିତ କରିବା ପାଇଁ ସାଧାରଣ ପୂର୍ବସର୍ତ୍ତରାଜି ପୋଖତ ହୋଇ ସାରିଥାଏ । ଲେନିନ୍‌ଙ୍କ ନେତୃତ୍ୱରେ ବଲ୍‌ଶେଭିକ୍ ପାର୍ଟି ରୁଷ୍‌ର ଜନସାଧାରଣଙ୍କୁ ୧୯୧୭ ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବରେ ବିଜୟମଣ୍ଡିତ କରାଇଥିଲା । ଏହା ଥିଲା ବସ୍ତୁଗତ ସତ୍ୟ ଏବଂ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ବୈଜ୍ଞାନିକ ତତ୍ତ୍ୱର ବୈପ୍ଳବିକ ରୂପାନ୍ତରଣର ଭୂମିକା ଏବଂ ବୈପ୍ଳବିକ କାର୍ଯ୍ୟକଳାପ ସହିତ ତାହା କେତେ ଯୁକ୍ତ , ତା'ର ଅପୂର୍ବ ସ୍ୱୀକୃତି । ଇତିହାସର ଅଭିଜ୍ଞତା ତଥା ବର୍ତ୍ତମାନର ସାମାଜିକ ବିକାଶ , ଏ କଥା ଦର୍ଶାଇ ଦିଏ ଯେ , ଲେନିନ୍‌ବାଦକୁ ସଂପୂର୍ଣ୍ଣ ଏକ "ରୁଷୀୟ" ପ୍ରପଞ୍ଚ ବୋଲି ଉପସ୍ଥାପିତ କରିବାଟା ଏକେବାରେ ଭୁଲ ।

ଲେନିନ୍ ବିଶ୍ୱ ବୈପ୍ଳବିକ ପ୍ରକ୍ରିୟାର ତତ୍ତ୍ୱ ରଚନା କରିଥିଲେ ଏବଂ ସମସ୍ତ ଦେଶରେ ସମାଜବାଦୀ ବିପ୍ଳବ ତଥା ସମାଜବାଦ ନିର୍ମାଣର ସାଧାରଣ ନିୟମବଦ୍ଧତାକୁ ପ୍ରମାଣସିଦ୍ଧ କରିଥିଲେ । ଏଥି ସଙ୍ଗେ ସଙ୍ଗେ ସେ ଦର୍ଶାଇଥିଲେ ଯେ , ସମାଜବାଦୀ ସମାଜ ଗଠନ ପାଇଁ ବିଶେଷ ରୂପସମୂହ ଭଳି ସମାଜବାଦୀ ବିପ୍ଳବର ବହୁବିଧ ରୂପ ଏବଂ ଶ୍ରମିକ ଶ୍ରେଣୀର ବିପ୍ଳବୀ କାର୍ଯ୍ୟକଳାପ ନିମିତ୍ତ ବହୁବିଧ ପଦ୍ଧତି ଗ୍ରହଣ ସମ୍ଭବ ଏବଂ ଅନିବାର୍ଯ୍ୟ । ମାର୍କସ୍‌ବାଦୀ ଦ୍ୱନ୍ଦ୍ୱବାଦକୁ ଭିତ୍ତି କରି ଲେନିନ୍ ଶିଖାଇଥିଲେ , "ବିଭିନ୍ନ ଦେଶର ବିଶେଷ ଅବସ୍ଥାରାଜି ସହିତ ମୌଳିକ ବିପ୍ଳବୀ ନୀତିରାଜିକୁ ଖାପଖୁଆଇବାକୁ ହେବ ।"*

ବିକାଶଶୀଳ ଦେଶମାନଙ୍କ ପାଇଁ ଅତୀବ ଗୁରୁତ୍ୱପୂର୍ଣ୍ଣ ହେଉଛି ଲେନିନ୍‌ଙ୍କ ବାଣୀଗୁଡ଼ିକ – ସାଫଲ୍ୟମଣ୍ଡିତ ଜାତୀୟ ମୁକ୍ତି ବିପ୍ଳବ ନିର୍ଭର କରେ ଜନସାଧାରଣଙ୍କ ସକ୍ରିୟ ଅଂଶଗ୍ରହଣ ଏବଂ ସର୍ବୋପରି ସାମାଜିକ ପରିଚ୍ଛନାରେ ଶ୍ରମିକ ଶ୍ରେଣୀର କ୍ରମବର୍ଦ୍ଧମାନ

---

* ଭି. ଆଇ. ଲେନିନ୍ , "କମ୍ୟୁନିଷ୍ଟ ଆନ୍ତର୍ଜାତିକର ତୃତୀୟ କଂଗ୍ରେସ , ଯୁନ୍ ୨୨- ଜୁଲାଇ ୧୨ , ୧୯୨୧ । ଇଟାଲୀୟ ପ୍ରଶ୍ନ ଉପରେ ଭାଷଣ" , *Collected Works*, ୩୨ଶ ଖଣ୍ଡ , ମସ୍କୋ , ୧୯୬୫ , ପୃ : ୪୬୫ ।

ଅଂଶଗ୍ରହଣ ଉପରେ ; କୃଷକ ସଂପ୍ରଦାୟ ସହିତ ଶ୍ରମିକ ଶ୍ରେଣୀର ମେଣ୍ଟ ତଥା ବ୍ୟାପକ ଗଣତନ୍ତ୍ରର ବିକାଶ ଉପରେ ଏବଂ ବିଶ୍ୱ ସମାଜବାଦ ତଥା ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀ ଆନ୍ଦୋଳନ ପ୍ରତି ଆସ୍ଥା ଉପରେ ।

ଏହି ଭାବେ, ଲେନିନ୍‌ବାଦ ମାର୍କସ୍‌ବାଦର ବହୁବିଧ "ବ୍ୟାଖ୍ୟା" ମଧ୍ୟରୁ ଅନ୍ୟତମ ନୁହେଁ, ଏହା ହେଉଛି ମାର୍କସ୍‌ବାଦର ଏକମାତ୍ର ଏବଂ ସୁସଂଗତ ସୃଜନଶୀଳ ବିକାଶ । ଜବାହାରଲାଲ ନେହେରୁ ସଠିକ୍ ଭାବେ କହିଥିଲେ : "ମାର୍କସ୍‌ବାଦର ସର୍ବବୃହତ୍ ଆଧୁନିକ ପ୍ରବକ୍ତା ହେଉଛନ୍ତି ଲେନିନ୍ । ସେ କେବଳ ଏହାକୁ ଚୋଟି ଧରି ନଥିଲେ କି ବ୍ୟାଖ୍ୟା କରି ନଥିଲେ, ସେ ତଦନୁଯାୟୀ ଜୀବନଯାପନ କରିଥିଲେ । ଏବଂ ତା ସତ୍ତ୍ୱେ ସେ ଆମକୁ ସତର୍କ କରି ଦେଇଥିଲେ, ମାର୍କସ୍‌ବାଦକୁ ଏକ ବେଦବାକ୍ୟ ବୋଲି ଗ୍ରହଣ ନ କରିବାକୁ, ଯିଏକି ବଦଳେ ନାହିଁ ...

"ସେସବୁ ତତ୍ତ୍ୱକୁ ଜାଣିବା ଦରକାର, କାରଣ ଆଜିକାଲି ସେସବୁ ଦ୍ୱାରା ବିପୁଳ ସଂଖ୍ୟକ ନରନାରୀ ପରିଚାଳିତ ହେଉଛନ୍ତି ଏବଂ ଆମ ନିଜ ଦେଶ ପକ୍ଷରେ ସେସବୁ ବି ସହାୟକ ହୋଇ ପାରେ ।"*

ମାର୍କସ୍ ଏବଂ ଏଙ୍ଗେଲସ୍ ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦୀ ଦର୍ଶନ ପ୍ରତିଷ୍ଠା କରିଥିଲେ, ଲେନିନ୍ ତାକୁ ଉନ୍ନୀତ କରିଥିଲେ ନୂଆ ଏକ ପର୍ଯ୍ୟାୟକୁ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ, ଏହି ଜୀବନ୍ତ, ସୃଜନାତ୍ମକ ଶିକ୍ଷା ଚିରତର ନୂତନ ସିଦ୍ଧାନ୍ତ ତଥା ତାତ୍ତ୍ୱିକ ସାମାନ୍ୟୀକରଣ ଦ୍ୱାରା ସମୃଦ୍ଧ ହେବାରେ ଲାଗିଛି ।

କମ୍ୟୁନିଜମ୍ ତଥା ସମାଜବାଦ ନିର୍ମାଣ, ବିଶ୍ୱ ବୈପ୍ଳବିକ ପ୍ରକ୍ରିୟାର ବିକାଶ, ଜାତୀୟ ମୁକ୍ତି ଆନ୍ଦୋଳନର ଅଭିବୃଦ୍ଧି ଏବଂ ଭାବାଦର୍ଶଗତ ସଂଗ୍ରାମର ତୀବ୍ରତା ଆବଶ୍ୟକ କରେ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନର ଉତ୍ତରୋତ୍ତର ବିକାଶ । ଭ୍ରାତୃପ୍ରତୀମ କମ୍ୟୁନିଷ୍ଟ ତଥା ଶ୍ରମିକ ପାର୍ଟିମାନଙ୍କର ମିଳିତ କାର୍ଯ୍ୟକଳାପ, ବିଭିନ୍ନ ଦେଶର ମାର୍କସ୍‌ବାଦୀ ଦାର୍ଶନିକମାନଙ୍କର ଉଦ୍ୟମ ଫଳରେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଶିକ୍ଷାକୁ ଗଭୀରତର କରିଥିବା ମୌଳିକ ଥିସିସ୍‌ସବୁ ସୃଷ୍ଟି ହୋଇଛି । ସେସବୁ ବିଶେଷ କରି ସମାଜବାଦୀ ବିପ୍ଳବ ତଥା ସମାଜବାଦ ନିର୍ମାଣର ସାଧାରଣ ନିୟମାନୁଗତା, ଆଧୁନିକ ଯୁଗର ମୁଖ୍ୟ ବିରୋଧ, ପୋଖତ ସମାଜବାଦର ସାରମର୍ମ, କମ୍ୟୁନିଷ୍ଟ ସମାଜ ନିର୍ମାଣର ପଦ୍ଧତିରାଜି, ଗଣତନ୍ତ୍ର ତଥା ସମାଜବାଦ ପାଇଁ ସଂଗ୍ରାମର ଦ୍ୱନ୍ଦ୍ୱବାଦ ଆଦି ସଂପର୍କିତ ସିଦ୍ଧାନ୍ତସମୂହ ସହିତ ସଂପୃକ୍ତ ।

---

* ଜବାହାରଲାଲ ନେହେରୁ, *"Glimpses of World History"*. Being Further Letters to His Daughter, ବନ୍ଦୀଶାଳାରେ ଲିଖିତ ଏବଂ ତରୁଣତରୁଣୀଙ୍କ ପାଇଁ ଇତିହାସ ସଂପର୍କରେ ଇତସ୍ତତଃ ବିବରଣ, Lindsay Drummond Limited, London, 1949, p. 548.

ସାଂପ୍ରତିକ ବୈଜ୍ଞାନିକ ଏବଂ କାରିଗରୀ ବିପ୍ଳବରେ ପ୍ରାକୃତିକ ବିଜ୍ଞାନଗୁଡ଼ିକର ତୀବ୍ର ବିକାଶ ସହିତ ସଂପୃକ୍ତ ବହୁ ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ସିଦ୍ଧାନ୍ତ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ତତ୍ତ୍ୱରେ ସୂତ୍ରବଦ୍ଧ ହୋଇ ପାରିଛି । ପାରମାଣବିକ ପଦାର୍ଥବିଦ୍ୟା , ସାଇବରନେଟିକସ୍ , ଜୀବବିଜ୍ଞାନ ଆଦିରେ ଆବିଷ୍କାରଗୁଡ଼ିକୁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରାଯାଇଛି ।

ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସକୁ ପ୍ରଦତ୍ତ ରିପୋର୍ଟରେ (୧୯୮୧ , ଫେବୃଆରୀ ୨୩) ଲିଓନିଦ୍ ବ୍ରେଜ୍‌ନେଭ୍ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ତତ୍ତ୍ୱର ସୃଜନାତ୍ମକ ବିକାଶ , ଜୀବନରେ ନୂତନ ବିକାଶର ସାଧାରଣୀକରଣ , ବିଶ୍ୱରେ ଘଟୁଥିବା ସବୁକିଛିକୁ ଅନୁଧ୍ୟାନ କରିବାର ଆବଶ୍ୟକତାର ଗୁରୁତ୍ୱ ଉପରେ ଜୋର ଦେଇ କହିଥିଲେ , ମାର୍କସ୍‌ବାଦୀ-ଲେନିନ୍‌ବାଦୀ ପାର୍ଟିକୁ ତା'ର ଐତିହାସିକ ଭୂମିକା ପାଳନ କରିବାକୁ ହେଲେ ଏସବୁ କରିବାକୁ ହେବ ।

"ମୁଖ୍ୟ କଥାଟି ହେଉଛି" , ସେ କହିଥିଲେ , "କମ୍ୟୁନିଷ୍ଟମାନେ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଶିକ୍ଷା ଦ୍ୱାରା ସୁସଜ୍ଜିତ ହୋଇ ବିଶ୍ୱରେ ବିଭିନ୍ନ ପ୍ରକ୍ରିୟାର ସାରମର୍ମ ଏବଂ ସମ୍ଭାବନାରାଜିକୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ ଗଭୀର ଏବଂ ସଠିକ୍ ଭାବେ ଦେଖି ପାରନ୍ତି ଏବଂ ସେମାନଙ୍କ ଦେଶର ଶ୍ରମିକ ଶ୍ରେଣୀ , ଶ୍ରମଜୀବୀ ଜନସାଧାରଣଙ୍କୁ ତଥା ଗଣତନ୍ତ୍ର , ଶାନ୍ତି , ସମାଜବାଦର ସ୍ୱାର୍ଥ ପାଇଁ ସଂଗ୍ରାମ ନିମିତ୍ତ ସେସବୁଥିବୁ ସଠିକ୍ ସିଦ୍ଧାନ୍ତମାନ ଟାଣିଥାନ୍ତି ।"

ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସ ମାର୍କସ୍‌ବାଦ-ଲେନିନ୍‌ବାଦର ସୃଜନାତ୍ମକ ବିକାଶ ଦିଗରେ ଉଲ୍ଲେଖନୀୟ ଅବଦାନ ରଖିଛି । ଏହି କଂଗ୍ରେସର ଦଲିଲଗୁଡ଼ିକ ସାମାଜିକ ଅଗ୍ରଗତିର ଆଧୁନିକ ପ୍ରବଣତାରାଜିର ଏକ ମୌଳିକ ବୈଜ୍ଞାନିକ ବ୍ୟାଖ୍ୟା ପ୍ରଦାନ କରିଛି , ସୋଭିଏତ୍ ଶାନ୍ତି କର୍ମସୂଚୀର ବିକାଶ ସାଧନ କରିଛି ଆଜିକାଲିକାର ଗୁରୁତ୍ୱପୂର୍ଣ୍ଣ ବଡ଼ ପ୍ରଶ୍ନଗୁଡ଼ିକୁ ଦୃଷ୍ଟିରେ ରଖି , ଏବଂ ଉନ୍ନତ ସମାଜବାଦୀ ସମାଜର ଅର୍ଥନୈତିକ , ସାମାଜିକ ରାଜନୈତିକ ଓ ସାଂସ୍କୃତିକ ବିକାଶ ନିମିତ୍ତ ନିର୍ଦ୍ଦେଶନାଗୁଡ଼ିକୁ ସୂତ୍ରବଦ୍ଧ କରାଯାଇଛି ।

ସାମାଜିକ ଏବଂ ବୈଜ୍ଞାନିକ ଅଗ୍ରଗତି କ୍ଷେତ୍ରର ପ୍ରତ୍ୟେକଟି ନୂତନ ପର୍ଯ୍ୟାୟ ମାନବଜାତି ଆଗରେ ନୂତନ ସମସ୍ୟା ଉପସ୍ଥାପିତ କରୁଛି , ଏବଂ ସେସବୁକୁ ସଠିକ୍ ଭାବେ ସମାହିତ କରି ହେବ ଆଧୁନିକ ବୈଜ୍ଞାନିକ ଦର୍ଶନର ଦୃଷ୍ଟିକୋଣରୁ । ମାର୍କସ୍‌ବାଦ-ଲେନିନ୍‌ବାଦ ହେଉଛି ଠିକ୍ ସେଇ ଭଳି ଏକ ଦର୍ଶନ ।

# ତୃତୀୟ ପରିଚ୍ଛେଦ

# ଜଗତ ହେଉଛି ବସ୍ତୁର ନିୟମାନୁଗ ଗତି

ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନର ଯାତ୍ରାବିନ୍ଦୁ ହେଉଛି ବସ୍ତୁ ସଂପର୍କରେ ଅବଧାରଣା । ଲେନିନ୍ ଲେଖିଛନ୍ତି, "ବସ୍ତୁ ହେଉଛି ପ୍ରାଥମିକ । ଅନୁଭବ, ଚିନ୍ତା, ଚେତନା ହେଉଛି ନିର୍ଦ୍ଦିଷ୍ଟ ଏକ ପଦ୍ଧତିରେ ସଂଗଠିତ ବସ୍ତୁର ସର୍ବଶ୍ରେଷ୍ଠ ଫଳ । ଏହା ହିଁ ହେଉଛି ସାଧାରଣ ଭାବେ ବସ୍ତୁବାଦର, ଏବଂ ମାର୍କସ୍ ଓ ଏଙ୍ଗେଲସ୍‌ଙ୍କର ବସ୍ତୁବାଦ ସଂପର୍କରେ ଅଭିମତ ।"* ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଶିକ୍ଷାର ମୂଳ ଉତ୍ସ ସଂପର୍କରେ ଅଧ୍ୟୟନ କରିବାକୁ ହେଲେ ନିଶ୍ଚିତ ରୂପେ ଆରମ୍ଭ କରିବାକୁ ହେବ ବସ୍ତୁର ଅବଧାରଣା ମଧ୍ୟକୁ ଏକ ଅନୁସନ୍ଧିତ୍ସା ଦ୍ୱାରା ।

ସର୍ବୋପରି ବସ୍ତୁବାଦୀ ଦର୍ଶନର ସାରମର୍ମକୁ ସଠିକ୍ ଭାବେ ଜାଣିବା ନିମିତ୍ତ ଏହା ଆବଶ୍ୟକ । ଅସଲ କଥାଟି ହେଉଛି, "ବସ୍ତୁବାଦ" ଆଉ "ଭାବବାଦର" ଅବଧାରଣାଗୁଡ଼ିକ ସବୁବେଳେ ସଠିକ୍ ଭାବେ ବ୍ୟବହୃତ ହୁଏ ନାହିଁ । ସାଧାରଣ ଚେତନା ଅନୁଯାୟୀ ଭାବବାଦକୁ ବ୍ୟାଖ୍ୟା କରାଯାଏ ଏକ ଉଦାସୀନ ଆଭିମୁଖ୍ୟ ହିସାବରେ – ସଦ୍‌ଗୁଣରାଶି ଉପରେ ବିଶ୍ୱାସ, ମଣିଷ ପ୍ରତି ସ୍ନେହ ଶ୍ରଦ୍ଧା, ଆଦର୍ଶରାଜି ପ୍ରତି ଅନୁରକ୍ତି ହିସାବରେ । ଏବଂ ବସ୍ତୁବାଦରେ ବିଶ୍ୱାସୀମାନଙ୍କ ଉପରେ ବିପରୀତାତ୍ମକ ଗୁଣଗୁଡ଼ିକୁ ଆରୋପ କରାଯାଇଥାଏ । ଏହି ଭାବେ, ବହୁ ଶତାବ୍ଦୀ ଧରି ଭାରତବର୍ଷରେ ସର୍ବତୋଭାବେ ପ୍ରଭୁତ୍ୱ କରିଥିବା ରକ୍ଷଣଶୀଳ ଧର୍ମର ପ୍ରବକ୍ତାମାନେ ଭୟଙ୍କର ଭାବେ ବସ୍ତୁବାଦୀ ମତାଦର୍ଶକୁ ବିକୃତ କରିଥିଲେ ଏବଂ ଅଶ୍ଳୀଳ ଭାବେ ଏହାକୁ ପ୍ରଦର୍ଶନ କରିବାକୁ ଚେଷ୍ଟା କରିଥିଲେ । ବସ୍ତୁବାଦୀ ଅଭିମତକୁ ଉପସ୍ଥାପିତ କରାଯାଇଥିଲା ଅତୀବ ନୀଚ ଧରଣର ପାପରାଶି, ଯଥା ଶ୍ରମକାତରତା, ପ୍ରଲୋଭନ, ମଦ୍ୟାଶକ୍ତି, ଗ୍ରୈର୍ଯ୍ୟ ବୃତ୍ତି, ଇନ୍ଦ୍ରିୟପରାୟଣତା, ଅତ୍ୟାହାର, ସ୍ୱାର୍ଥପରତା, କୃପଣତା ଆଦି ହିସାବରେ । ଈଶ୍ୱର ବିଶ୍ୱାସୀମାନଙ୍କ ପକ୍ଷରେ ବସ୍ତୁବାଦୀ ଅଭିମତକୁ ଅଧ୍ୟୟନ କରିବା, ଏପରିକି ବସ୍ତୁବାଦର ଅନୁଗାମୀମାନଙ୍କ ସହିତ କୌଣସି ପ୍ରକାରେ ମିଳାମିଶା କରିବା ମଧ୍ୟ ମନା ଥିଲା । ବସ୍ତୁବାଦର ଏତାଦୃଶ ବିକୃତ ବ୍ୟାଖ୍ୟାଟି

---

* ଭି. ଆଇ. ଲେନିନ୍, "*Materialism and Empirio-Criticism*", *Collected Works*, Vol. 14, Moscow, 1962, p. 55.

କାର୍ଯ୍ୟ ଦେଉଥିଲ – ଭାରତୀୟ ଅବସ୍ଥାରେ ସାଧାରଣ ଭାବେ ବସ୍ତୁବାଦ ହେଉଛି "ଅଚଳ" ଏବଂ ଅପ୍ରଯୋଜ୍ୟ – ଏହି ଧାରଣାଟିକୁ ଲୋକଙ୍କ ମନରେ ଦୃଢ଼ କରାଇବାର ଭିତ୍ତି ରୂପେ ।

କିନ୍ତୁ ଏତାଦୃଶ ବିକୃତୀକରଣ ସହିତ ବସ୍ତୁବାଦର କୌଣସି ସାମଞ୍ଜସ୍ୟ ନାହିଁ । ତା ଛଡ଼ା, ବସ୍ତୁବାଦ ହିଁ କେବଳ ସୌନ୍ଦର୍ଯ୍ୟ ଆଉ ମାନବତାବାଦର ନିୟମାନୁଯାୟୀ ମାନବିକ ସଂପର୍କକୁ ପରିବର୍ତ୍ତନ କରିବାର ଭିତ୍ତି ରୂପେ କାର୍ଯ୍ୟ କରି ପାରେ । "ବସ୍ତୁବାଦ", ଏହି ଶବ୍ଦଟି ଆସିଛି 'ବସ୍ତୁ'ର ଅବଧାରଣାରୁ । ତଦନୁଯାୟୀ ଆମେ ଏହାର ବୈଜ୍ଞାନିକ ଆଧେୟକୁ ବର୍ଣ୍ଣନା କରିବାକୁ ଚେଷ୍ଟା କରିବା ।

## ୧ – ବସ୍ତୁର ଅବଧାରଣାରେ ବିବର୍ତ୍ତନ

ବସ୍ତୁର ଅବଧାରଣା ବସ୍ତୁଗତ ବାସ୍ତବତାକୁ ସୂଚିତ କରିଥାଏ । ଆମ ଚତୁର୍ପାର୍ଶ୍ୱସ୍ଥ ଜଗତ ହେଉଛି ଅତିମାତ୍ରାରେ ବହୁବିଧ ଏବଂ ବହୁରୂପୀ । ପ୍ରାଣୀଜଗତ ହଜାର ହଜାର ଉଦ୍‌ଭିଦ, କୀଟ ପତଙ୍ଗ, ମତ୍ସ୍ୟ, ପକ୍ଷୀ ଏବଂ ପଶୁଙ୍କର ଜାତିକୁ ନେଇ ଗଠିତ । ଜଡ଼ ଉପାଦାନରାଜିର ବହୁବିଧ ଧର୍ମ ରହିଛି । ଆଧୁନିକ ବିଜ୍ଞାନ ମହାକାଶର ପ୍ରପଞ୍ଚରାଜିକୁ ଅନୁଧ୍ୟାନ କରୁଛି ଏବଂ ସେସବୁ ସେମାନଙ୍କ ଧର୍ମରେ ଅତୀବ ଚମତ୍କାର । ଦୃଷ୍ଟାନ୍ତ ସ୍ୱରୂପ, ମହାକାଶର କେତେକ କ୍ଷେତ୍ରରେ, ଘନମିଲିଏ ଉପାଦାନର ଓଜନ ହେଉଛି ୨୦ କୋଟି ହାତୀଙ୍କର ଓଜନର ସହିତ ସମାନ । ସମାଜରେ ମଧ୍ୟ ଇତିହାସର ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନ ଲୋକଙ୍କର ରହି ଆସିଛି ବିଭିନ୍ନ ଉତ୍ପାଦନ ହତିଆର, ଅର୍ଥନୈତିକ ଏବଂ ସାମାଜିକ ସଂପର୍କ, ନାନା ରକମର ରାଷ୍ଟ୍ର, ଭାବାଦର୍ଶ, ଧର୍ମ, ପରମ୍ପରା ଆଚାର ବ୍ୟବହାର, ଆଦି । ଏହିସବୁ ବିଭିନ୍ନ ଏବଂ ବହୁବିଧ ପ୍ରପଞ୍ଚ ତଥା ପଦାର୍ଥରାଜି ମଧ୍ୟରେ କ'ଣ କିଛି ଅଭିନ୍ନତା ରହିଛି ? ସତ୍ତାର ବହୁବିଧ ରୂପକତା ମଧ୍ୟରେ କ'ଣ କୌଣସି ଐକ୍ୟ ଆଉ ନିୟମାନୁଗତା ରହିଛି ? ଦାର୍ଶନିକମାନେ ଯୁଗ ଯୁଗ ଧରି ଉଠି ଆସିଥିବା ଏହିସବୁ ପ୍ରଶ୍ନର ଉତ୍ତର ବିଭିନ୍ନ ଭାବେ ଦେଇ ଆସିଛନ୍ତି ।

ଭାବବାଦୀମାନେ ଜଗତର ଐକ୍ୟକୁ ହୁଏତ ଏକେବାରେ ଅସ୍ୱୀକାର କରିଛନ୍ତି (ଭାବଗତ ଭାବବାଦ, ଦ୍ୱୈତବାଦ), ଅଥବା ଏହାକୁ ପରମାତ୍ମା, ଅଖଣ୍ଡ ଆଇଡିଆ, ବ୍ରହ୍ମ, ବିଶ୍ୱ ଇଚ୍ଛା ବା ଈଶ୍ୱରଙ୍କ (ବସ୍ତୁଗତ ଭାବବାଦ) ପ୍ରତିମୂର୍ତ୍ତି ରୂପେ ଦେଖିଛନ୍ତି । ବସ୍ତୁବାଦୀ ଦାର୍ଶନିକମାନଙ୍କ ପକ୍ଷରେ ଜଗତର ଐକ୍ୟ ନିହିତ ଅଛି ତା'ର ବସ୍ତୁମୟତା ମଧ୍ୟରେ । ବସ୍ତୁର ଅବଧାରଣା ସ୍ୱୟଂ – ସାମଗ୍ରିକ ଭାବେ ବସ୍ତୁବାଦୀ ଭାବାଦର୍ଶ ପରି – ଉଲ୍ଲେଖନୀୟ ଭାବେ ପରିବର୍ତ୍ତିତ ହୋଇଛି ।

ପ୍ରାଚୀନ ବସ୍ତୁବାଦୀମାନେ ବିଦ୍ୟମାନ ସବୁକିଛିର ଭିତ୍ତିକୁ ଦେଖିବାକୁ ଚାହିଁଥିଲେ ସେଇ ଜିନିଷଟି ମଧ୍ୟରେ, ଯେଉଁଥିରୁ ସବୁକିଛି ଆରମ୍ଭ ହେଉଛି ଏବଂ ଯେଉଁଥିକୁ ସବୁକିଛି

ପରିବର୍ତ୍ତିତ ହେଉଛି । ସେମାନେ ଉଦ୍ୟମ କରିଥିଲେ ଏଭଳି ଏକ ମୌଳିକ ଉପାଦାନ ବା ବସ୍ତୁକୁ ନିର୍ଦ୍ଧାରଣ କରିବାକୁ, ଯେଉଁଥିରେ ଏ ଜଗତ ଗଢ଼ା ଯାଇଛି । ସେମାନେ ସାଧାରଣତଃ ସେହି ଆଦିମ ବସ୍ତୁକୁ ଚିହ୍ନିତ କରିଥିଲେ ଅତି ବ୍ୟାପକ ଧରଣର ବସ୍ତୁରାଜି–ଜଳ, କ୍ଷିତି, ବାୟୁ ଏବଂ ଅଗ୍ନି ମଧ୍ୟରେ । ଉଦାହରଣ ସ୍ୱରୂପ, ସାଂଖ୍ୟ ଗୋଷ୍ଠୀର ପ୍ରଥମ ପ୍ରବକ୍ତାଗଣ (ଖ୍ରୀ : ପୂ : ୭ମ–୬ଷ୍ଠ ଶତାବ୍ଦୀ) ପ୍ରଚାର କରିଥିଲେ, ପ୍ରକୃତିର ଅବସ୍ଥିତି ହେଉଛି ପ୍ରାଥମିକ ତଥା ଜଗତର ଆଦ୍ୟ କାରଣ । ପ୍ରକୃତି ହେଉଛି ଆଦ୍ୟ ବସ୍ତୁ, ତନ୍ମଧ୍ୟରେ ପରିବର୍ତ୍ତନରାଜି ଫଳରେ ଏ ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟି ହୋଇଛି । ଏହା ହେଉଛି ସର୍ବଦର୍ଶୀ, ଶାଶ୍ୱତ ଏବଂ ଅଖଣ୍ଡ । ଏହା ହିଁ ହେଉଛି ଜଗତର କାରଣ ଏବଂ ପ୍ରକୃତ ସ୍ରଷ୍ଟା ଏବଂ ପୁରୁଷ (ଆତ୍ମା) ହେଉଛି କେବଳ ମାତ୍ର ତା'ର ଗୁଣ ବା ଧର୍ମ । ପ୍ରକୃତି ପାଞ୍ଚଟି ମୌଳିକ ଉପାଦାନ ବା ମହାଭୂତ ସୃଷ୍ଟି କରିଥିଲା–କ୍ଷିତି, ଅପ୍, ତେଜ, ମରୁତ ଏବଂ ବ୍ୟୋମ । ଏହି ପଞ୍ଚ ମହାଭୂତର ସମ୍ମିଶ୍ରଣରେ ସୃଷ୍ଟି ହେଲେ ଦେବତା ଏବଂ ମଣିଷ ସମେତ, ସମଗ୍ର ଜଗତ । ଆଦ୍ୟ ବସ୍ତୁ ସଂପର୍କିତ ଏହି ମତାଦର୍ଶରେ ପ୍ରକାଶ ପାଇଥିଲା ପ୍ରାଚୀନ ଚିନ୍ତାବିଦ୍‌ଙ୍କର ସ୍ୱତଃସ୍ଫୂର୍ତ୍ତ ଏବଂ ସରଳ ବସ୍ତୁବାଦ ।

୧୭ଶ ଏବଂ ୧୮ଶ ଶତାବ୍ଦୀର ଅଧିଭୌତିକ ବସ୍ତୁବାଦୀମାନେ ବସ୍ତୁକୁ ପ୍ରାକୃତିକ ଉପାଦାନ, ସର୍ବଶେଷ ନିର୍ଯ୍ୟାସ ତଥା ସମସ୍ତ ପଦାର୍ଥର ସାର୍ବିକ ଭିତ୍ତି ବୋଲି ବିଚାର କରୁଥିଲେ । ଉପାଦାନ ହେଉଛି causa sui (ତା'ର ନିଜସ୍ୱ କାରଣ), ଅଖଣ୍ଡ, ସ୍ଥିର, ଅସୃଷ୍ଟ ଏବଂ ଅବିନାଶୀ, ଏହା ଅପରିବର୍ତ୍ତନୀୟ ଏବଂ ସମଗୁଣସଂପନ୍ନ । ଏହା ତେଣୁ ଏକକ ପଦାର୍ଥ ତଥା ଦ୍ରବ୍ୟରାଜିଠାରୁ ଭିନ୍ନ–ସେସବୁ ହେଉଛି ପରିବର୍ତ୍ତନଶୀଳ, ସେସବୁ ଦେଖା ଦିଅନ୍ତି ଏବଂ ଅଦୃଶ୍ୟ ହୋଇ ଯାଆନ୍ତି । ପ୍ରକୃତିର ବସ୍ତୁମୟ ପଦାର୍ଥରାଜିର ସାର୍ବିକତା ହିସାବରେ ବସ୍ତୁ ପ୍ରତି ଆଭିମୁଖ୍ୟ ସେତେବେଳକୁ ସୃଷ୍ଟି ହୋଇ ଯାଇଥିଲା ଏବଂ ୧୯ଶ ଶତାବ୍ଦୀ ପର୍ଯ୍ୟନ୍ତ ତାହା ବଳବତ୍ତର ରହିଥିଲା । ଏହା ବସ୍ତୁକୁ ଯାନ୍ତ୍ରିକ ଘନତା, ସଂପ୍ରସାରଣ, ନିଷ୍କ୍ରିୟତା, ଅଭେଦ୍ୟତା, ପାରମାଣବିକ-ଆଣବିକ ଗଢ଼ଣ ଏବଂ ଯାନ୍ତ୍ରିକ ଗତି ଭଳି ବିଶେଷ ଦୈହିକ ଗୁଣରେ ଭୂଷିତ ବି କରିଥିଲା । କିଛି କାଳ ପର୍ଯ୍ୟନ୍ତ ସେସବୁ ଅଭିମତ ବୈଜ୍ଞାନିକ ତଥ୍ୟରାଜିକୁ ଖଣ୍ଡନ କରୁ ନଥିଲା, କିନ୍ତୁ ୧୯ଶ ଶତାବ୍ଦୀର ଶେଷରେ ୨୦ଶ ଶତାବ୍ଦୀର ଆରମ୍ଭରେ ପଦାର୍ଥବିଦ୍ୟା କ୍ଷେତ୍ରରେ ଦେଖା ଦେଲା ଏକ ବିପ୍ଳବ, ଯିଏକି ବସ୍ତୁ, ତା'ର ଗଢ଼ଣ ଏବଂ ଧର୍ମ ସଂକ୍ରାନ୍ତରେ ପରମ୍ପରାଗତ ମତାମତକୁ ମୌଳିକ ଭାବେ ପରିବର୍ତ୍ତନ କରି ଦେଇଥିଲା । ଯାନ୍ତ୍ରିକ ଏବଂ ଅଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ବ୍ୟାଖ୍ୟା କରି ପାରିଲା ନାହିଁ କିପରି ଦୈହିକ ପଦାର୍ଥର ଗତିବେଗ ଉପରେ ନିର୍ଭର କରି ଘନତାରେ ପରିବର୍ତ୍ତନ ଘଟେ, ରେଡିଓଆକ୍‌ଟିଭିଟି, ପରମାଣୁର ରୂପାନ୍ତରଣ ଏବଂ ଇଲେକଟ୍ରନ୍‌ର ଆବିଷ୍କାର ଆଦି ସଂକ୍ରାନ୍ତରେ ପ୍ରତିଷ୍ଠିତ ନୂତନ ତଥ୍ୟରାଜିକୁ । ବସ୍ତୁର "ବିଲୋପ ଘଟିଲା" ବୋଲି ଏକ ମତ ମଧ୍ୟ ବ୍ୟାପକ ଭାବେ ପ୍ରଚାରିତ ହୋଇଥିଲା, ଏବଂ ବିଭିନ୍ନ ଗୋଷ୍ଠୀର ଭାବବାଦୀମାନେ ଦାବୀ କରିଥିଲେ ଯେ, ନୂଆ ପଦାର୍ଥବିଦ୍ୟା ବସ୍ତୁବାଦକୁ "ଅପ୍ରମାଣିତ" କରି ଦେଇଛି ।

ବସ୍ତୁର ପ୍ରବର୍ଗଟି ନିଶ୍ଚିତ ଭାବେ ସେତେବେଳେ ଆବଶ୍ୟକ କରି ଥିଲା ଅତୀତର ସେ ବ୍ୟାଖ୍ୟାଠାରୁ ଏକ ଭିନ୍ନ ବ୍ୟାଖ୍ୟା ।

ଲେନିନ୍ ତାଙ୍କ ବିଖ୍ୟାତ ପୁସ୍ତକ, *"Materialism and Empirio-Criticism"*ରେ ଭାବବାଦ ସହିତ ତର୍କ ଯୁଦ୍ଧ କରି ଦର୍ଶାଇଥିଲେ, ପ୍ରାକୃତିକ ବିଜ୍ଞାନରେ ବିପ୍ଲବ କହିଲେ ବସ୍ତୁର "ବିଲୋପ" କଥା ନବୁଝାଇ ବସ୍ତୁ ସଂପର୍କରେ ପୂର୍ବବର୍ତ୍ତୀ ଅଧିଭୌତିକ ଧାରଣାର ପତନକୁ ବୁଝାଏ । ଆଧୁନିକ ବୈଜ୍ଞାନିକ ସାଫଲ୍ୟରାଜି ସମେତ ପଦାର୍ଥବିଦ୍ୟାରେ ଏହି ସମସ୍ତ ଆବିଷ୍କାରକୁ କେବଳ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଅବସ୍ଥାନରୁ ହିଁ ସଠିକ୍ ଭାବେ ବ୍ୟାଖ୍ୟା କରି ହୁଏ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପଦାର୍ଥବିଦ୍ୟାରେ ସଂକଟକୁ ବହୁ ପ୍ରକୃତିବିଜ୍ଞାନୀ ଦ୍ୱନ୍ଦ୍ୱବାଦ ସଂପର୍କରେ ଅଜ୍ଞତା ନେଇ ବିଚାର କରିଥିଲେ । ସେମାନେ ବସ୍ତୁର ଅବଧାରଣା ପ୍ରତି ଅତୀବ ସଂକୀର୍ଣ୍ଣ ଏବଂ ଶେଷରେ ଭୁଲ ଆଧେୟ ଆରୋପ କରିଥିଲେ ।

ତା' ହେଲେ, ବସ୍ତୁର କେଉଁ ସଂଜ୍ଞାଟା heuristic ତାତ୍ପର୍ଯ୍ୟ ସହିତ ବିଶ୍ୱଦୃଷ୍ଟିକୋଣର ସାର୍ବିକତାକୁ ସମିଶ୍ରିତ କରିବ ? ସେହି ସଂଜ୍ଞାଟିକୁ ସୂତ୍ରବଦ୍ଧ କରିଥିଲେ ଲେନିନ୍ । ସେ କହିଥିଲେ, "ବସ୍ତୁ ହେଉଛି ଏକ ଦାର୍ଶନିକ ପ୍ରବର୍ଗ, ଏହା ବସ୍ତୁଗତ ବାସ୍ତବତାକୁ ଚିହ୍ନିତ କରେ, ଯାହାକୁ ମଣିଷ ତା'ର ଇନ୍ଦ୍ରିୟାନୁଭୂତି ଦ୍ୱାରା ଲାଭ କରିଥାଏ, ଏବଂ ଆମର ଇନ୍ଦ୍ରିୟାନୁଭୂତି ତାକୁ କପି କରେ, ତା'ର ଫଟୋ ନିଏ ଏବଂ ପ୍ରତିଫଳନ କରେ, କିନ୍ତୁ ବସ୍ତୁ ତିଷ୍ଠି ରହେ ସେସବୁଠାରୁ ସ୍ୱାଧୀନ ଭାବେ ।"* ବସ୍ତୁ ସଂପର୍କିତ ମାର୍କସ୍‌ବାଦୀ ଦର୍ଶନର ଅବଧାରଣାରେ ଦୁଇଟି ବୈଶିଷ୍ଟ୍ୟ କଥା ଆମେ ଏଠାରେ ଆଲୋଚନା କରିବା ।

ଯେକୌଣସି ଲୋକ ଦେଖି ପାରିବ ଯେ, ବସ୍ତୁର ସଂଜ୍ଞା ଦର୍ଶନର ମୌଳିକ ପ୍ରଶ୍ନର ଆଧାର ମଧ୍ୟରେ, ଚେତନା ସହିତ ତା'ର ସଂପର୍କର ପ୍ରସଙ୍ଗରେ ଦିଆ ଯାଇଥାଏ । ମାର୍କସ୍‌ଙ୍କ ପୂର୍ବ ବସ୍ତୁବାଦର ପରମ୍ପରା, ପରିବର୍ତ୍ତନଶୀଳ ମୌଳିକ ଉପାଦାନ ହିସାବରେ ବସ୍ତୁକୁ ପରିବର୍ତ୍ତନମୁଖୀ ପଦାର୍ଥରାଜିର ବିରୋଧ କରୁଥିଲା । ବସ୍ତୁର ବୈଜ୍ଞାନିକ ସଂଜ୍ଞା ଚେତନାଠାରୁ ତା'ର ମୌଳିକ ପାର୍ଥକ୍ୟରାଜି ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥାଏ, ଯେହେତୁ ଏହା ଦର୍ଶନ ପାଇଁ ବିରାଟ ଗୁରୁତ୍ୱପୂର୍ଣ୍ଣ ।

ଏହି ସଂଜ୍ଞା, ସର୍ବୋପରି ଚତୁର୍ପାର୍ଶ୍ୱସ୍ଥ ଜଗତର ସମସ୍ତ ପଦାର୍ଥ ତଥା ପ୍ରପଞ୍ଚର ଧର୍ମ ଉପରେ ଗୁରୁତ୍ୱ ଆରୋପ କରେ ମଣିଷ ତଥା ମଣିଷର ଚେତନାର ବାହାରେ, ସ୍ୱାଧୀନ ଭାବେ ବସ୍ତୁଗତ ଭାବେ ତାହା ତିଷ୍ଠି ରହିବା ପାଇଁ । ବସ୍ତୁ ମଧ୍ୟ ହେଉଛି ଏକ ବସ୍ତୁଗତ ବାସ୍ତବତା, ଯାହାକୁ କେହି ବା କୌଣସି ଜିନିଷ ସୃଷ୍ଟି କରି ନି; ଏହାର ଅସ୍ତିତ୍ୱ ପାଇଁ

* ଭି. ଆଇ. ଲେନିନ୍, *"Materialism and Empirio-Criticism"*, *Collected Works*, ୧୪ଶ ଖଣ୍ଡ, ପୃ: ୧୩୦ ।

# ଲେନିନ୍‌ଙ୍କ ଦ୍ୱାରା ପ୍ରଦତ୍ତ ବସ୍ତୁର ସଂଜ୍ଞା

“ବସ୍ତୁଗତ ବାସ୍ତବତାକୁ ଚିହ୍ନେଇ ଦେଉଥିବା ବସ୍ତୁ ହେଉଛି ଏକ ଦାର୍ଶନିକ ପ୍ରବର୍ଗ, ଯାହାକୁ ମଣିଷ ଲାଭ କରିଥାଏ ତା’ର ଅନୁଭୂତି ଶକ୍ତି ଦ୍ୱାରା ଏବଂ ଯିଏକି ଆମର ଅନୁଭୂତି ଦ୍ୱାରା ଅବିକଳ ଭାବେ ପ୍ରତିଛିପିତ, ପ୍ରତିବିମ୍ବିତ ଏବଂ ପ୍ରତିଫଳିତ ହୋଇଥାଏ, ଅଥଚ ସେସବୁଠାରୁ ସ୍ୱାଧୀନ ଭାବେ ଅବସ୍ଥାନ କରେ ।”

— ଲେନିନ୍

ଦର୍ଶନର ମୌଳିକ ପ୍ରଶ୍ନର ପ୍ରଥମ ଦିଗ

ବସ୍ତୁର କ’ଣ ଅସ୍ତିତ୍ୱ ଅଛି ?

୧

“ବସ୍ତୁର ଏକମାତ୍ର ‘ଧର୍ମ’, ଯା’ର ସ୍ୱୀକୃତି ସହିତ ଦାର୍ଶନିକ ବସ୍ତୁବାଦ ସଂଯୁକ୍ତ, ସେ ହେଉଛି ବସ୍ତୁନିଷ୍ଠ ଏକ ବାସ୍ତବତାର ଏକ ଧର୍ମ । ଏହା ମଣିଷ ମନର ବାହାରେ ବିଦ୍ୟମାନ ।”

— ଲେନିନ୍

ଦର୍ଶନର ମୌଳିକ ପ୍ରଶ୍ନର ଦ୍ୱିତୀୟ ଦିଗ

ମଣିଷର ଇନ୍ଦ୍ରିୟାନୁଭୂତି ଜରିଆରେ କ’ଣ ସଞ୍ଚାର କରାଯାଇ ଥାଏ ?

୨

ମଣିଷ ଆତ୍ମା ବା କୌଣସି ଅଜ୍ଞାତ ବସ୍ତୁକୁ ଦେଖି ପାରେ ନା, ସେ ବରଂ ଦେଖି ପାରେ ବସ୍ତୁକୁ । “ଆମ ଅନୁଭୂତିଶୀଳ ଇନ୍ଦ୍ରିୟସମୂହ ଉପରେ ଯାହା ପ୍ରଭାବ ପାତ କରେ ଏବଂ ଇନ୍ଦ୍ରିୟାନୁଭୂତି ସୃଷ୍ଟି କରେ ସେ ହେଉଛି ବସ୍ତୁ ।”

— ଲେନିନ୍

୩

ଇନ୍ଦ୍ରିୟାନୁଭୂତି ପ୍ରତୀକ ନୁହଁ କି ସୂଚନା ନୁହଁ, ତାହା ହେଉଛି ପ୍ରତିଛବି, ବାହ୍ୟିକ ଜଗତର ଚିତ୍ର । “ଇନ୍ଦ୍ରିୟାନୁଭୂତି ହେଉଛି ବାହ୍ୟିକ ଜଗତର ପ୍ରତିଛବି – ଏହି ମତକୁ ଖଣ୍ଡନ କଲା ଭଳି କୌଣସି ତଥ୍ୟ ପ୍ରଦାନ କରାଯାଇ ନି ବା ପ୍ରଦାନ କରାଯାଇ ପାରିବ ନାହିଁ ।” — ଲେନିନ୍

୪

“ବସ୍ତୁର ଅସ୍ତିତ୍ୱ ଇନ୍ଦ୍ରିୟାନୁଭୂତିଶକ୍ତି ଉପରେ ନିର୍ଭର କରେ ନାହିଁ । ବସ୍ତୁ ହେଉଛି ମୁଖ୍ୟ । ଇନ୍ଦ୍ରିୟାନୁଭୂତିଶକ୍ତି, ଚିନ୍ତନ, ଚେତନା ହେଉଛି ବିଶେଷ ଏକ ଉପାୟରେ ସଂଗଠିତ ବସ୍ତୁର ସର୍ବୋଚ୍ଚ ସୃଷ୍ଟି ।”

— ଲେନିନ୍

ଜଗତର ବସ୍ତୁମୟତାକୁ ସ୍ୱୀକାର କରିବା ଦ୍ୱାରା ନିୟମାବଦ୍ଧତାର ବସ୍ତୁଗତ ଚରିତ୍ର, ପ୍ରକୃତି ଏବଂ ସମାଜର କାର୍ଯ୍ୟକାରଣତା ଏବଂ ପ୍ରୟୋଜନୀୟତାକୁ ପ୍ରମାଣ କରିଥାଏ । କୌଣସି ବିଜ୍ଞାନ ବିକାଶ ଲାଭ କରି ପାରିବ ନାହିଁ, ଯଦି ତା’ର ତତ୍ତ୍ୱ ବସ୍ତୁଗତ ଭାବେ ବିଦ୍ୟମାନ ଏବଂ ନିଜର ନିୟମ ଅନୁଯାୟୀ ବିକଶିତ ବସ୍ତୁର ନିର୍ଦ୍ଦିଷ୍ଟ ଧର୍ମରାଶି ତଥା ଦିଗଗୁଡ଼ିକୁ ପ୍ରତିଫଳିତ ନ କରେ ।

କୌଣସି କାରଣ କିମ୍ବା ସର୍ତ୍ତରାଜି ନୁହେଁ । ଅନ୍ୟ କେତେକ ସଂପୂର୍ଣ୍ଣ ଅପରିବର୍ତ୍ତନୀୟ ଆଦ୍ୟ ସାରସତ୍ତା ଅର୍ଥରେ ନକହି, ଏହି ଅର୍ଥରେ ଆମେ ବସ୍ତୁକୁ ତା'ର ପ୍ରାଥମିକତାର ପରିପ୍ରକାଶ ହିସାବରେ ତା'ର ପ୍ରମାଣସିଦ୍ଧତା କଥା କହି ପାରେ । ବସ୍ତୁ ମଧ୍ୟ ନିଜେ ହେଉଛି ବସ୍ତୁଗତ ଜଗତର ପଦାର୍ଥ ତଥା ପ୍ରକ୍ରିୟାରାଜିର ସୀମାହୀନ ବହୁବିଧ ରୂପର ଉତ୍ସ । ଏହା ମଧ୍ୟ ଚେତନାକୁ ଜନ୍ମ ଦେଇଥାଏ ଏବଂ ତାହା ହେଉଛି ତା'ର ସର୍ବଶ୍ରେଷ୍ଠ ସୃଷ୍ଟି ।

ଶେଷତଃ, ବସ୍ତୁ ପ୍ରତି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଆଭିମୁଖ୍ୟ ବହିର୍ଜଗତର ପଦାର୍ଥ ତଥା ପ୍ରକୃତି ଉପରେ ଗୁରୁତ୍ୱ ଆରୋପ ଇନ୍ଦ୍ରିୟାନୁଭବତାତୀତ ଏବଂ ଅଲୌକିକ ଚରିତ୍ର ଦୃଷ୍ଟିରୁ ନକରି କରିଥାଏ ଇନ୍ଦ୍ରିୟାନୁଭୂତ ଏବଂ ପ୍ରାକୃତିକ ଚରିତ୍ର ଦୃଷ୍ଟିରୁ । ଚତୁଃପାର୍ଶ୍ୱସ୍ଥ ବସ୍ତୁଗତ ପଦାର୍ଥ ବା ପ୍ରପଞ୍ଚ ପ୍ରତ୍ୟକ୍ଷ ଭାବେ ବା ପରୋକ୍ଷ ଭାବେ (ବୈଜ୍ଞାନିକ ପରୀକ୍ଷା ବା ପର୍ଯ୍ୟବେକ୍ଷଣରେ ବ୍ୟବହୃତ ଯନ୍ତ୍ରାଦି ଜରିଆରେ) ଆମର ଜ୍ଞାନେନ୍ଦ୍ରିୟସମୂହ ଉପରେ ପ୍ରଭାବ ପକାଏ ଏବଂ ସେସବୁ ଦ୍ୱାରା ଅନୁଭୂତ ହୁଏ । ଜଗତର ବସ୍ତୁମୟତା ତା'ର ପରିପ୍ରକାଶର ଇନ୍ଦ୍ରିୟାନୁଭୂତ ଚରିତ୍ରଠାରୁ ଅବିଚ୍ଛିନ୍ନ । ଏହା ବସ୍ତୁଗତ ବାସ୍ତବତା ହିସାବରେ ବସ୍ତୁକୁ ବିଶ୍ୱ କାରଣର "ବସ୍ତୁଗତ ବାସ୍ତବତା", ବ୍ରହ୍ମ, ଅଖଣ୍ଡ ବ୍ରହ୍ମ ଅନ୍ୟ ଯେକୌଣସି ଧର୍ମୀୟ, ଭାବବାଦୀ ଅବଧାରଣାଠାରୁ ପୃଥକ୍ କରି ଦେଇଥାଏ, ଯାହାକୁ କେବଳ କଳ୍ପନା କରି ହୁଏ, ମଣିଷର ଇନ୍ଦ୍ରିୟାନୁଭୂତି ଦ୍ୱାରା ଜାଣି ହୁଏ ନାହିଁ ।

ଉପରୋକ୍ତ କଥାଟି ଏହି ସିଦ୍ଧାନ୍ତରେ ପହଞ୍ଚିବାକୁ ପ୍ରୋତ୍ସାହିତ କରିଥାଏ ଯେ, ବସ୍ତୁର ଦାର୍ଶନିକ ଅବଧାରଣାରେ କୌଣସି ବିଶେଷ ବୈଶିଷ୍ଟ୍ୟରାଜିକୁ (ଦୈହିକ, ରାସାୟନିକ, ଆଦି) କରିବାଟା ଭୁଲ ହେବ । ଉଦାହରଣ ସ୍ୱରୂପ, ବସ୍ତୁର ଅବଧାରଣାକୁ ଯଦି ମୌଳିକ ଉପାଦାନର ଅବଧାରଣାକୁ ସୀମିତ କରି ଅଣାଯାଏ (ଗ୍ୟାସ୍, ତରଳ ପଦାର୍ଥ, ସ୍ଫଟିକ ଆଦି) ଅଥବା ତା'ର ଗଠନରେ ଲଗୁଥିବା ଅଣୁରାଶିକୁ (ପରମାଣୁ, ଅଣୁରାଶି, ଆଦି) ତେବେ ତାହା ଭୁଲ ହେବ । ଠିକ୍ ଉପାଦାନ ଭଳି ବୈଦ୍ୟୁତିକ ଚୁମ୍ବକ କ୍ଷେତ୍ର ହେଉଛି ବସ୍ତୁଗତ, ସଂବେଦକ ଭାବେ ଏହା ବାସ୍ତବତାକୁ ଅନୁଭବ କରିଥାଏ । ସେମାନଙ୍କ ଧର୍ମରାଶିରେ ସମସ୍ତ ପାର୍ଥକ୍ୟ ସତ୍ତ୍ୱେ ମୂଳ ଉପାଦାନ ଏବଂ କ୍ଷେତ୍ର ହେଉଛି, ତେଣୁ, ବସ୍ତୁର କେବଳ ବିଶେଷ ବିଶେଷ ରୂପ । ଏହା ଛଡ଼ା ବସ୍ତୁର ମଧ୍ୟ ଆଉରି ଅନେକ ରୂପ ଏ ଜଗତରେ ରହିଛି, ଯେଉଁଗୁଡ଼ିକ ସେମାନଙ୍କ ଗୁଣ ଦିଗରୁ ଭିନ୍ନ ଭିନ୍ନ, କିନ୍ତୁ ବିଜ୍ଞାନ ପକ୍ଷରେ ଅଜ୍ଞାତ । ବସ୍ତୁର ବହୁବିଧତା ସଂଖ୍ୟାହୀନ ଏବଂ ତା'ର ପରିପ୍ରକାଶର ବିଶେଷ ରୂପଗୁଡ଼ିକର ଶେଷ ନାହିଁ ।

## ୨ – ପ୍ରକୃତିର ଅସୀମତା

ବସ୍ତୁ ସଂପର୍କରେ ବୈଜ୍ଞାନିକ ଜ୍ଞାନ ଅବିରାମ ବିକାଶ ଲାଭ କରିବା ସଙ୍ଗେ ସଙ୍ଗେ ଗଭୀର ହେବାରେ ଲାଗିଛି । ଚତୁଃପାର୍ଶ୍ୱସ୍ଥ ଜଗତର ପ୍ରପଞ୍ଚ ତଥା ବସ୍ତୁଗତ ବାସ୍ତବତାର ଗଢ଼ଣର ଧର୍ମ ସଂପର୍କରେ ଆମର ଚିନ୍ତାଧାରା ଆଉରି ବହୁବିଧ ହୋଇ ଯାଉଛି । ବସ୍ତୁର

ଦାର୍ଶନିକ ଅବଧାରଣାରେ ମିଶି ଯାଇଛି ବସ୍ତୁଗତ ଜଗତର ଅସୀମତା ତଥା ଅନିଃଶେଷତା । "ପଦାର୍ଥରାଜିର 'ସାରସତ୍ତା' ବା 'ମୂଳ ଉପାଦାନ'", ଲେନିନ୍ ଲେଖିଛନ୍ତି, "ମଧ୍ୟ ହେଉଛି ସାପେକ୍ଷିକ; ଏହା କେବଳ ପଦାର୍ଥରାଜି ସଂପର୍କରେ ମଣିଷ ଜ୍ଞାନର ଆପେକ୍ଷିକ ଗଭୀରତାକୁ ପ୍ରକାଶ କରିଥାଏ । ଆଗେ ଏହି ଜ୍ଞାନର ଗଭୀରତା ପରମାଣୁର ସୀମାକୁ ଅତିକ୍ରମ କରି ପାରି ନଥିଲା, ଆଜି ଏହା ଇଲେକ୍‌ଟ୍ରନ ଏବଂ ଇଥରର ସୀମାକୁ ଅତିକ୍ରମ କରି ଗଲଣି । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ପ୍ରକୃତି ସଂପର୍କରେ ମଣିଷର ପ୍ରଗତିମାନ ବିଜ୍ଞାନ ଦ୍ୱାରା ଆହୃତ ଜ୍ଞାନ ପଥରେ ସେହିସବୁ ମାଇଲଖୁଣ୍ଟିଗୁଡ଼ିକର ଅସ୍ଥାୟୀ, ସାପେକ୍ଷିକ, ଆନୁମାନିକ ଚରିତ୍ର ଉପରେ ଜୋର ଦେଉଥାଏ । ପରମାଣୁ ପରି ଇଲେକ୍‌ଟ୍ରନ୍ ହେଉଛି ଅସରନ୍ତି ଏବଂ ପ୍ରକୃତି ହେଉଛି ସୀମାହୀନ...।"* ଗତ କେତେ ଦଶକରେ ବିଜ୍ଞାନର ବିକାଶ ଏହି ଚିନ୍ତାଧାରାକୁ ସଠିକ୍ ବୋଲି ପ୍ରମାଣ କରିଛି ।

ପରମାଣୁର ହୃଦୟ ମଧ୍ୟରେ ପ୍ରବେଶ କରିବା ଦ୍ୱାରା ଉଦାହରଣ ସ୍ୱରୂପ, ୩୦୦ ପ୍ରକାରର ମୌଳିକ ଅଣୁ ଆବିଷ୍କୃତ ହୋଇଛି । ସେସବୁ ମଧ୍ୟରୁ କେତେକ ସ୍ଥିର ଏବଂ ଅଧିକାଂଶ ହେଉଛନ୍ତି ତଥାକଥିତ ପ୍ରତିଧ୍ୱନିତ ଅଣୁ । ସେସବୁ ଅତ୍ୟନ୍ତ ଅସ୍ଥିର । ପ୍ରତ୍ୟେକ ବର୍ଷ ନୂଆ ନୂଆ ଅଣୁବୀକ୍ଷଣକ ଅଣୁରାଶି ଆବିଷ୍କାର ହୋଇ ଗ୍ଲିଛି ।

ଅଣୁବୀକ୍ଷଣକ ଅଣୁରାଶିର ଧର୍ମରାଜିର ପ୍ରକୃତିରେ ଶେଷ ନାହିଁ । ସେସବୁ ରହିଛି ଘନତା, ଶକ୍ତିର ଭରଣୀ, ଘୈମ୍ବିକ ଗତିବେଗ, ଗଢ଼ଣ ଏବଂ ଅନ୍ୟ ଅଣୁବୀକ୍ଷଣକ ଅଣୁରାଶିକୁ ରୂପାନ୍ତରିତ ହେବାର କ୍ଷମତା । ଏହି ଅଣୁବୀକ୍ଷଣକ ଅଣୁ ନିଜେ ବସ୍ତୁର ଆଉରି ଅବିଭାଜ୍ୟ "ମୌଳିକ" ଅଣୁ ହେଲା ଭଳି ପ୍ରତୀତ ହୁଏ ନାହିଁ । ଆଧୁନିକ ବିଜ୍ଞାନ ଏହାକୁ ମନେ କରେ ଏକ ପ୍ରକାରର ସଂପ୍ରସାରିତ ଘନିଭୂତ ବସ୍ତୁ ବୋଲି, ଯିଏକି ହେଉଛି ପାରମାଣବିକ କେନ୍ଦ୍ରାଂଶର ଦୁଇ ତିନି ଗୁଣ । ପ୍ରୋଟନ ଏବଂ ନିଉଟ୍ରନର ମଧ୍ୟ ଜଟିଳ ଗଢ଼ଣ ଅଛି ବୋଲି ପ୍ରମାଣିତ ହୋଇଛି ଏବଂ ଅନ୍ୟାନ୍ୟ ଅଣୁର ଗଢ଼ଣକୁ କେବଳ ଅନୁମାନ କରି ହୁଏ ଆମର ସାଂପ୍ରତିକ ବିଖଣ୍ଡିତ ଜ୍ଞାନ ଦ୍ୱାରା ।

ଅସ୍ତିତ୍ୱର ନୂତନ ରୂପରାଶି ଏବଂ ବସ୍ତୁର ରୂପରାଶି ଉଦ୍‌ଘାଟନ କରିବା କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ହେଉଛି ଅଣୁରାଶି ତଥା ବିରୋଧୀ ଅଣୁରାଶି ମଧ୍ୟରେ ଐକ୍ୟ ପ୍ରତିଷ୍ଠା । ଅନୁସନ୍ଧାନରୁ ଜଣାଯାଇଛି, ପ୍ରତ୍ୟେକଟି ମୌଳିକ ଅଣୁର ଅଛି ତତ୍ ସହିତ ସଂପୃକ୍ତ ଏକ ବିରୋଧୀ ଅଣୁ, ଯିଏକି ହେଉଛି କେତେକ ଧର୍ମ ଦିଗରୁ (ଯଥା, ଶକ୍ତି ପ୍ରୟୋଗ) ତା'ର ବିପରୀତ । ଦୃଷ୍ଟାନ୍ତ ସ୍ୱରୂପ, ଏକ ଇଲେକ୍‌ଟ୍ରନ୍‌ର ପାଖେ ପାଖେ ଏକ ପଜିଟ୍ରନ୍ ରହିଥାଏ (ଅର୍ଥାତ୍, ଅସ୍ତିବାଚକ ଶକ୍ତି ପ୍ରୟୋଗ ଯୁକ୍ତ ଇଲେକ୍‌ଟ୍ରନ୍), ଏକ ପ୍ରୋଟନ୍ ଏବଂ ଏକ ନିଉଟ୍ରନ୍ (ପାରମାଣିକ ସୂକ୍ଷ୍ମାଣୁରାଶି) ସହିତ ଏକ ବିରୋଧୀ

---

* ଭି. ଆଇ. ଲେନିନ୍, "*Materialism and Empirio-Criticism*", *Collected Works*, Vol. 14, p. 262.

ପ୍ରୋଟନ୍ ଏବଂ ବିରୋଧୀ ନିଉଟ୍ରନ୍, ଆଦି । ବସ୍ତୁର ଏକ ବିଶେଷ ରୂପ, "ବିରୋଧୀ ଉପାଦାନର" ସମସ୍ତ ପରମାଣୁ ବି ରହି ପାରିଥାଏ । ଏହା ସାଧାରଣ ବସ୍ତୁଠାରୁ ଭିନ୍ନ, ତା'ର ଗଢ଼ଣର ମୌଳିକ ଉପାଦାନଗୁଡ଼ିକ ବିରୋଧୀ ସୂକ୍ଷ୍ମାଣୁସବୁ ।

ଭୌତିକ କ୍ଷେତ୍ର ସଂପର୍କରେ ଆମର ଅବଧାରଣାରେ ମଧ୍ୟ ଅନେକ ପରିବର୍ତ୍ତନ ଘଟିଛି । ବୈଦ୍ୟୁତିକ ଚୁମ୍ବକ କ୍ଷେତ୍ର ସହିତ, ମାଧ୍ୟାକର୍ଷଣ କ୍ଷେତ୍ର, ପାରମାଣବିକ, ଇଲେକ୍ଟ୍ରନ୍-ପଜିଟ୍ରନ୍ ଏବଂ ଅନ୍ୟାନ୍ୟ କ୍ଷେତ୍ରରାଜି ଭୌତିକ ପ୍ରକ୍ରିୟାରେ ଆବଶ୍ୟକ ବୋଲି ଜଣାଯାଇଛି । ଆଗେ ଭୌତିକ କ୍ଷେତ୍ର ଏବଂ ମୌଳିକ ଉପାଦାନ ମଧ୍ୟରେ ସୀମାନା ଖୁବ୍ ସ୍ପଷ୍ଟ ବୋଲି ଯାହା ମନେ ହେଉଥିଲା ତାହା ନୁହେଁ ବୋଲି ମଧ୍ୟ ଜଣାଗଲାଣି । ମାଇକ୍ରୋସ୍ତରରେ କ୍ଷେତ୍ର ଏବଂ ମୌଳିକ ଉପାଦାନ ପରସ୍ପରକୁ ପ୍ରଭାବିତ କରନ୍ତି ଏବଂ ପରସ୍ପର ମଧ୍ୟକୁ ରୂପାନ୍ତରିତ ହୁଅନ୍ତି । ମୌଳିକ ଉପାଦାନ ଏବଂ କ୍ଷେତ୍ର ମଧ୍ୟରେ ପାର୍ଥକ୍ୟ ପରମାଣୁ ମଧ୍ୟରେ ଘଟୁଥିବା ପ୍ରକ୍ରିୟାରାଜି ଭିତରେ ଅର୍ଥହୀନ ହୋଇ ପଡ଼ୁଛି ।

ତେଣୁ, ବସ୍ତୁର ଅବଧାରଣାକୁ ତା'ର ମୌଳିକ ଉପାଦାନ ଉପାଦାନଗତ ଧର୍ମରାଶି ମଧ୍ୟରେ ସୀମିତ ବୋଲି ଭ୍ରାନ୍ତ ଧାରଣାକୁ ଆଧୁନିକ ବିଜ୍ଞାନ ପ୍ରମାଣ କରି ପାରିଛି । ଏଥିରେ ବିଶେଷ ଗୁରୁତ୍ୱ ଆରୋପ କରିବା ଦରକାର । କାରଣ, ନିର୍ଦ୍ଦିଷ୍ଟ ଭୌତିକ ପ୍ରପଞ୍ଚଗୁଡ଼ିକର ଆବିଷ୍କାରଗୁଡ଼ିକୁ ବାରମ୍ବାର ଭାବବାଦୀ ଢଙ୍ଗରେ ପରିବେଷଣ କରିବାକୁ ଉଦ୍ୟମ ହୋଇଥାଏ । ଦୃଷ୍ଟାନ୍ତ ସ୍ୱରୂପ, ଏହା ମଧ୍ୟ "ବସ୍ତୁର" ତଥାକଥିତ "ଧ୍ୱଂସସାଧନ" ସମସ୍ୟା ସହିତ ସଂଗତିଶୀଳ । ବିଜ୍ଞାନ ସାହିତ୍ୟରେ ଏହି ଶବ୍ଦଟିର ଅର୍ଥ ହେଉଛି କେତେକ ନିର୍ଦ୍ଦିଷ୍ଟ ଅବସ୍ଥାରାଜିରେ ପରିଦୃଷ୍ଟମାନ ଦୈହିକ ପ୍ରପଞ୍ଚକୁ ବୁଝାଏ, ଯେତେବେଳେ ଏକ ଇଲେକ୍ଟ୍ରନ୍ ଏବଂ ପଜିଟ୍ରନ୍‌ର ବସ୍ତୁଜାତ ଅଣୁରାଶି ପାରସ୍ପରିକ କ୍ରିୟା ଫଳରେ ଅନ୍ୟ ଅଣୁରାଶିରେ, ବୈଦ୍ୟୁତିକ ଚୁମ୍ବକୀୟ କ୍ଷେତ୍ରରେ ଫୋଟୋନ୍ ବା କ୍ୱାଣ୍ଟମକୁ ପରିବର୍ତ୍ତିତ ହୁଅନ୍ତି । ଆଧୁନିକ ଭାବବାଦୀମାନେ ମନେ କରନ୍ତି ବସ୍ତୁଜାତ ଅଣୁରାଶିକୁ ଆଲୋକକୁ ପରିବର୍ତ୍ତିତ କରିବାଟା କାଳେ ହେଉଛି ବସ୍ତୁର "ଧ୍ୱଂସସାଧନ" ଏବଂ ଅଣବସ୍ତୁମୟ ଶକ୍ତିକୁ ରୂପାନ୍ତରଣର ପ୍ରମାଣ ସ୍ୱରୂପ । ଏହା କ'ଣ ପ୍ରକୃତରେ ସତ?

ନା, ଏଭଳି ଚିନ୍ତାଧାରା ସହିତ କେହି ଏକମତ ହେବେ ନାହିଁ । ଆଲୋକ ହେଉଛି ସଂପୂର୍ଣ୍ଣ ରୂପେ ଏକ ପ୍ରାକୃତିକ ପ୍ରପଞ୍ଚ, ଚେତନାର ବ୍ୟାପାର ନୁହେଁ । ତେଣୁ କରି ଅଣୁରାଶି ବା ଅଣ-ଅଣୁରାଶିର (ଇଲେକ୍ଟ୍ରନ୍ ଏବଂ ପଜିଟ୍ରନ୍) ଧ୍ୱଂସସାଧନକୁ ବିଚାର କରିବାକୁ ହେବ ଏକ ଧରଣର ବସ୍ତୁରୁ ଅନ୍ୟ ଏକ ଧରଣର ବସ୍ତୁକୁ (କ୍ଷେତ୍ରକୁ) ରୂପାନ୍ତରଣ । ଏହା କୌଣସି ମତେ ବସ୍ତୁର "ଧ୍ୱଂସସାଧନ" ନୁହଁ । ବସ୍ତୁକୁ ସୃଷ୍ଟି କରି ହୁଏ ନାହିଁ କି ଧ୍ୱଂସ କରି ହୁଏ ନାହିଁ । ଏହା ଛଡ଼ା, ପୂର୍ବୋକ୍ତ ମତେ, ବସ୍ତୁକୁ କେବଳ ଉପାଦାନକୁ ପରିବର୍ତ୍ତିତ କରିବା ଏବଂ ମାସ୍ ବା ପିଣ୍ଡ ଏବଂ ଶକ୍ତି ଭଳି ବସ୍ତୁର ଧର୍ମରାଶିକୁ ତୀବ୍ର ଭାବେ

ବିପରୀତ ବୋଲି ଦର୍ଶାଇବାଟା ଭୁଲ ହେବ, କାରଣ ମାସ୍ ଏବଂ ଶକ୍ତି ପରସ୍ପର ସହିତ ସଂଯୁକ୍ତ । ଆଲୋକ କେବଳ ଶକ୍ତିର ଏକ ସ୍ରୋତ ନୁହେଁ । ଆଲୋକର ଅଣୁରାଶିର ଥାଏ ଏକ ବିଶେଷ ଧରଣର ମାସ୍ – ଗତିର ମାସ୍ । ତେଣୁ କରି ଆଲୋକକୁ (ଫୋଟୋନ୍‌କୁ) ବସ୍ତୁମୟ ଅଣୁରାଶିର ରୂପାନ୍ତରଣ ବେଳେ ମାସ୍ ଶକ୍ତିକୁ ରୂପାନ୍ତରିତ ହୁଏ ନାହିଁ, ଏକ ଧରଣର ମାସ୍‌ରୁ ଅନ୍ୟ ଏକ ଧରଣର ମାସ୍‌କୁ ରୂପାନ୍ତରଣ ଘଟେ ।

ଯୋଡ଼ିଏ ଇଲେକ୍‌ଟ୍ରନ୍-ପଜିଟ୍ରନ୍‌ର ଫୋଟୋନ୍‌କୁ ରୂପାନ୍ତରଣଟା ହେଉଛି ବସ୍ତୁର ଗୋଟିଏ ରୂପରୁ ଆଉ ଏକ ରୂପକୁ ଉତ୍ତରଣ । ଏଠାରେ ଏ କଥା କହିବାଟା ସଙ୍ଗତ ହେବ ଯେ, ଏକ ବିପରୀତ ପ୍ରପଞ୍ଚ ମଧ୍ୟ ପରିଲକ୍ଷିତ ହୋଇଥାଏ : ବୈଦ୍ୟୁତିକ – ଚୌମ୍ବକ କ୍ଷେତ୍ର ଦ୍ୱାରା ବସ୍ତୁମୟ ଅଣୁରାଶିର ସୃଷ୍ଟି । ଫଳତଃ, ଏହାର ଅର୍ଥ ହେଉଛି, ବହୁବିଧ ବସ୍ତୁର ସୀମାରେଖାଗୁଡ଼ିକ ହେଉଛି ସାପେକ୍ଷିକ ଏବଂ ତା'ର କେତେକ ଗୋଟିଏ ଗୋଟିଏ ରୂପର ନିର୍ଦ୍ଦିଷ୍ଟ ଦୈହିକ ବୈଶିଷ୍ଟ୍ୟକୁ ସାମଗ୍ରିକ ଭାବେ ବସ୍ତୁଗତ ବାସ୍ତବତା ପ୍ରତି ଆରୋପ କରାଯାଇ ନପାରେ ।

ଉଭୟ ସୂକ୍ଷ୍ମାଣୁଜଗତ ତଥା ବୃହତଜଗତ, ମହାକାଶର ଅବଗତି ମଧ୍ୟରେ ବସ୍ତୁଗତ ବାସ୍ତବତାର ଅନିଃଶେଷତାକୁ ଉଦ୍‌ଘାଟିତ ହୋଇଥାଏ । ଆମର ଏ ପୃଥିବୀ ହେଉଛି ସୌରଜଗତ ମଧ୍ୟରେ ଏକ ଗ୍ରହ ଏବଂ ସୂର୍ଯ୍ୟ ହେଉଛି ଆମ ଛାୟାପଥ ରଚନା କରିଥିବା କୋଟି କୋଟି ତାରକାରାଶି ମଧ୍ୟରୁ ଗୋଟିଏ ଏବଂ ଛାୟାପଥ ମଧ୍ୟ ମହାଛାୟା ପଥର ଏକ କ୍ଷୁଦ୍ରତମ ଅଂଶ । ମହାଛାୟାପଥ ହେଉଛି ବିଶ୍ୱବ୍ରହ୍ମାଣ୍ଡର ଦୃଶ୍ୟମାନ ବିଶାଳ ବିସ୍ତୃତି ମଧ୍ୟରେ ଚଳମାନ ନାକ୍ଷତ୍ରିକ ବ୍ୟବସ୍ଥାର ଯୋଗଫଳ । ମହାକାଶର ବ୍ୟାପକତା ଯେତେ ବିରାଟ, ତାହା କଳ୍ପନା କରିବା କଷ୍ଟକର । ଆଲୋକ ବର୍ଷ ଦ୍ୱାରା ସେସବୁକୁ ହିସାବ କରାଯାଏ ।

"ଆଲୋକ ବର୍ଷ" ଅର୍ଥ ହେଉଛି ସେକଣ୍ଡରେ ୩ ଲକ୍ଷ କିଲୋମିଟର ଗତିରେ ଯାଉଥିବା ଆଲୋକର ଗୋଟିଏ ବର୍ଷର ଗତି । ଦୃଷ୍ଟାନ୍ତ ସ୍ୱରୂପ, ଆନ୍ଦ୍ରୋମେଦା ଅନ୍ତର୍ଗତ ତୁଳନାମୂଳକ ଭାବେ ଆମର "ନିକଟବର୍ତ୍ତୀ" ଏକ ନେବୁଲା ସହିତ ଆମର ଦୂରତ୍ୱ ହେଉଛି ପ୍ରାୟ ୧୮୦୦ ହଜାର ଆଲୋକ ବର୍ଷର ଦୂରତ୍ୱ । ମଣିଷ ଦୃଷ୍ଟିରେ ଏହି ନେବୁଲାଟି ଏକ କ୍ଷୁଦ୍ରାତି କ୍ଷୁଦ୍ର ଆଲୋକ ବିନ୍ଦୁ ଭଳି ଦିଶିଲେ ବି ଏହା ହେଉଛି ଏକ ସୀମାହୀନ ନକ୍ଷତ୍ର ମଣ୍ଡଳ । ଏହି ନେବୁଲାରେ ଥିବା ତାରକାବଳୀର ସଂଖ୍ୟା ଏବଂ ସେମାନଙ୍କର ସମସ୍ତ ମାସ୍ ଆମ ଛାୟାପଥରେ ଥିବା ନକ୍ଷତ୍ରରାଶିର ତିନି ଗୁଣ ।

ମହାକାଶର ଆକାର ଯେ କେବଳ ଅକଳ୍ପନୀୟ ତା ନୁହେଁ, ବ୍ରହ୍ମାଣ୍ଡର ବିଶାଳ ବିସ୍ତୃତି ମଧ୍ୟରେ ଘଟୁଥିବା ବହୁବିଧ ଘଟଣାରାଜିକୁ ମଧ୍ୟ କଳ୍ପନା କରିବା ଅସମ୍ଭବ । ବିଶ୍ୱ ବ୍ରହ୍ମାଣ୍ଡ ସଂପର୍କରେ ଆମର ଜ୍ଞାନ ସୁନିର୍ଦ୍ଦିଷ୍ଟ ହୋଇଛି ଏଥି ମଧ୍ୟରେ ଘଟୁଥିବା ଗତିଶୀଳ ଏବଂ ବିସ୍ଫୋରିତ ଚରିତ୍ରର ଅବଧାରଣାରାଜି ଦ୍ୱାରା । ଗୁଣଗତ ଭାବେ ନୂଆ ଧରଣର ମହାଜାଗତିକ ବସ୍ତୁରାଜିର ଆବିଷ୍କାର ହୋଇଛି : "କୃଷ୍ଣ ଗର୍ତ୍ତରାଶି", କ୍ୱାସାରସ୍,

ପଲ୍‌ସାର୍, ଆଦି । "କୃଷ୍ଣ ଗର୍ତ୍ତରାଶି" ହେଉଛି ବିଶେଷ ଧରଣର ମହାକାଶଗତିକ ପିଣ୍ଡ, ଏହାର ଚରିତ୍ରିକ ବୈଶିଷ୍ଟ୍ୟ ହେଉଛି ବସ୍ତୁର ବିପୁଳ ଘନତା । ଏହି ଧରଣର ଏକ ମହାକାଶଗତିକ ପଦାର୍ଥର ମାଧ୍ୟାକର୍ଷଣ କ୍ଷେତ୍ର ଏତେ ପ୍ରବଳ ଯେ ଏହା ନିଜ ମଧ୍ୟରୁ କୌଣସି ଅଣୁରାଶି ନିର୍ଗମ ହେବାକୁ ଦିଏ ନାହିଁ । କ୍ୱାସାରସ୍‌ଗୁଡ଼ିକ ହେଉଛନ୍ତି ତେଜସ୍କ୍ରିୟତା ବିକିରଣର ଶକ୍ତିଶାଳୀ ଉତ୍ସ । ଏ ପର୍ଯ୍ୟନ୍ତ ୩୦୦ କ୍ୱାସାରସ୍‌କୁ ବିଜ୍ଞାନ ଦ୍ୱାରା ଜାଣି ହୋଇଛି । ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ କ୍ୱାସାରସ୍ ବହୁ କୋଟି ତାରକା ଯୁକ୍ତ ହଜାର ହଜାର ଛାୟାପଥ ଦ୍ୱାରା ନିର୍ଗତ ଶକ୍ତିଠାରୁ ଅଧିକ ଶକ୍ତି ବିକିରଣ କରନ୍ତି । ପଲ୍‌ସାର୍‌ସବୁ ହେଉଛନ୍ତି ଏକ ଧରଣର ତାରକା, ଯେଉଁମାନଙ୍କର ତୀବ୍ର ତେଜସ୍କ୍ରିୟତା ବିକିରଣ ଗରି ସେକଣ୍ଡରେ ଥରେ ଲେଖାଏଁ, ପ୍ରତି ସେକଣ୍ଡରେ ୩୦ ଥର ପର୍ଯ୍ୟନ୍ତ "ମିଛି ମିଛି" ଘଟିଥାଏ । ଏ ପର୍ଯ୍ୟନ୍ତ ଶହେକରୁ ଅଧିକ ଏ ଧରଣର ତାରକାଙ୍କୁ ଆବିଷ୍କାର କରାଗଲଣି । ଏହିସବୁ ଆବିଷ୍କାର ସମେତ ଆଉ କେତେକ ଆବିଷ୍କାର ସମ୍ଭବ ହୋଇଛି ଅତିରିକ୍ତ ଆବହମଣ୍ଡଳୀୟ ଜ୍ୟୋତିର୍ବିଜ୍ଞାନର ବିକାଶ ଫଳରେ । ସୋଭିଏତ୍ କୃତ୍ରିମ ଭୂଉପଗ୍ରହ ପ୍ରେରଣ ଏବଂ ମହାକାଶଚାରୀମାନଙ୍କର ଉଡ୍ଡୟନ ବିଶ୍ୱ ବ୍ରହ୍ମାଣ୍ଡର ଧର୍ମରାଶି ତଥା ପ୍ରକ୍ରିୟାସମୂହର ଗବେଷଣା କ୍ଷେତ୍ରରେ ବିରାଟ ଭୂମିକା ପାଳନ କରିଛି । ଭାରତୀୟ ବୈଜ୍ଞାନିକମାନେ ମଧ୍ୟ ମହାକାଶ ଗବେଷଣା କ୍ଷେତ୍ରରେ ସକ୍ରିୟ ଅଂଶଗ୍ରହଣ କରୁଛନ୍ତି । ସୋଭିଏତ୍ ରକେଟ ସାହାଯ୍ୟରେ ସେମାନଙ୍କ ଦ୍ୱାରା ପ୍ରେରିତ କୃତ୍ରିମ ଭୂଉପଗ୍ରହସମୂହ ଭାରତର ପ୍ରାକୃତିକ ସଂପଦର ଗବେଷଣା, କୃଷି, ବନବିଦ୍ୟା, ଭୂବିଦ୍ୟା, ଜଳସେଚନ ଏବଂ ଆବହ ବିଜ୍ଞାନର ବିକାଶରେ ସହାୟକ ହେଉଛି । ସୋଭିଏତ୍ ଏବଂ ଭାରତୀୟ ମହାକାଶଚାରୀମାନଙ୍କର ଏକ ମିଳିତ ଉଡ୍ଡୟନ ପାଇଁ ଏବେ ପ୍ରସ୍ତୁତି ଚାଲିଛି ।

ଆମେ ଏଥର ଉପରୋକ୍ତ ଉଦାହରଣଗୁଡ଼ିକ ମଧ୍ୟରେ ନିଜକୁ ସୀମିତ ରଖିବା । ସେଗୁଡ଼ିକ ପ୍ରକୃତିର ସୀମାହୀନ ବୈଚିତ୍ର୍ୟକୁ ଭଲ ଭାବେ ଚିତ୍ରଣ କରୁଛି । ସେସବୁରୁ ବସ୍ତୁ ସଂପର୍କରେ ପ୍ରାକୃତିକ-ବୈଜ୍ଞାନିକ ଅବଧାରଣାର ଐତିହାସିକ ଚରିତ୍ର ସଂପର୍କରେ ଏକ ଉପସଂହାର ବି ଟଣାଯାଇ ପାରେ । ପ୍ରାକୃତିକ ପ୍ରପଞ୍ଚ ଏବଂ ନିୟମାବଦ୍ଧତା କ୍ଷେତ୍ରରେ ଅଗ୍ରଗତି ସଙ୍ଗେ ସଙ୍ଗେ ସେହିସବୁ ଅବଧାରଣାଗୁଡ଼ିକର ପରିବର୍ତ୍ତନ ଘଟିଥାଏ । କିନ୍ତୁ ଏହା ଦ୍ୱାରା ବସ୍ତୁର ବୈଜ୍ଞାନିକ ଅବଧାରଣା ପରିବର୍ତ୍ତିତ ହୁଏ ନାହିଁ, ବରଂ, ତା'ର ପ୍ରକୃତ ଚରିତ୍ର ଏବଂ ବିଜ୍ଞାନ ପାଇଁ ତା'ର ମୂଲ୍ୟ ଆଉରି ପ୍ରମାଣିତ ହୁଏ । ଭବିଷ୍ୟତରେ ବିଜ୍ଞାନ ଯେକୌଣସି ଅଦ୍‌ଭୁତ ପ୍ରାକୃତିକ ପ୍ରପଞ୍ଚରାଜିର ସମ୍ମୁଖୀନ ହେଉନା କାହିଁକି, ସେସବୁର ଅର୍ଥ ସର୍ବଦା ଗୋଟିଏ ହେବ : ବସ୍ତୁର ନୂଆ ଦିଗଗୁଡ଼ିକର ଆବିଷ୍କାର ସୀମାହୀନ ଭାବେ ବହୁବିଧ ଏବଂ ତା'ର ଧର୍ମ ଏବଂ ରୂପ ଦୃଷ୍ଟିରୁ ଅନିଃଶେଷ ।

# ବସ୍ତୁର ଗଢ଼ଣ

"ଆମ ପକ୍ଷରେ ବୋଧଗମ୍ୟ ସମଗ୍ର ପ୍ରକୃତି ଏକ ବ୍ୟବସ୍ଥା ରଚନା କରେ, ପାରସ୍ପରିକ ଯୋଗସୂତ୍ରସଂପନ୍ନ ପଦାର୍ଥସମୂହର ସମଗ୍ରତା, ଏବଂ ପଦାର୍ଥରାଜି କହିଲେ ଆମେ ଏଠାରେ ବୁଝୁଁ ତାରକାମାନଙ୍କଠାରୁ ଆରମ୍ଭ କରି ପରମାଣୁସମୂହ ପର୍ଯ୍ୟନ୍ତ ସମସ୍ତ ଭୌତିକ ଅସ୍ତିତ୍ୱକୁ...।"

— ଏଙ୍ଗେଲସ୍




ବ୍ୟବସ୍ଥାର ଏକ ଉପାଦାନରେ ପରିବର୍ତ୍ତନ ଘଟିଲେ, ତାହା ଅନ୍ୟ ଉପାଦାନରେ ପରିବର୍ତ୍ତନ ଘଟାଏ।

# ୩ – ଗତି ଏବଂ ସ୍ଥିରତା

ମାର୍କସ୍‌ବାଦୀ ଦର୍ଶନ ନିବିଡ଼ ଭାବେ ବସ୍ତୁର ଅବଧାରଣାକୁ ବସ୍ତୁର ଚଳନ କ୍ଷମତା ସହିତ ଯୁକ୍ତ କରିଥାଏ । ତା'ର ବହୁବିଧ ପରିପ୍ରକାଶ ସମେତ ଏକ ବସ୍ତୁଗତ ବାସ୍ତବତା ହେବାକୁ ହେଲେ ତାକୁ ଗତି ମଧ୍ୟରେ ତିଷ୍ଠିବାକୁ ହେବ । ଗତି ହେଉଛି ବସ୍ତୁର ଏକ ଅଲଘନୀୟ ଧର୍ମ, ତା'ର ସ୍ଥିତିର ପଦ୍ଧତି ଏବଂ ତା'ର ସହଜାତ କାର୍ଯ୍ୟକଳାପର ଏକ ପରିପ୍ରକାଶ ।

ଏ କଥା ଲକ୍ଷ୍ୟ କରିବା କଷ୍ଟ ନୁହେଁ ଯେ, ପଦାର୍ଥରାଜିର ବୈଶିଷ୍ଟ୍ୟ ହେଉଛି ଗତି । ଜୀବଜନ୍ତୁ, ମଣିଷ ମହାକାଶରେ ବିଚରଣ କରନ୍ତି, ପୋଖତ ଫଳସବୁ ମାଟିରେ ପଡ଼ନ୍ତି, ଆଦି । ମାର୍କସ୍‌ଙ୍କ ପୂର୍ବରୁ ବହୁ ବସ୍ତୁବାଦୀ ଦାର୍ଶନିକ ଯାନ୍ତ୍ରିକ ସ୍ଥାନ ପରିବର୍ତ୍ତନର ଏଭଳି ଘଟଣାର ବିଶ୍ୱବ୍ୟାପୀ ଚରିତ୍ରକୁ ସ୍ୱୀକାର କରିଥିଲେ, କିନ୍ତୁ ଗତି ସହିତ ଉପାଦାନକୁ ସଂଯୁକ୍ତ କରିବାକୁ ଅକ୍ଷମ ହୋଇଥିଲେ । ତା'ର କାରଣ ହେଉଛି, ଜଗତ ସଂପର୍କରେ ସେମାନଙ୍କ ଦୃଷ୍ଟିକୋଣ ଥିଲା ସଂକୀର୍ଣ୍ଣ, ଅଧିଭୌତିକ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ବିଶ୍ୱର ଅପରିବର୍ତ୍ତନୀୟ ମୂଳ ଉପାଦାନ ସଂପର୍କିତ ମତବାଦକୁ ଅସ୍ୱୀକାର କରେ । ବସ୍ତୁ ଗତି ବିନା ତିଷ୍ଠି ପାରେ ନାହିଁ ।

ଗତି ବୋଇଲେ କ'ଣ ? ଏଙ୍ଗେଲସ୍ ଲେଖିଥିଲେ, "ବସ୍ତୁ ସଂପର୍କରେ ଯେଉଁ ଗତି କଥା କୁହାଯାଏ, ତାହାକୁ ସାଧାରଣ ଭାବେ ପରିବର୍ତ୍ତନ ବୋଲି ମନେ କରାଯାଇ-ଥାଏ ।"* ଗତି, ଏହି ଶବ୍ଦଟିକୁ ବ୍ୟାପକ ଅର୍ଥରେ ବୁଝିବାକୁ ହେବ ଯେକୌଣସି ପାରସ୍ପରିକ ପ୍ରକ୍ରିୟା ହିସାବରେ, ମହାକାଶ ତଥା ସମୟରେ ପ୍ରକଟିତ ଯେକୌଣସି ପରିବର୍ତ୍ତନ ହିସାବରେ । ବସ୍ତୁଗତ ପଦାର୍ଥରାଜି ମଧ୍ୟରେ ପରିବର୍ତ୍ତନ ବାହ୍ୟିକ ଓ ଆଭ୍ୟନ୍ତରୀଣ ହୋଇ ପାରେ, ସଂଖ୍ୟାତ୍ମକ ଏବଂ ଗୁଣାତ୍ମକ ହୋଇ ପାରେ, ଅପରିହାର୍ଯ୍ୟ ଏବଂ ଆକସ୍ମିକ ହୋଇ ପାରେ, ଆଦି । ଜଗତରେ ସବୁକିଛିର ପରିବର୍ତ୍ତନ ଘଟୁଛି ଏବଂ ଗତିଶୀଳ : ସୂକ୍ଷ୍ମାତିସୂକ୍ଷ୍ମ ଅଣୁଗୁଡ଼ିକର ପାରସ୍ପରିକ ରୂପାନ୍ତରଣ ଏବଂ ବହୁବିଧ ପାରସ୍ପରିକ ପ୍ରକ୍ରିୟା, ମହାକାଶ ମଧ୍ୟରେ ମହାଜାଗତିକ ପଦାର୍ଥସବୁ ବିପୁଳ ଗତିବେଗରେ ସଂଚଳିତ, ପରିବେଶ ସହିତ ଜୀବନ୍ତ ପ୍ରାଣୀମାନେ ନିରବଚ୍ଛିନ୍ନ ବିପାକରେ ଲିପ୍ତ, ସମାଜରେ ତା'ର ସଦସ୍ୟମାନଙ୍କର ଶେଷହୀନ କାର୍ଯ୍ୟକଳାପ ଏବଂ ମଣିଷର ଚିନ୍ତନ କାର୍ଯ୍ୟକଳାପ ବସ୍ତୁଗତ ବାସ୍ତବତାକୁ ପ୍ରକାଶ କରେ ।

ଗତିର ଅଖଣ୍ଡ ପ୍ରକୃତିକୁ ସ୍ୱୀକାର କରିବା, ଅର୍ଥାତ୍, ଗତିର ବାହାରେ ବସ୍ତୁ କୌଣସି

---

* ଫ୍ରେଡେରିକ୍ ଏଙ୍ଗେଲସ୍, "*Dialectics of Nature*", ପ୍ରଗତି ପ୍ରକାଶନ, ମସ୍କୋ, ୧୯୭୪, ପୃ : ୨୪୭ ।

ଆକାରରେ ଚିହ୍ନି ପାରେ ନାହିଁ ବୋଇଲେ ଏ କଥା ଅସ୍ୱୀକାର କରାଯାଏ ନା ଯେ, ବସ୍ତୁଗତ ଜଗତରେ ସ୍ଥିର ମୁହୂର୍ତ୍ତରାଜି ଏବଂ ଭାରସାମ୍ୟତା ଅଛି । ଗତି ହେଉଛି ଦୁଇଟି ବିପରୀତର – ପରିବର୍ତ୍ତନୀୟତା ଏବଂ ସ୍ଥିରତାର ସମ୍ମିଶ୍ରଣ । ସ୍ଥିରତା ହେଉଛି ଗତିର ଲଗାତର ଅବସ୍ଥା, ଯିଏକି ପଦାର୍ଥରାଜିର ସାପେକ୍ଷିକ ଗୁଣାତ୍ମକ ନିର୍ଦ୍ଦିଷ୍ଟତା ପାଇଁ ଆବଶ୍ୟକ । ଶିଶୁଟିଏ ଯୁବକ ହୁଏ, ତା'ପରେ ପରିଣତ ହୁଏ ବୟସରେ, ତା'ର ଦୈହିକ ଏବଂ ମାନସିକ ପରିବର୍ତ୍ତନମାନ ଘଟେ, କିନ୍ତୁ ସେସବୁ ସତ୍ତ୍ୱେ ସେ ରହେ ଏକ ବ୍ୟକ୍ତି ହିସାବରେ । ଆଉ କେତେକ ଦୃଷ୍ଟାନ୍ତ ମଧ୍ୟ ଧରାଯାଇ ପାରେ, ଏକ ବୁର୍ଜୁଆ ରାଷ୍ଟ୍ର ଉପରେ ଏକାଦିକ୍ରମେ ପୁଞ୍ଜିବାଦୀ ଶ୍ରେଣୀର ଗୋଷ୍ଠୀସବୁ ରାଜତ୍ୱ କରି ପାରନ୍ତି, ଏକଗୁଚ୍ଛିଆମାନଙ୍କର ଏକାଧିପତ୍ୟ ବିଭିନ୍ନ ରୂପରେ ଚାଲିଥାଏ: ସାମରିକ ଏକଛତ୍ରବାଦ ଠାରୁ ଆରମ୍ଭ କରି "ନୈତିକ" ଗଣତନ୍ତ୍ର ଆଦି ପର୍ଯ୍ୟନ୍ତ । ତା ସତ୍ତ୍ୱେ ଏହିସବୁ ରାଜନୈତିକ ପରିବର୍ତ୍ତନର ସାରମର୍ମ ହେଉଛି ସମାନ: ଏକଗୁଚ୍ଛିଆ ପୁଞ୍ଜିର ଶ୍ରେଣୀ ରାଜତ୍ୱ । ଗତି ଯଦି ସ୍ଥିରତାର ମୁହୂର୍ତ୍ତରାଜି ଏବଂ ଅସ୍ଥାୟୀ ଭାରସାମ୍ୟ ବର୍ଜିତ ହୁଏ, ବସ୍ତୁଗତ ଜଗତ ଆକୃତିହୀନ, ପାର୍ଥକ୍ୟହୀନ ଅବ୍ୟବସ୍ଥାରେ ପରିଣତ ହେବ । ତଥାକଥିତ ସାପେକ୍ଷ୍ୟବାଦର ଅନୁଗାମୀମାନେ ଗତିରେ ସ୍ଥିରତା ବା ସ୍ଥିତାବସ୍ଥାକୁ ଅସ୍ୱୀକାର କରନ୍ତି । ସେମାନେ ସବୁକିଛିକୁ ସାପେକ୍ଷ ଏବଂ ଅସ୍ଥିର ବୋଲି ବିଚାର କରନ୍ତି ଏବଂ ଗତିର ପ୍ରକ୍ରିୟାରେ ଯେକୌଣସି ଗୁଣଗତ ନିର୍ଦ୍ଦିଷ୍ଟତାକୁ ଅସ୍ୱୀକାର କରନ୍ତି । ସେମାନେ, ନିଶ୍ଚୟ ଭୁଲ କରନ୍ତି ଯେ, ଗଙ୍ଗା ନଦୀର ଜଳ ହଜାର ହଜାର ବର୍ଷ ଧରି ବହି ଚାଲିଛି । ଦ୍ୱନ୍ଦ୍ୱବାଦର ଏହା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ଯେ, ଆପଣ କୌଣସି ଏକ ନଦୀରେ ଦୁଇ ଥର ପ୍ରବେଶ କରି ପାରିବେ ନାହିଁ । କିନ୍ତୁ, ସାପେକ୍ଷ୍ୟବାଦୀମାନେ କହନ୍ତି ଯେ, ଆପଣ ଥରେ ହେଲେ ବି ସେଥିରେ ପ୍ରବେଶ କରି ପାରିବେ ନାହିଁ, କାରଣ ସେଥିରେ ସବୁବେଳେ ନୂଆ ଜଳ ପ୍ରବାହିତ ହେଉଛି । ଜଣେ ଗ୍ରୀକ୍ ଦାର୍ଶନିକ ପଦାର୍ଥରାଜିର ନାମ ମଧ୍ୟ ଧରୁ ନଥିଲେ, କେବଳ ଆଙ୍ଗୁଳିରେ ସେସବୁକୁ ନିର୍ଦ୍ଦେଶ କରି ଦେଉଥିଲେ ଏହି ବିଶ୍ୱାସରେ ଯେ, ସେସବୁକୁ କୌଣସି ନାମ ଦେଉଁ ଦେଉଁ ସେମାନେ ଆଉ କିଛିରେ ପରିଣତ ହୋଇ ଯାଆନ୍ତି । ଏତାଦୃଶ ମତାମତର ଉଦ୍ଭଟତାର ସାକ୍ଷୀ ସେଇଥିରୁ ମିଳିଥାଏ । ଏକ ନଦୀ ନଦୀ ହୋଇ କି ରହିବ ନାହିଁ, କାରଣ ସେ ବହି ଚାଲିଛି । ଏବଂ ଧର୍ମ ବିଶ୍ୱାସୀମାନେ ଗଙ୍ଗାର ପବିତ୍ର ଜଳ ମଧ୍ୟକୁ (ସେମାନଙ୍କ ମତରେ) ଝାମ୍ପ ଦେଲା ବେଳେ, ନିର୍ଦ୍ଦିଷ୍ଟ ଭାବେ ଗଙ୍ଗା ମଧ୍ୟକୁ ଡେଇଁ ଥାନ୍ତି ।

ତେଣୁ ଗତି ବୋଇଲେ ଏହାର ବିପରୀତ, ସ୍ଥିତିଶୀଳତା, ସ୍ଥିରତା ବା ଭାରସାମ୍ୟତାକୁ ବୁଝାଏ, ଏସବୁଠାରୁ ପୃଥକ୍ ବୋଲି ବୁଝାଏ ନାହିଁ । ସମସ୍ତ ସ୍ଥିରତା, ଅବଶ୍ୟ, ହେଉଛି ସାପେକ୍ଷିକ, ଏବଂ ଗତି ଆଉ ପରିବର୍ତ୍ତନରାଜି ହେଉଛି ଅଖଣ୍ଡ । ସ୍ଥିରତା ବିନା ଗତି ସମ୍ଭବ, ଏହି ଅର୍ଥରେ ନବୁଝି, ବରଂ, ଏହାକୁ ବସ୍ତୁର ସ୍ୱ-କାର୍ଯ୍ୟକଳାପର ସୂଚନା ବୋଲି ବୁଝିବାକୁ ହେବ । ଗତି ହିଁ କେବଳ ନିର୍ଦ୍ଦିଷ୍ଟ ଭାବେ

ଜଗତରେ ନୂଆ ଗୁଣାତ୍ମକ ଅବସ୍ଥାରାଜି ସୃଷ୍ଟି କରିଥାଏ ଏବଂ ସ୍ଥିରତାର କାର୍ଯ୍ୟ ହେଉଛି ସେସବୁକୁ ସଂରକ୍ଷଣ କରି ରଖିବା । ସ୍ଥିରତା ହେଉଛି ସର୍ବଦା ସାପେକ୍ଷିକ । ଟେବୁଲ ପାଖରେ ବସିଥିଲା ବେଳେ ଆମେ ଗତିହୀନ, ବସିଥିବା ଘର ସହିତ ସାପେକ୍ଷିକ, ଏବଂ ଘରଟି ହେଉଛି ପୃଥିବୀ ସହିତ ସାପେକ୍ଷିକ । ଏଥି ସାଥେ ସାଥେ ଆମେ ଅନବରତ ଘୂରୁଛେ, କାରଣ ପୃଥିବୀ ତା'ର ଚତୁଃପାର୍ଶ୍ୱସ୍ଥ ବାୟୁ ମଣ୍ଡଳ ସମେତ ତା'ର ମେରୁଦଣ୍ଡ ଏବଂ ସୂର୍ଯ୍ୟ ଘରି ପାଖରେ ଘୂରୁଛି ଏବଂ ସୂର୍ଯ୍ୟ ଛାୟା ପଥ ସମେତ ଗତିମାନ, ଆଦି । ବସ୍ତୁଗତ ପଦାର୍ଥରାଜିର ସ୍ଥିତିଶୀଳତାକୁ ସଂରକ୍ଷିତ କରିବା ପଦ୍ଧତି ମଧ୍ୟ ଦେଇ ସ୍ଥିରତା ମଧ୍ୟ ସାପେକ୍ଷିକ । ଯେକୌଣସି ଅବସ୍ଥା ହେଉଛି ଅସ୍ଥାୟୀ ଏବଂ ପରିବର୍ତ୍ତନଶୀଳ ଏବଂ ଯେକୌଣସି ଜିନିଷ ବା ପ୍ରପଞ୍ଚର ଅସ୍ତିତ୍ୱରେ ଥାଏ ଏକ ଆରମ୍ଭ ଏବଂ ଶେଷ । ବସ୍ତୁର ଗତି ହେଉଛି ଅସୃଷ୍ଟିଶୀଳ, ଅକ୍ଷୟ । ଏହା କେବଳ ତା'ର ରୂପ ପରିବର୍ତ୍ତନ କରିଥାଏ । ଯେକୌଣସି, ଗୋଟିଏ ହେଲେ, ପ୍ରପଞ୍ଚ ବା ପଦାର୍ଥ ନିଜକୁ ପରିବର୍ତ୍ତନ କରିବାର କ୍ଷମତା ବା ଯେକୌଣସି ଅବସ୍ଥାରେ ଗତି ରହିତ ହୋଇ ପାରେ ନାହିଁ । ପଦାର୍ଥସମୂହର ତାପ ଶୂନ୍ୟ ଡିଗ୍ରୀରେ ନିକଟବର୍ତ୍ତୀ ଥିଲେ ମଧ୍ୟ ସେସବୁରେ ପରିବର୍ତ୍ତନ ଘଟୁଥାଏ ; କେତେକ ଧାତୁ, ଉଦାହରଣ ସ୍ୱରୂପ, ଅତି ପରିବାହିତାର ଧର୍ମ ପ୍ରବର୍ତ୍ତନ କରିଥାନ୍ତି, ସୀସା ଅର୍ଦ୍ଧ ପରିବାହୀରେ, ହେଲିୟମ ଅତି ତରଳ ପଦାର୍ଥରେ ପରିଣତ ହୋଇଥାଏ, ଆଦି ।

ବସ୍ତୁର ନିର୍ଦ୍ଦିଷ୍ଟ ରୂପ ତଥା ଅସ୍ତିତ୍ୱର ଆକାରର ଚିରନ୍ତନ ପରିବର୍ତ୍ତନଶୀଳତା ପାଇଁ ଆଭ୍ୟନ୍ତରୀଣ କାର୍ଯ୍ୟକଳାପର ଉତ୍ସ ତା'ର ଅନ୍ତର୍ନିହିତ ଶକ୍ତି ମଧ୍ୟରେ ନିହିତ ଥାଏ । ଗତି ହେଉଛି ଅନାପେକ୍ଷିକ, କାରଣ ଏହା ବାହାରର କୌଣସି କିଛି ସହିତ ସଂଯୁକ୍ତ ନୁହେଁ, ଯିଏକି ତାକୁ ନିର୍ଦ୍ଧାରିତ କରିବ । ଏ ଜଗତରେ ଚିରନ୍ତନ ଗତିଶୀଳ ବସ୍ତୁ, ତା'ର ରୂପରାଶି, ଧର୍ମ ଏବଂ ପରିପ୍ରକାଶ ବିନା ଆଉ କିଛି ନାହିଁ ।

ସ୍ଥିରତାକୁ ଅନପେକ୍ଷ ରୂପେ ଚିତ୍ରଣ କରିବାର ଯେକୌଣସି ଉପାୟ ହେଉଛି ସାପେକ୍ଷିକ, ବ୍ୟାଖ୍ୟା ଭଳି ତା'ର ଅବଧାରଣା କ୍ଷେତ୍ରରେ ଅସହ୍ୟ । ବହୁ ଦାର୍ଶନିକ, ଅବଶ୍ୟ, ସେଭଳି ନିର୍ଦ୍ଦିଷ୍ଟ ମତାମତର ଅନୁଗାମୀ ଥିଲେ, କାରଣ ସେମାନେ ମୂଳ ଉପାଦାନକୁ ନିଷ୍କ୍ରିୟ ଏବଂ ଅପରିବର୍ତ୍ତନଶୀଳ ଭଳି ବିଚାର କରୁଥିଲେ ଏବଂ ପ୍ରାକୃତିକ ପଦାର୍ଥସମୂହର ଗତିକୁ ବହିଃଶକ୍ତିର କାର୍ଯ୍ୟ ବୋଲି ବ୍ୟାଖ୍ୟା କରୁଥିଲେ । ଏଥିରୁ ଯୁକ୍ତିଯୁକ୍ତ ଭାବେ ନିମ୍ନୋକ୍ତ ପ୍ରଶ୍ନଟି ଉଠିଥାଏ : ଯଦି କୌଣସି ଏକ ପଦାର୍ଥ ଆଉ ଏକ ପଦାର୍ଥକୁ ଏବଂ ଦ୍ୱିତୀୟଟି ଯଦି ତୃତୀୟକୁ ଗତିଶୀଳ କରେ, ଆଦି, ତେବେ ସେସବୁ ଗତିଶୀଳ ହେବାକୁ ଆରମ୍ଭ କଲେ କେମିତି ? ପ୍ରକୃତିର ଯାନ୍ତ୍ରିକତାର ଘଡ଼ିଟିରେ ତେବେ ପ୍ରଥମେ କିଏ ଦମ୍ ଦେଇଥିଲା ? ଯେଉଁମାନେ ଉପରୋକ୍ତ ମତେ ବିଚାର କରନ୍ତି, ସେମାନଙ୍କୁ କୌଣସି ଏକ ଜିନିଷର ଅସ୍ତିତ୍ୱକୁ ସ୍ୱୀକାର କରିବାକୁ ହେବ, ଯିଏକି ସର୍ବପ୍ରଥମ ପ୍ରେରଣାଟି ଯୋଗାଇ ଥିଲା । ଏହି ପ୍ରତୀୟମାନ ଗତିହୀନ ପ୍ରକୃତିର ସାପେକ୍ଷିକତା ଦୃଷ୍ଟିରୁ ସେଭଳି ଏକ ଅସ୍ତିତ୍ୱ କେବଳ ଈଶ୍ୱର ହିଁ ହୋଇ ପାରନ୍ତି ।

ଆଜିକାଲି ବି କେତେକ ଲୋକ ସ୍ଥିରତା ଏବଂ ସ୍ଥିତାବସ୍ଥାକୁ ଅନପେକ୍ଷ ବୋଲି ପ୍ରଚାର କରିଥାନ୍ତି, ତଥାକଥିତ ଭାରସାମ୍ୟ ତତ୍ତ୍ୱ ଆକାରରେ । ଏହି ଧାରଣାର ଅନୁଗାମୀମାନେ ଆମକୁ ବିଶ୍ୱାସ କରିବାକୁ କହନ୍ତି ଯେ, ଗତି ହେଉଛି ସବୁବେଳେ ସାପେକ୍ଷିକ ଏବଂ ଅସ୍ଥାୟୀ, କାରଣ ଏହା କାଳେ ନିର୍ଦ୍ଦିଷ୍ଟ ଏକ ପ୍ରପଞ୍ଚ ପାଇଁ "ସ୍ୱାଭାବିକ" ଭାରସାମ୍ୟ ଅବସ୍ଥା ବ୍ୟତୀତ ଆଉ କିଛି ନୁହେଁ । ଏହି ଭାରସାମ୍ୟ ତତ୍ତ୍ୱଟି ମଧ୍ୟ ଅନେକ ସମୟରେ ଦର୍ଶନରେ ବ୍ୟବହୃତ ହୋଇଥାଏ ପୁଞ୍ଜିବାଦୀ ଦୁନିଆରେ ଜାତୀୟ ତଥା ସାମାଜିକ ମୁକ୍ତି ପାଇଁ ସଂଗ୍ରାମର "ଅଯୁକ୍ତିଯୁକ୍ତତା" ତଥା "ଅବୈଧତାକୁ" ଏବଂ ଶ୍ରେଣୀଗତ ଆପୋଷ ଏବଂ "ସାମାଜିକ ଅଂଶୀଦାରିତା" ଆଦିର ଆବଶ୍ୟକତାର ଯୁକ୍ତିଯୁକ୍ତତାକୁ ପ୍ରମାଣସିଦ୍ଧ କରିବା, ଆଦି ପାଇଁ । ଏ ଧରଣର ଅବଧାରଣାର ରାଜନୈତିକ ପକ୍ଷପାତିତ୍ୱ ପରିଷ୍କାର ଧରା ପଡ଼େ । ସାମାଜିକ ସଂପର୍କ କ୍ଷେତ୍ରରେ ମୌଳିକ ପରିବର୍ତ୍ତନ ପାଇଁ ଶ୍ରମିକମାନଙ୍କର ଆକାଂକ୍ଷାକୁ ବ୍ୟର୍ଥ କରି ଦେବା ଦିଗରେ ଏହା ବ୍ୟବହୃତ ହୋଇଥାଏ । ଦାର୍ଶନିକ ଦୃଷ୍ଟିରୁ, ଭାରସାମ୍ୟ ତତ୍ତ୍ୱଟି ସଂପୂର୍ଣ୍ଣ ରୂପେ କ୍ଷଣସ୍ଥାୟୀ । ଆମେ ଯେଉଁଳି ଦର୍ଶାଇଲେ, ଗତି ଅବ୍ୟବସ୍ଥା ବା ଆକସ୍ମିକତା ନୁହଁ, ଏହା ହେଉଛି ବସ୍ତୁର ଅସ୍ତିତ୍ୱର ଏକ ଅନାପେକ୍ଷିକ ପଦ୍ଧତି ।

## ୪ — ସ୍ଥାନ ଏବଂ ସମୟର ବସ୍ତୁଗତ ବାସ୍ତବତା

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ବିଶ୍ୱଦୃଷ୍ଟିକୋଣର ଆଉରି ଅଧିକ ବିଶ୍ଳେଷଣ କରିବାକୁ ହେଲେ ବସ୍ତୁର ମୌଳିକ ଧର୍ମରାଜି ହିସାବରେ ସ୍ଥାନ ଓ କାଳ ସହିତ ଗତି ବିଷୟରେ ବିଚାର କରିବାକୁ ହେବ । ଲେନିନ୍ କହିଥିଲେ, "ଜଗତରେ ଗତିସଂପନ୍ନ ବସ୍ତୁ ବ୍ୟତୀତ ଆଉ କିଛି ନାହିଁ, ଏବଂ ଗତିସଂପନ୍ନ ବସ୍ତୁ ସ୍ଥାନ ଓ କାଳ ବିନା ଅନ୍ୟ ଭାବେ ସଂଚଳିତ ହୋଇ ପାରେ ନାହିଁ ।"*

ପ୍ରଥମ ଦୃଷ୍ଟିରେ ସ୍ଥାନ ଏବଂ କାଳ ସଂକ୍ରାନ୍ତ ପ୍ରଶ୍ନଟି କଠିନ ମନେ ହୁଏ ନାହିଁ: ଆମ ଚତୁର୍ପାର୍ଶ୍ୱସ୍ଥ ଜଗତରେ ବହୁବିଧ ପଦାର୍ଥ ରହିଛି । ସେସବୁ ପରସ୍ପରଠାରୁ ଆନୁପାତିକ ଭାବେ ରହିଛନ୍ତି, ଯଥା, ଦୂରତର, ଉଚ୍ଚତର, ନିମ୍ନତର, ବାମକୁ, ଦକ୍ଷିଣକୁ; ସେସବୁ ଆକାର ପ୍ରକାର ଆଦିରେ ମଧ୍ୟ ଭିନ୍ନ ଭିନ୍ନ । ଆମ ଚତୁର୍ପାର୍ଶ୍ୱରେ ପ୍ରକ୍ରିୟା ଏବଂ ଘଟଣାରାଜି ମଧ୍ୟ ଏକକାଳୀନ ବା ନିର୍ଦ୍ଦିଷ୍ଟ ସମୟାନୁପାତରେ ଘଟିଥାଏ, କେତେକ ସହଜରେ ତ ଆଉ କେତେକ ବିଳମ୍ବରେ । ଅନେକ ଦିନ ଆଗରୁ ଏ କଥା ମଧ୍ୟ ଲକ୍ଷ୍ୟ

---

* ଭି. ଆଇ. ଲେନିନ୍, "*Materialism and Empirio-Criticism*", *Collected Works*, Vol. 14, p. 175.

କରାଯାଇଛି ଯେ, ବସ୍ତୁରାଜିର ବିଭିନ୍ନ ସାମଗ୍ରିକତା ଏକ ସ୍ଥାନରେ ଅଥଚ ବିଭିନ୍ନ ସମୟରେ ହୋଇଥାଏ, ଦର୍ଶକଠାରୁ ଦୂରତ୍ୱ ଅନୁଯାୟୀ ପଦାର୍ଥରାଜିକୁ ବିଭିନ୍ନ ଭାବେ ଦେଖି ହୁଏ, ସମୟକୁ ମଧ୍ୟ ବିଭିନ୍ନ ଭାବେ ଦେଖି ହୁଏ—ଯେତେବେଳେ ଏହା ବିଚକ୍ଷଣ ଘଟଣାବଳୀ ଏବଂ ଭୟଙ୍କର ଅପେକ୍ଷା ଦ୍ୱାରା ପୂର୍ଣ୍ଣ ଥାଏ । ଏହି ଭଳି ପର୍ଯ୍ୟବେକ୍ଷଣର ତାତ୍ତ୍ୱିକ ଉପଲବ୍ଧି ମଧ୍ୟ କେତେକ ପ୍ରଶ୍ନ ଉପସ୍ଥାପିତ କରିଛି । ସେସବୁ ପ୍ରଶ୍ନ ମଧ୍ୟରେ ଅଛି, ବସ୍ତୁଗତ ପଦାର୍ଥ ଏବଂ ଘଟନାବଳୀ ବାହାରେ ସ୍ଥାନ ଏବଂ କାଳ ଅବସ୍ଥିତ କି ନୁହଁ । ସେସବୁ ବସ୍ତୁଗତ ବାସ୍ତବତାର ଅଂଶବିଶେଷ କି ନୁହଁ ବା ମଣିଷର ଇନ୍ଦ୍ରିୟାନୁଭୂତିର ସେସବୁ କ'ଣ ଏକ ବିଶେଷ ରୂପ । ଦାର୍ଶନିକମାନେ ଏହିସବୁ ପ୍ରଶ୍ନର ଉତ୍ତର ବିଭିନ୍ନ ଭାବେ ଦେଇଛନ୍ତି ।

ସ୍ଥାନ ଏବଂ କାଳର ଏକ ବିଶେଷ ଅବଧାରଣା ନିର୍ଭର କରେ ଦର୍ଶନର ମୌଳିକ ପ୍ରଶ୍ନର ସମାଧାନ ଉପରେ । ଏହା ମଧ୍ୟ ବସ୍ତୁଗତ ଜଗତର ବୈଜ୍ଞାନିକ ଅନୁଧ୍ୟାନ କ୍ଷେତ୍ରରେ ସାଫଲ୍ୟରାଜି ସହିତ ସଂଯୁକ୍ତ । ଭାବବାଦୀ, ଧର୍ମବାଦୀ ମତାଦର୍ଶଗୁଡ଼ିକ ସାଧାରଣତଃ ବ୍ୟାଖ୍ୟା କରନ୍ତି ଏଭଳି ଭାବେ ଯେ, ବସ୍ତୁଟିର ଅପାର୍ଥିବ ଏବଂ ପାର୍ଥିବ ଧର୍ମରାଜି ଯେପରି ଅଛି ବୋଲି ଜଣାଯାଏ । ଏହା ସୂଚନା ଦିଏ ଯେ, ଏହା ସତ୍ୟ ନୁହେଁ, ଏହା ହେଉଛି ଗୌଣ, ନିର୍ଦ୍ଧାରିତ ଏବଂ ସୃଷ୍ଟିଯୋଗ୍ୟ । ବସ୍ତୁଗତ ଭାବବାଦ ଅନୁଯାୟୀ, ବସ୍ତୁଗତ ଜଗତ ସହିତ ସ୍ଥାନ ଆଉ କାଳ ମଧ୍ୟ ପରମାତ୍ମା ଦ୍ୱାରା ସୃଷ୍ଟି ହୋଇଥିଲା । ପରମାତ୍ମା, କିନ୍ତୁ (ଅଖଣ୍ଡ ଆଇଡିଆ, ଈଶ୍ୱର, ଆଦି) ସ୍ଥାନ ଆଉ କାଳର ବାହାରେ । ଭାବବାଦୀମାନେ କହନ୍ତି, ସୃଷ୍ଟିଶୀଳ ପଦାର୍ଥରାଜି ଭଳି, ସମୟ ମଧ୍ୟରେ ଯେଉଁମାନେ ଅସ୍ତିତ୍ୱ ଧାରଣ କରନ୍ତି, ପରମାତ୍ମା (ଈଶ୍ୱର) ପ୍ରତି ସମୟର ପ୍ରବର୍ଗ ପ୍ରଯୋଜ୍ୟ ନୁହେଁ, କାରଣ ଈଶ୍ୱର ହେଉଛନ୍ତି ସମୟର ବାହାରେ ଏବଂ ସେ ହେଉଛନ୍ତି ଚିରନ୍ତନ ।

ମନୋଗତ ଭାବବାଦୀମାନେ ବିଶ୍ୱାସ କରନ୍ତି ଯେ, ସମୟ ଏବଂ କାଳ ନିର୍ଭର କରେ ମଣିଷ ଉପରେ ଏବଂ ତାହା ବିରାଜ କରି ପାରେ କେବଳ ତା'ର ପ୍ରତ୍ୟକ୍ଷଜ୍ଞାନ ଏବଂ ମନ ମଧ୍ୟରେ । ଇଂରେଜ ଦାର୍ଶନିକ ଡ୍ୟାଭିଡ୍ ହ୍ୟୁମ୍‌ଙ୍କ (୧୭୧୧-୧୭୭୬) ମତାନୁଯାୟୀ ଜଗତ ହେଉଛି କର୍ତ୍ତାର ଉପଲବ୍ଧିର ସାମଗ୍ରିକତା । ଲୋକଙ୍କ ଇନ୍ଦ୍ରିୟାନୁଭୂତି ପଛରେ କ'ଣ ଅଛି ଏବଂ ଏପରିକି ସେସବୁର ବାହାରେ କ'ଣ ଅଛି, ସେମାନେ ଜାଣି ନଥିଲେ କି ଜାଣି ପାରିବେ ନାହିଁ । ଗୋଟିଏ ଉପଲବ୍ଧି ଅନ୍ୟ ଉପଲବ୍ଧି ଦ୍ୱାରା ସୃଷ୍ଟି ହୁଏ ବା ଗୋଟିକ ପରେ ଅନ୍ୟଟି ସୃଷ୍ଟି ହୁଏ । ପ୍ରଥମ କ୍ଷେତ୍ରରେ, ହ୍ୟୁମ୍ ବିଶ୍ୱାସ କରୁଥିଲେ. ମନ ପଦାର୍ଥରାଜିର ମହାକାଶଗତିକ ନୈକଟ୍ୟର ଏକ ସମ୍ମିଳନ ଏବଂ ଦ୍ୱିତୀୟ କ୍ଷେତ୍ରରେ ଏକ ପାର୍ଥିବ ନୈକଟ୍ୟ ସୃଷ୍ଟି କରେ । ସ୍ଥାନ ଏବଂ କାଳ ପ୍ରତି ସମାନ ଭାବବାଦୀ ଆଭିମୁଖ୍ୟ ଦେଖିବାକୁ ମିଳେ ଆଧୁନିକ ବୁର୍ଜୁଆ ଦାର୍ଶନିକଙ୍କ କ୍ଷେତ୍ରରେ । ସେମାନଙ୍କ ମଧ୍ୟରୁ କେତେକ (ତଥାକଥିତ ନବପ୍ରତ୍ୟକ୍ଷବାଦୀ) ସ୍ଥାନ, ଦୈର୍ଘ୍ୟ ଆଉ ଘନତାକୁ

ବ୍ୟାଖ୍ୟା କରନ୍ତି ପଦାର୍ଥବିଦ୍ୟାର ସାଧାରଣ ସଂକେତ ହିସାବରେ । ସେମାନେ ଏସବୁକୁ ପ୍ରକୃତିର ବସ୍ତୁନିଷ୍ଠ ଧର୍ମସମୂହକୁ ପ୍ରତିଫଳିତ କରୁଥିବା ଅବଧାରଣା ରୂପେ ବିଗ୍ରର କରନ୍ତି ନାହିଁ ।

ଭାବବାଦୀମାନଙ୍କ କ୍ଷେତ୍ରରେ ଯାହା ଘଟିଥିଲ, ସେଭଳି ନକରି ମାର୍କସ୍‌ଙ୍କ ପୂର୍ବବର୍ତ୍ତୀ ବସ୍ତୁବାଦର ପ୍ରଖ୍ୟାତ ପ୍ରତିନିଧିମାନେ ଯୁକ୍ତି ଦେଖାଇ ଥିଲେ ଯେ, ସ୍ଥାନ ଏବଂ କାଳର ବସ୍ତୁଗତତା ହେଉଛି ପ୍ରକୃତିର ଅସ୍ତିତ୍ୱ ପାଇଁ ଏକ ସର୍ତ୍ତ ଏବଂ ମୌଳିକ ରୂପସମୂହ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ପ୍ରଥମ ପ୍ରଗତିଶୀଳ ଚିନ୍ତାବିଦ୍‌ମାନଙ୍କର ଧାରଣା ସ୍ଥାନରେ ଜଗତର ଅସୀମତା ଏବଂ ସମୟରେ ଏହାର ଚିରନ୍ତନତାକୁ ସଂପୂର୍ଣ୍ଣ ରୂପେ ସଂରକ୍ଷଣ କରିଛି । ଜଗତକୁ ନିୟମାନୁଗ, ପ୍ରାକୃତିକ ଗତିସଂପନ୍ନ ବସ୍ତୁ ବୋଲି ସ୍ୱୀକାର କରି ନେଲେ ତା'ର ଅସ୍ତିତ୍ୱର ଏହିସବୁ ମୌଳିକ ଆଧାରଗୁଡ଼ିକର ବସ୍ତୁଗତ ବାସ୍ତବତା, ଅନାପେକ୍ଷିକ ଚରିତ୍ର ହୁଏ ସ୍ୱାଭାବିକ ସିଦ୍ଧାନ୍ତ ।

ଏ କଥା ମଧ୍ୟ ନିର୍ଦ୍ଦିଷ୍ଟ ଭାବେ କହିବା ଦରକାର ଯେ, ସ୍ଥାନ ଏବଂ କାଳର ବସ୍ତୁଗତ ବାସ୍ତବତା ଗତିଶୀଳ ବସ୍ତୁର ବାହାରେ କୌଣସି ବିଶେଷ ସାରସତ୍ତାସମୂହକୁ ସ୍ୱୀକାର କରି ନେବାକୁ ବୁଝାଏ ନାହିଁ । ବସ୍ତୁର ଅବଧାରଣା ମଧ୍ୟରେ ସ୍ଥାନ ଏବଂ କାଳ ନିହିତ ରହିଛି ତା'ର ବିଶ୍ୱବ୍ୟାପୀ ଗୁଣ ହିସାବରେ । ଏଥି ସଙ୍ଗେ ସଙ୍ଗେ, ବସ୍ତୁଗତ ବାସ୍ତବତା ହେଲେ ମଧ୍ୟ, ସେସବୁ ବସ୍ତୁ ନୁହନ୍ତି, ସେସବୁ ହେଉଛନ୍ତି ତା'ର ଧର୍ମ ଏବଂ ଏହି କାରଣରୁ ସେସବୁର ବସ୍ତୁମୟତା ରହିଛି । କିନ୍ତୁ, ବସ୍ତୁ ଏବଂ ବସ୍ତୁମୟତା ଏକା ଜିନିଷ ନୁହେଁ । ପଦାର୍ଥ ଏବଂ ତା'ର ଧର୍ମ, ବସ୍ତୁଗତ ଜଗତର ପ୍ରାକୃତିକ ନିୟମ, ସ୍ଥାନ ଏବଂ କାଳ, ଗତି ହେଉଛନ୍ତି ଚରିତ୍ର ଦୃଷ୍ଟିରୁ ବସ୍ତୁନିଷ୍ଠ, କିନ୍ତୁ ବସ୍ତୁ ଏ ସମସ୍ତ ଧର୍ମ ଆଉ ଗୁଣର ବାହକ, ପ୍ରପଞ୍ଚରାଜି ମଧ୍ୟରେ ବସ୍ତୁଗତ ସଂପର୍କରାଶିର ଭିତ୍ତି, ଏବଂ ଚିରନ୍ତର ପରିବର୍ତ୍ତନ ମଧ୍ୟରେ ଇନ୍ଦ୍ରିୟାନୁଭୂତି ଦ୍ୱାରା ଅନୁଭୂତ ମୂଳ ଭିତ୍ତି ।

ସ୍ଥାନ ଏବଂ କାଳ ବୋଇଲେ କ'ଣ ? ସେଗୁଡ଼ିକ ହେଉଛନ୍ତି ଗତି ମଧ୍ୟରେ ବସ୍ତୁର ଅବସ୍ଥିତି ପାଇଁ ଅପରିହାର୍ଯ୍ୟ ମୌଳିକ ସର୍ତ୍ତ, ବସ୍ତୁଠାରୁ ଅବିଚ୍ଛିନ୍ନ, ବସ୍ତୁଗତ ପ୍ରପଞ୍ଚରାଜିରେ ନିୟମଶୀଳତା ଏବଂ ପାରମ୍ପରିକ ପ୍ରକ୍ରିୟାର ସର୍ବାପେକ୍ଷା ସାଧାରଣ ଆଧାରସମୂହ । ବିଶେଷ ଭାବେ, ସ୍ଥାନର ଅବଧାରଣା ପାରସ୍ପରିକ ପ୍ରକ୍ରିୟାଭୁକ୍ତ ବସ୍ତୁଗତ ପଦାର୍ଥରାଜିର ସହାବସ୍ଥାନର ସାର୍ବିକ ପଦ୍ଧତି, ସେସବୁର ପ୍ରସାରଣ, ନୈକଟ୍ୟ ଏବଂ ଗଠନତାକୁ ପ୍ରକାଶ କରିଥାଏ । ସମୟର ଅବଧାରଣାଟି ବସ୍ତୁନିଷ୍ଠ ବାସ୍ତବତାର ପରିବର୍ତ୍ତନତାର ସାର୍ବିକ ପଦ୍ଧତିକୁ ଦର୍ଶାଇ ଥାଏ, ଯିଏକି ବସ୍ତୁଗତ ବ୍ୟବସ୍ଥାର ସ୍ଥିତି କାଳ ଏବଂ ଜଗତରେ ଏକାଦିକ୍ରମେ ଘଟୁଥିବା ଘଟଣାରାଜିକୁ ପ୍ରକାଶ କରିଥାଏ ।

ଏକଦା ଏଭଳି ଏକ ବ୍ୟାପକ ଅଭିମତ ପ୍ରଚଳିତ ଥିଲ ଯେ, ସ୍ଥାନ ଏବଂ କାଳ ହେଉଛି ପଦାର୍ଥ ଏବଂ ଘଟଣାବଳୀର ଶୂନ୍ୟ ଆଧାର । ଏହି ଭଳି ଏକ ଅବସ୍ଥାନ ଗ୍ରହଣ କରିଥିଲେ ବିଖ୍ୟାତ ଇଂରେଜ ପଦାର୍ଥବିଜ୍ଞାନୀ ଆଇଜାକ୍ ନିଉଟନ୍ (୧୬୪୨-୧୭୨୭) ।

ତାଙ୍କ ମତବାଦଟି ୧୯ଶ ଶତାବ୍ଦୀ ଦର୍ଶନରେ ସ୍ଥାନ ଆଉ କାଳ ସଂକ୍ରାନ୍ତ ଅବଧାରଣା ଉପରେ କମ୍ ପ୍ରଭାବ ପାତ କରି ନଥିଲା । ନିଉଟନ୍‌ଙ୍କ ପକ୍ଷରେ ସ୍ଥାନ ଥିଲା ଏକ ଅଚଳମାନ, ଧାରାବାହିକ, ସମଧର୍ମୀ, ସମସ୍ତ ସଂପ୍ରସାରିତ ପଦାର୍ଥ, ଅଣୁକୋଷ ଏବଂ ସେସବୁର ଗତି ପାଇଁ ସୀମାହୀନ ଆଧାର ଏବଂ ସମୟ ହେଉଛି ବିଶୁଦ୍ଧ, ସମଧର୍ମୀ ନିୟମାନୁବର୍ତ୍ତୀ ଏବଂ ଧାରାବାହିକ ସ୍ଥାୟିତ୍ୱ, ଅନନ୍ତ ଏବଂ ଅପରିବର୍ତ୍ତନୀୟ । ସେ ସ୍ଥାନ ଏବଂ କାଳକୁ ବସ୍ତୁଗତ ବାସ୍ତବତା ରୂପେ ଦେଖିଥିଲେ, ଯିଏକି ସବୁକିଛିକୁ ନେଇ ଗଠିତ ଏବଂ କାହାରି ଉପରେ ଅନିର୍ଭରଶୀଳ । ସେ ବସ୍ତୁର ଗତି ଏବଂ ସ୍ଥାନ, କାଳର ଧର୍ମରାଶି ମଧ୍ୟରେ କୌଣସି ଯୋଗସୂତ୍ର, ଏବଂ ସ୍ଥାନ ଆଉ କାଳ ମଧ୍ୟରେ ସଂପର୍କକୁ ପ୍ରତ୍ୟାଖ୍ୟାନ କରିଥିଲେ । ଆଜି ଆମେ ଦେଖୁଛେ, ସେସବୁ ମତାମତ ହେଉଛି ସୀମିତ, କାରଣ ବସ୍ତୁ ଏବଂ ତା'ର ଗୁଣରାଶି ମଧ୍ୟରେ ଏହା ତୀବ୍ର ପାର୍ଥକ୍ୟ ଦର୍ଶାଇଥାଏ ।

## ୫ – ବସ୍ତୁର ସର୍ବବ୍ୟାପୀ ଗୁଣରାଶି ମଧ୍ୟରେ ଆନ୍ତଃସଂପର୍କ

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ମନେ କରେ, ବସ୍ତୁର ଅସ୍ତିତ୍ୱର ଆକାର ହିସାବରେ ସ୍ଥାନ ଏବଂ କାଳ ଏହାର ବାହାରେ ତିଷ୍ଠି ପାରେ ନାହିଁ, ବସ୍ତୁର ବାହାରେ ସେସବୁ ହେଉଛି ଶୂନ୍ୟ ଅବଧାରଣା ଏବଂ ବିମୂର୍ତ୍ତତା । ସେସବୁ କେବଳ ଆମର ମନରେ ତିଷ୍ଠି ପାରେ ।

ଗତି ଉପରେ ଶୂନ୍ୟ ଏବଂ ପାର୍ଥିବ ସଂପର୍କର ନିର୍ଭରଶୀଳତା ଏବଂ ବସ୍ତୁଗତ ପଦାର୍ଥରାଜିର ପାରସ୍ପରିକ ପ୍ରକ୍ରିୟାର ହୃଦ୍‌ବୋଧ ସ୍ୱୀକୃତି ପ୍ରଦାନ କରିଥାଏ ଆଧୁନିକ ପ୍ରାକୃତିକ ବିଜ୍ଞାନ । ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱ ପ୍ରମାଣ କରିଛି ଯେ, ପଦାର୍ଥରାଜିର ଶୂନ୍ୟ ଏବଂ ପାର୍ଥିବ ଧର୍ମ ପରିବର୍ତ୍ତିତ ହୁଏ ସେମାନଙ୍କ ଗତିବେଗ ଅନୁଯାୟୀ । କୌଣସି ଏକ ପଦାର୍ଥର ଗତିବେଗରେ ଅଭିବୃଦ୍ଧି ଘଟିଲେ, ତା'ର ଦୈର୍ଘ୍ୟତାରେ ଆପେକ୍ଷିକ କ୍ଷୁଦ୍ରତା ଘଟେ, ଯେଉଁ ଦିଗରେ ତାହା ଗତି କରୁଥାଏ ସେଇ ଅନୁଯାୟୀ, ତା'ର ଘନତା ବଢ଼ୁଥାଏ ଏବଂ ତନ୍ ମଧ୍ୟରେ ଘଟୁଥିବା ପ୍ରକ୍ରିୟାସମୂହର ଛନ୍ଦ କମି ଆସେ । ବିଜ୍ଞାନ ମଧ୍ୟ ଏ କଥା ପ୍ରମାଣ କରିଛି ଯେ, ସ୍ଥାନର ଜ୍ୟାମିତିକ ଧର୍ମରାଶି ଏବଂ ପାର୍ଥିବ ପ୍ରକ୍ରିୟାରାଜିରେ ପରିବର୍ତ୍ତନ ଘଟେ ମାଧ୍ୟାକର୍ଷଣ ଶକ୍ତିସମୂହର ପ୍ରଭାବ ଫଳରେ । ଏହି ପ୍ରଭାବ ପାତ ପଛରେ ତଥ୍ୟରାଜି ମଧ୍ୟ ରହିଛି । ଦୃଷ୍ଟାନ୍ତ ସ୍ୱରୂପ, ମହାକାଶ ରଶ୍ମି ମଧ୍ୟରେ ସୂକ୍ଷ୍ମାତିସୂକ୍ଷ୍ମ ଅଣୁମାନଙ୍କର ଜୀବନ କାଳ ଅଧିକ ହୋଇଥାଏ, ସେମାନେ କମ୍ ଗତିବେଗ ମଧ୍ୟରେ ଥିବା ଅବସ୍ଥାଠାରୁ । ଏ କଥା ମଧ୍ୟ ପ୍ରମାଣିତ ହୋଇଛି ଯେ, ମାଧ୍ୟାକର୍ଷଣ କ୍ଷେତ୍ରଗୁଡ଼ିକର ପ୍ରଭାବାଧୀନରେ ଆଲୋକ ରଶ୍ମିସବୁ ବକ୍ର ହୋଇଥାଏ ଏବଂ ବିଶ୍ୱ ବ୍ରହ୍ମାଣ୍ଡ କ୍ଷେତ୍ରରେ ୟୁକ୍ଲିଡିଆନ୍ ଜ୍ୟାମିତି ପ୍ରଯୁକ୍ତ ହୁଏ ତା'ର ସୀମାବଦ୍ଧତାକୁ

ପ୍ରମାଣିତ କରେ । ଏ କଥା ମଧ୍ୟ ଦେଖିବାକୁ ମିଳିଛି ଯେ, ଶକ୍ତିଶାଳୀ ମାଧ୍ୟାକର୍ଷଣ କ୍ଷେତ୍ରଗୁଡ଼ିକ ସହିତ ମହାଜାଗତିକ ପଦାର୍ଥରାଜିରେ ଭୌତିକ ପ୍ରକ୍ରିୟାସମୂହ ଶିଥିଳ ହୋଇ ଆସେ ।

ବସ୍ତୁମୟ ପଦାର୍ଥରାଜିର ଶୂନ୍ୟ ଏବଂ ସମୟ ପାରାମିଟର ହେଉଛି (ଦୈର୍ଘ୍ୟ, ଅସ୍ତିତ୍ୱର ସମୟ କାଳ) ଏହି ଭାବେ, ଆପେକ୍ଷିକ । ସେସବୁ ନିର୍ଦ୍ଧାରିତ ହୋଇଥାଏ ବସ୍ତୁଗତ ବ୍ୟବସ୍ଥାର ମାଧ୍ୟାକର୍ଷଣ ଶକ୍ତି ଏବଂ ଗତିବେଗ ଅନୁଯାୟୀ । ନିଉଟନ୍‌ଙ୍କ ଧାରଣାର ବିପରୀତରେ, ସ୍ଥାନକୁ ତେଣୁ ନିଶ୍ଚିତ ଭାବେ ବ୍ରହ୍ମାଣ୍ଡର ବିଭିନ୍ନ ବିନ୍ଦୁ ତଥା ଅବସ୍ଥାରେ ସମଧର୍ମୀ ଏବଂ ସମୟର ପ୍ରବାହକୁ ଅନିୟମିତ ବୋଲି ବିଗ୍ଧର କରିବାକୁ ହେବ । ଆଧୁନିକ ପଦାର୍ଥବିଜ୍ଞାନ ଗତିବେଗର ଅଭିବୃଦ୍ଧି ଉପରେ ନିର୍ଭର କରି ପଦାର୍ଥରାଜି ତଥା ଶୂନ୍ୟଗତ ବିରଚିର ସଂପ୍ରସାରଣକୁ ପ୍ରମାଣିତ କରିଛି । ତେଣୁ, ବସ୍ତୁର ଅସ୍ତିତ୍ୱର ବସ୍ତୁଗତ ରୂପରାଶି ହିସାବରେ ସ୍ଥାନ ଏବଂ କାଳର ଅନ୍ତର୍ନିହିତ ଐକ୍ୟକୁ ପ୍ରଦର୍ଶନ କରେ ।

ଏ କଥା କହିବା ବାହୁଲ୍ୟ ଯେ, ଶୂନ୍ୟ ପାର୍ଥିବ ଧର୍ମରାଶିର ଆନୁପାତିକତାକୁ ସ୍ଥାନ ଏବଂ କାଳ ବାହାରେ ବାସ୍ତବ ଅସ୍ତିତ୍ୱକୁ (ସୂକ୍ଷ୍ମାତିସୂକ୍ଷ୍ମ ଅଣୁରାଶି) ସମର୍ଥନ କରିବା ହିସାବରେ ବ୍ୟାଖ୍ୟା କରିବା ଉଚିତ ନୁହେଁ । ଶୂନ୍ୟ-ପାର୍ଥିବ ସଂପର୍କରାଜି ହେଉଛି ସାର୍ବିକ ଏବଂ ଯେକୌଣସି ବସ୍ତୁଗତ ପ୍ରକ୍ରିୟା ପାଇଁ ଆବଶ୍ୟକ (ପାରମାଣବିକ ଜଗତ ସମେତ), ଏବଂ ଏହି ଅର୍ଥରେ ସେସବୁ ଚଳମାନ ବସ୍ତୁ ଭଳି ଅନପେକ୍ଷ ।

ଚଳମାନ ବସ୍ତୁର ସ୍ଥିତି ପାଇଁ ମୌଳିକ ସର୍ତ୍ତ ହିସାବରେ ଶୂନ୍ୟ-ପାର୍ଥିବ ସଂପର୍କରାଜି ମଧ୍ୟ କେତେକ ଧର୍ମର ଅଧିକାରୀ । ଦୃଷ୍ଟାନ୍ତ ସ୍ୱରୂପ, ସ୍ଥାନର ଅଛି ତ୍ରିଆୟତନିକତା, ଯିଏକି ନିବିଡ଼ ଭାବେ ଗତିର ସାଧାରଣ ନିୟମାନୁଗତତା ସହିତ ସଂଯୁକ୍ତ । ଯେକୌଣସି ପଦାର୍ଥର ଅବସ୍ଥାନ ଏବଂ ବିସ୍ତୃତି ତଥା ସ୍ଥାନ ମଧ୍ୟରେ ପଦାର୍ଥସମୂହର ବିଶେଷ ପ୍ରକ୍ରିୟାରାଜି ଏବଂ ପାରସ୍ପରିକ ପ୍ରକ୍ରିୟାର ସଂଘଟନକୁ ତ୍ରି ସମନ୍ୱୟ (ଦୈର୍ଘ୍ୟ, ପ୍ରସ୍ଥ ଏବଂ ଉଚ୍ଚତା) ସାହାଯ୍ୟରେ ବିଶଦ ଭାବେ ବର୍ଣ୍ଣନା କରି ହେବ । ପଦାର୍ଥବିଦ୍ୟା ଚତୁଃଆୟତନିକ ସ୍ଥାନ—କାଳ ଅବଧାରଣାକୁ, ଯିଏକି ହେଉଛି ତ୍ରି ଶୂନ୍ୟ ସମନ୍ୱୟରାଜି ସହିତ ଏକ ପାର୍ଥିବର ସମ୍ମିଶ୍ରଣର ଫଳ ସ୍ୱରୂପ, ବ୍ୟବହାର କରିଥାଏ ପଦାର୍ଥରାଜିର ଅବସ୍ଥାନ ତଥା ଗତିକୁ ବର୍ଣ୍ଣନା କରିବା ପାଇଁ । ଗଣିତ ବିଦ୍ୟା କାର୍ଯ୍ୟ କରିଥାଏ ବହୁଆୟତନିକ ସ୍ଥାନର ଅବଧାରଣା ମଧ୍ୟରେ । କିନ୍ତୁ ଏହିସବୁ ସ୍ଥାନ ହେଉଛି ଯୁକ୍ତିସମ୍ମତ ବିନ୍ୟାସ ଏବଂ ଏସବୁ ବ୍ୟବହୃତ ହୋଇଥାଏ ବିଭିନ୍ନ ଧର୍ମ ମଧ୍ୟରେ ସଂପର୍କକୁ ଚିହ୍ନିତ କରିବା (ସମତଳ, ବିନ୍ଦୁ, ଆକାର, ରଙ୍ଗ, ତାପ, ଗତିବେଗ, ଗ୍ରୁପ, ଆଦି) ସମେତ ପ୍ରକୃତ ଗଠନ ଏବଂ ବିସ୍ତୃତିର ଶୂନ୍ୟଗତ ବୈଶିଷ୍ଟ୍ୟରାଜିକୁ ପ୍ରକାଶ କରିବାରେ । ଗତିଶୀଳ ବସ୍ତୁର ପ୍ରକୃତ ସ୍ଥାନ ହେଉଛି ତ୍ରିଆୟତନିକ । ଆଧୁନିକ ବିଜ୍ଞାନ ଏହିଥିରୁ ଯାତ୍ରା କରିଥାଏ ସୂକ୍ଷ୍ମାଣୁଜଗତ, ବୃହତ୍ ଜଗତ ବା ମହାକାଶରେ ପ୍ରକୃତିର ଯେକୌଣସି ପ୍ରକ୍ରିୟାକୁ ଅଧ୍ୟୟନ କଲାବେଳେ । ମୃତ ପ୍ରାଣୀର ଆତ୍ମାସବୁ ଚତୁଃଆୟତନିକ ବା n- ଆୟତନିକ ସ୍ଥାନରେ ବାସ କରନ୍ତି

ବୋଲି ଆଜିକାଲି ସ୍ପିରିଟିପନ୍ଥୀମାନେ ଯେଉଁ କଥା କହନ୍ତି, ତାହା ରହସ୍ୟବାଦ, ବୈଜ୍ଞାନିକ ଜ୍ଞାନ ସହିତ ଅସଂଗତି ବ୍ୟତୀତ ଆଉ କିଛି ନୁହେଁ ।

ସ୍ଥାନଠାରୁ ପୃଥକ୍, ଗତିଶୀଳ ବସ୍ତୁର ସ୍ଥିତିର ରୂପ ହିସାବରେ ସମୟ ହେଉଛି ଏକଆୟତନିକ, ଏକଦିଗାଭିମୁଖୀ ଏବଂ ଅପଶ୍ଚାଦ୍‌ମୁଖୀ । ଭୌତିକ କର୍ମ ସର୍ବଦା କାରଣରୁ ତା'ର ଫଳ ଆଡ଼କୁ ବସ୍ତୁଗତ ବାସ୍ତବତା ମଧ୍ୟରେ ଗ୍ରଢିଥାଏ । ବସ୍ତୁର ସ୍ୱବିକାଶ ପ୍ରକ୍ରିୟା ହେଉଛି ଅପଶ୍ଚାଦ୍‌ମୁଖୀ, ଏହା ପ୍ରକାଶ ପାଇଥାଏ କେବଳ ଅତୀତରୁ ଭବିଷ୍ୟତକୁ ପରିବର୍ତ୍ତିତ ହେବାକୁ ସକ୍ଷମ ସମୟରେ, ଅନ୍ୟ କୌଣସି ଦିଗକୁ ନୁହେଁ । ସମୟ କେବଳ ଗୋଟିଏ ଦିଗରେ ବହିଥାଏ ଏବଂ ଏହା ଅପରିବର୍ତ୍ତନୀୟ । ବର୍ତ୍ତମାନ ଏବଂ ଭବିଷ୍ୟତ ପ୍ରପଞ୍ଚରାଜି ସଂକ୍ରାନ୍ତରେ କାର୍ଯ୍ୟାନୁଷ୍ଠାନ କେବଳ ସମ୍ଭବ, ଅତୀତ ପ୍ରପଞ୍ଚରାଜି ପାଇଁ ସମ୍ଭବ ନୁହଁ । ସମୟର ତଥାକଥିତ ଓଲଟପାଲଟ ବା ପ୍ରତ୍ୟାବର୍ତ୍ତନର ଭାବବାଦୀ ଦାର୍ଶନିକ ସନ୍ଦର୍ଭ, ଯିଏକି କାଳେ ବର୍ତ୍ତମାନରୁ ଅତୀତ ଆଡ଼କୁ ବହେ, ବିଜ୍ଞାନର ତଥ୍ୟର ବିପରୀତରେ ଯାଇଥାଏ । ଆଧୁନିକ ପ୍ରାକୃତିକ ବିଜ୍ଞାନ ସମୟର ଅପଶ୍ଚାଦ୍‌ମୁଖୀନତାକୁ ଯୋଗ କରିଥାଏ ମୌଳିକ ଏଣ୍ଟ୍ରେପିକ୍, ଏଲେକ୍ଟ୍ରୋଡାଇନାମିକ ଏବଂ କସ୍‌ମୋଲଜିକାଲ ପ୍ରକ୍ରିୟାରାଜିର ଅପରିବର୍ତ୍ତନୀୟତା ସହିତ ।

ଯୁକ୍ତିଯୁକ୍ତ ଭାବେ ଚଳମାନ ବସ୍ତୁ ହିସାବରେ ଜଗତର ଅବଧାରଣା ଏହି ସିଦ୍ଧାନ୍ତକୁ ନେଇଯାଏ ଯେ, ସ୍ଥାନ ଏବଂ କାଳ ହେଉଛି ସୀମାହୀନ । ବସ୍ତୁ ହେଉଛି ସୀମାହୀନ, କାରଣ, ପ୍ରଥମତଃ, ଏହା ହେଉଛି ଅନପେକ୍ଷ ବସ୍ତୁଗତ ବାସ୍ତବତା, ଯା'ର ବାହାରେ କୌଣସି ଅସ୍ତିତ୍ୱ (କୌଣସି ସ୍ପିରିଟ୍, ଈଶ୍ୱର ଆଦିର) ସମ୍ଭବ ନୁହେଁ । ଦ୍ୱିତୀୟତଃ, ବସ୍ତୁ ହେଉଛି ତା'ର ଗଢ଼ଣରେ ଏବଂ ତା'ର ଅସ୍ତିତ୍ୱର (ପଦାର୍ଥ, ପ୍ରପଞ୍ଚ, ପ୍ରକ୍ରିୟା, ଘଟଣା, ଧର୍ମ ଏବଂ ସଂପର୍କର) ବିଶେଷ ରୂପରାଶିର ଗୁଣାତ୍ମକ ବହୁବିଧତାରେ ସୀମାହୀନ । ତୃତୀୟତଃ ଏହାର ଅନ୍ତର୍ନିହିତ ସ୍ୱକାର୍ଯ୍ୟକଳାପ, ସ୍ୱଗତି ଏବଂ ସ୍ୱବିକାଶ, ଯିଏକି ଭୌତିକ ସତ୍ତାର ସର୍ବଦା ନୂଆ ନୂଆ ରୂପକୁ ଜନ୍ମ ଦେଉଛି, ହେଉଛି ସୀମାହୀନ । ଚଳମାନ ବସ୍ତୁର ସୀମାହୀନତା କହିଲେ ଏହାର ଅସ୍ତିତ୍ୱର, ଅର୍ଥାତ୍ ମୌଳିକ ରୂପରାଶିର ସ୍ଥାନ ଏବଂ କାଳର ସୀମାହୀନତାକୁ ବୁଝାଏ ।

ଅଧିଭୌତିକବାଦୀମାନେ ସବୁ ଯୁଗରେ ଭୌତିକ ଜଗତର ସୀମାହୀନତାକୁ ଅସ୍ୱୀକାର କରି ଆସିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ, ଜର୍ମାନ୍ ଦାର୍ଶନିକ ଇଉଜେନି ଡିଉରିଂ (୧୮୩୩-୧୯୨୧), ଯାହାଙ୍କୁ ଏଙ୍ଗେଲସ୍ ତୀବ୍ର ଭାବେ ସମାଲୋଚନା କରିଥିଲେ, ବିଶ୍ୱାସ କରୁଥିଲେ ସମୟର ଏକ ଆରମ୍ଭ ଥିଲା । ଏହାର ଏକମାତ୍ର ସିଦ୍ଧାନ୍ତ ହେଉଛି, ଜଗତର ସଞ୍ଚଳନ ଆରମ୍ଭ ହୋଇଥିଲା କୌଣସି ପ୍ରେରଣା ଦ୍ୱାରା, ଯାହାର ଏକମାତ୍ର ଯଥାଯଥ ବ୍ୟାଖ୍ୟା ହେଉଛି ଏକ ଐଶ୍ୱରିକ କାର୍ଯ୍ୟ । ନିଉଥମିଜମ୍, ଆଧୁନିକ କାଥୋଲିକ୍ ଦର୍ଶନ କେବଳ ଈଶ୍ୱରଙ୍କ ଉପରେ ଏହି ଅସୀମତାର ଗୁଣଟିକୁ ଆରୋପ କରିଥାଏ ଏବଂ ପ୍ରକୃତି ତଥା ସ୍ଥାନ ଏବଂ କାଳକୁ ଦେଖେ ସୃଷ୍ଟ ଜିନିଷ ହିସାବରେ ।

୧୬ଶ ବିଶ୍ୱ ଦର୍ଶନ କଂଗ୍ରେସରେ ବିଭିନ୍ନ ବୁର୍ଜୁଆ ପଣ୍ଡିତମାନେ ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ ଯେ, ଆଧୁନିକ ମହାଜାଗତିକ ତଥ୍ୟ ବ୍ରହ୍ମାଣ୍ଡର "ସୃଷ୍ଟିଗତ କାର୍ଯ୍ୟ" ସଂକ୍ରାନ୍ତ ଅନ୍ଧବିଶ୍ୱାସକୁ ସ୍ୱୀକାର କରୁଛି । ଏହି କଥାର ସପକ୍ଷରେ ସେମାନେ ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକତା ତତ୍ତ୍ୱ ଅନୁଯାୟୀ ବ୍ରହ୍ମାଣ୍ଡର "ବକ୍ରତା" ଏବଂ ଆମ ବ୍ରହ୍ମାଣ୍ଡରେ ପରିଦୃଶ୍ୟମାନ "ଛାୟାପଥସମୂହର ବିସ୍ତାର" ଦୃଷ୍ଟାନ୍ତ ଦେଇଥାନ୍ତି, ଆଦି । ଆବିଷ୍କାରଗୁଡ଼ିକୁ ବ୍ୟାଖ୍ୟା କରାଯାଇଥାଏ ସ୍ଥାନ (ତଥାକଥିତ "ବନ୍ଧ ବ୍ରହ୍ମାଣ୍ଡ", "'ବ୍ରହ୍ମାଣ୍ଡର' ସର୍ବଶେଷ ବ୍ୟାସାର୍ଦ୍ଧର" ଧାରଣା) ଏବଂ କାଳରେ (ସର୍ବଶ୍ରେଷ୍ଠ ପରମାଣସ୍ଥ ବ୍ରହ୍ମାଣ୍ଡର ସୃଷ୍ଟି) ଜଗତର ସୀମିତତାର ପ୍ରମାଣ ହିସାବରେ ।

ତା' ସତ୍ତ୍ୱେ, ଆଧୁନିକ ପ୍ରାକୃତିକ ବିଜ୍ଞାନର ସାଫଲ୍ୟରାଜି ଜଗତର ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଅବଧାରଣାକୁ ଖଣ୍ଡନ ନକରି ବରଂ, ଆଉରି ଦୃଢ଼ ଭାବେ ପ୍ରମାଣ କରିଥାଏ । ତେଣୁ "ବନ୍ଧ ବ୍ରହ୍ମାଣ୍ଡ"ର ଅବଧାରଣା ଏବଂ ସମାନ ଭାବେ ସଂପ୍ରସାରିତ, ସ୍ପନ୍ଦିତ ବ୍ରହ୍ମାଣ୍ଡର ବର୍ତ୍ତମାନର "ପ୍ରତିକୃତି", ଏପରିକି ସେସବୁକୁ ତତ୍ତ୍ୱଗତ ଭାବେ ବିଶ୍ଳେଷଣ କଲେ ମଧ୍ୟ, କେବଳ ନିର୍ଦ୍ଦିଷ୍ଟ ଅଂଶ, ବସ୍ତୁଗତ ବାସ୍ତବତାର ଏକ "ଅଂଶବିଶେଷ" ପ୍ରତି ପ୍ରଯୋଜ୍ୟ, ଗତିଶୀଳ ବସ୍ତୁର ସମଗ୍ର ଜଗତ ପ୍ରତି ପ୍ରଯୋଜ୍ୟ ନୁହେଁ । ବସ୍ତୁର ଏହି "ଅଂଶବିଶେଷର" ("ଆମ ବ୍ରହ୍ମାଣ୍ଡର") "ବନ୍ଧଗୁଣ" ଏବଂ "ସୀମିତତା" ଅନ୍ୟ, ଅଗଣିତ, ବହୁବିଧ ଜଗତର, ଯିଏକି ଆମ ଜଗତ ଭଳି ଦେଖା ନଯାଇ ପାରେ, ଅସ୍ତିତ୍ୱକୁ ବାଦ୍ ଦିଏ ନାହିଁ, ବରଂ ପୂର୍ବସ୍ଥିତ ବୋଲି ଧରି ନିଏ । ଯେକୌଣସି ଭୌତିକ ରୂପର (ସେ ପରମାଣୁ, ସୂର୍ଯ୍ୟ, ଛାୟାପଥ, ମେଟାଛାୟାପଥ ଅଥବା ଆମର ସମଗ୍ର ବ୍ରହ୍ମାଣ୍ଡ ହେଉ, ଯାହା ସାଧାରଣ ଭାବେ ଗତିଶୀଳ ବସ୍ତୁ ସହିତ ସମାନ ନୁହେଁ) ସୀମିତତା ସ୍ଥାନରେ ଏବଂ ଆରମ୍ଭ ଓ ଶେଷ ସମୟରେ ହୁଏ । ବସ୍ତୁ ଏବଂ ତା'ର ଗତି ହେଉଛି ସୀମାହୀନ । ଏହି ଭୌତିକ ଜଗତ – "ଆମ" ଜଗତ ହେଉଛି କେବଳ ସ୍ଥାନ ଏବଂ କାଳ ମଧ୍ୟରେ ଗତିମାନ ବସ୍ତୁଗତ ବାସ୍ତବତାର ଅନ୍ୟତମ ବିଦ୍ୟମାନ ପରିପ୍ରକାଶ – ଅନିଃଶେଷମାନ । ଏହି ଧାରଣାଟିକୁ ମାର୍କସ୍‌ଙ୍କ ପୂର୍ବବର୍ତ୍ତୀ କେତେକ ବସ୍ତୁବାଦୀ (ବ୍ରୁନୋ ପ୍ରଭୃତି) ପ୍ରକାଶ କରିଥିଲେ ଏବଂ ଏଙ୍ଗେଲସ୍ ଏହା ଉପରେ ଜୋର ଦେଇ କହିଛନ୍ତି ଯେ, "ଅବଶିଷ୍ଟଙ୍କ ପାଇଁ ଅନନ୍ତ ସମୟ ମଧ୍ୟରେ ଜଗତସମୂହର ଚିରନ୍ତନ ଭାବେ ଗୋଟିକ ପରେ ଗୋଟିଏର କ୍ରମାନୁବର୍ତ୍ତନ ହେଉଛି ସୀମାହୀନ ସ୍ଥାନ ମଧ୍ୟରେ ଅଗଣିତ ଜଗତର ଅବସ୍ଥାନ ସହିତ ଏକମାତ୍ର ଯୁକ୍ତିସଂଗତ ସଂଯୋଗ ... ।"* ସବୁଠାରୁ ବଡ଼ କଥାଟି ହେଉଛି, ଏଭଳି ବ୍ୟବସ୍ଥା ସବୁ ତିଷ୍ଠି ପାରନ୍ତି ନାହିଁ, ଯେଉଁମାନେ କି ସ୍ଥାନରେ ସଂପୂର୍ଣ୍ଣ ରୂପେ ବନ୍ଧ ଏବଂ "ବନ୍ଧ" ଜଗତର ପ୍ରତିମୂର୍ତ୍ତିକୁ ମଧ୍ୟ ଏହି ଦୃଷ୍ଟିକୋଣର ପ୍ରଶ୍ନାଧୀନ କରାଯାଇ ପାରେ ।

---

* ଫ୍ରେଡେରିକ୍ ଏଙ୍ଗେଲସ୍, "*Dialectics of Nature*", p. 39.

ସ୍ଥାନ ଏବଂ କାଳର ଅସୀମତା ଉଦ୍‌ଘାଟିତ ହୋଇ ନାହିଁ ଏକେଇ ରୂପ ଆଉ ଅବସ୍ଥାରେ ବସ୍ତୁର ଏକ ଅନ୍ତହୀନ ଏକାରକମର ଅସ୍ତିତ୍ୱ ମଧ୍ୟରେ । ବସ୍ତୁଗତ ବାସ୍ତବତା ହେଉଛି ଗତିଶୀଳ ବସ୍ତୁର ଗୁଣାତ୍ମକ ଭାବେ ନୂତନ ପରିପ୍ରକାଶର ଅନ୍ତହୀନ ଉନ୍ମେଷ ।

## ୬ — ବସ୍ତୁର ସ୍ୱବିକାଶ

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ବସ୍ତୁର ଗତିକୁ ତା'ର ସ୍ୱବିକାଶ ବୋଲି ବିଚାର କରେ । ଏହି କଥାଟି ଉପରେ ଜୋର ଦେବା ଦରକାର । ସ୍ଥାନ ଏବଂ କାଳ ମଧ୍ୟରେ ଦେଖା ଦେଉଥିବା ପରିବର୍ତ୍ତନସମୂହର ସମଷ୍ଟି କେବଳ କେତେକ ପ୍ରପଞ୍ଚର ଅନ୍ୟ କେତେକ ବିଦ୍ୟମାନ ପ୍ରପଞ୍ଚକୁ ରୂପାନ୍ତରଣକୁ ଯେ ପ୍ରଦର୍ଶନ କରେ, ତା ନୁହେଁ, ବସ୍ତୁର ପ୍ରପଞ୍ଚରାଜି କିପରି ତା'ର ଅବସ୍ଥିତିର ନୂତନ ରୂପକୁ ଜନ୍ମ ଦେଉଛି, ତାହା ଦର୍ଶାଇଥାଏ । ବସ୍ତୁର ଗତି ଉଚ୍ଚତର ଧରଣର ପଦାର୍ଥରାଜି ଏବଂ ନୂତନ ଧର୍ମ ତଥା ନିୟମାନୁଗତତାଧାରୀ ଆଉରି ଜଟିଳ ଗଢ଼ଣକୁ ସୃଷ୍ଟି କରିଥାଏ । ଜଗତର ବିକାଶ ନିର୍ଦ୍ଦିଷ୍ଟ ଭାବେ ଭୌତିକ ବ୍ୟବସ୍ଥାର ଅପରିବର୍ତ୍ତନୀୟ ଗୁଣଗତ ପରିବର୍ତ୍ତନରାଜିକୁ ନେଇ ଗଠିତ, ଯେଉଁଥିରେ ଗୁଣଗତ ପରିବର୍ତ୍ତନରାଜି ମଧ୍ୟ ଦେଇ ପଦାର୍ଥସବୁ ଦେଖା ଦେଇଥାନ୍ତି ଏବଂ ଉଭେଇ ଯାଇଥାନ୍ତି ପ୍ରଗତି ଏବଂ ପଶ୍ଚାଦ୍‌ଗତି ସହିତ । ବସ୍ତୁର କ୍ଷମତା ନିର୍ଭର କରେ ତା'ର ସ୍ୱବିକାଶ ମଧ୍ୟରେ, ଏହା ଅଭ୍ୟୁଦୟକୁ ନିର୍ଦ୍ଧାରଣ କରେ ତା'ର ପୂର୍ଣ୍ଣତାର ଶୀର୍ଷ ବିନ୍ଦୁର ନିର୍ଦ୍ଦିଷ୍ଟ ଅବସ୍ଥାରାଜି ଅଧୀନରେ, ଅର୍ଥାତ୍, ଚିନ୍ତନଶୀଳ ମନରେ, ଯେଉଁଥିରେ ବସ୍ତୁ ନିଜକୁ ଅନୁଭବ କରେ ।

ବିଦ୍ୟମାନ ବହୁବିଧ ପରିବର୍ତ୍ତନରାଜିକୁ ଶ୍ରେଣୀବିନ୍ୟାସ କରିବାର ପ୍ରଚେଷ୍ଟା ଅବିସ୍ମରଣୀୟ କାଳରୁ ଚାଲି ଆସିଛି । ଦୃଷ୍ଟାନ୍ତ ସ୍ୱରୂପ, ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ଆରିଷ୍ଟୋଟଲ (ଖ୍ରୀ : ପୂ : ୩୮୪-୩୨୨) ଛଅଟି ପ୍ରକାରର ଗତିକୁ ପୃଥକ୍ ପୃଥକ୍ କରି ପ୍ରଦର୍ଶନ କରିଥିଲେ : ଅଭ୍ୟୁଦୟ, ଧ୍ୱଂସ, ଗୁଣରେ ପରିବର୍ତ୍ତନ, ଅଭିବୃଦ୍ଧି, ହ୍ରାସ ଏବଂ ସ୍ଥାନ ପରିବର୍ତ୍ତନ । ବୈଶେଷିକ ଦର୍ଶନର ପ୍ରତିଷ୍ଠାତା କନାଦ (ଖ୍ରୀ : ପୂ : ୩ୟ ଶତାବ୍ଦୀ) ଜଗତର ସମସ୍ତ ପରିବର୍ତ୍ତନକୁ ସନ୍ଧିକ୍ଷଣ ଏବଂ ଅସନ୍ଧିକ୍ଷଣରେ ବିଭକ୍ତ କରିଥିଲେ । ଇଂରେଜ ବସ୍ତୁବାଦୀ ଫ୍ରାନ୍‌ସିସ୍ ବ୍ୟାକନ୍ (୧୫୬୧-୧୬୨୬) ୧୯ଟି ଧରଣର ଗତିକୁ ନାମିତ କରିଥିଲେ : ଦୋଳନ, ନିଷ୍କ୍ରିୟତା, ଉଦ୍ଦୀପନା, ବିଦ୍ୱେଷ, ଆଦି । ୧୮ଶ ଶତାବ୍ଦୀର ଅଧିଭୌତିକ ଦାର୍ଶନିକମାନେ ଗତି ସଂପର୍କରେ ଧାରଣା କରିଥିଲେ — ସ୍ଥାନରେ ପଦାର୍ଥରାଜିର ସ୍ଥାନ ପରିବର୍ତ୍ତନ, ବିଭିନ୍ନ ଯାନ୍ତ୍ରିକ ଗତିର ପୃଥକ୍‌କରଣ : ସରଳରୈଖିକ, ଦୋଳନିକ ଏବଂ ଚକ୍ରାବର୍ତ୍ତନ, ଆଦି । ତା ସତ୍ତ୍ୱେ ମାର୍କସ୍‌ଙ୍କ ପୂର୍ବବର୍ତ୍ତୀ କୌଣସି ଦାର୍ଶନିକ ଗତିର ରୂପରାଜିର ଶ୍ରେଣୀବିନ୍ୟାସ ପାଇଁ କୌଣସି ବୈଜ୍ଞାନିକ ନୀତିର

# ବସ୍ତୁର ଗତିର ମୌଳିକ ରୂପରାଜି ମଧ୍ୟରେ ପାରସ୍ପରିକ ଯୋଗସୂତ୍ର

"ବସ୍ତୁ କ୍ଷେତ୍ରରେ ପ୍ରଯୋଜ୍ୟ, ଗତି ହେଉଛି ସାଧାରଣ ଭାବେ ପରିବର୍ତ୍ତନ ।"

— ଏଙ୍ଗେଲସ୍

**ଦ୍ୱନ୍ଦ୍ୱମୂଳକ ମତ**

ଗତିର ଗୋଟିଏ ରୂପରୁ ଆଉ ଗୋଟିଏ ଗତିରୂପକୁ ବିକାଶ ଘଟ କରିଥାଏ ।

ଗତିର ନିମ୍ନତର ରୂପସମୂହ ସଂହତ ହୋଇଥାଏ ଉଚ୍ଚତର ରୂପଗୁଡ଼ିକରେ ।

ଗତିର ଉଚ୍ଚତର ରୂପ ହେଉଛି ଏକ ନୂଆ ଗୁଣ, କେବଳ ନିମ୍ନତର ରୂପସମୂହର ମୋଟ ଯୋଗଫଳ ନୁହଁ ।




**ଅଧିବିଦ୍ୟାବାଦୀ ମତ**

ଉଚ୍ଚତର ରୂପସମୂହ ନିମ୍ନତର ରୂପସମୂହରେ ପରିଣତ ହୁଅନ୍ତି ।

ଉଚ୍ଚତର ରୂପଗୁଡ଼ିକ ମଧ୍ୟରେ ଗତିର ନିମ୍ନତର ରୂପସମୂହର କ୍ରିୟାକୁ ହିସାବକୁ ନିଆଯାଏ ନାହିଁ ।

"...ଯାନ୍ତ୍ରିକ, ଆଣବିକ ...ଆଦି ଗତିସମୂହ ବିନା ଦୈହିକ ଜୀବନ ଅସମ୍ଭବ । କିନ୍ତୁ ଏହିସବୁ 'ଗୌଣ' ରୂପସମୂହର ଉପସ୍ଥିତି· ପ୍ରତିଟି କ୍ଷେତ୍ରରେ ମୁଖ୍ୟ ରୂପଟିର ସାରସତ୍ତାକୁ କ୍ଷେପ କରି ଦେଇ ପାରେ ନା...।" "କାରଣ ଜୀବାଙ୍ଗ ନିର୍ଦ୍ଦିଷ୍ଟ ଭାବେ ହେଉଛି ଉଚ୍ଚତର ଐକ୍ୟ, ଯା ମଧ୍ୟରେ ଏହା ନିଜକୁ ନିଜେ ସଂଘବଦ୍ଧ କରିଥାଏ ଯନ୍ତ୍ରବିଦ୍ୟା, ପଦାର୍ଥବିଦ୍ୟା ଏବଂ ରସାୟନ ବିଦ୍ୟାକୁ ଏକ ସମଗ୍ରତାରେ, ଯେଉଁ ସମଗ୍ରତାରେ ଏହି ତିନୋଟି କେବେହେଲେ ପୃଥକ୍ ହୋଇ ପାରନ୍ତି ନାହିଁ ।"

— ଏଙ୍ଗେଲସ୍

ସୂତ୍ରାୟନ କରି ପାରି ନଥିଲେ । ଏହା କେବଳ ସମ୍ଭବ ହୋଇଥିଲା ବସ୍ତୁର ଗତି ସଂପର୍କରେ ଦ୍ୱନ୍ଦ୍ୱମୂଳକ ଆଭିମୁଖ୍ୟର ଅଭ୍ୟୁଦୟ ଫଳରେ ।

ବସ୍ତୁର ଗତି ଏକ ଅବିରତ ଏବଂ ଏକଦିଗମୁଖୀ "ପରିବର୍ତ୍ତନର ସ୍ରୋତ" ରୂପେ ଅବସ୍ଥାନ କରେ ନାହିଁ, ଅବସ୍ଥାନ କରେ ମୌଳିକ ଭାବେ ପ୍ରତ୍ୟେକଠାରୁ ଭିନ୍ନ ଭିନ୍ନ ବହୁବିଧ ରୂପରେ । ଏହି ବହୁବିଧତା ବିଶୃଙ୍ଖଳ ନୁହେଁ, ଏହା ଶୃଙ୍ଖଳାବଦ୍ଧ, ଏବଂ ସରଳ ଏବଂ ଜଟିଳ, ବଂଶାନୁକ୍ରମିକ ଭାବେ ପୂର୍ବବର୍ତ୍ତୀ ଏବଂ ଅନୁବର୍ତ୍ତୀ, ନିମ୍ନତର ଏବଂ ଉଚ୍ଚତର ମଧ୍ୟରେ, ଭିତ୍ତି ଏବଂ ଉଦ୍ଭୂତ, ମୌଳିକ ଏବଂ ଗୌଣ ମଧ୍ୟରେ ଆନ୍ତଃପ୍ରକ୍ରିୟା ଭଳି ସଂପର୍କ ଦ୍ୱାରା ଚିହ୍ନିତ । ତେଣୁ, ଗତିମାନ ବସ୍ତୁ କେବଳ ପୃଥକ୍ ପୃଥକ୍ ଧରଣର ଗତିର ନୈକଟ୍ୟ ନୁହଁ, ସେସବୁର ସଂହତ ବ୍ୟବସ୍ଥା । ସାମଗ୍ରିକ ଭାବେ ବସ୍ତୁ ପ୍ରତି ପ୍ରଯୋଜ୍ୟ ତା'ର ସ୍ୱବିକାଶକୁ ବୁଝିବାକୁ ହେବ ଗତିର କେତେକ ରୂପର ଗୁଣାତ୍ମକ ଭାବେ ଅନ୍ୟ ରୂପକୁ ଉତ୍ତରଣ ହିସାବରେ ।

## ୭ – ଗତିର ମୌଳିକ ରୂପସମୂହ

ଫ୍ରେଡେରିକ୍ ଏଙ୍ଗେଲସ୍ ହିଁ ପ୍ରଥମ କରି ତାଙ୍କର ପୁସ୍ତକ *"Dialectics of Nature"* and *"Anti-Dühring"*ରେ ଗତିର ଗୁଣାତ୍ମକ ଭାବେ ଭିନ୍ନ ଭିନ୍ନ ରୂପ ସଂପର୍କରେ ଏକ ମତବାଦର ବିକାଶ ଘଟାଇଥିଲେ, ଯିଏକି ଜଗତରେ ପରିବର୍ତ୍ତନର ଅଗଣିତ ବହୁବିଧତାର ନିର୍ଦ୍ଦିଷ୍ଟ ବର୍ଣ୍ଣନା ପ୍ରଦାନ କରିଥିଲା ।

ସେ ଲେଖିଥିଲେ, "ମହାକାଶଗତିକ ସ୍ଥାନରେ ଗତି, ବିଭିନ୍ନ ମହାକାଶଗତିକ ପଦାର୍ଥରାଜି ଉପରେ କ୍ଷୁଦ୍ର କ୍ଷୁଦ୍ର ପିଣ୍ଡର ଯାନ୍ତ୍ରିକ ଗତି, ତାପ ବା ବୈଦ୍ୟୁତିକ ବା ଚୌମ୍ବିକ ସ୍ରୋତ, ରାସାୟନିକ ବିଭାଜନ ଏବଂ ସଂଯୋଜନ, ଜୈବିକ ଜୀବନ ହିସାବରେ ଅଣୁରାଶିର ପ୍ରକଂପନ – ପ୍ରତ୍ୟେକଟି ମୁହୂର୍ତ୍ତରେ ଜଗତର ପ୍ରତ୍ୟେକଟି ଅଣୁ ଗତିର ଏହିସବୁ ରୂପ ମଧ୍ୟରୁ କୌଣସି ନା କୌଣସିଟିରେ ବା ଏକାବେଳକେ ବହୁରୂପରେ ଥାଏ ।"*

ଏଙ୍ଗେଲସ୍ଙ୍କ ମତରେ ଗତିର ନିମ୍ନଲିଖିତ ମୌଳିକ ରୂପଗୁଡ଼ିକ ମଧ୍ୟରେ ପାର୍ଥକ୍ୟକୁ ଲକ୍ଷ୍ୟ କରିବା ଦରକାର – ଯାନ୍ତ୍ରିକ, ଭୌତିକ, ରାସାୟନିକ, ଜୈବିକ ଏବଂ ସାମାଜିକ । ବସ୍ତୁର ଗତିର ମୌଳିକ ରୂପଗୁଡ଼ିକ ସଂପର୍କରେ ଏଙ୍ଗେଲସ୍ଙ୍କ ଅବଧାରଣାକୁ ନିମ୍ନମତେ ସଂକ୍ଷେପରେ କୁହାଯାଇ ପାରେ : (କ) ପ୍ରତ୍ୟେକଟି ରୂପ

---

* ଫ୍ରେଡେରିକ୍ ଏଙ୍ଗେଲସ୍, *"Anti-Dühring"*, ପ୍ରଗତି ପ୍ରକାଶନ, ମସ୍କୋ, ୧୯୭୮, ପୃ : ୭୭-୭୮ ।

ନିର୍ଦ୍ଦିଷ୍ଟ ଭୌତିକ ଉତ୍ସରୁ ଆସିଥାଏ (ବୃହତ୍ ପଦାର୍ଥ, କ୍ଷୁଦ୍ର ଅଣୁ, ଅଙ୍ଗ, ଆଦି); (ଖ) ସମସ୍ତ ରୂପ ହେଉଛି ଗୁଣାତ୍ମକ ଭାବେ ଭିନ୍ନ ଭିନ୍ନ ଏବଂ ଗୋଟିକୁ ଅନ୍ୟଟିକୁ ସୀମିତ କରି ଆଣିବା ଅସମ୍ଭବ (ଦୃଷ୍ଟାନ୍ତ ସ୍ୱରୂପ, ଏହା ଭୁଲ ହେବ, ଯଦି ଜୈବିକ ପ୍ରକ୍ରିୟାରାଜିକୁ ଯନ୍ତ୍ରବିଦ୍ୟାର ନିୟମ ଅନୁଯାୟୀ ବ୍ୟାଖ୍ୟା କରାଯାଏ, ଯେପରି ଅଧିଭୌତିକ ବସ୍ତୁବାଦୀମାନେ କରିଥାନ୍ତି); (ଗ) କେତେକ ରୂପ ଉପଯୁକ୍ତ ଅବସ୍ଥାରାଜି ଅଧୀନରେ ଅନ୍ୟ ରୂପକୁ ରୂପାନ୍ତରିତ ହୋଇ ପାରେ; (ଘ) ଗତିର ମୌଳିକ ରୂପଗୁଡ଼ିକ ସେମାନଙ୍କ ଜଟିଳତାର ମାତ୍ରାରେ ପୃଥକ୍ ପୃଥକ୍, କେତେକ ନିମ୍ନତର ଆଉ କେତେକ ଉଚ୍ଚତର; ଉଚ୍ଚତର ଅଭ୍ୟୁଦୟ ଘଟିଥାଏ ନିମ୍ନତରର ସମନ୍ୱୟ ଦ୍ୱାରା ଏବଂ ସେମାନଙ୍କର ନିଜସ୍ୱ ପ୍ରାକୃତିକ ନିୟମାବଳୀ ସହିତ ନୂତନ ଗୁଣର ପ୍ରତିନିଧିତ୍ୱ କରେ; (ଙ) ବସ୍ତୁର ଗତିସମୂହର ବିନ୍ୟାସ ବିଜ୍ଞାନସମୂହର ବିନ୍ୟାସର ଭିତ୍ତି ହିସାବରେ କାର୍ଯ୍ୟ କରିଥାଏ (ଯନ୍ତ୍ରବିଦ୍‌ମାନେ ଯାନ୍ତ୍ରିକ ଗତିର ନିୟମାବଳୀକୁ, ପଦାର୍ଥବିଦ୍‌ମାନେ ଭୌତିକ ଗତିର ନିୟମାବଳୀକୁ ଅନୁଧ୍ୟାନ କରିଥାନ୍ତି ।)

ଗତିର ମୌଳିକ ରୂପରାଜି ଉପରେ ଶିକ୍ଷାଟି ହେଉଛି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦର୍ଶନର ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନ । ଏହା ଦ୍ୱାରା ଆମେ ଜଗତକୁ ବୁଝି ପାରେ ବଂଶାନୁକ୍ରମିକ ଭାବେ ଆନ୍ତଃସଂପୃକ୍ତ ଐକ୍ୟ ହିସାବରେ, କିନ୍ତୁ ଗୁଣାତ୍ମକ ଭାବେ ବିକାଶର ବିଭିନ୍ନ ପର୍ଯ୍ୟାୟ ହିସାବରେ: ଅଜୈବିକ ପ୍ରକୃତି, ଜୀବନ ଏବଂ ସମାଜ । ବିଂଶ ଶତାବ୍ଦୀର ବିଜ୍ଞାନର ବିକାଶ ଗତିର ମୌଳିକ ରୂପରାଜିର ଅବଧାରଣାକୁ ସ୍ୱୀକାର କରିଛି ଏବଂ ଏହାକୁ ଆଉରି ସମୃଦ୍ଧ ତଥା ଶକ୍ତିଶାଳୀ କରିଛି ।

ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ଆବିଷ୍କୃତ ହେଉଥିବା ଗତିର ବହୁବିଧ ରୂପରାଜି କ୍ରମଶଃ ବୃଦ୍ଧି ପାଇବାରେ ଲଗିଛି । ସେହିସବୁ ରୂପକୁ ଗୋଟିଏ ମାତ୍ର ସରଳ ରୈଖିକ ଧାଡ଼ି କରି ରଖା ଯାଇ ପାରିବ ନାହିଁ । ଏହି ଧାଡ଼ିଟି ବହୁ ଶାଖା ପ୍ରଶାଖା ମେଲିଛି । ଏହାର କେନ୍ଦ୍ର ସ୍ଥାନଟିକୁ ଅଧିକାର କରେ ବସ୍ତୁ ଗତିର ଦୈହିକ ରୂପସମୂହ, ଯିଏକି ହେଉଛି ଗତିର ବିଦ୍ୟମାନ ସମସ୍ତ ରୂପ ମଧ୍ୟରେ ଏକାନ୍ତ ମୌଳିକ । କାରଣ, ଅନ୍ୟାନ୍ୟ ଗତି ରୂପଗୁଡ଼ିକ ଏହି କିମ୍ବା ଅନ୍ୟ ଦୈହିକ ଆନ୍ତଃକ୍ରିୟାର ଭିତ୍ତି ମଧ୍ୟରୁ ଜାତ ହୋଇଥାଏ । ଗତିର ଦୈହିକ ରୂପ ମଧ୍ୟରେ ଯାଏ: ଇଣ୍ଟ୍ରା ପାରମାଣବିକ ପ୍ରକ୍ରିୟା, ମୌଳିକ ସୂକ୍ଷ୍ମାଣୁଗୁଡ଼ିକର ପାରସ୍ପରିକ ରୂପାନ୍ତରଣ; ମାକ୍ରୋସୋପିକ ପଦାର୍ଥରାଜିର ଗତି ରୂପ (ତାପ, ସଟିକକରଣ, ଏକତ୍ରିତ ଅବସ୍ଥାର ପରିବର୍ତ୍ତନ, ଶବ୍ଦ, ତରଳ ପଦାର୍ଥ ଏବଂ ଗ୍ୟାସ୍‌ରେ ବିଭିନ୍ନ ସ୍ଥାନାନ୍ତରଣ); ମାକ୍ରୋ ପଦାର୍ଥର ଶୂନ୍ୟସ୍ଥ ରୂପାନ୍ତରଣ ହିସାବରେ ଯାନ୍ତ୍ରିକ ଗତି; ଛାୟାପଥ, କ୍ୱାସାରସ୍, ପଲ୍‌ସାରସ୍ ଏବଂ ଅନ୍ୟାନ୍ୟ ନାକ୍ଷତ୍ରିକ ବସ୍ତୁର ଗଠନ ସହିତ ସଂପୃକ୍ତ ମହାଜାଗତିକ ପ୍ରକ୍ରିୟାରାଜି । ଗତିର ଦୈହିକ ରୂପସମୂହର ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ ବସ୍ତୁଗତ ରୂପରାଶିର ବିଶେଷ ଧରଣର ଆନ୍ତଃକ୍ରିୟା ଦ୍ୱାରା । ତେଣୁ କରି ଏକ ଦୁର୍ବଳ ଆନ୍ତଃକ୍ରିୟା ଅଲଗା ହୋଇଯାଏ, ଯିଏକି ନିର୍ଦ୍ଧାରିତ

ହୋଇଥାଏ ନିଉଟ୍ରନସ, ମୌଳିକ ଅଣୁରାଶିର ବିଚ୍ଛୁରଣ ଏବଂ ପରିଶୋଷଣ ଦ୍ୱାରା । ଏହିସବୁ ଅଣୁରାଶିର ଥାଏ ବିପୁଳ ଅନ୍ତଃପ୍ରବେଶ ଶକ୍ତି; ଏକ ଶକ୍ତିଶାଳୀ ଆନ୍ତଃପ୍ରକ୍ରିୟା ପ୍ରକାଶ କରେ ଆନ୍ତଃପାରମାଣବିକ ଅଣୁସମୂହର ଆନ୍ତଃପ୍ରକ୍ରିୟାକୁ; ବୈଦ୍ୟୁତିକ ଚୌମ୍ବିକ–ବୈଦ୍ୟୁତିକ ଏବଂ ଚୌମ୍ବିକ କ୍ଷେତ୍ରରାଶି ମାଧ୍ୟମରେ ପିଣ୍ଡସମୂହର ବିଭିନ୍ନ ଆନ୍ତଃପ୍ରକ୍ରିୟାକୁ ପ୍ରକାଶ କରେ; ମାଧ୍ୟାକର୍ଷଣ–ମାଧ୍ୟାକର୍ଷଣ କ୍ଷେତ୍ରସମୂହ ମାଧ୍ୟମରେ ସମସ୍ତ ପିଣ୍ଡର ଆନ୍ତଃକ୍ରିୟାସମୂହର ପ୍ରକ୍ରିୟାକୁ ପ୍ରକାଶ କରେ ଏବଂ ସମସ୍ତ ମହାଜାଗତିକ ପଦାର୍ଥର ରୂପ ପରିଗ୍ରହରେ ମୁଖ୍ୟ ଭୂମିକା ପାଳନ କରେ ।

ବସ୍ତୁ ଗତିର ଆଉରି ଅଧିକ ଜଟିଳ ଆକୃତିର ପ୍ରତିନିଧିତ୍ୱ କରେ ଭୌତିକ ଆନ୍ତଃପ୍ରକ୍ରିୟା ଉପରେ ନିର୍ଭରଶୀଳ ରାସାୟନିକ ପ୍ରକ୍ରିୟାରାଜିର ସମଷ୍ଟି । ରାସାୟନିକ ଗତି ହେଉଛି ଆନ୍ତଃପାରମାଣବିକ ଆନ୍ତଃପ୍ରକ୍ରିୟା ଏବଂ ପରମାଣୁସମୂହ ଏବଂ ସୂକ୍ଷ୍ମାଣୁରାଜିର ଗତି । ଏସବୁ ମଧ୍ୟରେ ଯାଏ, ସୂକ୍ଷ୍ମାଣୁ, ଆଇଓନ ଏବଂ ର୍ୟାଡିକାଲସମୂହର ପରିବର୍ତ୍ତନ ଏବଂ ରୂପାନ୍ତରଣ ସହିତ ଯୁକ୍ତ ପ୍ରକ୍ରିୟାରାଜି । ରାସାୟନିକ ଆନ୍ତଃପ୍ରକ୍ରିୟାଗୁଡ଼ିକ ବିଶେଷ ଭାବେ ପ୍ରକଟିତ ହୋଇଥାଏ କୋଭେଲେଣ୍ଟ, ଉଦ୍‌ଜାନ, ଆଇଓନିକ ଏବଂ ଅନ୍ୟ ଧରଣର ରାସାୟନିକ ସଂପର୍କରେ । ରାସାୟନିକ ଗତି, ନିଜେ ତଦ୍ୱାରା ସୃଷ୍ଟ ଅଧିକ ଜଟିଳ ପ୍ରକ୍ରିୟାକୁ ଏବଂ ଗତିଯୁକ୍ତ ବସ୍ତୁର ଉଚ୍ଚତର ରୂପକୁ ପ୍ରଦର୍ଶନ କରିଥାଏ । ଏହା ପ୍ରକାଶ ପାଇଥାଏ ରାସାୟନିକ ପ୍ରକ୍ରିୟାରାଜିର ଅଜୈବିକ ଓ ଜୈବିକ ପ୍ରକ୍ରିୟାର ବିଭାଜନ ମଧ୍ୟରେ । ପୂର୍ବବର୍ତ୍ତୀ ପ୍ରକ୍ରିୟାଠାରୁ ପୃଥକ୍ ରୂପେ–ଯା'ର ଭୌତିକ ବାହକ ହେଉଛି ସଂପୃକ୍ତ ଉପାଦାନସମୂହର ପରମାଣୁରାଜି–ଜୈବିକ ପ୍ରକ୍ରିୟାର ନୈକଟ୍ୟ ଏକ ରାସାୟନିକ ମିଶ୍ରଣ–ହାଇଡ୍ରୋକାର୍ବୋନ୍ ସୃଷ୍ଟି ହୁଏ । ହାଇଡ୍ରୋକାର୍ବୋନ୍‌ରେ ଗୁଣାତ୍ମକ ପରିବର୍ତ୍ତନ ଏବଂ ସେଥିରୁ ଉଦ୍‌ଭୂତସମୂହ ପ୍ରାୟ ତିନି ଶହ କୋଟି ବର୍ଷ ଆଗେ ପୃଥିବୀ ପୃଷ୍ଠରେ ଜୀବନର ସଞ୍ଚାର ଘଟାଇ ଥିଲା । ରାସାୟନିକ ପ୍ରକ୍ରିୟାରାଜି ଅପେକ୍ଷା ବସ୍ତୁ ଗତିର ଉଚ୍ଚତର ରୂପ ହେଉଛି ଜୀବନ । ଏହା ହେଉଛି ଏକ ଜୈବିକ ଗତି । ଏହାର ବିଶେଷ ଲକ୍ଷଣଗୁଡ଼ିକ ତେବେ କ'ଣ ?

ଆଧୁନିକ ବିଜ୍ଞାନ ମତରେ, ସମସ୍ତ ଜୀବନ୍ତ ପ୍ରାଣୀ ସେମାନଙ୍କ ସ୍ଥାୟିତ୍ୱକୁ ସୁରକ୍ଷିତ କରିବାକୁ ଚାହାନ୍ତି, ଯଦି ଉପାଦାନ, ଶକ୍ତି ଏବଂ ସୂଚନାର ଅବିରାମ ଆନ୍ତଃପ୍ରବାହ ଚାଲିଥାଏ (ଅର୍ଥାତ୍, ବହିର୍ଜଗତ ସହିତ ଅବିରାମ ପ୍ରାଣକୋଷ ରହୁଥାଏ) । ଜୀବନ୍ତ ପ୍ରାଣୀମାନେ ମଧ୍ୟ ନିଜକୁ ନିୟନ୍ତ୍ରଣ କରିବାର, ଅବ୍ୟାହତ ମିଶ୍ରଣ ଏବଂ ଅବ୍ୟାହତ ଧର୍ମ ଏବଂ ସେସବୁକୁ ସୃଷ୍ଟି କରିବାର ଅନ୍ତର୍ନିହିତ କ୍ଷମତାର ଅଧିକାରୀ । ଜୈବିକ ବ୍ୟବସ୍ଥାର ମଧ୍ୟ ରହିଛି ବିଶେଷ ରାସାୟନିକ ମିଶ୍ରଣ, ଏହା ନିଉକ୍ଲିକ୍ ଅମ୍ଳକୁ ନେଇ ଗଠିତ । ଖାଦ୍ୟସାର ସହିତ ମିଶି ଏହା ଜୀବନ ପ୍ରକ୍ରିୟାରେ ବିରାଟ ଭୂମିକା ପାଳନ କରେ ।

ବସ୍ତୁର ଅନ୍ତର୍ନିହିତ ସ୍ୱବିକାଶ ଆଉରି ସକ୍ରିୟ ହେବାକୁ ଲାଗିଲା ଜୀବନର ଅଭ୍ୟୁଦୟ ସଙ୍ଗେ ସଙ୍ଗେ । ଉଦ୍‌ଭିଦ ଏବଂ ଜୀବ ଜଗତର କ୍ରମବିକାଶରେ ଦିକ୍‌ଚିହ୍ନଗୁଡ଼ିକ ହେଉଛି :

ଜୀବନର ଆଦିମ ଜୀବକୋଷପୂର୍ବ ରୂପରାଜି; ଏକକୋଷୀ, ତା'ପରେ ବହୁକୋଷୀ ଜୀବଜନ୍ତୁ ସୃଷ୍ଟି; କ୍ରମବର୍ଦ୍ଧମାନ ଜଟିଳ ଗଢ଼ଣଧାରୀ ଜୀବଜନ୍ତୁର ଅଭ୍ୟୁଦୟ: ମେରୁଦଣ୍ଡହୀନ, ମେରୁଦଣ୍ଡୀ, ସ୍ତନ୍ୟପାୟୀ ପ୍ରାଣୀ, ନରବାନରାଦି ପ୍ରାଣୀ ।* ପୃଥିବୀ ପୃଷ୍ଠରେ ଜୀବନର କ୍ରମବିକାଶ ବସ୍ତୁଗତିର ସର୍ବୋଚ୍ଚ ରୂପ – ସାମାଜିକ ରୂପର ଅଭ୍ୟୁଦୟ ପାଇଁ ପୂର୍ବସର୍ତ୍ତରାଜି ସୃଷ୍ଟି କଲା ।

ବସ୍ତୁଗତିର ସାମାଜିକ ରୂପ ହେଉଛି ଜୀବନର ପ୍ରକୃତି ସହିତ ସମାଜ ଜୀବନର ବହୁବିଧ ସଂପର୍କ, ଲୋକଙ୍କ ମଧ୍ୟରେ ସଂପର୍କ ଓ ସେମାନଙ୍କ କାର୍ଯ୍ୟକଳାପ । ପରିବାର, ଭୌତିକ ଉତ୍ପାଦନ, ଉତ୍ପାଦିକା ଶକ୍ତିସମୂହ ଏବଂ ଉତ୍ପାଦନ ସଂପର୍କ, ଶ୍ରେଣୀ ସଂଗ୍ରାମ, ବିପ୍ଳବ, ସଂସ୍କୃତି, ଧର୍ମ, କଳା, ବିଜ୍ଞାନ, କ୍ରୀଡ଼ା ଆଦିକୁ ନେଇ ସେସବୁ ଗଠିତ । ସମାଜ ନିଜେ ମଧ୍ୟ ବିକାଶର ଦୀର୍ଘ ଇତିହାସ ମଧ୍ୟ ଦେଇ – ଆଦିମ କମ୍ୟୁନିଷ୍ଟ ବ୍ୟବସ୍ଥାଠାରୁ ଆରମ୍ଭ କରି ବିଭିନ୍ନ ଶ୍ରେଣୀ ବୈରିତାପୂର୍ଣ୍ଣ ରୂପରାଜି ଦେଇ ସମାଜବାଦ ତଥା କମ୍ୟୁନିଜମ୍‌କୁ ଗତି କରିଥାଏ ।

ଏହି ସାମାଜିକ ସ୍ତରରେ ଗତିଶୀଳ ବସ୍ତୁ ତା'ର ବିଶେଷ ଧର୍ମ – ଚେତନାକୁ ଜନ୍ମ ଦିଏ ।

## ୮ – ଚେତନା – ମସ୍ତିଷ୍କର କ୍ରିୟା

ବ୍ୟାପକ ଭାବେ କହିବାକୁ ଗଲେ, ଚେତନା ହେଉଛି ମଣିଷର ଆତ୍ମିକ ତଥା ବୌଦ୍ଧିକ ଜୀବନର ବହୁବିଧ ପ୍ରପଞ୍ଚ ଓ ପ୍ରକ୍ରିୟାରାଜିର – ଚିନ୍ତା, ଆତ୍ମ ଅବବୋଧ, ଧାରଣା, ଇନ୍ଦ୍ରିୟାନୁଭୂତି, ଆବେଗ, ବିଶ୍ୱାସ, ଧର୍ମୀୟ ବିଶ୍ୱାସ, ରାଜନୈତିକ ଚିନ୍ତାଧାରା, ଜ୍ଞାନ, ଆଦି – ସମଷ୍ଟି । ଏହି ଧାରଣାର ସଂକୀର୍ଣ୍ଣ ବ୍ୟାଖ୍ୟା ସାହାଯ୍ୟରେ ମଣିଷର ମନରେ ସଚେତନ ଏବଂ ଅଚେତନ (ଅଥବା ଅବୋଧ୍ୟ) ପ୍ରକ୍ରିୟା ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଧାରଣ କରିବା ସମ୍ଭବ । ସେ ସଂପର୍କରେ ଆଉରି ଅଧିକ ଆଲୋଚନା କରିବା । ଏଠାରେ ଆମେ "ଚେତନା" ଶବ୍ଦଟିକୁ ତା'ର ବ୍ୟାପକ ଅର୍ଥରେ ବୁଝିବାକୁ ହେବ । ଏବଂ ଏହି ବ୍ୟାଖ୍ୟା ହିଁ ଏ କଥାଟିକୁ ପରିଷ୍କାର କରି ଦେଉଛି ଯେ, ମୌଳିକ ଦାର୍ଶନିକ ଦୃଷ୍ଟିକୋଣଗୁଡ଼ିକ କିପରି ସଂପୂର୍ଣ୍ଣ ବିପରୀତ ।

ଭାବବାଦୀମାନେ ଭାବନ୍ତି, ମୁଖ୍ୟ ଉପାଦାନ ହିସାବରେ ଚେତନା ହେଉଛି ବସ୍ତୁର ବିପରୀତ ଏବଂ ଆତ୍ମାକୁ ସେମାନେ ଅଲୌକିକ ଧର୍ମରେ ଭୂଷିତ କରନ୍ତି । ସେମାନେ

---

* ବ୍ରହ୍ମାଣ୍ଡର ଅନ୍ୟାନ୍ୟ ଅଞ୍ଚଳରେ ଜୀବନ୍ତ ପ୍ରାଣୀମାନେ ମଧ୍ୟ ଥାଇ ପାରନ୍ତି, ବିଜ୍ଞାନ ଅବଶ୍ୟ ଏହି କଥାର ସତ୍ୟତା ପ୍ରତିପାଦନ କରି ପାରି ନି ।

ଚେତନାକୁ (ସ୍ପିରିଟ୍, ପରମାତ୍ମା, ପୁରୁଷ, ଆଦି) ବସ୍ତୁଠାରୁ ସ୍ୱାଧୀନ ଭାବେ, କୌଣସି ଭୌତିକ ବା ଜୈବିକ ପ୍ରକ୍ରିୟାରାଜି ବିନା ଅବସ୍ଥାନ କରିବାର କ୍ଷମତା ଆରୋପ କରିଥାନ୍ତି । ଏହା ଛଡ଼ା ସେମାନେ ବିଶ୍ୱାସ କରନ୍ତି, ଭୌତିକ ଜଗତକୁ ସୃଷ୍ଟି କଲା ଭଳି ଚେତନା ବା ମନର ଏକ ଅନ୍ତର୍ନିହିତ ଶକ୍ତି ଅଛି ଯାହାକୁ ସେମାନେ ଦି ଆଇଡିଆ ବା ପରମାତ୍ମାର "ଅନ୍ୟ ସତ୍ତା" ବୋଲି, "କର୍ତ୍ତାର ଇନ୍ଦ୍ରିୟାନୁଭୂତିର ସମାହାର" ଆଦି ବୋଲି ପ୍ରଦର୍ଶନ କରିଥାନ୍ତି । ପ୍ରାଥମିକ, ସୀମାହୀନ ଏବଂ ଅନପେକ୍ଷ ରୂପେ ଚେତନା ଭୌତିକ ପଦାର୍ଥରାଜିର ବିପରୀତ, ଏସବୁକୁ ମନେ କରାଯାଏ ଅନିତ୍ୟ, ସୀମିତ, ଧ୍ୱଂସଶୀଳ ଏବଂ ସୃଷ୍ଟିଶୀଳ । ଭାବବାଦୀମାନେ ଆତ୍ମିକ ପ୍ରପଞ୍ଚରାଜି ପ୍ରତି ବୈଜ୍ଞାନିକ ନିରୀକ୍ଷଣ ପଦ୍ଧତିକୁ ପ୍ରୟୋଗ କରିବାର ସମ୍ଭାବ୍ୟତାକୁ ଅସ୍ୱୀକାର କରନ୍ତି ଏବଂ ସେସବୁକୁ ଜାଣିବାର ଏକ ମାତ୍ର ପଦ୍ଧତି ହିସାବରେ ସ୍ୱପର୍ଯ୍ୟବେକ୍ଷଣକୁ ହିଁ ବିଚାର କରିଥାନ୍ତି । ଚେତନାର ଭାବବାଦୀ ଆଭିମୁଖ୍ୟର ଅନ୍ତର୍ଗତ ହେଉଛି ମଣିଷର ଦେହରେ ଏକ ବିଶେଷ ଅଦେହୀ ଶକ୍ତି, ଆତ୍ମାର କ୍ରିୟା ସଂପର୍କିତ ଧାରଣା, ଯିଏକି ହେଉଛି ତା'ର ଚିନ୍ତା ଏବଂ ଭାବନାରାଜିର ବାହକ ଏବଂ କାରଣ ।

ବସ୍ତୁବାଦୀ ଦାର୍ଶନିକମାନେ ସର୍ବଦା ଚେତନା ସଂପର୍କିତ ଭାବବାଦୀ ମତାମତକୁ ଖଣ୍ଡନ କରିଥାନ୍ତି । ଦୃଷ୍ଟାନ୍ତ ସ୍ୱରୂପ, ଚାର୍ବାକଙ୍କ ମତରେ ଚେତନାର ସୃଷ୍ଟି ହୁଏ ଚାରଟି ପ୍ରାଥମିକ ଉପାଦାନ: କ୍ଷିତି, ଅପ୍, ତେଜ, ମରୁତ୍‌ର ସମ୍ମିଶ୍ରଣରେ । ଆତ୍ମା ହେଉଛି ଚେତନାଧାରୀ ଏକ ପିଣ୍ଡ, ଯିଏକି ଦେହଠାରୁ ସ୍ୱତନ୍ତ୍ର ଭାବେ ତିଷ୍ଠି ପାରେ ନାହିଁ । ଗ୍ରୀକ୍ ଚିନ୍ତାବିଦ୍ ଡେମୋକ୍ରିଟସ୍ କହିଛନ୍ତି, ଏକ ବିଶେଷ ଧରଣର ପରମାଣୁ ମଧ୍ୟରୁ ଆତ୍ମାର ସୃଷ୍ଟି । ବସ୍ତୁବାଦୀମାନେ ସର୍ବଦା ଚାହାନ୍ତି, ଭୌତିକ କାରଣ ଦ୍ୱାରା ଆତ୍ମିକ ପ୍ରକ୍ରିୟାକୁ ବ୍ୟାଖ୍ୟା କରିବାକୁ ଏବଂ ଦେହଠାରୁ ସ୍ୱତନ୍ତ୍ର ଭାବେ "ଅମର ଆତ୍ମା" ବାସ କରେ ବୋଲି ଯେଉଁ ମତବାଦଟି ରହିଛି ତା'ର ବିରୋଧିତା ସେମାନେ କରନ୍ତି । ତତ୍ ସଙ୍ଗେ ସଙ୍ଗେ, ତତ୍କାଳୀନ ଯନ୍ତ୍ରବିଦ୍ୟା ଏବଂ ଅଧିଭୌତିକ ଧାରଣା ଚେତନାର ଚରିତ୍ର ସଂକ୍ରାନ୍ତରେ ସରଳ ମତ ପ୍ରଦାନ କରିଥିଲା । ଦୃଷ୍ଟାନ୍ତ ସ୍ୱରୂପ, ଓଲନ୍ଦାଜ ଦାର୍ଶନିକ ସ୍ପିନୋଜା (୧୬୩୨-୧୬୭୭) ଚେତନାକୁ ବସ୍ତୁର ସାର୍ବିକ ଧର୍ମ ବା ଗୁଣ ବୋଲି ବ୍ୟାଖ୍ୟା କରିଥିଲେ । ସେ ପ୍ରକୃତରେ ଘୋଷଣା କରିଥିଲେ ଯେ, ସମସ୍ତ ବସ୍ତୁ ହେଉଛି ଚେତନଶୀଳ, ଜୀବନ୍ତ । ଏଭଳି ମତାମତକୁ ହିଲୋଜୋଇଜମ୍ ବୋଲି ନାମିତ କରାଯାଇଥିଲା । ଅନ୍ୟ ଦାର୍ଶନିକମାନେ ମନକୁ ମସ୍ତିଷ୍କର ଏକ ସରଳ ଭୌତିକ ନିଷ୍କ୍ରମଣ (ଯେକୃତ୍‌ରୁ ଯେମିତି ପିତ୍ତ ନିଷ୍କୃତ ହୁଏ) ବୋଲି ଭାବୁଥିଲେ । ଚେତନା ସଂକ୍ରାନ୍ତ ଏତାଦୃଶ ବିକୃତ ବସ୍ତୁବାଦୀ ମତ ଊନବିଂଶ ଶତାବ୍ଦୀରେ ବୁକ୍‌ନର୍, ଭୋଗ୍‌ଟ, ମୋଲେସ୍କୋଟ୍ ଏବଂ ଅନ୍ୟମାନେ ପ୍ରଦାନ କରିଥିଲେ । କିନ୍ତୁ, ହିଲୋଜୋଇଜମ୍ ହେଉ ବା ବିକୃତ ବସ୍ତୁବାଦ ହେଉ, କେହି ହେଲେ ବିଜ୍ଞାନର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରି ନଥିଲେ ।

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ମନେ କରେ, ଚେତନା ହେଉଛି ବସ୍ତୁର ଐତିହାସିକ ବିକାଶର

ଏକ ଫଳ ସ୍ୱରୂପ । ଏହା ହେଉଛି ବସ୍ତୁ ଧର୍ମର ସର୍ବୋଚ୍ଚ, ସର୍ବଶ୍ରେଷ୍ଠ ସଂଗଠିତ ରୂପ । ଭୌତିକ ଭିତ୍ତି ଏବଂ ଚେତନାଙ୍ଗ ହେଉଛି ମଣିଷର ମସ୍ତିଷ୍କ । ମଣିଷର ମସ୍ତିଷ୍କ – ଚେତନା ଅଙ୍ଗଟି ମଧ୍ୟ ହେଉଛି ଏକ ବସ୍ତୁଜାତ ଉପାଦାନ । ଜୀବବିଜ୍ଞାନ ଏବଂ ଗତିଶୀଳ କ୍ରିୟା ଦୃଷ୍ଟିରୁ ଏହା ଅତୀବ ଜଟିଳ । ବସ୍ତୁମୟ ରୂପର ଉଦ୍‌ଭବ ଘଟିଥିଲା ଆନ୍ଥ୍ରୋପ – ଏବଂ ସୋସିଓଜେନେସିସ୍ ପ୍ରକ୍ରିୟାରୁ । ମଣିଷର ମସ୍ତିଷ୍କ ପଶୁମାନଙ୍କ ମସ୍ତିଷ୍କଠାରୁ ପରିମାଣଗତ ତଥା ଗୁଣଗତ ଭାବେ ପୃଥକ୍ । ଦେହର ତୁଳନାରେ ମସ୍ତିଷ୍କର ଓଜନର ଅନୁପାତ ସାମଗ୍ରିକ ଭାବେ କ୍ରମବିକାଶ ମଧ୍ୟ ଦେଇ ପରିବର୍ତ୍ତିତ ହୋଇଛି । ତିମିମାଛର ମସ୍ତିଷ୍କ ହେଉଛି ତା ଦେହର ମାତ୍ର ୧/୧୦୦୦ ଅଂଶ, ସିଂହର ମସ୍ତିଷ୍କ ୧/୫୪୫ ଭାଗ, ହାତୀର ମସ୍ତିଷ୍କ ୧/୫୦୦ ଭାଗ, ବାନରର ମସ୍ତିଷ୍କ ୧/୧୫୦ ଭାଗ ଏବଂ ମଣିଷର ମସ୍ତିଷ୍କ ୧/୪୬ ଭାଗ । ତେଣୁ ମଣିଷର ମସ୍ତିଷ୍କ ହେଉଛି ବାନରର ମସ୍ତିଷ୍କଠାରୁ ୩ ଗୁଣ ଭାରୀ । ମାନସିକ କ୍ରିୟାର ଜଟିଳତାରେ ବିଶେଷ ଗୁରୁତ୍ୱ ବହନ କରେ ସେରିବ୍ରାଲ ହେମିସ୍ପିୟରର ବିକାଶ, ଫିସରସମୂହର, ମସ୍ତିଷ୍କର କୁଣ୍ଡଳୀକରଣର ଅଭିବୃଦ୍ଧି । ଏହା ଦେଖିବାକୁ ମିଳେ ମସ୍ତିଷ୍କର ବାହ୍ୟାବରଣ ବିଭାଗରେ ସ୍ନାୟବିକ କୋଷର ଦ୍ରୁତ ଅଭିବୃଦ୍ଧି ମଧ୍ୟରେ । ଏହା ପ୍ରାୟ

## ମଣିଷ ମସ୍ତିଷ୍କର ଆକାରରେ ଅଭିବୃଦ୍ଧି




୧୫୦୦ କୋଟି ହେବ । ସେସବୁ ମଧ୍ୟରୁ ପ୍ରତ୍ୟେକଟି ଅନ୍ୟ ୧୦,୦୦୦ ସହିତ ସଂଯୁକ୍ତ, ଯଦ୍ୱାରା ମସ୍ତିଷ୍କ ସକ୍ଷମ ହୁଏ ସେକେଣ୍ଡର ହଜାର ଭାଗରୁ ଏକଭାଗ ସମୟ ମଧ୍ୟରେ ୪୦ ଲକ୍ଷ ପ୍ରେରଣା ବା ଧକା ସୃଷ୍ଟି କରିବାକୁ ।

କାର୍ଯ୍ୟ ଦୃଷ୍ଟିରୁ ମଣିଷର ମସ୍ତିଷ୍କ ତିନୋଟି ବିଭାଗକୁ ନେଇ ଗଠିତ ଏକ ବ୍ୟବସ୍ଥା : (୧) ତଥାକଥିତ ଜାଲକାର ରୂପ (ଉପ ବାହ୍ୟାବରଣ ସ୍ତର); (୨) ପୃଷ୍ଠ (ମସ୍ତିଷ୍କର

ପଶ୍ଚାଦ୍‌ଭାଗ, ସିନ୍‌ସିପିଟାଲ, କର୍ଣ୍ଣମୂଳ) ମସ୍ତିଷ୍କର ବାହ୍ୟାବରଣ ବିଭାଗ, ଏବଂ (୩) ମସ୍ତିଷ୍କର ସମ୍ମୁଖ ବିଭାଗ (ସମ୍ମୁଖସ୍ଥ ଅଂଶ) ।

ବ୍ୟକ୍ତିବିଶେଷ କ୍ଷେତ୍ରରେ ପାର୍ଥକ୍ୟର ସମ୍ଭାବନା ସମେତ ଏହି ଗଢ଼ଣଟି ସମସ୍ତ ଲୋକଙ୍କ ପକ୍ଷରେ ଏକା ରକମର । ମସ୍ତିଷ୍କରେ ବଂଶାନୁଗତ ଭାବେ ଜାତୀୟ, ଅଧିଜାତୀୟ ବୈଶିଷ୍ଟ୍ୟରାଜି ଥାଏ ବୋଲି ବୁର୍ଜୁଆ ପଣ୍ଡିତମାନେ ଯେଉଁ ପ୍ରଚାର କରିଥାନ୍ତି, ବିଜ୍ଞାନ ସେ ସମସ୍ତ ଧାରଣାକୁ ମିଥ୍ୟା ବୋଲି ପ୍ରମାଣିତ କରିଛି । ସେଭଳି ବୈଶିଷ୍ଟ୍ୟରାଜି ନାହିଁ । ମଣିଷ ମସ୍ତିଷ୍କର ଗଢ଼ଣ ତାକୁ ତା'ର କାର୍ଯ୍ୟ କରିବାକୁ ସକ୍ଷମ କରିଥାଏ । ମଣିଷର ଚେତନାରେ ଏହି ଦିଗରୁ କୌଣସି ଅଲୌକିକ ଗୁଣ ନାହିଁ । ମସ୍ତିଷ୍କର ଏକ କାର୍ଯ୍ୟ ହେଉଛି, ଭୌତିକ ବାସ୍ତବତାକୁ ପ୍ରତିଫଳିତ କରିବା । ମଣିଷର ମସ୍ତିଷ୍କରେ କୌଣସି ବସ୍ତୁର ଆଦର୍ଶ ପ୍ରତିଛବି ହିସାବରେ ମାନସିକ ପୁନଃସୃଷ୍ଟି ହେଉଛି ଚେତନା (ଇନ୍ଦ୍ରିୟାନୁଭୂତି, ପ୍ରତିମୂର୍ତ୍ତି ଏବଂ ଅବଧାରଣା, ଆଦି) ।

ମଣିଷ ମସ୍ତିଷ୍କର ସମସ୍ତ ଉପବ୍ୟବସ୍ଥାରାଜି ପାରସ୍ପରିକ ପ୍ରକ୍ରିୟା ସୃଷ୍ଟି କଲେ, ସେଥିରେ ବାସ୍ତବତା ପ୍ରତିଫଳିତ ହୁଏ । ମସ୍ତିଷ୍କର ବାହ୍ୟାବରଣରେ ଜାଲକାର ରୂପଟି କେତେକ ଉତ୍ତେଜନା ସୃଷ୍ଟି କରିବା ଫଳରେ ଏହା ସୂଚନା ସଂଗ୍ରହ କରି ମଣିଷର ସକ୍ରିୟ ଆଚରଣକୁ ନିୟନ୍ତ୍ରିତ କରେ । ଜାଲକାର ଗଢ଼ଣଟି ମଧ୍ୟ ନିଜେ ରେକର୍ଟେକ୍‌ସର ଉଚ୍ଚତର ବ୍ୟବସ୍ଥା ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ମସ୍ତିଷ୍କର ବାହ୍ୟାବରଣର ପଶ୍ଚାଦ୍‌ଭାଗଟି ସୂଚନା ଗ୍ରହଣ କରିବା, ପ୍ରୋସେସ୍ କରିବା ଏବଂ ସଞ୍ଚୟ କରିବା କାର୍ଯ୍ୟ କରିଥାଏ, ଯେଉଁସବୁ ସୂଚନା ବାହ୍ୟ (ଏବଂ, ବିଶେଷତଃ, ଆଭ୍ୟନ୍ତରୀଣ) ପାରିପାର୍ଶ୍ୱିକ ଅବସ୍ଥାରୁ ମଣିଷ ନିକଟରେ ପହଞ୍ଚିଥାଏ । ସେଗୁଡ଼ିକ ପାରିପାର୍ଶ୍ୱିକ ଅବସ୍ଥାରୁ ଆସି ପହଞ୍ଚୁଥିବା ଦର୍ଶନୀୟ, ସ୍ପର୍ଶେନ୍ଦ୍ରିୟାନୁଭୂତି, ଶ୍ରବଣେନ୍ଦ୍ରିୟାନୁଭୂତିଜାତ ପ୍ରେରଣାରାଶିକୁ ଗ୍ରହଣ କରି ବିଶ୍ଳେଷଣ ଏବଂ ସଂଶ୍ଳେଷଣ କରନ୍ତି । ମସ୍ତିଷ୍କର ସମ୍ମୁଖ ଭାଗଟି (ମୁଖ୍ୟତଃ, ମସ୍ତିଷ୍କର ବଡ଼ ଅର୍ଦ୍ଧଭାଗର ସମ୍ମୁଖସ୍ଥ ଅଂଶସମୂହ ସବୁଠାରୁ ନୂତନ ଏବଂ ସର୍ବାପେକ୍ଷା ଜଟିଳ ବାହ୍ୟାବରଣକୁ ନେଇ ଗଠିତ, ଯିଏକି ମଣିଷକୁ ଦୈହିକ ଭାବେ ପ୍ରାଣୀ ଜଗତଠାରୁ ଲକ୍ଷ୍ୟଣୀୟରୂପେ ପୃଥକ୍ କରିଥାଏ) ମଣିଷର ମାନସିକ କାର୍ଯ୍ୟକର୍ମ, ପ୍ରାରମ୍ଭିକ ଉଦ୍ଦେଶ୍ୟସଂପନ୍ନ କାର୍ଯ୍ୟର ଫଳାଫଳ ସଂଗ୍ରହ ଏବଂ ମଣିଷର ଆଚରଣକୁ ନିୟନ୍ତ୍ରଣ କରିଥିବା ଜଟିଳ କାର୍ଯ୍ୟକ୍ରମ ଭଳି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଥାଏ । ମସ୍ତିଷ୍କର ବାହ୍ୟାବରଣର କୌଣସି ବିଭାଗର ସ୍ୱାଭାବିକ କାର୍ଯ୍ୟର ଲଙ୍ଘନ ଦ୍ୱାରା ମଣିଷର ମନରେ ତତ୍‌ସଂପୃକ୍ତ ପରିବର୍ତ୍ତନ ସୃଷ୍ଟି ହୁଏ । ମସ୍ତିଷ୍କର ବାମ ପାର୍ଶ୍ୱସ୍ଥ ଗୋଲାର୍ଦ୍ଧରେ ପଶ୍ଚାଦ୍‌ଭାଗ, ସିନ୍‌ସିପିଟାଲ ଭାଗରେ ଗୋଳମାଳ ହେଲେ, ବିଶେଷ ଭାବେ, ଶୂନ୍ୟ ସଂପର୍କୀୟ ଆଭିମୁଖ୍ୟ ନଷ୍ଟ ହୁଏ ଏବଂ କର୍ଣ୍ଣମୂଳ ନିକଟସ୍ଥ ବିଭାଗଗୁଡ଼ିକରେ ଗୋଳମାଳ ହେଲେ ମଣିଷ ପରିଷ୍କାର ଭାବେ କଥା କହି ପାରେ ନାହିଁ ଏବଂ ସଂଗୀତାନୁଭୂତିକୁ ହରାଇ ବସେ ।

ଏହି ସମସ୍ତ ତଥ୍ୟ ସମେତ ଅନ୍ୟାନ୍ୟ ତଥ୍ୟ ବସ୍ତୁବାଦୀ ଚିନ୍ତାଟିକୁ ସ୍ୱୀକାର କରେ ଯେ, ମସ୍ତିଷ୍କ ହେଉଛି ଏକ ଚିନ୍ତନ ଅଙ୍ଗ, ଏବଂ ଚେତନା ହେଉଛି ମସ୍ତିଷ୍କର କାର୍ଯ୍ୟ, ଯିଏକି ହେଲା ବିଶେଷ ଭାବେ ଗଠିତ ବସ୍ତୁର ସର୍ବଶ୍ରେଷ୍ଠ ସୃଷ୍ଟି । ବସ୍ତୁଗତ ଭିତ୍ତି ଦ୍ୱାରା ନିୟନ୍ତ୍ରିତ ମାନସିକ ପ୍ରକ୍ରିୟାରାଜି ହେଉଛି ଜଗତର ଆଭ୍ୟନ୍ତରୀଣ ଐକ୍ୟର ଗୁରୁତ୍ୱପୂର୍ଣ୍ଣ ପରିପ୍ରକାଶ ।

## ୯ – ଜଗତର ଐକ୍ୟ

ଜଗତର ଐକ୍ୟ ନିହିତ ତା'ର ବସ୍ତୁମୟତା ମଧ୍ୟରେ । ସାଧାରଣ ଅର୍ଥରେ ଏହା ହେଲା : (କ) ଜଗତ ହେଉଛି ଏକ ବସ୍ତୁଗତ ବାସ୍ତବତା, ଏହା ମଣିଷର ଚେତନାଠାରୁ ସ୍ୱାଧୀନ ଭାବେ ଅବସ୍ଥିତ ଏବଂ ତଦ୍ୱାରା ପ୍ରତିଫଳିତ, ତେଣୁ ତା'ର ସାରମର୍ମ ଦିଗରୁ ଏହା ଜ୍ଞେୟ; (ଖ) ଜଗତ ହେଉଛି ସ୍ଥାନ ଏବଂ କାଳ ମଧ୍ୟରେ ନିୟମାନୁଗ ବସ୍ତୁଗତି; (ଗ) ଜଗତ ହେଉଛି ଏକ ପ୍ରକ୍ରିୟା, ଯା ମଧ୍ୟ ଦେଇ ବସ୍ତୁ ନିଜକୁ ବିକାଶିତ କରେ, ତା'ର ସ୍ଥିତିର ଆଉରି ଜଟିଳ ରୂପରାଶି ଏବଂ ଗୁଣାତ୍ମକ ଭାବେ ନୂତନ ଧର୍ମରାଶି ସଂପନ୍ନ ଗତିକୁ ଜନ୍ମ ଦେଇଥାଏ ।

ପ୍ରାକୃତିକ ବିଜ୍ଞାନର ବିକାଶ ତଥା ସାଫଲ୍ୟରାଜି ଏବଂ ମଣିଷ ଇତିହାସର ଅନୁଧ୍ୟାନ ଦିଗରେ ବସ୍ତୁବାଦର ପ୍ରୟୋଗ ଦ୍ୱାରା ସେହି ସବୁ ବିଶେଷ ରୂପରାଶିକୁ ଚିହ୍ନିତ କରିବା ସମ୍ଭବ ହୁଏ, ଯାହା ମାଧ୍ୟମରେ ଜଗତର ଐକ୍ୟ ନିଜକୁ ପ୍ରତିଫଳିତ କରିଥାଏ । ଅତୀତରେ ଜଗତକୁ ଅଧିଭୌତିକ ଭାବେ ବିଚ୍ଛିନ୍ନ ଦିଗ ବା ଅଂଶ ବିଶେଷରେ ଭାଗ ଭାଗ କରାଯାଇଥିଲା ଏବଂ ତଦ୍ୱାରା ସ୍ରଷ୍ଟାର ସ୍ଥିତି ସଂକ୍ରାନ୍ତ ଧର୍ମୀୟ-ଭାବବାଦୀ ଚିନ୍ତାଧାରା ପାଇଁ ଖାଦ୍ୟ ମିଳିଥିଲା; ମୂଳ ଉପାଦାନସମୂହ ଏବଂ ଶକ୍ତିସମୂହକୁ ଅଜୈବିକ ଜଗତର ବିରୋଧୀ ବୋଲି ("ଦାହତତ୍ତ୍ୱ", "ହର୍ମୋଗେନ୍", ଆଦି) ବିଚାର କରାଯାଉଥିଲା, ଏବଂ ଜୈବିକ ପ୍ରକୃତିକୁ ତା'ର ତଥାକଥିତ ଅନ୍ତର୍ନିହିତ "ଜୈବ" ଶକ୍ତିକୁ (*fortus vitae*) "ମୃତ" ପ୍ରକୃତିର, ପ୍ରାଣୀ ଜଗତକୁ (ଫାଉନା) ଉଦ୍‌ଭିଦ ଜଗତର (ଫ୍ଲୋରା), ମାନସିକ ପ୍ରପଞ୍ଚରାଜିକୁ ଭୌତିକ ପ୍ରପଞ୍ଚରାଜିର ଏବଂ ସମାଜକୁ ପ୍ରକୃତିର ବିପରୀତ ବୋଲି ଧରାଯାଉଥିଲା । ଆଜି ବିଜ୍ଞାନ, ଅବଶ୍ୟ, ଭୌତିକ ବସ୍ତୁରାଜି ମଧ୍ୟରେ ବହୁବିଧ ଐକ୍ୟ ପ୍ରତିଷ୍ଠା କରିଛି ।

ଜଗତର ଐକ୍ୟ ପରିପ୍ରକାଶ ଲାଭ କରିଛି (୧) ବିବିଧ ପଦାର୍ଥରାଜିର ଅଭିନ୍ନ ଧର୍ମ ଏବଂ ଗଠନ ମଧ୍ୟରେ (ସମସ୍ତ ପରମାଣୁର ମୂଳ ଉପାଦାନ ରୂପେ ଇଲେକ୍‌ଟ୍ରନ୍ ଏବଂ ପୃଥିବୀ ତଥା ମହାକାଶରେ ମିଳୁଥିବା ସମାନ ରାସାୟନିକ ମୂଳ ବସ୍ତୁର ସାଧାରଣ ମୂଳ ଉପାଦାନ, ଉଦ୍‌ଭିଦ ଓ ଜୀବମାନଙ୍କର ଗଢ଼ଣ ସହିତ ସଂପୃକ୍ତ ଉପାଦାନ ରୂପେ ଜୀବ କୋଷ); (୨) କେତେକ ଭୌତିକ ଗଢ଼ଣ ଏବଂ ଅବସ୍ଥାରାଜି ମଧ୍ୟରେ ପାରସ୍ପରିକ

ରୂପାନ୍ତରଣରେ (ମୌଳିକ ସୂକ୍ଷ୍ମାଣୁରାଜିର, ମୂଳ ବସ୍ତୁ ତଥା ଆଲୋକର ଏବଂ ରାସାୟନିକ ଉପାଦାନସମୂହର ପାରସ୍ପରିକ ରୂପାନ୍ତରଣ) ; (୩) ସାଧାରଣ ମୂଳ ଉତ୍ସ ତଥା ବଂଶାନୁଗତ ଯୋଗସୂତ୍ରରେ (ଜୈବ ରାସାୟନିକ ପ୍ରକ୍ରିୟାରାଜି ଦ୍ୱାରା ଜୀବନ୍ତ ପ୍ରପଞ୍ଚରାଜିର ନିର୍ଦ୍ଧାରକତା ଏବଂ ମାନବ ସମାଜର ଅଭ୍ୟୁଦୟ) ; (୪) ସାଧାରଣ ନିୟମାବଳୀ (ପ୍ରକୃତିର ଶକ୍ତିର ସଂରକ୍ଷଣ ଏବଂ ରୂପାନ୍ତରଣ ନିୟମ, ସମାଜରେ ଭୌତିକ ଉତ୍ପାଦନର ନିର୍ଦ୍ଧାରକ ଭୂମିକା) ଆଦିରେ ।

ନିର୍ଦ୍ଦିଷ୍ଟ ନିୟମରାଶି ଦ୍ୱାରା ପରିଚାଳିତ ବସ୍ତୁ ହିସାବରେ ଜଗତର ଅବଧାରଣା ହେଉଛି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ମୂଳ ନୀତି । ଏହି ଶିକ୍ଷା ହିଁ କେବଳ ଚେତନାର ସାରମର୍ମକୁ ଜାଣିବା ପାଇଁ ପଥ ଦେଖାଇ ଦିଏ ।

# ଚତୁର୍ଥ ପରିଚ୍ଛେଦ

# ଚେତନାର ସାମାଜିକ ସାରସତ୍ତା

ଐତିହାସିକ ବିକାଶର ଫଳ ସ୍ୱରୂପ ଚେତନା ସମସ୍ତ ବସ୍ତୁର ଧର୍ମ ନହୋଇ ବିଶେଷ ଭାବେ ସଂଗଠିତ ବସ୍ତୁ, ମାନବ ମସ୍ତିଷ୍କର ଏକ ଧର୍ମ । ତେଣୁ ଚେତନା ତା'ର ମୂଳ ସୃଷ୍ଟି ଦିଗରୁ ଗୌଣ, କାରଣ ଏହା ଗତିର ଉଚ୍ଚତର ରୂପର ଅଭ୍ୟୁଦୟ ଉପରେ ନିର୍ଭର କରେ । ଏହା ତା'ର ସାରସତ୍ତା ଦିଗରୁ ମଧ୍ୟ ଗୌଣ, କାରଣ ଏହା ମଣିଷର ମସ୍ତିଷ୍କ ମାଧ୍ୟମରେ ବାସ୍ତବତାକୁ ପ୍ରତିଫଳିତ କରେ, ତେଣୁ ଏହା ମୂଳ ବସ୍ତୁର ପୂର୍ବାବସ୍ଥାନକୁ ସ୍ୱୀକାର କରେ, ଏହା ହେଉଛି ତା'ର ଆଦର୍ଶ "ନକଲ" ବା "ପ୍ରତିଛବି" । ମଣିଷ ମନରେ ବାସ୍ତବତାର ପୁନଃସୃଷ୍ଟିଟି ହେଉଛି ଏକ ବଡ଼ ଜଟିଳ ପ୍ରକ୍ରିୟା ଏବଂ "ପ୍ରତିଛବି" ଅବଶ୍ୟ, ବାସ୍ତବତାର ଏକ ଆନୁମାନିକ ଛବି । ଏହା, ଅବଶ୍ୟ, ନିଶ୍ଚିତ ରୂପେ ମୁଖ୍ୟ କଥାଟିକୁ ପ୍ରକାଶ କରେ, ଅର୍ଥାତ୍, ଚେତନା ହେଉଛି ବସ୍ତୁର ଏକ ବିଶେଷ ପ୍ରତିଫଳନ । ମାର୍କସ୍‌ବାଦୀମାନଙ୍କ ଉପରେ ଏଭଳି କେତେକ ଉଦ୍‌ଭଟ ଦୋଷ ଆରୋପ କରାଯାଇଥାଏ ଯେ, ସେମାନେ କାଳେ ଚେତନାକୁ ପ୍ରତିଫଳନର ପ୍ରକ୍ରିୟା ବୋଲି ବିଗ୍ଭର କରନ୍ତି । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ବିରୋଧୀମାନେ ପ୍ରତିଫଳନ ତତ୍ତ୍ୱ ଉପରେ "ଯାନ୍ତ୍ରିକ" ମାର୍କା ମାରି ଦେଇ ଅଭିଯୋଗ କରନ୍ତି ଯେ, ଏହା ଚେତନାର ସୃଜନାତ୍ମକ ଭୂମିକାକୁ ଏବଂ ମଣିଷର ଆତ୍ମିକ ମୂଲ୍ୟବୋଧ ଆଦିକୁ ଅସ୍ୱୀକାର କରେ । ଏସବୁ, ଅବଶ୍ୟ, ବସ୍ତୁର ସାରସତ୍ତାକୁ ସଂପୂର୍ଣ୍ଣ ରୂପେ ବିକୃତ କରେ । ବୈଜ୍ଞାନିକ ଦର୍ଶନରେ ପ୍ରତିଫଳନ ବୋଇଲେ କ'ଣ ବୁଝାଏ, ସେସବୁ ସହିତ ପରିଚିତ ହୋଇ ଗଲେ ଏହାକୁ ପରିଷ୍କାର ଭାବେ ବୁଝି ହେବ ।

## ୧ – ପ୍ରକୃତିରେ ପ୍ରତିଫଳନର ରୂପରାଜି

ବସ୍ତୁର ସାଧାରଣ ଗୁଣରାଜିର ଅନ୍ତର୍ଗତ ହେଉଛି ପ୍ରତିଫଳନ, ଚେତନା ହେଉଛି ପ୍ରତିଫଳନର ଏକ ବିଶେଷ ଉଚ୍ଚତର ରୂପ । ବସ୍ତୁଗତ ବାସ୍ତବତାରେ ଉପଯୁକ୍ତ ଅବସ୍ଥାରାଜି ଦେଖା ନଦେଇଥିଲେ ଚେତନାର ବି ଅଭ୍ୟୁଦୟ ଘଟିନଥାନ୍ତା ; ଏସବୁ ମଧ୍ୟରେ ଯାଏ ପ୍ରତିଫଳନର ଧର୍ମ ସମେତ ସ୍ୱବିକାଶ ପାଇଁ ଏବଂ ସର୍ବଦା ନୂତନ ଏବଂ ଉଚ୍ଚତର ରୂପ

# ପ୍ରତିଫଳନର ରୂପର କ୍ରମବିକାଶରେ ମୌଳିକ ପର୍ଯ୍ୟାୟସମୂହ




ସୃଷ୍ଟି କଲା ଭଳି ବସ୍ତୁର କ୍ଷମତା । ଗତିମାନ ବସ୍ତୁର ଗୁଣ ଅଧିକ ଜଟିଳ ହେବା ସଙ୍ଗେ ସଙ୍ଗେ ପ୍ରତିଫଳନର ଧର୍ମ ବିକାଶ ଲାଭ କରିଥାଏ ।

ଅନ୍ୟ ବସ୍ତୁ ଦ୍ୱାରା ପ୍ରଭାବିତ ହୋଇ ବସ୍ତୁମାନଙ୍କର ଆଭ୍ୟନ୍ତରୀଣ ଅବସ୍ଥାକୁ ପରିବର୍ତ୍ତନ କରିବାର କ୍ଷମତା ହିସାବରେ ଅଜୈବ ଜଗତରେ ପ୍ରତିଫଳନ ପ୍ରକାଶ ପାଇଥାଏ । କୌଣସି ଆଘାତ ପାଇବା ଫଳରେ କୌଣସି ପଦାର୍ଥର ରାସାୟନିକ ବିକୃତୀକରଣ, କୌଣସି ବିଦ୍ୟୁତ୍‌ବାହୀ ପଦାର୍ଥ ମାଧ୍ୟମରେ ବିଦ୍ୟୁତ୍ ସଞ୍ଚାଳନ ଫଳରେ

ତାହା ତପ୍ତ ହୁଏ, ଗୋଟିଏ ପାରିପାର୍ଶ୍ୱିକ ଅବସ୍ଥାରୁ ଅନ୍ୟ ଏକ ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟକୁ, ଅର୍ଥାତ୍, ବାୟୁରୁ ଜଳ ମଧ୍ୟକୁ ଆଲୋକ ରଶ୍ମିର ବକ୍ରୀକରଣ – ଏସବୁ ହେଉଛି ଭୌତିକ ପ୍ରତିଫଳନର କେତେକ ସରଳତମ ପ୍ରତିଫଳନ ।

ଜୀବନର ଅଭ୍ୟୁଦୟ ସଙ୍ଗେ ସଙ୍ଗେ, ଅବଶ୍ୟ, ପ୍ରତିଫଳନରେ ନୂତନ ବୈଶିଷ୍ଟ୍ୟରାଜି ଯୁକ୍ତ ହୋଇଥିଲା : ଏହା ନିର୍ବାଚନକ୍ଷମ ହୋଇଥିଲା । ଜୀବମାନଙ୍କ ପକ୍ଷରେ ପ୍ରତିଫଳନରୁ ମିଳୁଥିବା ସୂଚନାରାଜି ସହିତ ଯୁକ୍ତ, ଅର୍ଥାତ୍, ତା ଉପରେ ବିଭିନ୍ନ କାର୍ଯ୍ୟ ବା ପ୍ରଭାବର ପ୍ରତିଫଳନ ସହିତ ଯୁକ୍ତ । ଜୀବ ଏବଂ ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ସଂପର୍କକୁ ନିୟନ୍ତ୍ରଣ କରିବା ପକ୍ଷରେ ଏହା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସ୍ୱଳ୍ପ କାଳ ପାଇଁ ବାହ୍ୟିକ ପ୍ରଭାବ ପ୍ରତି ଜୀବମାନଙ୍କର ଅଳ୍ପ ବହୁତ ନିର୍ଦ୍ଦିଷ୍ଟ ପ୍ରତିକ୍ରିୟା ହିସାବରେ ସମସ୍ତ ଜୀବନ୍ତ ବସ୍ତୁ ସହିତ ବୈଶିଷ୍ଟ୍ୟସୂଚକ ଜୈବିକ ପ୍ରତିଫଳନର ମୌଳିକ ରୂପଟି ହେଉଛି ସ୍ପର୍ଶକାତରତା । ସେସବୁ ମଧ୍ୟରେ ଯାଏ, ଦୃଷ୍ଟାନ୍ତ ସ୍ୱରୂପ, ଟ୍ରପିଜମ୍ ଏବଂ ନାସ୍ତିଆ (ଉଦ୍ଭିଦମାନେ ଆଲୋକ ଆଡ଼କୁ "ବଢ଼ନ୍ତି", ଫୁଲମାନେ ଅନ୍ଧକାର ବା ଥଣ୍ଡାରେ "ବୁଜି" ହୋଇ ଯାଆନ୍ତି, ଆଦି) ।

ଜୀବମାନଙ୍କ ମଧ୍ୟରେ ଅନ୍ତର୍ନିହିତ ସ୍ପର୍ଶକାତରତା ଏବଂ ଅନୁଭୂତିଶୀଳତା ହେଉଛି ସଂପୂର୍ଣ୍ଣ ରୂପେ ଶାରୀରିକ ପ୍ରକ୍ରିୟା । ଜୀବଜଗତର ଆଉରି ଅଧିକ ବିକାଶ ସହିତ, ଅବଶ୍ୟ, ଜୈବିକ ପ୍ରତିଫଳନର ନୂଆ ଏକ ରୂପ ଦେଖାଯାଇଛି – ତାହା ହେଉଛି ମାନସିକ ପ୍ରତିଫଳନ । ୨୫ କୋଟି ବର୍ଷ ପୂର୍ବେ ପତଙ୍ଗମାନଙ୍କର ଅଭ୍ୟୁଦୟ ସଙ୍ଗେ ସଙ୍ଗେ ମନର ଅଭ୍ୟୁଦୟ ଘଟିଥିଲା । ପ୍ରାଣୀମାନଙ୍କର ଉତ୍ତରୋତ୍ତର ବିକାଶ ଫଳରେ ପ୍ରାଣୀମାନଙ୍କର ମନ ଆଉରି ଜଟିଳ ହୋଇଥିଲା ।

ସମସ୍ତ ପ୍ରକାରର ମାନସିକ ପ୍ରତିଫଳନର ଭୌତିକ ଯନ୍ତ୍ର ଏବଂ ବାହକ ହେଉଛି ସ୍ନାୟବିକ ବ୍ୟବସ୍ଥା, ଯିଏକି ତା'ର ସର୍ବୋଚ୍ଚ ବିକାଶ ସ୍ତରରେ ପହଞ୍ଚିଥାଏ ପ୍ରାଣୀମାନଙ୍କ ମଧ୍ୟରେ, ଯେଉଁମାନଙ୍କର ଥାଏ ବୃହତ୍ ମସ୍ତିଷ୍କଗୋଲାର୍ଦ୍ଧର ଏକ ଜଟିଳ ଭାବେ ସଂଗଠିତ କର୍ଟେକ୍ସ । ପ୍ରାଣୀମାନଙ୍କ ମନ ସଂକ୍ରାନ୍ତରେ ଅଧ୍ୟୟନ କ୍ଷେତ୍ରରେ ବିଜ୍ଞାନ ବିରାଟ ସାଫଲ୍ୟ ଅର୍ଜନ କଲାଣି । ପ୍ରାଣୀ ତଥା ମଣିଷର ଉଚ୍ଚତର ସ୍ନାୟବିକ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରୁଥିବା ଅଧ୍ୟୟନ କ୍ଷେତ୍ରରେ ବିପୁଳ ଅବଦାନ ରଖିଥିଲେ ରୁଷ୍ ବିଜ୍ଞାନୀ ଆଇ. ଏମ୍. ସେଚେନୋଭ୍ (୧୮୨୯-୧୯୦୫) ଏବଂ ଆଇ. ପି. ପାଭ୍‌ଲଭ୍ (୧୮୪୯-୧୯୩୬) ।

ସେଚେନୋଭ୍ ପ୍ରଥମ କରି ସ୍ନାୟବିକ ତଥା ମାନସିକ ଯନ୍ତ୍ର ବ୍ୟବସ୍ଥା କ୍ଷେତ୍ରରେ ବସ୍ତୁଗତ ପରୀକ୍ଷା ନିରୀକ୍ଷା ଆରମ୍ଭ କରିଥିଲେ । ତାଙ୍କ ପୂର୍ବରୁ ବିଶ୍ୱାସ କରାଯାଉଥିଲା ଯେ, ମସ୍ତିଷ୍କର କାର୍ଯ୍ୟକଳାପ ଭୌତିକ ଜଗତର ନିୟମାବଳୀ ଦ୍ୱାରା ନିୟନ୍ତ୍ରିତ ନୁହେଁ ଏବଂ ଚିନ୍ତନ ତଥା "ଆତ୍ମା"କୁ ବସ୍ତୁନିଷ୍ଠ ପଦ୍ଧତି ଦ୍ୱାରା ଅଧ୍ୟୟନ କରି ହେବ ନାହିଁ । ମାନସିକ କାର୍ଯ୍ୟକଳାପକୁ ମନେ କରା ଯାଉଥିଲା ଈଶ୍ୱରଙ୍କ ଦ୍ୱାରା ଜୀବନ୍ତ ପ୍ରାଣୀମାନଙ୍କ ମଧ୍ୟରେ ସ୍ଥାପନ କରାଯାଇଥିବା ଆତ୍ମାର ପରିପ୍ରକାଶ ବୋଲି । ଧର୍ମ ଏବଂ ଭାବବାଦୀ ଦର୍ଶନ ଅତ୍ୟୁତ୍ସାହରେ ଏହି ଭଳି ମତାମତ ପ୍ରଚାର କରୁଥିଲେ । ସେଚେନୋଭ୍‌ଙ୍କ ପ୍ରଶଂସନୀୟ

କାର୍ଯ୍ୟଟି ହେଉଛି, ସେ ଭୌତିକ କାରଣଗୁଡ଼ିକ ସାହାଯ୍ୟରେ ଉଚ୍ଚତର ପ୍ରାଣୀମାନଙ୍କର ଅତୀବ ଜଟିଳ ଆଚରଣଗୁଡ଼ିକୁ ବ୍ୟାଖ୍ୟା କରିଥିଲେ । ସେ ପ୍ରମାଣ କରିଥିଲେ, ଉଭୟ ପ୍ରାଣୀ ଏବଂ ମଣିଷର ମାନସିକ କାର୍ଯ୍ୟକଳାପ ଏବଂ ଆଚରଣ ହେଉଛି ପାରିପାର୍ଶ୍ୱିକ ଅବସ୍ଥାରୁ ମିଳୁଥିବା ଅନୁପ୍ରେରଣା ଦ୍ୱାରା ସୃଷ୍ଟ ପ୍ରତିକ୍ରିୟାରୁ ଜାତ ଅଙ୍ଗଭଙ୍ଗୀ ।

ପାଭ୍‌ଲଭ୍ ଉଚ୍ଚତର ସ୍ନାୟବିକ କାର୍ଯ୍ୟକଳାପ ସଂପୃକ୍ତ ବୈଜ୍ଞାନିକ ମତବାଦକୁ ଆହରି ବିକଶିତ କରିଥିଲେ । କେବଳ ମଣିଷ କ୍ଷେତ୍ରରେ ଘଟୁଥିବା ପ୍ରତିଫଳନରେ ବିଶେଷତାଗୁଡ଼ିକୁ ସେ ଉଦ୍‌ଘାଟନ କରିଥିଲେ, ଯା'ର ଚେତନା ସାମାଜିକ ଜୀବନ ଏବଂ ସମ୍ମିଳିତ ଶ୍ରମ ମଧ୍ୟରେ ଗଠିତ ହୋଇଥାଏ, ଯେଉଁଟା କି ପ୍ରାଣୀମାନଙ୍କ ମାନସିକ କ୍ଷେତ୍ରରେ ଘଟେ ନାହିଁ । ପଶୁ ତଥା ମଣିଷର ମସ୍ତିଷ୍କର କାର୍ଯ୍ୟକଳାପ ପଛରେ ଥିବା ମୌଳିକ ନିୟମାବଳୀଗୁଡ଼ିକୁ ସେ ମଧ୍ୟ ଆବିଷ୍କାର କରିଥିଲେ ।

ପରବର୍ତ୍ତୀ କାଳରେ ମଣିଷର ଉଚ୍ଚତର ସ୍ନାୟବିକ କାର୍ଯ୍ୟକଳାପ ସଂକ୍ରାନ୍ତ ବିଜ୍ଞାନ ସମୃଦ୍ଧ ହୋଇଛି ନୂଆ ନୂଆ ତଥ୍ୟ ଏବଂ ଆବିଷ୍କାରରାଜି ଦ୍ୱାରା । ଆଜିକାଲି, ପଦାର୍ଥବିଦ୍ୟା, ରସାୟନ ବିଦ୍ୟା, ଇଲେକ୍‌ଟ୍ରନିକ୍‌ସ ଏବଂ ଅନ୍ୟାନ୍ୟ ବିଜ୍ଞାନ ଉପରେ ନିର୍ଭର କରି ମନସ୍ତତ୍ତ୍ୱବିଦ୍‌ମାନେ ଅତି ଆଧୁନିକ ପଦ୍ଧତିର ଉପଯୋଗ କରୁଛନ୍ତି ମସ୍ତିଷ୍କର କାର୍ଯ୍ୟକଳାପକୁ ଅଧ୍ୟୟନ କରିବା ପାଇଁ । ଚେତନାର ସାରମର୍ମ ସଂକ୍ରାନ୍ତ ବସ୍ତୁଗତ ମତବାଦ ଏବଂ ପ୍ରାଣୀମାନଙ୍କ ମନଠାରୁ ମଣିଷ ଚେତନାର ଗୁଣାତ୍ମକ ପାର୍ଥକ୍ୟକୁ ଆଧୁନିକ ବୈଜ୍ଞାନିକ ତଥ୍ୟ ସ୍ୱୀକାର କରେ ।

## ୨ — ପଶୁର ମାନସିକ କ୍ରିୟା

ପ୍ରାଣୀ ଏବଂ ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ସଂପର୍କ ଏବଂ ସେମାନଙ୍କର ସମସ୍ତ ଆଚରଣମୂଳକ କାର୍ଯ୍ୟକଳାପ ମଧ୍ୟରେ ସଂପର୍କ ପ୍ରତିଫଳନ ଉପରେ ପ୍ରତିଷ୍ଠିତ, ଅର୍ଥାତ୍, କେନ୍ଦ୍ରୀୟ ସ୍ନାୟବିକ ବ୍ୟବସ୍ଥା ମାଧ୍ୟମରେ ଉଦ୍ଦୀପକ ପ୍ରତି ଦେହର ପ୍ରତିକ୍ରିୟାରାଜି ପ୍ରତିଫଳନ ଉପରେ ନିର୍ଭର କରେ । ପ୍ରତିଫଳନଗୁଡ଼ିକ ନିର୍ଦ୍ଧାରିତ ବା ଅନିର୍ଦ୍ଧାରିତ ହୋଇ ପାରେ — ଅର୍ଥାତ୍, ଜନ୍ମଗତ, ଉଦାହରଣ ସ୍ୱରୂପ, ଯୌନ ପ୍ରବୃତ୍ତି, ନିଜର ଗର୍ଭଜାତ ଶିଶୁକୁ ସଂରକ୍ଷଣ କରିବାର ପ୍ରବୃତ୍ତି, ବହିରାଗତ ପକ୍ଷୀମାନଙ୍କ ମଧ୍ୟରେ ଭୌଗୋଳିକ ଅଭିମୁଖୀନତା ପାଇଁ ପ୍ରବୃତ୍ତି, ଆଦି । ମହୁମାଛିମାନଙ୍କର ନିର୍ମାଣମୁଖୀ ପ୍ରବୃତ୍ତି କଥା ମଧ୍ୟ ଆମେ ଧରି ପାରେ । ସେମାନେ ମହମ ସାହାଯ୍ୟରେ ସରଳରୈଖିକ ଷଡ଼ବାହୁ କ୍ଷେତ୍ରସବୁ ଗାଣିତିକ ନିର୍ଭୁଲତା ଅନୁଯାୟୀ ତିଆରି କରିଥାନ୍ତି । ପ୍ରତ୍ୟେକଟି ଷଡ଼ବାହୁ କ୍ଷେତ୍ରୀୟ ମୂଳଦୁଆ ଗଠନ କରିଥିବା ତିନି ବିଷମକୋଣୀ ଚତୁର୍ଭୁଜ କୋଣଗୁଡ଼ିକ ହେଉଛି ୭୦°୩୨' କରି । ଏହି ଆକାରଟି ବିବର୍ତ୍ତନ ମଧ୍ୟ ଦେଇ ଗଢ଼ି ଉଠିଛି ଏବଂ ଏହା ପଛରେ ରହିଛି ମହୁମାଛିମାନଙ୍କ ପକ୍ଷରେ ନିର୍ମାଣମୂଳକ ସାଜସରଞ୍ଜାମର ସର୍ବାଧିକ

ସମ୍ଭାବ୍ୟ ବ୍ୟବହାରର ଅଭିପ୍ରାୟ । କୋଣ ଯଦି ଅନ୍ୟ ଆକାରରେ ହୁଏ, ତେବେ ଉକ୍ତ କୋଣଗୁଡ଼ିକୁ ନିର୍ମାଣ ପାଇଁ ଅଧିକ ମହମ ଆବଶ୍ୟକ ହେବ ।

ବିଶେଷ ସର୍ତ୍ତହୀନ ପ୍ରତିଫଳନ, ଆମେ ଆଉ ଥରେ ପୁନରାବୃତ୍ତି କରି କହୁଛୁ, ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବ ପ୍ରତି ପ୍ରତିକ୍ରିୟା, ପାରମ୍ପରିକ ଭାବେ ଦେହାଙ୍ଗ ଲବ୍ଧ କରିଥିଲା ବେଳେ ବିଶେଷ ସର୍ତ୍ତାଧୀନ ପ୍ରତିଫଳନ ହେଉଛି ପ୍ରତିକ୍ରିୟାସମୂହ ଯାହାକୁ ଦେହାଙ୍ଗ ତା'ର ଜୀବନକାଳ ମଧ୍ୟରେ ଲାଭ କରିଥାଏ । ବିଶେଷ ସର୍ତ୍ତହୀନ ପ୍ରତିଫଳନରାଜି ପରିବର୍ତ୍ତନଶୀଳ ବାହ୍ୟିକ ଅବସ୍ଥାସମୂହ ସହିତ ପ୍ରାଣୀମାନଙ୍କୁ ସହସା ଏବଂ ସଠିକ ଭାବେ ଖାପଖୁଆଇ ନେବାକୁ ଦେଇ ନଥାଏ । ସର୍ତ୍ତାଧୀନ ପ୍ରତିଫଳନରାଜି ଦ୍ୱାରା ଏହି କାର୍ଯ୍ୟ ସାଧିତ ହୋଇଥାଏ । ସେସବୁ ଗଠିତ ହୋଇଥାଏ ବିଶେଷ ସର୍ତ୍ତହୀନ ପ୍ରତିଫଳନରାଜିର ଭିତ୍ତିରେ, କେନ୍ଦ୍ରୀୟ ସ୍ନାୟବିକ ବ୍ୟବସ୍ଥାର ଉଚ୍ଚତର ବିଭାଗରେ ସାମୟିକ ଯୋଗସୂତ୍ରର ଗଠନ କରିଆରେ । ଦୃଷ୍ଟାନ୍ତ ସ୍ୱରୂପ, ଆମେ ଯଦି କୌଣସି କୁକୁରକୁ ବହୁବାର ଖୁଆଏଁ ଏବଂ ପ୍ରତ୍ୟେକ ଥର ଖୁଆଇବା ପୂର୍ବରୁ ଗୋଟିଏ ବତୀ ଜଳାଇ ଦେଉଥାଏଁ, କେତେ ଥର ଏଭଳି କଲା ପରେ କୁକୁର ମଧ୍ୟରେ ଏକ ବିଶେଷ ସର୍ତ୍ତାଧୀନ ପ୍ରତିଫଳନ ସୃଷ୍ଟି ହେବ । ବତୀଟି ଜଳି ଉଠିବା ସଙ୍ଗେ ସଙ୍ଗେ ଜୀବଟି ପ୍ରତିକ୍ରିୟା ଜଣାଇବ ପାଟିରୁ ଲାଳ ଗଡ଼େଇ, ତା ଅର୍ଥ, କୁକୁରଟି ବତୀର ଆଲୁଅ ଏବଂ ଖାଦ୍ୟ ମଧ୍ୟରେ ଏକ ଜୈବିକ ଯୋଗସୂତ୍ର ସୃଷ୍ଟି କରି ନେଇଛି ।

ପ୍ରାଣୀମାନଙ୍କ ଜୀବନରେ ବିଶେଷ ସର୍ତ୍ତାଧୀନ ପ୍ରତିଫଳନସମୂହ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥାନ୍ତି । କାରଣ ସେସବୁ ଦେହାଙ୍ଗକୁ ସେମାନଙ୍କ ପ୍ରତିକ୍ରିୟା ଜଣାଇବାକୁ ପ୍ରରୋଚିତ କରିଥାନ୍ତି ବିଶେଷ ସର୍ତ୍ତହୀନ ପ୍ରରୋଚନାରାଜି ନିଜକୁ ନିଜେ ସକ୍ରିୟ ହେବା ପୂର୍ବରୁ (ଖାଦ୍ୟ, ବିପଦ, ଆଦି) । ବିଶେଷ ସର୍ତ୍ତାଧୀନ ପ୍ରରୋଚନା (ଆଲୋକ, ଗନ୍ଧ, ଶବ୍ଦ, ଆଦି) ସୂଚନା ଦେଇଥାଏ, ଯାହା ହୋଇଥାଏ, ପ୍ରପଞ୍ଚର ଉପସ୍ଥିତି ସଂପର୍କରେ, ଯିଏକି ହେଉଛି ପ୍ରାଣୀମାନଙ୍କ ପକ୍ଷରେ ଗୁରୁତ୍ୱପୂର୍ଣ୍ଣ । ସତର୍କତାର କାର୍ଯ୍ୟ କରୁଥିବା ବିଶେଷ ସର୍ତ୍ତାଧୀନ ପ୍ରତିଫଳନ ବ୍ୟବସ୍ଥାର ତେଣୁ ନାମକରଣ ହୋଇଛି "ପ୍ରଥମ ସୂଚକ ବ୍ୟବସ୍ଥା" । ଏହା ପ୍ରାଣୀ ଏବଂ ମଣିଷ, ଉଭୟଙ୍କ ପକ୍ଷରେ ଅଭିନ୍ନ ।

ଉଚ୍ଚତର ପ୍ରାଣୀମାନଙ୍କଠାରେ ବିଶେଷ ସର୍ତ୍ତାଧୀନ ପ୍ରତିଫଳନ ବ୍ୟବସ୍ଥା ଯୁକ୍ତ ହୋଇଥାଏ ପ୍ରତିବିମ୍ବର ଜଟିଳତାକୁ ବିଶ୍ଳେଷଣ କରିବାର କ୍ଷମତା ସହିତ, ଯିଏକି କେବଳ ବସ୍ତୁରାଜି ଓ ପ୍ରପଞ୍ଚରାଜିକୁ ପ୍ରତିଫଳନ କରେ ନାହିଁ, ସେସବୁ ମଧ୍ୟରେ ତୁଳନାମୂଳକ ଭାବେ ଜଟିଳ ସଂପର୍କରାଜିକୁ ବିଶ୍ଳେଷଣ କରିଥାଏ । ଏହା ହିଁ ପ୍ରାଣୀମାନଙ୍କର ମାନସିକ ପ୍ରତିଫଳନକୁ ତା'ର ଅତି ବିକଶିତ ରୂପରେ, ଅର୍ଥାତ୍, ନିର୍ଦ୍ଦିଷ୍ଟ ବା ସଂବେଦନା "ଚିନ୍ତା"କୁ ସୃଷ୍ଟି କରିଥାଏ । ଏହା ବିଶେଷ ଭାବେ ପରିଷ୍କାର ରୂପେ ଦେଖିବାକୁ ମିଳେ ଆନ୍ଥ୍ରୋପଏଡ୍ ବାନର ବା ବଣମଣିଷମାନଙ୍କ ଆଚରଣରେ । ନିମ୍ନଲିଖିତ ପରୀକ୍ଷାଟି କରାଯାଇଥିଲା ଗୋଟିଏ ଆନ୍ଥ୍ରୋପଏଡ୍ ବାନର ଉପରେ । ଗୋଟିଏ ପିଞ୍ଜରାର ଅନେକ ଉପରେ କେତେକ

ଫଳ ଟଙ୍ଗା ହୋଇଥିଲା । ସେଠାରେ ପହଞ୍ଚିବାକୁ ହେଲେ ଏକ ନିଆଁକୁ ଲିଭାଇବା ଦରକାର ପଡ଼ିଥିଲା । ଏହି ଉଦ୍ଦେଶ୍ୟରେ ପିଞ୍ଜରାଟି ନିକଟରେ ଗୋଟାଏ ପିମ୍ପାରେ ପାଣି ରଖାଯାଇଥିଲା । ଫଳକୁ ଧରିବା ପାଇଁ ବାନରଟି ଅନେକ ଥର ବିଫଳ ପ୍ରଚେଷ୍ଟା କଲା ପରେ ତା'ର ଅବାଗିଆ କାମକୁ ପରିତ୍ୟାଗ କରି ସଂଗଠିତଶୀଳ ଭାବେ ଆଚରଣ କରିଥିଲା : ସେ ପିମ୍ପାରୁ ମଗେ ପାଣି ନେଇ ନିଆଁକୁ ଲିଭେଇ ଦେଲା । ତା'ପରେ ସେ ପିଞ୍ଜରା ମଧ୍ୟରେ ପଶିଥିଲା , ଏବଂ ଦୁଇଟି ଛୋଟ ବାଡ଼ିକୁ ଯୋଡ଼ିକି ଏକ ବଡ଼ ବାଡ଼ି ତିଆରି କଲା ଏବଂ ପଡ଼ିଥିବା ଫଳ ପାଖରେ ପହଞ୍ଚିଥିଲା । ଏହି ଭାବେ ପ୍ରତିକୃତିସମୂହର ଏକ ମିଳନ ଏହାର ବିଶେଷ ସର୍ତ୍ତାଧୀନ ପ୍ରତିଫଳନ ବ୍ୟବସ୍ଥାର ଅନ୍ତର୍ଗତ । ବାନରଟି ଏକ ବିଶେଷ ଅବସ୍ଥାରେ ତନ୍ ମଧ୍ୟରେ ବିକାଶ ଲାଭ କରିଥିବା ପ୍ରତିଫଳନର ଭିତ୍ତିରେ ବିଭିନ୍ନ ପଦାର୍ଥର ଧର୍ମରାଜିକୁ ସମନ୍ୱିତ କରିବାକୁ ସକ୍ଷମ ହୋଇଥିଲା ।

ଅନ୍ୟ ଏକ ପରୀକ୍ଷା କରିବାକୁ ଯାଇ ଉକ୍ତ ବାନରଟିକୁ ଏକ ଭେଳା ଉପରେ ବସେଇ ଦିଆଗଲା ଏବଂ ଭେଳାରେ ଆଉ ପିମ୍ପାଏ ପାଣି ଆଉ ମଗ ରଖି ଦିଆଗଲା । ଏହି ଭେଳାଟି ନିକଟରେ ଆଉ ଗୋଟିଏ ଭେଳା ଉପରେ ଏକ ପିଞ୍ଜରା ଭିତରେ ରଖି ଦିଆଗଲା କିଛି କଦଳୀ । ପୂର୍ବବର୍ତ୍ତୀ ପରୀକ୍ଷା ଭଳି ଏ କ୍ଷେତ୍ରରେ ମଧ୍ୟ ପିଞ୍ଜରା ଭିତରେ ପଶିବା ପୂର୍ବରୁ ନିଆଁକୁ ଲିଭାଇବାକୁ ହେବ । ବଣମଣିଷକୁ କ'ଣ କରିବାକୁ ପଡ଼ିଥିଲା ? ଭେଳା ଦୁଇଟିକୁ ସେ ପାଖେଇ ଆଣିଥିଲା ଅନ୍ୟ ଭେଳାଟିକୁ ଧାରରୁ ଟାଣି ଆଣି । କିନ୍ତୁ କଦଳୀତକ ନପାଇ ସେ ଫେରି ଆସିଲା ଏବଂ ପିମ୍ପା ଭିତରୁ କିଛି ପାଣି ମଗରେ ନେଇ ନିଆଁ ଦିହରେ ଢାଳିଲା । ଏହି ଭଳି ତାକୁ ଅନେକ ଥର କରିବାକୁ ପଡ଼ିଥିଲା । ସେ ନିଜେ ଉତ୍ତପ୍ତ ବୋଧ କଲେ ପୋଖରୀର ପାଣିରେ ନିଜକୁ ଶୀତଳ କରୁଥିଲା । କିନ୍ତୁ ସେ ପୁଣି ପିମ୍ପା ପାଖକୁ ଯାଇ ସେଥିରୁ ପାଣି କାଢ଼ି ନିଆଁ ଉପରେ ଢାଳିଲା । ବାନରଟି ମନେ କରିଥିଲା ପିମ୍ପାରେ ଥିବା ପାଣି ହିଁ କେବଳ ନିଆଁକୁ ଲିଭାଇ ପାରେ । ଆମେ ଦେଖି ପାରୁଛେ ପଦାର୍ଥର ଧର୍ମ ସଂପର୍କରେ ବଣମଣିଷର ଧାରଣାଟି ବିଚ୍ଛିନ୍ନ , ନିର୍ଦ୍ଦିଷ୍ଟ ଏକ ଅବସ୍ଥା ସହିତ ସଂଯୁକ୍ତ , ଏହାର "ଚିନ୍ତନ ପ୍ରକ୍ରିୟାଟା" ହେଉଛି ପ୍ରାଥମିକ ଏବଂ ନିର୍ଦ୍ଦିଷ୍ଟ ଇନ୍ଦ୍ରିୟଜାତ ।

ଆମେ ଯାହାସବୁ ଆଲୋଚନା କଲେ , ସେଥିରୁ ଏହି ସିଦ୍ଧାନ୍ତରେ ଆମେ ପହଞ୍ଚେ ଯେ , ଚେତନାଟା "ଈଶ୍ୱରଦତ୍ତ" ନୁହେଁ କି କୌଣସି ଅଲୌକିକ ଜିନିଷ ନୁହେଁ – ଧର୍ମ ଏବଂ ଭାବବାଦ ଆମକୁ ଯାହା ବିଶ୍ୱାସ କରିବାକୁ କହିଥାଏ – ଏବଂ ଏହାର ସୃଷ୍ଟି ସଂପର୍କରେ ମଧ୍ୟ କୌଣସି ଅଲୌକିକତା ନାହିଁ । ଏହା ହେଉଛି ବସ୍ତୁର ସ୍ୱବିକାଶର ଯୁକ୍ତିସମ୍ମତ ଫଳ ଏବଂ ଏହାର ଆଶୁ ପୂର୍ବସର୍ତ୍ତ ନିହିତ ଥାଏ ପ୍ରାଣୀମାନଙ୍କ ମଧ୍ୟରେ ତୁଳନାମୂଳକ ଭାବେ ଉଚ୍ଚ ସ୍ତରର ମାନସିକ ପ୍ରତିଫଳନ ମଧ୍ୟରେ । ଏହା ସତ୍ତ୍ୱେ ବି , ମଣିଷରୁ ଚେତନା ଆଉ ପ୍ରାଣୀମାନଙ୍କ ମନ ମଧ୍ୟରେ ବଂଶଗତ ଯୋଗସୂତ୍ରକୁ ଦର୍ଶାଇଲା ବେଳେ , ଆମକୁ ଗୁରୁତ୍ୱ ଦେବାକୁ ହେବ ଯେ , ମଣିଷ ତଥା ମାନବ ସମାଜର ଅଭ୍ୟୁଦୟ

ହେଉଛି ପ୍ରକୃତିର ବିକାଶ କ୍ଷେତ୍ରରେ ଏକ ବିରାଟ ଉଲ୍ଲମ୍ଫନ ଏବଂ ପ୍ରତିଫଳନର ରୂପରେ ଗଭୀର ଗୁଣାତ୍ମକ ପରିବର୍ତ୍ତନ ।

## ୩ – ମଣିଷ : ଅବଧାରଣାଗତ ଚିନ୍ତା

ମଣିଷ ପ୍ରାଣୀଜଗତର ଉପରକୁ ଉଠି ପାରିଥିଲା ତା'ର ଶ୍ରମବଳରେ । ପ୍ରାଣୀମାନେ ନିଜକୁ ପାରିପାର୍ଶ୍ୱିକ ଅବସ୍ଥା ସହିତ ନିଷ୍କ୍ରିୟ ଭାବେ ଖାପ ଖୁଆଇ ନେଲା ବେଳେ ମଣିଷ ସକ୍ରିୟ ଭାବେ ତାକୁ ପ୍ରଭାବିତ କରେ ବିଶେଷ ଭାବେ ନିର୍ମିତ ହତିଆର ଦ୍ୱାରା । ମଣିଷ ସମାଜର ଅଭ୍ୟୁଦୟ ପାଇଁ ଲକ୍ଷ ଲକ୍ଷ ବର୍ଷ ଲାଗିଥିଲା । ଆନ୍ଥ୍ରୋପଏଡ୍ ବାନରରୁ ମଣିଷକୁ ରୂପାନ୍ତରଣ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ୍‌ଚିହ୍ନ ଥିଲା ତା'ର ସଳଖ ଭାବେ ଗ୍ରଲିବାର ଧରଣକୁ ପରିବର୍ତ୍ତନ । ଏହା ଦ୍ୱାରା ସେ ତା'ର ସମ୍ମୁଖରେ ଥିବା ଦେହାଙ୍ଗ ଦୁଇଟିକୁ ମୁକ୍ତ କରିବାକୁ ସକ୍ଷମ ହୋଇ କ୍ରମଶଃ ଶ୍ରମ କାର୍ଯ୍ୟରେ ଲଗାଇବା ଦିଗରେ ଉନ୍ନତ କରିଥିଲା । ପ୍ରଥମେ ପ୍ରଥମେ ଏହି କାର୍ଯ୍ୟକଳାପ ଥିଲା ପ୍ରବୃତ୍ତିଗତ ଏବଂ ଆଦିମ ଚରିତ୍ରର । ଆମେ ଜାଣିଛେ, ବାନରମାନେ ବି ଅନେକ ସମୟରେ ବାଡ଼ିକୁ "ହତିଆର" ହିସାବରେ ବ୍ୟବହାର କରିଥାନ୍ତି । ମଣିଷ ଶ୍ରମର ଏକ ବିଶେଷ ବୈଶିଷ୍ଟ୍ୟ ହେଉଛି ଏହା କେବଳ ପ୍ରାକୃତିକ ଜିନିଷର ବ୍ୟବହାର ନୁହଁ ମଣିଷ ଦ୍ୱାରା ନିର୍ମିତ ହତିଆରର ବ୍ୟବହାର । ଆଦିମ ମଣିଷ ଅଗ୍ନିକୁ ଆୟତ୍ତ କଲା ପରେ ଶୀଘ୍ର ଉନ୍ନତ ଧରଣର ଶ୍ରମ ହତିଆର ତିଆରି କଲା ଏବଂ ବିଭିନ୍ନ ପ୍ରାକୃତିକ ଉପାଦାନ ତଥା ପଦାର୍ଥକୁ ବ୍ୟବହାରଯୋଗ୍ୟ କରି ପାରିଲା ।

ଶ୍ରମ ଉପକରଣରାଜି ନିର୍ମାଣରେ ମଣିଷର କାର୍ଯ୍ୟକଳାପର କ୍ରମବର୍ଦ୍ଧମାନ ମାର୍ଜିତକରଣ ଏବଂ ସେସବୁର ଉପଯୋଗ ସାମଗ୍ରିକ ଭାବେ ମଣିଷର ଦେହାଙ୍ଗରେ ପରିବର୍ତ୍ତନ ଘଟାଇଥିଲା । ମଣିଷର ହାତ କେତେକ ମାତ୍ରାରେ ପୂର୍ଣ୍ଣତା ଲାଭ କଲା ଏବଂ ଶ୍ରମ କ୍ଷେତ୍ରରେ ବିଭିନ୍ନ ଜଟିଳ ନୈପୁଣ୍ୟ ସାଧନ କରିବାକୁ ସକ୍ଷମ ହେଲା । ମଣିଷ ଦେହର ସମସ୍ତ ଅଙ୍ଗ ପରସ୍ପର ସହିତ ସଂପୃକ୍ତ । ହାତର ବିକାଶ ମସ୍ତିଷ୍କର ବିକାଶକୁ ପ୍ରଭାବିତ କରିବାକୁ ବାଧ୍ୟ ଏବଂ ବୃହତ୍ ମସ୍ତିଷ୍କ-ଗୋଲାର୍ଦ୍ଧଗୁଡ଼ିକର କାର୍ଯ୍ୟରେ ପୂର୍ଣ୍ଣତା ଆଣିଛି । କାରଣ ମସ୍ତିଷ୍କ ହିଁ ଅଙ୍ଗାବଳୀର ବିଶେଷତଃ ହାତର ଗତି ଦ୍ୱାରା ଆସୁଥିବା ସଂକେତଗୁଡ଼ିକୁ ବିଶ୍ଳେଷଣ କରେ । ମଣିଷ ବହୁବିଧ ପ୍ରାକୃତିକ ଉପାଦାନ ଏବଂ ପଦାର୍ଥରାଜିକୁ ବ୍ୟବହାର ଉପଯୋଗୀ କରିବାକୁ ଆରମ୍ଭ କରିବା ସଙ୍ଗେ ସଙ୍ଗେ ମସ୍ତିଷ୍କ ମଧ୍ୟକୁ ଅନେକ ରକମର ଉଦ୍ଦୀପନାର ସ୍ରୋତ ଆସିବାଟା ବିପୁଳ ଭାବେ ବୃଦ୍ଧି ପାଇଲା । ତା'ର ଇନ୍ଦ୍ରିୟଗୁଡ଼ିକ – ଶ୍ରମ କାର୍ଯ୍ୟକଳାପ ମଧ୍ୟ ଦେଇ ଯେଉଁଗୁଡ଼ିକ ବିକାଶ ଲାଭ କରିଥାଏ – ଗୁଣାତ୍ମକ ଭାବେ ଅନ୍ୟାନ୍ୟ ପ୍ରାଣୀମାନଙ୍କଠାରୁ ପୃଥକ୍ ହେବାକୁ ଲାଗିଲା । ଇଗଲପକ୍ଷୀ, ଦୃଷ୍ଟାନ୍ତ ସ୍ୱରୂପ, ମଣିଷଠାରୁ ଅନେକ ଦୂରକୁ ଦେଖି ପାରେ, କିନ୍ତୁ ମଣିଷର ଆଖି ଇଗଲ ଅପେକ୍ଷା ଅନେକ ବେଶି ଜାଣି ପାରେ ।

ବାହ୍ୟତଃ ଶ୍ରମର ଚରିତ୍ର ହେଉଛି ସାମାଜିକ । ଆଦିମ ମଣିଷର ଅସ୍ତିତ୍ୱ ଧାରଣର କଠିନ ଅବସ୍ଥା ସେମାନଙ୍କୁ ବ୍ୟକ୍ତିଗତ ଭାବେ କାର୍ଯ୍ୟ କରିବା ଅପେକ୍ଷା ମିଳିତ ଭାବେ ଏକାଠି କାର୍ଯ୍ୟ କରିବାକୁ ବାଧ୍ୟ କରିଥିଲା । ଯୌଥ କାମ ପାଇଁ ଦରକାର ପଡ଼ିଥିଲା ଅନେକ ଲୋକଙ୍କର ସମନ୍ୱିତ କାର୍ଯ୍ୟକଳାପ । ଲୋକଙ୍କ ମଧ୍ୟରେ ସାମାଜିକ ସଂପର୍କ ପ୍ରତିଷ୍ଠିତ ହୋଇଥିଲା ସେମାନଙ୍କର ଯୌଥ ଶ୍ରମର ଭିତ୍ତି ଉପରେ । ଏସବୁ ଆଦିମ ମଣିଷର ଆବଶ୍ୟକତା ଏବଂ ଅନ୍ୟ ଲୋକଙ୍କ ସହିତ ଭାବ ବିନିମୟର ପ୍ରୟୋଜନୀୟତା ସୃଷ୍ଟି କରିଥିଲା ଏବଂ ପରସ୍ପର ମଧ୍ୟରେ ଭାବ ବିନିମୟର ଏକ ରୂପକୁ ଜନ୍ମ ଦେଲା । ଭାଷା ଏବଂ ସଂଗତିପୂର୍ଣ୍ଣ କଥା କ୍ରମଶଃ ବିକାଶ ଲାଭ କରିବାକୁ ଲାଗିଲା ଆଦିମ ସମାଜର ମିଳିତ ଶ୍ରମରେ, ଜୀବନରେ ଏକ ମାଧ୍ୟମ ରୂପେ । ଏହା ଦ୍ୱାରା ମଣିଷ ତା'ର ଭିତରର ଅବସ୍ଥା, ଅଭୀପ୍ସା, ଚିନ୍ତା ଏବଂ ଅନୁଭବକୁ ପ୍ରକାଶ କଲା ।

ଭାଷାର ସୃଷ୍ଟି ସୂଚନା କରିଥିଲା ପ୍ରତିଫଳନର ଆଉ ଏକ ରୂପର ଅଭ୍ୟୁଦୟକୁ, ଯିଏକି ଅନ୍ୟାନ୍ୟ ପ୍ରାଣୀମାନଙ୍କ ମନଠାରୁ ଗୁଣାତ୍ମକ ଭାବେ ଭିନ୍ନ ଥିଲା, ଯଥା, ସାମାଜିକ ପ୍ରତିଫଳନ, ଅବଧାରଣାତ୍ମକ ଚିନ୍ତନ । ପ୍ରାଣୀମାନଙ୍କର ଅଛି ବିଶେଷ ସର୍ତ୍ତାଧୀନ ପ୍ରତିଫଳନର ଏକ ସହଜାତ ବ୍ୟବସ୍ଥା – ପ୍ରଥମ ସୂଚନାଦାୟୀ ବ୍ୟବସ୍ଥା । ମଣିଷ ମଧ୍ୟରେ ଏହି ବ୍ୟବସ୍ଥା ଉପରେ ଚପେଇ ଦିଆ ଯାଇଥିଲା ଦ୍ୱିତୀୟ ସୂଚନାଦାୟୀ ବ୍ୟବସ୍ଥା – କଥାକୁ । ଶବ୍ଦଗୁଡ଼ିକ (ପଦାର୍ଥସମୂହର ବିଭିନ୍ନ ନାମ ଓ ଛାପ ଏବଂ ସେସବୁର ଧର୍ମରାଶି) ମଣିଷ ମଧ୍ୟରେ ସୂଚନାଦାୟୀ କାର୍ଯ୍ୟ କରିଥାଏ । ସେଗୁଡ଼ିକ ବିଶେଷ ଇନ୍ଦ୍ରିୟାନୁଭୂତ ପ୍ରରୋଚନା ପରିବର୍ତ୍ତେ କାମ କରିଥାନ୍ତି, ଯିଏକି ସେମାନଙ୍କ ଚରଫରୁ ବିଶେଷ ସର୍ତ୍ତହୀନ ପ୍ରରୋଚନାର ସଂକେତ ରୂପେ କାର୍ଯ୍ୟ କରନ୍ତି । ତେଣୁ ମଣିଷର କଥା ହେଉଛି ସଂକେତସମୂହର ସଂକେତ ଭଳି ବା ଦ୍ୱିତୀୟ ସଂକେତଦାୟୀ ବ୍ୟବସ୍ଥା ଭଳି । ସାମାଜିକ ପାରିପାର୍ଶ୍ୱିକ ଅବସ୍ଥା ସହିତ ମଣିଷକୁ ଖାପଖୁଆଇ ଚଳିବା ମଧ୍ୟରୁ ଏହା ଜାତ । ଏକ ପ୍ରକୃତ ପ୍ରରୋଚନା ହିସାବରେ ଶବ୍ଦର ମୁଖ୍ୟ ବୈଶିଷ୍ଟ୍ୟ ହେଉଛି ଯେ, ଏହା ସବୁବେଳେ ସାଧାରଣୀକରଣକୁ ପ୍ରକାଶ କରେ । ଦୃଷ୍ଟାନ୍ତ ସ୍ୱରୂପ, ଆମେ କହେଁ "ଘରଟିଏ" ଏବଂ ଏଥିରୁ ଆମେ କୌଣସି ଘରର ନିର୍ଦ୍ଦିଷ୍ଟ ଇନ୍ଦ୍ରିୟାନୁଭୂତିକୁ ଭାବି ନିଏଁ ନାହିଁ (କୁଡ଼ିଆ ହେଉ ନା ପ୍ରାସାଦ ହେଉ, କାଠ ଘର ହେଉ, ଇଟାଘର ହେଉ, ଆଦି) । ମଣିଷର ହିଁ କେବଳ ବିମୂର୍ତ୍ତ ଚିନ୍ତା କରିବାର କ୍ଷମତା ରହିଛି । ଅନ୍ୟାନ୍ୟ ପ୍ରାଣୀମାନଙ୍କର ସେ କ୍ଷମତା ନାହିଁ – ଉପରୋକ୍ତ ଦୃଷ୍ଟାନ୍ତଟିରେ ବଣମଣିଷଟି କ୍ଷେତ୍ରରେ ଯାହା ଦେଖାଗଲା । ବିମୂର୍ତ୍ତ ଭାବେ ବା ଅବଧାରଣା ରୂପେ ଚିନ୍ତା କରିବା ଫଳରେ ମଣିଷ ପ୍ରପଞ୍ଚର ସାରସତ୍ତା ମଧ୍ୟକୁ ପ୍ରବେଶ କରି ପାରୁଛି ଏବଂ ପଦାର୍ଥ ଏବଂ ଘଟଣାରାଜି ମଧ୍ୟରେ ଥିବା ନିୟମାନୁଗ ଯୋଗସୂତ୍ରକୁ ଉଦ୍‌ଘାଟନ କରି ପାରୁଛି । ଲୋକେ ସାମାଜିକ ଶ୍ରମଗତ କାର୍ଯ୍ୟକଳାପର ଭିତ୍ତିରେ ଭାଷା (ଉଭୟ ମୌଖିକ ଏବଂ ଲିଖିତ) ସାହାଯ୍ୟରେ ସେମାନଙ୍କ ଅଭିଜ୍ଞତା ଆଉ ଜ୍ଞାନକୁ ସଞ୍ଚୟ କରି

ପାରନ୍ତି ଓ ଅନ୍ୟକୁ ପ୍ରଦାନ କରି ପାରନ୍ତି । ମଣିଷର ଚେତନା ଏହି ଭାବେ ନିରବଚ୍ଛିନ୍ନ ରୂପେ ବିକାଶ ଲାଭ କରୁଛି, ପୂର୍ଣ୍ଣ ଏବଂ ଗଭୀର ହେଉଛି ।

କାର୍ଯ୍ୟ, ସମାଜ ଏବଂ ଭାଷା — ଏ ହେଉଛି ଏକେଇ ସାମାଜିକ କାରଣର ତିନୋଟି ଦିଗ, ଯିଏକି ଚେତନାର ବିକାଶ ସାଧନ କରିଥାନ୍ତି । ଚେତନା ସମାଜରୁ ଜାତ । ମସ୍ତିଷ୍କକୁ ବିଚ୍ଛିନ୍ନ ଭାବେ ଦେଖିଲେ, ଏହା ହେଉଛି ଜଟିଳ ଭାବେ ସଂଗଠିତ ବସ୍ତୁର ଏକ ଟେକା, କିନ୍ତୁ ଚିନ୍ତନଶୀଳ ମସ୍ତିଷ୍କ ସାରଗତଃ ଭାବେ ହେଉଛି ଏକ ସାମାଜିକ ପ୍ରପଞ୍ଚ । ଖବର କାଗଜମାନଙ୍କରେ ବେଳେବେଳେ ବାହାରେ ପଶୁମାନେ, ଯଥା ବାନର ବା ହେଟାମାନଙ୍କ ଦ୍ୱାରା ମଣିଷ ଶିଶୁ ଲାଳିତ ହେବାର ସମ୍ବାଦ । ତିରିଶଟିରୁ ଅଧିକ ଏହି ଭଳି ଘଟଣା ମଧ୍ୟରୁ ଆମେ ଦୁଇଟି ଝିଅଙ୍କ କଥା ଧରିବା । ସେ ଦୁଇ ଜଣ ଏକ ମାଈ ହେଟା ଦ୍ୱାରା ଲାଳିତ ପାଳିତ ହୋଇଥିଲେ ଏବଂ ୧୯୨୦ ମସିହା ଅକ୍ଟୋବର ମାସରେ ପୂର୍ବଭାରତୀୟ ଜଙ୍ଗଲରେ ଦେଖିବାକୁ ମିଳିଥିଲେ । ବଡ଼ ଝିଅଟି ନାମ କମଳା, ବୟସ ତା'ର ହୋଇଥିଲା ପାଞ୍ଚ କିମ୍ବା ଛଅ ଏବଂ ଦ୍ୱିତୀୟ ଝିଅଟିର ନାମ ଅମଳା, ବୟସ ପ୍ରାୟ ତିନି । ସେମାନଙ୍କ ଆଚାର ବ୍ୟବହାରରେ ମଣିଷର ଗନ୍ଧ ବିସର୍ଗ ବି ନଥିଲା : ସେମାନେ ହାତ ଏବଂ ଆଣ୍ଠୁ ଭରା ଦେଇ ଚାଲୁଥିଲେ, ରାତି ହେଲେ ନିଦରୁ ଉଠୁଥିଲେ ଏବଂ ବୁଲୁଥିଲେ ଏବଂ ବେଳେବେଳେ ହେଟା ଭଳି ରଡ଼ି ଛାଡ଼ୁଥିଲେ । ସେମାନେ କଥା କହି ପାରୁ ନଥିଲେ କି କିଛି ବୁଝି ପାରୁ ନଥିଲେ । ସେମାନଙ୍କୁ ସମାଜରେ ମିଳେଇ ନେବାର ସମସ୍ତ ପ୍ରଚେଷ୍ଟା ବ୍ୟର୍ଥ ହୋଇଥିଲା । ଅମଳା ମରିଗଲା ଅଳ୍ପ ଦିନ ମଧ୍ୟରେ ଏବଂ କମଳା ଏଗାର ବର୍ଷ ବେଳକୁ ମାତ୍ର ୩୦ଟି ଶବ୍ଦ ଶିଖିଥିଲା । ଲୋକଙ୍କଠାରୁ ବିଚ୍ଛିନ୍ନ ହୋଇ ରହିବା ଫଳରେ ସେମାନଙ୍କ ମନୋଭାବରେ ଏକ ଭୟଙ୍କର ପ୍ରଭାବ ପଡ଼ିଥିଲା, ଏବଂ ସେମାନଙ୍କର ସେ ମନୋଭାବ ମଣିଷର ମନୋଭାବ ନହୋଇ ପଶୁ ମନୋଭାବ ହୋଇ ଯାଇଥିଲା ।

ଶିଶୁ ବଡ଼ ହୁଏ ପୂର୍ବର ବଂଶଧରମାନଙ୍କ ଅଭିଜ୍ଞତାକୁ ଆତ୍ମସ୍ଥ କରିବା ଦ୍ୱାରା ଏବଂ ଲୋକଙ୍କ ମଧ୍ୟରେ ତା'ର ଜୀବନ କାଳ ମଧ୍ୟରେ ସମସ୍ତ ପ୍ରକାରର ମାନବିକ କାର୍ଯ୍ୟକଳାପକୁ ଶିକ୍ଷା କରିବା ଦ୍ୱାରା । ଏହି ସମସ୍ତ କାର୍ଯ୍ୟକଳାପ ସମେତ ସେ ଲାଭ କରେ ମନର ସେହିସବୁ ବୈଶିଷ୍ଟ୍ୟରାଜି ତଥା ମାନସିକ କ୍ଷମତା, ଯିଏକି ସେସବୁ କାର୍ଯ୍ୟକଳାପ ସାଧନ ପାଇଁ ଆବଶ୍ୟକ । ଏହା ବିଶେଷତଃ ଅନ୍ଧ ଏବଂ କାଲ ପିଲାମାନଙ୍କ କ୍ଷେତ୍ରରେ ଦେଖିବାକୁ ମିଳିଥାଏ, ଯେଉଁମାନଙ୍କର ବାହ୍ୟ ଜଗତ ସହିତ ଭାବ ବିନିମୟର ପଥସମୂହ ନଥାଏ । ସେମାନଙ୍କ ମନ ସୀମିତ ହୋଇ ଆସିଥାଏ ସେମାନଙ୍କ ଦେହର ମୌଳିକ ଆବଶ୍ୟକତାକୁ ଅନୁଭବ କରି ଏବଂ ସହଜ ଆନନ୍ଦବୋଧ ଏବଂ ସେସବୁର ଅପରିପୂରଣରେ ଅସନ୍ତୋଷ ମଧ୍ୟକୁ । କିନ୍ତୁ ସେମାନଙ୍କୁ ବିଶେଷ ତାଲିମ୍ ଦେଉଥିବା ବୟସ୍କ ଲୋକମାନଙ୍କ ସହିତ ଭାବ ବିନିମୟ ଫଳରେ ସେମାନେ ସ୍ୱାଭାବିକ ଜୀବନର ସମସ୍ତ ଗୁଣ ଆହରଣ କରିଥାନ୍ତି । ସୋଭିଏତ୍ ୟୁନିଅନ୍‌ରେ ଏକ ବିଶେଷ ସ୍କୁଲ ରହିଛି ଅନ୍ଧ ଏବଂ କାଲ ପିଲାଙ୍କ ପାଇଁ, ଯିଏକି ସେମାନଙ୍କୁ ଶିକ୍ଷା, ବିଶେଷ ଧନ୍ଦା ଶିଖାଇଥାଏ ।

ଏହି ସ୍କୁଲର ଗ୍ରରି ଜଣ ପୂର୍ବତନ ଛାତ୍ର ମସ୍କୋ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗରୁ ସ୍ନାତକ ହୋଇ ବାହାରିଛନ୍ତି ।

## ୪ – ଲକ୍ଷ୍ୟ ନିର୍ଦ୍ଧାରଣ ଏବଂ ଆତ୍ମଚେତନା

ସାମାଜିକ ଜୀବନ ମଣିଷ ଚେତନାର ବିଶେଷ ଗୁଣଗୁଡ଼ିକୁ ନିର୍ଦ୍ଧାରିତ କରିଥାଏ । ମଣିଷର ଅବଧାରଣାରାଜି ଆକାରରେ ଚିନ୍ତା କରିବାର କ୍ଷମତା, ସେମାନଙ୍କ ବସ୍ତୁ ରୂପାନ୍ତରଣ ବାସ୍ତବ କାର୍ଯ୍ୟକଳାପ ମଧ୍ୟ ଚିହ୍ନିତ ହୋଇଥାଏ ଉଦ୍ଦେଶ୍ୟମୂଳକତା ଏବଂ ଲକ୍ଷ୍ୟ ନିର୍ଦ୍ଧାରଣତା ଦ୍ୱାରା । ଶେଷ ଜିନିଷଟି ହେଉଛି ମଣିଷ ଚେତନାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ । ଆମେ ଇତିପୂର୍ବରୁ ମହୁମାଛିମାନଙ୍କର ଆଶ୍ଚର୍ଯ୍ୟ ରକମର ମହମ କୋଷ ନିର୍ମାଣ କରିବାର କ୍ଷମତା କଥା କହିଛୁ । ତା ସତ୍ତ୍ୱେ ବି ଏହା ହେଉଛି ଅନ୍ଧ ପ୍ରବୃତ୍ତିର ପରିପ୍ରକାଶ । ଆମେ ଯଦି କୌଣସି କୋଷର ତଳକୁ କାଟି ଉଡ଼େଇ ଦେବା ମହୁମାଛିଟି ଜାଣି ପାରିବ ନାହିଁ ଏବଂ ପୂର୍ବ ଭଳି ସେଥିରେ ସେ ମହୁ ଢାଳିବ । ମାର୍କସ୍ ଲେଖିଛନ୍ତି, "ମହୁମାଛି ତା'ର କୋଷ ନିର୍ମାଣ କରି ବହୁ ସ୍ଥପତିଙ୍କୁ ଲଜ୍ଜା ଦେଇଥାଏ । କିନ୍ତୁ ସବୁଠାରୁ ଖରାପ ସ୍ଥପତି ଓ ସବୁଠାରୁ ଭଲ ମହୁମାଛି ମଧ୍ୟରେ ତଫାତ୍‌ଟା ହେଉଛି, ସ୍ଥପତିଟି ବାସ୍ତବରେ ତା'ର ମିନାରଟି ତିଆରି କରିବା ପୂର୍ବରୁ ମନ ମଧ୍ୟରେ ତାକୁ ଆଙ୍କି ନେଇଥାଏ । ପ୍ରତ୍ୟେକଟି ଶ୍ରମ ପ୍ରକ୍ରିୟା ଶେଷରେ ଏପରି ଏକ ଫଳ ଲାଭ କରିଥାଏ, ଯାହା ଆରମ୍ଭରେ ଶ୍ରମକାରୀର କଳ୍ପନାରେ ଥିଲା । ସେ କେବଳ ଯେଉଁ ସରଞ୍ଜାମ ଉପରେ କାମ କରୁଥାଏ ତା'ର ପରିବର୍ତ୍ତନ ଘଟାଏ ନାହିଁ, ତା'ର ନିଜସ୍ୱ ଏକ ଲକ୍ଷ୍ୟ ବା ଉଦ୍ଦେଶ୍ୟ ହାସଲ କରିଥାଏ, ଯାହା ନିୟମକୁ କାର୍ଯ୍ୟକାରୀ ହେବାକୁ ଦେଇଥାଏ ଏବଂ ଶ୍ରମକାରୀର ଇଚ୍ଛାଟା ଯାହାର ଅଧୀନ ରହେ ।" *

ଲକ୍ଷ୍ୟ ହେଉଛି ଅଭୀଷ୍ଟ ଭବିଷ୍ୟତର ଏକ ରୂପକଳ୍ପ ବା ପ୍ରତିଛବି, ମଣିଷର କାର୍ଯ୍ୟକଳାପର କଳ୍ପିତ ଶେଷ ଫଳାଫଳ । ଏହା ବାସ୍ତବତାର ଏକ ପ୍ରକାର "ପ୍ରତ୍ୟାଶାମୂଳକ" ପ୍ରତିଫଳନ ଲାଭ ପାଇଁ ବିଭିନ୍ନ ପଦାର୍ଥର ସଂପୃକ୍ତ ଧର୍ମରାଜି ଏବଂ ସେମାନଙ୍କ ବିକାଶରେ ପ୍ରବଣତା ସଂପର୍କରେ ଜ୍ଞାନ ଦ୍ୱାରା ସେସବୁର ଭବିଷ୍ୟତକୁ ଅନୁମାନ କରିବା ପାଇଁ ମଣିଷର ଯେଉଁ କ୍ଷମତା ଅଛି ତା'ର ଏକ ପରିପ୍ରକାଶ । ଏଥି ସଙ୍ଗେ ସଙ୍ଗେ, ବାସ୍ତବରେ ଏକ ଜିନିଷକୁ ପରିବର୍ତ୍ତନ କରିବାର ପଦ୍ଧତିକୁ ଲକ୍ଷ୍ୟ ନିର୍ଦ୍ଧାରଣ କରିଥାଏ ଏବଂ ସେ କର୍ମସୂଚୀ ସ୍ଥିର କରିଥାଏ, କେତେକ ଉପାୟ ଜରିଆରେ ତାକୁ ହାସଲ କରିବା ପାଇଁ । ଚେତନାର ବିଷୟ ହିସାବରେ ଲକ୍ଷ୍ୟ ବା ଉଦ୍ଦେଶ୍ୟ ସ୍ୱଭାବତଃ ହେଉଛି ମଣିଷର

---

* କାର୍ଲ ମାର୍କସ୍, "କ୍ୟାପିଟାଲ", ୧ମ ଖଣ୍ଡ, ପୃ: ୧୭୪ ।

ଭୌତିକ ଆବଶ୍ୟକତା ତଥା ସ୍ୱାର୍ଥର ଏକ ପରିପ୍ରକାଶ । ମଣିଷଜାତିକୁ ଦରିଦ୍ରତା, କ୍ଷୁଧା, ଯୁଦ୍ଧ, ରୋଗ, ସାମାଜିକ ଏବଂ ଜାତୀୟ ନିର୍ଯାତନରୁ ମୁକ୍ତ କରିବାର ମହାନ୍ ଲକ୍ଷ୍ୟରାଜି ସବୁ ଯୁଗରେ ପ୍ରଗତିଶୀଳ ସାମାଜିକ ଶକ୍ତିମାନଙ୍କୁ ଅନୁପ୍ରାଣିତ କରିଛି ସମାଜର ରୂପାନ୍ତରଣ ପାଇଁ ସଂଗ୍ରାମ କରିବାକୁ ।

ସମାଜର ସଦସ୍ୟ ହିସାବରେ ମଣିଷ ଚେତନାର ସର୍ବୋଚ୍ଚ ପରିପ୍ରକାଶ ହେଉଛି ଆତ୍ମଚେତନା । ଏହି ଚେତନା ତା' ନିଜ, ତା'ର ନିଜସ୍ୱ ବାସ୍ତବ ଏବଂ ଆତ୍ମିକ କାର୍ଯ୍ୟକଳାପର ବାସ୍ତବାୟନ, ତା'ର ନିଜସ୍ୱ କାର୍ଯ୍ୟାବଳୀର ନିଜ ଦ୍ୱାରା ବ୍ୟାଖ୍ୟାୟନ ଏବଂ ଅନ୍ୟ ଲୋକଙ୍କ ସହିତ ତା'ର ସଂପର୍କ ଦିଗରେ ପରିଗ୍ଳକିତ ହୋଇଥାଏ । ମଣିଷର ଆତ୍ମଚେତନା ରଚିତ ହୋଇଥାଏ ନିଜକୁ ଏକ ବ୍ୟକ୍ତି ହିସାବରେ ପ୍ରତିଷ୍ଠା କରିବାର ପ୍ରକ୍ରିୟା ଦେଇ । ଶିଶୁ ନିଜକୁ ବୁଝି ପାରେ ନାହିଁ । ସେ ନିଜକୁ କୌଣସି ଏକ ନିର୍ଦ୍ଦିଷ୍ଟ "ଅହଂ" ସହିତ ନିଜକୁ ଚିହ୍ନଟ କରି ପାରେ ନାହିଁ ଏବଂ ବାହ୍ୟ ଜଗତଠାରୁ ନିଜକୁ ପୃଥକ୍ କରି ବି ଭାବି ପାରେ ନାହିଁ । ନିଜକୁ ରୂପାୟିତ କରାଯାଇଥାଏ ଅନ୍ୟମାନଙ୍କ ସହିତ ବିଭିନ୍ନ କାର୍ଯ୍ୟକଳାପ ଏବଂ ଭାବ ବିନିମୟ ଦ୍ୱାରା । ଏହା ପ୍ରକାଶ ପାଇଥାଏ ମଣିଷର ଆତ୍ମନିୟନ୍ତ୍ରଣ, ଆତ୍ମସଂପୂର୍ଣ୍ଣକରଣ ଏବଂ ଆତ୍ମସମାଲୋଚନା ମଧ୍ୟରେ । ଆତ୍ମଚେତନାର ସର୍ବୋଚ୍ଚ ପରିପ୍ରକାଶ ହେଉଛି ସମବାୟର ଏକ ସଦସ୍ୟ ହିସାବରେ ତା'ର ନିଜ ସଂପର୍କରେ ସଚେତନତା, ସମାଜରେ ତା'ର ଭୂମିକା ସଂପର୍କରେ ତା'ର ଜ୍ଞାନ ଏବଂ ପ୍ରଗତିଶୀଳ ଶକ୍ତିମାନଙ୍କର ସାମାଜିକ ଲକ୍ଷ୍ୟରାଜି ପ୍ରତି ତା କାର୍ଯ୍ୟାବଳୀର ଅଧୀନକରଣ ଦ୍ୱାରା । ମଣିଷର ଆତ୍ମଚେତନାର ସବୁଠାରୁ ଗଭୀର ପ୍ରକାଶନ ହେଉଛି ତା'ର ମିଳିତ ମନୋଭାବ, ଯିଏକି ସକ୍ରିୟ ଶ୍ରେଣୀ ସଂଗ୍ରାମ ତଥା ସମାଜ ଜୀବନରେ ପ୍ରକାଶ ପାଇଥାଏ । ତେଣୁ ପ୍ରାଚୀନ କାଳର ସେହି ବାଣୀ "ନିଜକୁ ଜାଣ" କଥାଟିର ଆଜି ନୂତନ ବ୍ୟାଖ୍ୟା ଦରକାର । ଆତ୍ମଚେତନା ପାଇଁ ମଣିଷର କ୍ଷମତା ମଧ୍ୟ ସାମାଜିକ ଭାବେ ବିପରୀତ ଫଳ ଦେଇ ପାରେ, ଉଦାହରଣ ସ୍ୱରୂପ, ଯେତେବେଳେ ସେ ନିଜକୁ ପରିଗ୍ଳକିତ କରେ ଏକ ଧର୍ମୀୟ ବନ୍ଧନ ମଧ୍ୟରେ, "ଆତ୍ମଚିନ୍ତା" ଏବଂ "ଆତ୍ମକେନ୍ଦ୍ରୀକରଣ" ଆଡ଼କୁ, ବାସ୍ତବ ଜୀବନ ପ୍ରତି ଉପେକ୍ଷା ଆଡ଼କୁ ଏବଂ "ନିଜ ମଧ୍ୟରେ" ନିଜକୁ ହଜାଇ ଦେବା ଆଡ଼କୁ ଏବଂ "ଆତ୍ମଶିକ୍ଷା" ଆଡ଼କୁ – ଏସବୁ କାଳେ ହେଉଛି ବ୍ୟକ୍ତିଗତ ସୁଖ ଲାଭର ମୁଖ୍ୟ ପଥସମୂହ । ଜବାହାରଲାଲ ନେହେରୁ ଧର୍ମୀୟ ଚେତନାର ଏହିସବୁ ନୀତିରାଜିକୁ ଅତିକ୍ରମ କରିବାର ଆବଶ୍ୟକତା ସଂପର୍କରେ ସଠିକ ଭାବେ ଦର୍ଶାଇଥିଲେ । "ଆମକୁ ସେହିସବୁ ସଂକୀର୍ଣ୍ଣ ଧର୍ମୀୟ ଆଭିମୁଖ୍ୟ, ଅଲୌକିକ ତଥା ଅଧିଭୌତିକ ଅନୁମାନ ପ୍ରତି ବଦ୍ଧ ବିଶ୍ୱାସ, ଧର୍ମୀୟ ଉତ୍ସବାତ୍ମକ ତଥା ରହସ୍ୟାତ୍ମକ ଆବେଗତା ମଧ୍ୟରେ ନିଜର ମନର ଶୃଙ୍ଖଳାବୋଧର ଶିଥିଳୀକରଣକୁ ପରିହାର କରିବାକୁ ପଡ଼ିବ, ଯିଏକି ନିଜକୁ ଏବଂ ଜଗତକୁ ଅବଗତ ହେବା ପଥରେ ବାଧା ହୋଇ ଛିଡ଼ା ହୋଇଥାଏ । ଆମକୁ ବର୍ତ୍ତମାନ, ଏହି ଜୀବନ, ଏହି ଜଗତ ଏବଂ

ଯେଉଁ ପ୍ରକୃତି ତା'ର ଅସୀମ ବହୁବିଧତା ନେଇ ଆମକୁ ଘେରି ରହିଛି ତାକୁ ଭଲ ଭାବେ ବୁଝିବାକୁ ହେବ ।"*

ଏକ ସାମାଜିକ ଜୀବ ହିସାବରେ ମଣିଷର ଆତ୍ମଚେତନା କ୍ଷମତା ତେଣୁ ତା'ର ଅନ୍ୟାନ୍ୟ ଗୁଣରାଶିଠାରୁ ସ୍ୱତନ୍ତ୍ର ବୋଲି ବିଗ୍ଣର କରିବାକୁ ହେବ ।

## ୪ — ଚେତନା ଏବଂ ଭାଷା

ଚେତନାର ସାମାଜିକ ଚରିତ୍ର ମଧ୍ୟ ଭାଷା ସହିତ ତା'ର ଐକ୍ୟ ମଧ୍ୟରେ ପ୍ରକାଶ ଲଭ କରିଥାଏ । ଏହି ଐକ୍ୟ ଘଟିଥାଏ ଏଇଥି ପାଇଁ ଯେ, ଭାଷା ହେଉଛି ମାନବିକ ଚେତନାର ଆଶୁ ବାସ୍ତବତା । ଭାଷା ହେଉଛି ଚେତନା ପରି ପୁରାତନ । ଅନ୍ୟ ଲେକଙ୍କ ପାଇଁ ଚେତନା ହିଁ ଏକ ବାସ୍ତବ, ପ୍ରକୃତ ରୂପରେ ଅବସ୍ଥିତ ଥାଏ ଏବଂ ଏହା ଫଳରେ ଏହା ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତି ପାଇଁ ମଧ୍ୟ ରହେ । ଭାଷା ହେଉଛି ମାନବିକ ଚିନ୍ତାର ବାସ୍ତବ ପରିପ୍ରକାଶ । ମଣିଷ ତା'ର ଚିନ୍ତାରାଜିକୁ ବିଭିନ୍ନ ଉପାୟରେ ପ୍ରକାଶ କରି ପାରେ (ଅଙ୍ଗଭଙ୍ଗୀ, ଅଙ୍କନ, ସୂତ୍ର, ଆଦି); ଶେଷକୁ, ଅବଶ୍ୟ, ମଣିଷ ମଣିଷ ମଧ୍ୟରେ ଭାବର ଆଦାନ ପ୍ରଦାନ ପ୍ରତିଷ୍ଠିତ ହୋଇଥାଏ କଥିତ ଭାଷା ଜରିଆରେ । ଏବେ ପୃଥିବୀରେ ୩,୦୦୦ରୁ ଅଧିକ ପ୍ରାକୃତିକ ଭାଷା ରହିଛି । ସେସବୁ ମଧ୍ୟରେ ଭାରତର ଅଛି ୮୭୨ଟି ଭାଷା । ଯେକୌଣସି ପ୍ରାକୃତିକ ଭାଷା ଲେକର ଚିନ୍ତାକୁ ପ୍ରକାଶ କରିବାର ଏକ ସାର୍ବଜନୀନ ଉପାୟ ପ୍ରଦାନ କରିଥାଏ । ଭାଷା ବହୁ କାର୍ଯ୍ୟ ସଂପନ୍ନ କରେ : ଚିନ୍ତନର ବିମୂର୍ତ୍ତ କାର୍ଯ୍ୟ ପାଇଁ ଏହା ଏକ ମାଧ୍ୟମର କାର୍ଯ୍ୟ କରେ; ଏହା ପଦାର୍ଥ ଏବଂ ପ୍ରପଞ୍ଚରାଜିକୁ ଚିହ୍ନିତ କରେ, ଯଥା, ଆମ ଚତୁର୍ପାର୍ଶ୍ୱରେ ଥିବା ପଦାର୍ଥରାଜିକୁ ପରିଚିତ କରାଏ; ମଣିଷର ମନୋଭାବ ତଥା ଚିନ୍ତାକୁ ପ୍ରକାଶ କରେ ମାନବିକ ଭାବ ବିନିମୟର ଏକ ମୁଖ୍ୟ ମାଧ୍ୟମ ହିସାବରେ; ସଂଗୃହୀତ ଜ୍ଞାନରାଶିକୁ ଶକ୍ତିଶାଳୀ କରିବା ଏବଂ ପରବର୍ତ୍ତୀ ବଂଶଧରମାନଙ୍କୁ ପ୍ରଦାନ କରିବାର ଏକ ପଦ୍ଧତି ରୂପେ କାର୍ଯ୍ୟ କରେ; ମଣିଷର ପ୍ରଜ୍ଞା ତଥା ସଂସ୍କୃତିର ବିକାଶର ମାଧ୍ୟମ ତଥା ସୂଚକ ହିସାବରେ କାମ ଦିଏ, ଆଦି । ମଣିଷଜାତିର ବିକାଶ ଏବଂ ତା'ର ଭୌତିକ ତଥା ଆତ୍ମିକ ସଂସ୍କୃତି ସହିତ ତାଳ ରଖି ଭାଷା ବିକାଶ ଲଭ କରିଥାଏ ।

ଭାଷା ଏବଂ କଥା ମଧ୍ୟରେ ଏକ ପାର୍ଥକ୍ୟ ରହିଛି । ପ୍ରଥମଟି ହେଉଛି ଭାବ ବିନିମୟର ଏକ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଏବଂ କଥା ହେଉଛି ସେହି ବ୍ୟବସ୍ଥା ଦ୍ୱାରା ପ୍ରକାଶିତ କାର୍ଯ୍ୟକଳାପ । କଥା ମୌଖିକ, ଲିଖିତ କିମ୍ବା "ଆଭ୍ୟନ୍ତରୀଣ" ହୋଇ ପାରେ, କିନ୍ତୁ

---

*Nehru, "*The Discovery of India*", p. 553.

ପ୍ରତ୍ୟେକଟି କ୍ଷେତ୍ରରେ ଶବ୍ଦ ଦ୍ୱାରା ପ୍ରକାଶ ପାଇଥାଏ । କଥାର ବାହାରେ ଚେତନା ତିଷ୍ଠି ପାରେ ନାହିଁ, କିନ୍ତୁ ଚିନ୍ତା ଆଉ ଭାଷାର ଐକ୍ୟ ସେମାନଙ୍କ ମଧ୍ୟରେ କେତେକ ପାର୍ଥକ୍ୟକୁ ଅସ୍ୱୀକାର କରି ପାରେ ନାହିଁ । ଚେତନା ବାସ୍ତବତାକୁ ପ୍ରତିଫଳିତ କରୁଥିଲା ବେଳେ ଭାଷା ଏହି ପ୍ରତିଫଳନର ଫଳକୁ ପ୍ରକାଶ କରେ । ଚେତନାର ମୂଳ କାର୍ଯ୍ୟଟି ହେଉଛି, ଏହି ଭାବେ, ବାସ୍ତବ ଅବଗତି ଏବଂ ଭାଷାର କାର୍ଯ୍ୟ – ଜନସାଧାରଣଙ୍କ ମଧ୍ୟରେ ଭାବ ବିନିମୟ ଏବଂ ପାରସ୍ପରିକ ବୁଝାମଣା । ଅନ୍ୟ ଏକ ପାର୍ଥକ୍ୟ ହେଉଛି, ବିଭିନ୍ନ ଭାଷାରେ ଶବ୍ଦର ବିଭିନ୍ନ ସମ୍ମିଶ୍ରଣରେ ଅଭିନ୍ନ ଚିନ୍ତାରାଜିକୁ ପ୍ରକାଶ କରାଯାଇଥାଏ । ଏ କଥା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଯେ, ଚିନ୍ତନ ହେଉଛି ତା'ର ନିୟମ ଏବଂ ଆଧାର ଦୃଷ୍ଟିରୁ ମାନବିକ ଏବଂ ଯୁକ୍ତିବିଦ୍ୟାର ସାଧାରଣ ନିୟମାବଳୀର ଅଧୀନ । କିନ୍ତୁ ଭାଷା ହେଉଛି ଶବ୍ଦକୋଷ ଏବଂ ବ୍ୟାକରଣ ଦୃଷ୍ଟିରୁ ଜାତୀୟ, ଜାତିଗତ ଫଳ ।

## ୬ – ବ୍ୟକ୍ତି – ଚେତନାର ଗଢ଼ଣ

ଚେତନା ବାସ୍ତବତାକୁ ପୁନଃପ୍ରକାଶ କରିଥାଏ ତା'ର ଆଦର୍ଶ ପ୍ରତିବିମ୍ବରେ ତଥା ବିଭିନ୍ନ ରୂପରେ ଏବଂ ସେସବୁ ମଣିଷ ଦ୍ୱାରା ଅନୁଭୂତ ହେଉଥିବା ଭାବଗତ ବାସ୍ତବତା ସହିତ ସଂପୃକ୍ତ । ମଣିଷର ଜଟିଳ ଆଭ୍ୟନ୍ତରୀଣ ଜଗତ ଜୀବନ୍ତ ଆବେଗମୟ ପ୍ରତିକ୍ରିୟାରାଜିକୁ ନେଇ ରଚିତ ଏବଂ ଅବଗତିଶୀଳ ପ୍ରକ୍ରିୟାସମୂହ ତଥା ବିଶେଷ ଆଚରଣଗତ କ୍ରିୟାକଳାପଠାରୁ ସଂପୂର୍ଣ୍ଣ ଭିନ୍ନ, ଯିଏକି ଚତୁର୍ପାର୍ଶ୍ୱସ୍ଥ ଜଗତ ସହିତ ବ୍ୟକ୍ତିର, କର୍ତ୍ତାର ସଂପର୍କକୁ ପରିପ୍ରକାଶ କରିଥାଏ ।

ମଣିଷ ଯେଉଁସବୁ ଆଦର୍ଶ ରୂପରାଶି ଦ୍ୱାରା ବାସ୍ତବତାକୁ ପ୍ରକାଶ କରେ, ମୁଖ୍ୟତଃ, ସେସବୁକୁ ଭାଗ ଭାଗ କରାଯାଇ ପାରେ ଇନ୍ଦ୍ରିୟାନୁଭୂତି, ଅନୁଭବନ, ନିବେଦନ, ଚିନ୍ତନ, ଆବେଗ ଓ ସମ୍ବେଦନା, ଏବଂ ଇଚ୍ଛା ମଧ୍ୟରେ । ଦୃଶ୍ୟମାନ, ଶ୍ରବଣୀୟ, ସ୍ପର୍ଶଣୀୟ ତଥା ଅନ୍ୟାନ୍ୟ ଇନ୍ଦ୍ରିୟାନୁଭୂତି ହେଉଛି ପ୍ରତ୍ୟକ୍ଷ ଭାବେ ବାସ୍ତବତା ସହିତ ସଂପୃକ୍ତ ମାନସିକ ପ୍ରପଞ୍ଚ ଏବଂ ବସ୍ତୁରାଜିର ଭିନ୍ନ ଭିନ୍ନ ଧର୍ମକୁ ଏସବୁ ପ୍ରତିଫଳିତ କରିଥାନ୍ତି । ଅନୁଭବ କରିବାର କ୍ଷମତାଟା ଉଭୟ ପ୍ରାଣୀ ଏବଂ ମଣିଷ ଦେହର ଏକ ଧର୍ମ, କିନ୍ତୁ ମଣିଷ କ୍ଷେତ୍ରରେ, ତା'ର ବାସ୍ତବ କାର୍ଯ୍ୟକଳାପ ଦ୍ୱାରା ଏହି ଶକ୍ତିଟା ପରୋକ୍ଷ ଭାବେ ସଂପୃକ୍ତ ଅଥଚ ପ୍ରାଣୀମାନଙ୍କ କ୍ଷେତ୍ରରେ ଏହା ସମ୍ଭବ ନୁହେଁ । ଏହା ମଣିଷର ପ୍ରତ୍ୟକ୍ଷ ଉପଲବ୍ଧିଠାରୁ ଅବିଚ୍ଛେଦ୍ୟ, ଯିଏକି ବିଭିନ୍ନ ଇନ୍ଦ୍ରିୟାନୁଭୂତିକୁ ସୁସଂହତ କରିଥାଏ ଏକ ବସ୍ତୁର ସଂପୂର୍ଣ୍ଣ ପ୍ରତିବିମ୍ବ ମଧ୍ୟରେ । ପ୍ରତ୍ୟକ୍ଷ ଉପଲବ୍ଧି ହେଉଛି ବିଭିନ୍ନ ଇନ୍ଦ୍ରିୟାନୁଭୂତିର ସଂହତୀକରଣ ଫଳରେ ଜାତ ପଦାର୍ଥର ଏକ ଅଖଣ୍ଡ ଭାବମୂର୍ତ୍ତି । ପ୍ରତ୍ୟକ୍ଷ ଉପଲବ୍ଧି ଦ୍ୱାରା ମଣିଷ ତା'ର ବିଭିନ୍ନ ଇନ୍ଦ୍ରିୟାନୁଭୂତିକୁ ଅନୁଭବ କରେ । ଦୃଷ୍ଟାନ୍ତ ସ୍ୱରୂପ, ସେ ଯଦି ଏକ ବିଦେଶୀ ଭାଷା

ଜାଣିଥାଏ, ତେବେ ସେ ବିଦେଶୀ ଭାଷାଟି ଯା'ର ମାତୃଭାଷା ତା'ର ସେ କଥାଗୁଡ଼ିକ ତା ପକ୍ଷରେ କେବଳ ଶ୍ରବଣାତ୍ମକ ଧାରଣାର ଏକ ସମଷ୍ଟି ନହୋଇ ଆଉରି କିଛି ଅଧିକ ହେବ : ସେ ପ୍ରତ୍ୟକ୍ଷ ଭାବେ ଅନୁଭବ କରିବ ସେସବୁ ମଧ୍ୟରେ ନିହିତ ଚିନ୍ତାରାଜିକୁ । ମଣିଷର ଭାବଗତ ଜଗତର ନିବେଦନ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥାଏ । ଅତୀତରେ ଅନୁଭୂତ ବସ୍ତୁରାଜିର ଅନୁଭୂତଶୀଳ ପ୍ରତିବିମ୍ବରାଜିକୁ ସଂରକ୍ଷିତ କରିବା ଦିଗରେ ମଣିଷର କ୍ଷମତାକୁ ସଂରକ୍ଷିତ କରିବାକୁ ସେସବୁ ନିର୍ଦ୍ଧାରିତ କରନ୍ତି, ସେସବୁ କଳ୍ପରୂପର ତୁଳନାମୂଳକ ଭାବେ ଇଚ୍ଛାନୁଯାୟୀ ମିଶ୍ରଣ ସୃଷ୍ଟି କରିବା ଦିଗରେ ଏବଂ କଳ୍ପନା ତଥା ମାନସିକ ସୃଜନୀ ଶକ୍ତି ଦେଇ ଭବିଷ୍ୟତର କଳ୍ପରୂପ ଗଢ଼ିବା ବା ବାସ୍ତବତାର ଉଦ୍‌ଭାବନ କରିବାରେ । ପ୍ରାଚୀନ ଲୋକଙ୍କର କଳ୍ପନା ଶକ୍ତି, ଉଦାହରଣ ସ୍ୱରୂପ, ଅସୁର ଭଳି କଳ୍ପନାଜାତ ପ୍ରାଣୀ (ଭୟଙ୍କର ସର୍ପ ଭଳି ଜୀବ), ରାକ୍ଷସ (ନରଭକ୍ଷୀ ଦୈତ୍ୟ), ସେଣ୍ଟାଉରସ୍ (ଅର୍ଦ୍ଧ ଅଶ୍ୱ, ଅର୍ଦ୍ଧ ମଣିଷ ପ୍ରାଣୀ), ମେର୍‌ମେଡ୍‌ସ (ଅର୍ଦ୍ଧ ମତ୍ସ୍ୟ – ଅର୍ଦ୍ଧ ନାରୀ), ହାର୍‌ପିଏସ୍ (ନାରୀ ମୁଖଯୁକ୍ତ ପକ୍ଷୀ), ଆଦିକୁ ସୃଷ୍ଟି କରି ପାରିଥିଲା ।

ଅବଧାରଣା ମଧ୍ୟରେ ବାସ୍ତବତାର ପୁନଃସୃଷ୍ଟି, ବିମୂର୍ତ୍ତ ଚିନ୍ତା ହେଉଛି, ଆମେ ଯାହା ଆଲୋଚନା କଲେ, ମଣିଷ ପକ୍ଷରେ ସ୍ୱତନ୍ତ୍ର ଏକ ଧରଣର ପ୍ରତିଫଳନ । ଏହା ହେଉଛି ମଣିଷ ଦ୍ୱାରା ବସ୍ତୁରାଜିର ମୌଳିକ ଧର୍ମସମୂହ ଏବଂ ବସ୍ତୁରାଜି ମଧ୍ୟରେ ସଂପର୍କରାଜିର ମଧ୍ୟସ୍ଥକରା ଏବଂ ସାଧାରଣୀକୃତ ପ୍ରତିଫଳନ । ଚିନ୍ତନ ପ୍ରକ୍ରିୟାରାଜି ସଂଘଟିତ ହୋଇଥାଏ ଯୁକ୍ତି ବିଦ୍ୟାର ନିର୍ଦ୍ଦିଷ୍ଟ ନିୟମାନୁଯାୟୀ ବିଗ୍ରହ ଏବଂ ସିଦ୍ଧାନ୍ତ ଆକାରରେ । ଅବଧାରଣାତ୍ମକ ଚିନ୍ତାର ଦୁଇଟି ରୂପ – ଯୁକ୍ତିସମ୍ମତ ଚିନ୍ତା (ଯୁକ୍ତିସମ୍ମତତା) ଏବଂ ବୌଦ୍ଧିକାତ୍ମକ ଚିନ୍ତା (ପ୍ରଜ୍ଞା) ମଧ୍ୟରେ ଐକ୍ୟ ପ୍ରକାଶ କରିଥାଏ । ଯୁକ୍ତିସମ୍ମତତାର ଅର୍ଥ ହେଉଛି ସୁନିର୍ଦ୍ଦିଷ୍ଟ ଚିନ୍ତା, ଇତିପୂର୍ବରୁ ପ୍ରତିଷ୍ଠିତ ଅବଧାରଣାସମୂହର ନୈପୁଣ୍ୟତା, କିନ୍ତୁ ବୌଦ୍ଧିକତା ହେଉଛି ଅବଧାରଣା ମଧ୍ୟରେ ଥିବା ଦ୍ୱନ୍ଦ୍ୱରାଜି ଏବଂ ସେସବୁର ସୀମାବଦ୍ଧତାକୁ ପ୍ରକାଶ କରି ଦେବାର ମାନବିକ କ୍ଷମତା ଏବଂ ସେହିସବୁ ଅବଧାରଣାର ଆଧେୟସମୂହକୁ ନିର୍ଦ୍ଦିଷ୍ଟ ଅବସ୍ଥା ସହିତ ପାରସ୍ପରିକ ସମ୍ବନ୍ଧ ପ୍ରତିଷ୍ଠା କରିବାର କ୍ଷମତା । ଦୈନନ୍ଦିନ ଜୀବନରେ ଯୁକ୍ତିଯୁକ୍ତତାକୁ ସାଧାରଣ ଅନୁଭୂତି ଜ୍ଞାନ, ଏବଂ ବୌଦ୍ଧିକତା – ଜ୍ଞାନ ।

ଚେତନାର ଯେଉଁସବୁ ରୂପଗୁଡ଼ିକ ବିଷୟରେ ଆମେ ଆଲୋଚନା କଲେ, ସେସବୁ ପ୍ରାଥମିକ ଭାବେ ବାସ୍ତବତାର ମାନବିକ ପ୍ରତିଫଳନର ଏକ ନିର୍ଦ୍ଦିଷ୍ଟ ଦିଗକୁ – ଜ୍ଞାନାହରଣ ଏବଂ ଉପଯୋଗକୁ ଚରିତ୍ରାୟିତ କରିଥାଏ । ଆବେଗ ଏବଂ ଅନୁଭବତା ଏହାର ଅନ୍ୟ ଦିଗଟିକୁ ପ୍ରକାଶ କରେ, ଯଥା ବ୍ୟକ୍ତି ଯେଉଁ ବାସ୍ତବତାକୁ ପ୍ରତିଫଳିତ କରିଥାଏ, ସେଥି ପ୍ରତି ତା'ର ଆବେଗାତ୍ମକ ଆଭିମୁଖ୍ୟକୁ ପ୍ରକାଶ କରେ । ଶକ୍ତିଶାଳୀ ଆବେଗ ଦୈନନ୍ଦିନ ଜୀବନରେ ସାଧାରଣ ଲୋକଙ୍କର ଚେତନା ସହିତ, ସତ୍ୟର ବୈଜ୍ଞାନିକ ଅନୁସଂଧାନ, କଳାକାରର କୃତି, ଧର୍ମୀୟ ଅନୁଷ୍ଠାନ ଏବଂ ଶ୍ରେଣୀମାନଙ୍କର ରାଜନୈତିକ ସଂଗ୍ରାମ

# ବ୍ୟକ୍ତି ଚେତନାର ଗଢ଼ଣ



ସହିତ ଯୁକ୍ତ ଥାଏ । ଆନନ୍ଦ ଏବଂ ନିରାନନ୍ଦ, ସୁଖ ଏବଂ ଅସୂୟା, ହର୍ଷ ଏବଂ ଘୃଣା, ଆଦି ଆବେଗର ଅନ୍ତର୍ଗତ । ଆବେଗସମୂହ ମଧ୍ୟରେ ଯାଏ ସେହିସବୁ ଜିନିଷ, ଯାହା ସମାଜ ସହିତ ଯୁକ୍ତ ମଣିଷର ସଂପର୍କରାଜି: କର୍ତ୍ତବ୍ୟବୋଧ, ନ୍ୟାୟବୋଧ, ସୌନ୍ଦର୍ଯ୍ୟବୋଧ, ଆଦି ।

ଇଚ୍ଛା ହେଉଛି ମାନସିକ ଅବସ୍ଥାର ଏକ ପ୍ରତିଫଳନ ଏବଂ ଏହା ମଣିଷର ଏକ ବିଶେଷ ଗୁଣ । ଏହା ହେଉଛି ମଣିଷର ଆଚରଣକୁ ପରିଚ୍ଚାଳିତ କରିବା ପାଇଁ ଚେତନାର ଶକ୍ତି । ଏହା ବ୍ୟକ୍ତିର ଉଦ୍ଦେଶ୍ୟମୂଳକ କାର୍ଯ୍ୟକୁ ନିର୍ଦ୍ଧାରିତ କରିଥାଏ । ଯୋଗୀମାନେ, ନିଃସନ୍ଦେହରେ, ବିପୁଳ ମନୋବଳର ଅଧିକାରୀ । ସେମାନେ ବିଶେଷ ଧରଣର ବ୍ୟାୟାମ କରିଥାନ୍ତି (ନିୟମିତ ଉପବାସ, ମାଂସପେଶୀର ଶିଥିଳତା, ପ୍ରାଣାୟମ) ସେମାନଙ୍କ ଜୀବନର କେତେକ ପ୍ରକ୍ରିୟାକୁ ନିୟନ୍ତ୍ରଣ କରିବାର କ୍ଷମତା ଲାଭ ପାଇଁ । କେତେକ କ୍ଷେତ୍ରରେ ସେମାନଙ୍କ ଅଭିଜ୍ଞତା ଆଧୁନିକ ଔଷଧ ବିଜ୍ଞାନ ପକ୍ଷରେ ମୂଲ୍ୟବାନ ବୋଲି ପ୍ରମାଣିତ ହୋଇଛି । ଏଥି ସଙ୍ଗେ ସଙ୍ଗେ ଆମେ ଯେତେବେଳେ ଇଚ୍ଛା ସଂପର୍କୀୟ ପ୍ରଶ୍ନରାଜି ଉପରେ ଆଲୋଚନା କରୁଛେ ଆମକୁ ସେହି ନିର୍ଦ୍ଦିଷ୍ଟ ଇଚ୍ଛା ପ୍ରଣୋଦିତ କାର୍ଯ୍ୟକଳାପ ପଛରେ ଥିବା ଉଦ୍ଦେଶ୍ୟ ଏବଂ ତତ୍ ସଙ୍ଗେ ସଙ୍ଗେ ମଣିଷର ଉଦ୍ଦେଶ୍ୟନିଷ୍ଠ କାର୍ଯ୍ୟର ଆଧେୟ ସଂପର୍କରେ ଉଲ୍ଲେଖ କରିବାଟା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ମଣିଷର ସର୍ବୋଚ୍ଚ ସ୍ତରରେ ଆତ୍ମଚେତନାକୁ ପ୍ରକାଶ କରୁଥିବା ପ୍ରକୃତ ଶକ୍ତିଶାଳୀ ଇଚ୍ଛାଶକ୍ତି ପ୍ରକାଶ ଲାଭ କରିଥାଏ ସାମାଜିକ ପ୍ରଗତି ସାଧନ ଦିଗରେ ସନ୍ନିଚ୍ଚିତ କାର୍ଯ୍ୟ ମଧ୍ୟରେ, ତା'ର ଏକନିଷ୍ଠ କର୍ମୋଦ୍ୟମ ମଧ୍ୟରେ । ଇଚ୍ଛାପ୍ରଣୋଦିତ କାର୍ଯ୍ୟର ଆଭିମୁଖ୍ୟ, ଯିଏକି ପ୍ରତିକ୍ରିୟାଶୀଳ ବା ସମାଜବିରୋଧୀ ହୋଇ ପାରେ, ଶେଷ ବିଶ୍ଳେଷଣରେ ନିର୍ଦ୍ଧାରିତ ହୋଇଥାଏ ବ୍ୟକ୍ତିର ଆଭିମୁଖ୍ୟ, ଭାବାଦର୍ଶଗତ ମତାମତ, ନୈତିକତା, ପରମ୍ପରା, ଆଦି ଦ୍ୱାରା । ଏଠାରେ ଆମେ ବ୍ୟକ୍ତିଗତ ଚେତନାର କ୍ଷେତ୍ରକୁ ପରିତ୍ୟାଗ କରି ସାମାଜିକ ଚେତନାକୁ ଯିବା ।

## ୭ — ବ୍ୟକ୍ତିଗତ ଏବଂ ସାମାଜିକ ଚେତନା

ପ୍ରତ୍ୟେକ ବ୍ୟକ୍ତି ହେଉଛି ଐତିହାସିକ ଭାବେ ସ୍ୱତନ୍ତ୍ର ସମାଜ, ଶ୍ରେଣୀ, ଜାତି ବା ସାମାଜିକ ସ୍ତରର ସଦସ୍ୟ । ଭାରତରେ ଏହା ଛଡ଼ା ସେ ହେଉଛି ଶତାବ୍ଦୀ ଶତାବ୍ଦୀ ଧରି ରହି ଆସିଥିବା କୌଣସି ବର୍ଣ୍ଣ ବା ଜାତିର ଅନ୍ତର୍ଗତ । ବ୍ୟକ୍ତି-ଚେତନାର ସାମାଜିକ ସାରସତ୍ତା ତେଣୁ ବାସ୍ତବତାର ଆଦର୍ଶ ପ୍ରତିଫଳନର ମୌଳିକ ନୂତନ ଆଧାରର ଅଭ୍ୟୁଦୟ ମଧ୍ୟରେ ପ୍ରକାଶ ପାଏ ନାହିଁ (ଯଥା, ଅବଧାରଣାଗତ ଚିନ୍ତନ, ଆତ୍ମଚେତନା, ଉଦ୍ଦେଶ୍ୟମୂଳକ ଲକ୍ଷ୍ୟ ସ୍ଥାପନ, ମନୋବଳ, ଆଦି), ପ୍ରକାଶ ପାଏ ଅତୀବ ଗୁରୁତ୍ୱପୂର୍ଣ୍ଣ ଭାବେ, ସ୍ୱୟଂ ପ୍ରତିଫଳନର ଆଧେୟ ତଥା ମଣିଷର ସାମାଜିକ ପ୍ରପଞ୍ଚ, ଘଟଣାବଳୀ

ଏବଂ ସାମଗ୍ରିକ ଭାବେ ବାସ୍ତବତା ପ୍ରତି ଆଭିମୁଖ୍ୟ ମଧ୍ୟରେ । ଚେତନା କେବଳ ମସ୍ତିଷ୍କର ଏକ କାର୍ଯ୍ୟ ନୁହେଁ, ଯିଏକି ବହିର୍ଜଗତକୁ ପ୍ରତିଫଳିତ କରିଥାଏ । ଏହାର ପୂର୍ବସର୍ତ୍ତ ହେଉଛି ଜନସାଧାରଣଙ୍କ ମଧ୍ୟରେ ପାରସ୍ପରିକ କ୍ରିୟାକଳାପ ଏବଂ ସମାଜର ଅବସ୍ଥିତି । ମଣିଷର ସାମାଜିକ କ୍ରିୟାକଳାପ ତା'ର ଚେତନାର ବିକାଶ କ୍ଷେତ୍ରରେ ନିର୍ଦ୍ଧାରଣମୂଳକ ଭୂମିକା ପାଳନ କଲା ବେଳେ ସେହିସବୁ କାର୍ଯ୍ୟକଳାପର ଚରିତ୍ର ଏବଂ ରୂପ ଜନ୍ମ ନେଇଥାଏ ତା'ର ସାମାଜିକ ସତ୍ତା ମଧ୍ୟରୁ । ସାମାଜିକ ସତ୍ତାର ଅନ୍ତର୍ଗତ ହେଉଛି ଅର୍ଥନୈତିକ ସଂପର୍କରାଜି, ଯିଏକି ବୈଷୟିକ ସଂପଦର ଉତ୍ପାଦନ ମଧ୍ୟରେ ଗଠିତ ହୋଇଥାଏ । ଯେଉଁଠି ଶୋଷକ ଏବଂ ଶୋଷିତମାନେ ଥାଆନ୍ତି, ସେଠାରେ ସାମାଜିକ ସତ୍ତାରେ ପାର୍ଥକ୍ୟ ଦେଖାଯାଏ ।

ସାମାଜିକ ସତ୍ତା ସାମାଜିକ ଚେତନାକୁ ନିର୍ଦ୍ଧାରିତ କରେ । ବିଭିନ୍ନ ଶ୍ରେଣୀର ସାମାଜିକ ସତ୍ତା ଭିନ୍ନ ଭିନ୍ନ ହୋଇଥିବା ହେତୁ ସେସବୁର ସଦସ୍ୟମାନେ ସାମାଜିକ ବାସ୍ତବତାକୁ ଭିନ୍ନ ଭିନ୍ନ ଭାବେ ପ୍ରତିଫଳିତ କରିଥାନ୍ତି । ଦୃଷ୍ଟାନ୍ତ ସ୍ୱରୂପ, ବୁର୍ଜୁଆ ଚେତନା ମଣିଷ ଦ୍ୱାରା ମଣିଷର ଶୋଷଣ ଉପରେ ପ୍ରତିଷ୍ଠିତ ପୁଞ୍ଜିବାଦୀ ସଂପର୍କରାଜିକୁ ସମାଜର ସ୍ୱାଭାବିକ ଏବଂ ଏକମାତ୍ର ସମ୍ଭାବ୍ୟ ସଂପର୍କରାଜି ବୋଲି ବିଚାର କରେ । ଶୋଷିତ ଶ୍ରେଣୀମାନେ ସାମାଜିକ ସତ୍ତାକୁ ସଂପୂର୍ଣ୍ଣ ଭିନ୍ନ ଭାବେ ଦେଖିଥାନ୍ତି । ସର୍ବହରା ଚେତନା ପକ୍ଷରେ ପୁଞ୍ଜିବାଦୀ ବ୍ୟବସ୍ଥା ହେଉଛି ବ୍ୟକ୍ତିତ୍ୱର ଦମନ ଏବଂ ଧ୍ୱଂସସାଧନର ସମତୁଲ ଏବଂ ଇତିହାସରେ ଅକାମି ହୋଇ ପଡ଼ିଥିଲା ଭଳି । ତେଣୁ ତାକୁ ଏକ ବୈପ୍ଳବିକ ପଥରେ ସ୍ଥାନାନ୍ତରିତ କରିବା ଦରକାର । ପୁଞ୍ଜିବାଦୀ ବାସ୍ତବତା କିନ୍ତୁ କୃଷକମାନଙ୍କ ମନରେ ଅପୂର୍ବ ଭାବେ ପ୍ରତିଫଳିତ ହୋଇଥାଏ । ଏକ ଶ୍ରେଣୀ ହିସାବରେ କୃଷକମାନେ ସାମାଜିକ ସଂପର୍କରାଜି କ୍ଷେତ୍ରରେ ଏକ ବିରୋଧାତ୍ମକ ଅବସ୍ଥାନ ଗ୍ରହଣ କରିଥାନ୍ତି । ଏକ ଦିଗରେ ସେମାନେ ବ୍ୟକ୍ତିଗତ, ଅତି କ୍ଷୁଦ୍ର କ୍ଷୁଦ୍ର ସଂପତ୍ତି ସହିତ ସଂଯୁକ୍ତ ଏବଂ ଅନ୍ୟ ଦିଗରେ, ସେମାନେ ବିଶେଷ କରି ଗରିବ ଚାଷୀମାନେ ପୁଞ୍ଜିବାଦୀ ଶୋଷଣ ଦ୍ୱାରା ନିପୀଡ଼ିତ । କୃଷକର ଏହି ବିରୋଧାତ୍ମକ ଅବସ୍ଥାନ ତା'ର ସାମାଜିକ ଚେତନାକୁ ପ୍ରଭାବିତ କରିଥାଏ ଏବଂ ସେ ଚେତନା ହେଉଛି ଅନେକ ସମୟରେ ସଂଗଠିହୀନ ଏବଂ ଦୃଢ଼ତାହୀନ ଏବଂ ତାହା ସର୍ବହରାର ଆଉ ବୁର୍ଜୁଆର ଅବସ୍ଥାନ ମଧ୍ୟରେ, ବୈପ୍ଳବିକ ମନୋଭାବ ତଥା ନିଷ୍କ୍ରିୟତା ମଧ୍ୟରେ ଦୋଳାୟିତ ହେଉଥାଏ ।

ସଂକ୍ଷେପରେ କହିବାକୁ ଗଲେ, ସାମାଜିକ ଚେତନା ହେଉଛି ନିର୍ଦ୍ଦିଷ୍ଟ ଏକ ଶ୍ରେଣୀର ମତାବଳୀ, ଚିନ୍ତାରାଜି ଏବଂ ସାମାଜିକ ଅନୁଭୂତିର ସମାହାର, ଯିଏକି ସାମାଜିକ ସତ୍ତା ମଧ୍ୟରେ ପ୍ରତିଫଳିତ ହୋଇଥାଏ । ମଣିଷ ବାସ କରୁଥିବା ସମାଜର ଚେତନା ତା'ର ଆତ୍ମିକ ଜଗତକୁ ପ୍ରଭାବିତ କରିଥାଏ । ଏଥି ସଙ୍ଗେ ସଙ୍ଗେ ବ୍ୟକ୍ତିକ ଏବଂ ସାମାଜିକ ଚେତନା ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ମଧ୍ୟ ଅଛି ।

ସାମାଜିକ ଚେତନା ଭଳି, ବ୍ୟକ୍ତିକ ଚେତନା ମଧ୍ୟ ସାମାଜିକ ଭାବେ ନିର୍ଦ୍ଧାରିତ

# ସାମାଜିକ ଚେତନାର ଗଢ଼ଣ



ହୋଇଥାଏ, କିନ୍ତୁ ଏହା ଉଭୟ ବ୍ୟକ୍ତିକ ଏବଂ ସାମାଜିକ ସତ୍ତାକୁ ପ୍ରତିଫଳିତ କରିଥାଏ । ତେଣୁ କରି ନିର୍ଦ୍ଦିଷ୍ଟ ଏକ ବ୍ୟକ୍ତିର ଚେତନା ଏବଂ ସେ ଯେଉଁ ଶ୍ରେଣୀର ଅନ୍ତର୍ଗତ, ତା'ର ଚେତନା, ପରସ୍ପର ସହିତ ମିଳେ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ, ସର୍ବହରା ଚେତନାର ବିରୋଧୀ ଧର୍ମାନ୍ଧ ଆଉ ଜାତିଗତ ମତାବଳୀ ତୁଳନାମୂଳକ ଭାବେ ଅନେକ ଦିନ ପର୍ଯ୍ୟନ୍ତ କେତେକ ଶ୍ରମିକଙ୍କ ମଧ୍ୟରେ ରହିଥାଏ, ଯେଉଁସବୁ ଶ୍ରମିକ କୃଷକ ସଂପ୍ରଦାୟରୁ ଆସିଥାନ୍ତି । ତଦୁପରି ପ୍ରତ୍ୟେକ ଶ୍ରମିକର ମଧ୍ୟ ଶ୍ରେଣୀ ସଂହତିର ମନୋଭାବ ନଥାଏ । ଅନ୍ୟ ଦିଗରେ, ଧନୀ ସାମାଜିକ ସ୍ତରର କେତେକ ସଦସ୍ୟ (ବୁଦ୍ଧିଜୀବୀ ଏବଂ ମଧ୍ୟବିତ୍ତ ସଂପ୍ରଦାୟ) ମଧ୍ୟ ଶ୍ରମିକ ଶ୍ରେଣୀର ଅବସ୍ଥାନ, ତା'ର ଭାବାଦର୍ଶକୁ ଗ୍ରହଣ କରି ପାରନ୍ତି ।

ଏତଦ୍‌ବ୍ୟତୀତ ବ୍ୟକ୍ତିକ ଏବଂ ସାମାଜିକ ଚେତନା ମଧ୍ୟରେ ଆଉ କେତେକ ପାର୍ଥକ୍ୟ ରହିଛି । ବ୍ୟକ୍ତିକ ଚେତନା, ଏକ ମାନସିକ ପ୍ରକ୍ରିୟା ହିସାବରେ, ବ୍ୟକ୍ତି ସହିତ ଜନ୍ମ ନିଏ, ବିକାଶ ଲାଭ କରେ ଏବଂ ମୃତ୍ୟୁ ବରଣ କରେ । ତେଣୁ ଏହା ସମୟ ଏବଂ ଆକାର ଦୃଷ୍ଟିରୁ ସୀମିତ । ସାମାଜିକ ଚେତନା, ଅନ୍ୟ ଦିଗରେ, ସଂସ୍କୃତି (ଭାଷା, ଶିଳ୍ପକଳା, ଆଦି) ପରମ୍ପରା ମଧ୍ୟରେ ରୂପ ଲାଭ କରିଥାଏ, ପ୍ରତ୍ୟେକଟି ବଂଶଧରଠାରୁ ତା'ର ପରବର୍ତ୍ତୀ ବଂଶଧର ଉତ୍ତରାଧିକାର ସୂତ୍ରରେ ସେସବୁକୁ ଲାଭ କରିଥାନ୍ତି ଏବଂ ସେସବୁର ଆଧେୟ ସକଳ ନୂଆ ବଂଶଧର ଦ୍ୱାରା ସୁସଂଗତ ଭାବେ ସମୃଦ୍ଧ ହୋଇଥାଏ ।

ଆଉ ଏକ ପାର୍ଥକ୍ୟ ହେଉଛି, ଇତିପୂର୍ବରୁ ଆମେ ଯେଉଁ କଥାଟି ଉଲ୍ଲେଖ କରିଛେ, ବ୍ୟକ୍ତିକ ଚେତନାଟା କେବଳ ବ୍ୟକ୍ତିକ ଏବଂ ସାମାଜିକ ଚେତନା ସହିତ ପାରସ୍ପରିକ ଭାବେ ସଂଯୁକ୍ତ ନୁହେଁ, ଏହା ମଧ୍ୟ ବସ୍ତୁଗତ ଭାବେ ପ୍ରତିଷ୍ଠିତ ସାମାଜିକ ଚେତନା (ରାଜନୈତିକ ଭାବାଦର୍ଶ, ଧର୍ମ, ନୈତିକତା, ଆଦିର ପ୍ରଭାବଶାଳୀ ରୂପଗୁଡ଼ିକ) ସହିତ ସଂଯୁକ୍ତ । ସାମାଜିକ ଚେତନା କିନ୍ତୁ ସମାଜରେ ଜୀବନର ଭୌତିକ ଦିଗ ସହିତ ସଂଯୁକ୍ତ, ଯାହାକୁ ସେ ପ୍ରତିଫଳିତ କରିଥାଏ ।

ସର୍ବଶେଷରେ ସାମାଜିକ ଚେତନାକୁ ପରିଷ୍କାର ଭାବେ ନୈତିକତା, ଧର୍ମ, ରାଜନୈତିକ ଚେତନା, କଳା, ଦର୍ଶନ, ଆଦି ରୂପଗୁଡ଼ିକରେ ପୃଥକ୍ କରି ହୁଏ, କିନ୍ତୁ ବ୍ୟକ୍ତିକ ଚେତନା କ୍ଷେତ୍ରରେ ତାହା ହୋଇ ପାରେ ନାହିଁ ।

## ୮ — ସାମାଜିକ ମନସ୍ତତ୍ତ୍ୱ ଏବଂ ଭାବାଦର୍ଶ

ସାମାଜିକ ଚେତନାର କାର୍ଯ୍ୟାନୁଯାୟୀ ଏହାକୁ ବିଜ୍ଞାନ, ସାମାଜିକ ମନସ୍ତତ୍ତ୍ୱ ଏବଂ ଭାବାଦର୍ଶ ମଧ୍ୟରେ ଭାଗ ଭାଗ କରାଯାଇ ପାରେ । ବିଜ୍ଞାନ ଅବଗତିମୂଳକ କାର୍ଯ୍ୟ କରେ ଏବଂ ଏହା ହେଉଛି ପ୍ରାକୃତିକ ଏବଂ ସାମାଜିକ ପ୍ରପଞ୍ଚରାଜି ତଥା ସେସବୁର ନିୟମରାଜି

ଉପରେ ତାତ୍ତ୍ୱିକ ଭାବେ ପ୍ରତିଷ୍ଠିତ ବ୍ୟବସ୍ଥା (ପ୍ରାକୃତିକ ଏବଂ ସାମାଜିକ ବିଜ୍ଞାନରାଜି) । ଏହିସବୁ ମତବାଦ ଯଥେଷ୍ଟ ଭାବେ ବାସ୍ତବତାକୁ ପ୍ରତିଫଳିତ କରିଥାଏ । ସାମାଜିକ ମନସ୍ତତ୍ତ୍ୱ ହେଉଛି ଜନସାଧାରଣଙ୍କ ଅନୁଭୂତି, ଚିନ୍ତା, ମନୋଭାବ ଏବଂ ମତାମତର ବହୁବିଧ ବିଚକ୍ଷଣ ସମାହାର, ଯିଏକି ସେସବୁର ସାମାଜିକ ସତ୍ତାର ପ୍ରତିଫଳନ ହିସାବରେ ଦେଖା ଦେଇଥାଏ । ଗଣ ଚେତନାର ତୁଳନାମୂଳକ ଭାବେ ସ୍ଥାୟୀ ପ୍ରପଞ୍ଚରାଜି, ଯଥା, ଜାତୀୟ ପରମ୍ପରାରାଜି, ଆଗ୍ରହ ବ୍ୟବହାର ଏବଂ ଜାତୀୟ ଚରିତ୍ର ମଧ୍ୟ ସାମାଜିକ ମନସ୍ତତ୍ତ୍ୱର ଅନ୍ତର୍ଗତ । ସାମାଜିକ ମନସ୍ତତ୍ତ୍ୱ ମଧ୍ୟ ମୋଟାମୋଟି ଭାବେ ହେଉଛି ସାମାଜିକ ଘଟଣାରାଜିର, ଲୋକଙ୍କର ଆବେଗପୂର୍ଣ୍ଣ ଏବଂ ଅଭିଜ୍ଞତାସିଦ୍ଧ ଅନୁଭୂତି ଏବଂ ସେସବୁ ପ୍ରତି ସେମାନଙ୍କର ଦୃଷ୍ଟିକୋଣ । ଯେକୌଣସି ସାମାଜିକ କାର୍ଯ୍ୟକଳାପ ପାଇଁ ଏକ ଅନୁରୂପ ସାମାଜିକ ମାନସିକ ଅବସ୍ଥା (ଲୋକଙ୍କ ମନୋଭାବ, ଜନମତ, ସାମାଜିକ ଅନୁଭୂତି) ଅପରିହାର୍ଯ୍ୟ । ବିଭିନ୍ନ ଶ୍ରେଣୀ ତଥା ସାମାଜିକ ଗୋଷ୍ଠୀର ଥାଏ ନିଜସ୍ୱ ସାମାଜିକ ତଥା ମନସ୍ତାତ୍ତ୍ୱିକ ବୈଶିଷ୍ଟ୍ୟରାଜି । ଉତ୍ପାଦନରେ ପୁଞ୍ଜିବାଦୀ ସଂପର୍କରାଜିର ଅଭ୍ୟୁଦୟ ଏବଂ ପୁଞ୍ଜିବାଦର ଉତ୍ତରୋତ୍ତର ବିକାଶ ସ୍ୱାର୍ଥପରତା, କର୍ମୋଦ୍ୟମ ଏବଂ ମିତବ୍ୟୟିତା, ଲୋଲୁପତା, ନିର୍ମମ ନୃଶଂସତା, ମିଥ୍ୟା, ବ୍ୟକ୍ତିସର୍ବସ୍ୱତା, ଛଳନା, ଆଦି ବୁର୍ଜୁଆ ମନସ୍ତତ୍ତ୍ୱର ଲକ୍ଷଣରାଜିକୁ ଜନ୍ମ ଦେଇଥାଏ । ସର୍ବହରାର ଶ୍ରେଣୀ ମନସ୍ତତ୍ତ୍ୱ, ଅନ୍ୟ ଦିଗରେ, ସଂହତି, ଆନ୍ତର୍ଜାତିକତା, ସାଥୀସୁଲଭ ମନୋଭାବ, ମାନବିକ ମର୍ଯ୍ୟାଦା ପ୍ରତି ସମ୍ମାନ, ସମ୍ମିଳିତତା, ସଂଗଠନ ଓ ଶୃଙ୍ଖଳା, ଶୋଷକମାନଙ୍କ ପ୍ରତି ଶ୍ରେଣୀଗତ ଘୃଣା, ବୀରତ୍ୱ ଏବଂ ଆତ୍ମତ୍ୟାଗ, ଆଦି ଗୁଣରାଶି ଦିଗରୁ ଅସାଧାରଣ । ସାମାଜିକ ମନସ୍ତତ୍ତ୍ୱରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଆସନ ଲାଭ କରିଥାଏ ଜାତୀୟ ମର୍ଯ୍ୟାଦାବୋଧ ଏବଂ ଦେଶପ୍ରାଣତା । ଏହା ପ୍ରତ୍ୟେକ ଜାତିର ଇତିହାସରେ ଦେଖିବାକୁ ମିଳେ ।

ଭାବାଦର୍ଶ କିନ୍ତୁ ସାମାଜିକ ମନସ୍ତତ୍ତ୍ୱ ଭଳି ନୁହେଁ, ଏହା ହେଉଛି ତାତ୍ତ୍ୱିକ ଚେତନାର କ୍ଷେତ୍ର । ଏହା ସାମାଜିକ ଚେତନାକୁ ପ୍ରକାଶ କରେ, ତା'ର ଶ୍ରେଣୀଗତ ମର୍ମକୁ ତୀବ୍ରତାର ସହିତ ସମ୍ମୁଖକୁ ଘେନି ଆସେ । ସ୍ୱତଃସ୍ଫୂର୍ତ୍ତ ଭାବେ ଭାବାଦର୍ଶର ଆବିର୍ଭାବ ଘଟି ନଥାଏ, ଏହା ଦେଖା ଦେଇଥାଏ ନିର୍ଦ୍ଦିଷ୍ଟ ଏକ ଶ୍ରେଣୀର ସାମାଜିକ ସତ୍ତାର ତାତ୍ତ୍ୱିକ ଅବଗତି ମଧ୍ୟରୁ, ତା'ର ପ୍ରତିନିଧି – ଭାବାଦର୍ଶବାଦୀମାନଙ୍କ ଦ୍ୱାରା । ଉପରେ ଆମେ ଯେଉଁ ଭାବେ ଉଲ୍ଲେଖ କରିଛେ, ସେଇଭଳି ଭାବାଦର୍ଶବାଦୀମାନେ ବି ଅନ୍ୟ ଶ୍ରେଣୀର ଲୋକ ହୋଇ ପାରନ୍ତି, ଯେଉଁମାନେ କି ଅନୁଭବ କରନ୍ତି ଯେ, ପ୍ରତିଷ୍ଠିତ ବ୍ୟବସ୍ଥା ଐତିହାସିକ ଭାବେ ଧ୍ୱଂସ ହେବାକୁ ବାଧ୍ୟ । ସେମାନେ ଅଗ୍ରଣୀ ସାମାଜିକ ଶକ୍ତିସମୂହର ଅବସ୍ଥାନକୁ ଚାଲି ଆସିଥାନ୍ତି । ଭାବାଦର୍ଶ ଦାର୍ଶନିକ, ରାଜନୈତିକ, ଧର୍ମୀୟ ଏବଂ ଅନ୍ୟାନ୍ୟ ମତର ଏକ ବ୍ୟବସ୍ଥା ହିସାବରେ କାର୍ଯ୍ୟ କରିଥାଏ । ତା'ର ନିର୍ଦ୍ଧାରଣମୂଳକ ଉପାଦାନରାଜି ହେଉଛି ଏକ ଶ୍ରେଣୀର ମୌଳିକ ସ୍ୱାର୍ଥରାଜି, ତା'ର ମୌଳିକ ଆତ୍ମିକ ମୂଲ୍ୟବୋଧ, ଜଗତ ପ୍ରତି ତା'ର ଆଭିମୁଖ୍ୟକୁ ପ୍ରକାଶ କରୁଥିବା ଚିନ୍ତାରାଜି ଏବଂ ତା'ର ସାମାଜିକ

କ୍ରିୟାକଳାପର କର୍ମସୂଚୀ (ଶ୍ରେଣୀଗତ ଲକ୍ଷ୍ୟ, ଆଦର୍ଶ ଏବଂ ଧ୍ୱନି) । ଉଦାହରଣ ସ୍ୱରୂପ, ସଂପ୍ରତି କେତେ ବର୍ଷ ଧରି କେତେକ ପ୍ରାଚ୍ୟ ଦେଶ ଇସ୍‌ଲାମୀ ଧ୍ୱନି ଦେବାରେ ସକ୍ରିୟ ହୋଇ ଉଠିଛନ୍ତି । କମ୍ୟୁନିଷ୍ଟମାନେ ଇସ୍‌ଲାମ ବା ଅନ୍ୟ ଯେକୌଣସି ଧର୍ମ ପ୍ରଚାରକାରୀ ଲୋକଙ୍କର ଧର୍ମୀୟ ବିଶ୍ୱାସକୁ ସମ୍ମାନ ପ୍ରଦର୍ଶନ କରନ୍ତି । ମୁଖ୍ୟ କଥାଟି, ଅବଶ୍ୟ, ହେଉଛି ବିଭିନ୍ନ ଧ୍ୱନି ଦେଉଥିବା ବିଭିନ୍ନ ଶକ୍ତିମାନଙ୍କର ଲକ୍ଷ୍ୟ କ'ଣ । ଧର୍ମୀୟ ଧ୍ୱନି ମଧ୍ୟ ମୁକ୍ତି ସଂଗ୍ରାମକୁ ଅନୁପ୍ରାଣିତ କରି ପାରେ, କିନ୍ତୁ ଇତିହାସରେ ଏଭଳି ଦୃଷ୍ଟାନ୍ତ ଦେଖିବାକୁ ମିଳେ ଯେ, ପ୍ରତିକ୍ରିୟାଶୀଳ ଶକ୍ତିମାନେ ଧର୍ମୀୟ ଧ୍ୱନିକୁ, ବିଶେଷ କରି, ଇସ୍‌ଲାମ ଧ୍ୱନିକୁ ସେମାନଙ୍କ ସୁବିଧାରେ ବ୍ୟବହାର କରିଥାନ୍ତି । ତେଣୁ ଧର୍ମୀୟ ଧାରଣାରାଜିର ମୂଲ୍ୟାୟନ କରିବାକୁ ଗଲାବେଳେ ନିର୍ଦ୍ଦିଷ୍ଟ ଆନ୍ଦୋଳନଟିର ପ୍ରକୃତ ଆଧେୟକୁ ଜାଣିବାକୁ ହେବ । ଭାବାଦର୍ଶ ଯେଉଁ ସାମାଜିକ ଶକ୍ତିର ଚେତନାକୁ ପ୍ରକାଶ କରେ, ତା ଉପରେ ନିର୍ଭର କରି ଏହା ସର୍ବହରା (ସମାଜବାଦୀ), ବୁର୍ଜୁଆ, ସାମ୍ରାଜ୍ୟବାଦୀ, ପେଟି-ବୁର୍ଜୁଆ, କୃଷକ, ସାମନ୍ତବାଦୀ, ଆଦି ହୋଇଥାଏ ।

ଭାବାଦର୍ଶ ଏବଂ ବିଜ୍ଞାନ ମଧ୍ୟରେ ସଂପର୍କ ବିଷୟରେ ଗୋଟିଏ ବିଶେଷ କଥା ଉଲ୍ଲେଖ କରିବା ଦରକାର । ଅନେକ ସମୟରେ ସେମାନଙ୍କ ମଧ୍ୟରେ – ଶ୍ରେଣୀ ସ୍ୱାର୍ଥ ଏବଂ ଅଣଶ୍ରେଣୀଗତ ସତ୍ୟରେ ଅସଂଗତି କଥା କୁହାଯାଇଥାଏ । କିନ୍ତୁ ଏ କ୍ଷେତ୍ରରେ ସମାଜବାଦୀ ଏବଂ ବୁର୍ଜୁଆ ଭାବାଦର୍ଶର ଆଧେୟ ମଧ୍ୟରେ ଥିବା ପାର୍ଥକ୍ୟକୁ ଇଚ୍ଛାକୃତ ଭାବେ ଗୋପନ ରଖା ଯାଇଥାଏ । ଆମେ ଯଦି ଶ୍ରମିକ ଶ୍ରେଣୀ କଥା ଧରେଁ – ଯେଉଁମାନଙ୍କର ସ୍ୱାର୍ଥରାଜି ସାମାଜିକ ଅଗ୍ରଗତିର ବସ୍ତୁଗତ ନିୟମବଦ୍ଧତା ଏବଂ ପ୍ରବଣତାରାଜି ସହିତ ସଂଗତିଶୀଳ – ଏହା ଗଭୀର ଭାବେ ବିଜ୍ଞାନସମ୍ମତ । ଶ୍ରମିକ ଶ୍ରେଣୀର ଭାବାଦର୍ଶ ହେଉଛି ମାର୍କସ୍‌ବାଦ-ଲେନିନ୍‌ବାଦ । ଏହାର ସତ୍ୟତା ଆଧୁନିକ ଇତିହାସର ଗତିଧାରା ଦ୍ୱାରା ସଂପୂର୍ଣ୍ଣ ରୂପେ ସମର୍ଥିତ ହୋଇଛି ।

ସାମାଜିକ ଚେତନାର ସାମାଜିକ-ମନସ୍ତାତ୍ତ୍ୱିକ ଏବଂ ଭାବାଦର୍ଶଗତ ଉପାଦାନଗୁଡ଼ିକ ବ୍ୟକ୍ତି ମଣିଷର ମନୋଗତ ଜଗତକୁ ପ୍ରଭାବିତ କରିଥାଏ । ବ୍ୟକ୍ତିଗତ ଚେତନା ତେଣୁ ଏକ ବହୁ ପରିସରୀୟ ପ୍ରପଞ୍ଚ ଏବଂ ଏହା ସମସ୍ତ ଲୋକଙ୍କ କ୍ଷେତ୍ରରେ ସାଧାରଣ ଉପାଦାନରାଜି – ଚିନ୍ତନ, ମନୋବଳ, ଆବେଗ, ଆଦି ସମେତ ଶ୍ରେଣୀଗତ ବିଶ୍ୱାସ, ସାମାଜିକ ଆଦର୍ଶ, ନୈତିକ ମାନ, ଧର୍ମୀୟ ବିଶ୍ୱାସ, ବିଶ୍ୱଦୃଷ୍ଟିକୋଣ ଚିନ୍ତାରାଜି, ଆଦି ରୂପରେ ସାମାଜିକ ଚେତନାର ଉପାଦାନଗୁଡ଼ିକୁ ନେଇ ଗଠିତ । ପ୍ରାଣୀମାନଙ୍କ ମନସ୍ତତ୍ତ୍ୱ କ୍ଷେତ୍ରରେ ଯେଉଁଟା ଘଟେ ନାହିଁ, ମଣିଷର ସେହି ଚେତନାକୁ ତେଣୁ ସଠିକ ଭାବେ ବୁଝି ହୁଏ ନାହିଁ କେବଳ ସାର୍ବିକ ମାନବୀୟ ଗଢ଼ଣକୁ ଲକ୍ଷ୍ୟ କରି । ନିର୍ଦ୍ଦିଷ୍ଟ ଏକ ସମାଜ ବା ଶ୍ରେଣୀର ସଦସ୍ୟ ହିସାବରେ ମଣିଷର ଚେତନାର ବୈଶିଷ୍ଟ୍ୟଗୁଡ଼ିକୁ ବ୍ୟାଖ୍ୟା କରିବା ଆବଶ୍ୟକ । ଉଦାହରଣ ସ୍ୱରୂପ, ବୁର୍ଜୁଆ ଏବଂ ସର୍ବହରାର ଚେତନା ସେମାନଙ୍କ ଜ୍ଞାନ, ଚିନ୍ତନର ଯୁକ୍ତିଯୁକ୍ତତା ବା ଅବଗତି ଦିଗରୁ ପୃଥକ୍ ପୃଥକ୍ ନହୋଇ ସେମାନଙ୍କ

ସ୍ୱାର୍ଥ, ବିଶ୍ୱଦୃଷ୍ଟିକୋଣ, ଭାବାଦର୍ଶଗତ ବିଶ୍ୱାସ, ମୂଲ୍ୟବୋଧ ଏବଂ ରାଜନୈତିକ ଆଭିମୁଖ୍ୟ ଦିଗରୁ ପୃଥକ୍ ପୃଥକ୍ ହୋଇଥାଏ ।

## ୯ – ମଣିଷର ମନରେ ଅବଚେତନ ଉପାଦାନ

ବ୍ୟକ୍ତିଗତ ଚେତନା ଏବଂ ସାମାଜିକ ଚେତନା ମଧ୍ୟରେ ଉପରୋକ୍ତ ସ୍ପଷ୍ଟୀକରଣ ଦ୍ୱାରା "ଚେତନା" ଏବଂ "ମନ"ର ଅବଧାରଣା ମଧ୍ୟରେ ସୀମା ନିର୍ଦ୍ଧାରଣ କରିବା ସମ୍ଭବ । ମଣିଷର ସମଗ୍ର ମନ, ଅବଶ୍ୟ, ଚେତନା ନୁହେଁ । ଏଥିରେ ମଧ୍ୟ ଥାଉରି କେତେକ ପ୍ରପଞ୍ଚ ଥାଏ, ଯିଏକି ମଣିଷର ପ୍ରଜ୍ଞା ବା ଇଚ୍ଛା ମଧ୍ୟ ଦେଇ ଗତି କରେ ନାହିଁ, ଅର୍ଥାତ୍, ସେସବୁ ସଂପର୍କରେ ସେ ସଚେତନ ନୁହେଁ । ଅବଚେତନା, ବା ମଣିଷ ମନର ଚେତନାହୀନତା ତା'ର ଅନୁଭୂତି ଏବଂ ଅଭୀପ୍ସା, ମନସ୍ତାତ୍ତ୍ୱିକ ଅଭିପ୍ରାୟ, ସ୍ୱୟଂଚାଳିତ ଆଚରଣ ଏବଂ ଦକ୍ଷତା, ଏବଂ ଆତ୍ମବୋଧ, ସ୍ୱପ୍ନ ଏବଂ ସ୍ୱତଃପ୍ରଣୋଦିତ କାର୍ଯ୍ୟକଳାପକୁ ନେଇ ଗଠିତ । ଏସବୁ ମଧ୍ୟରୁ କୌଣସିଟି ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଚିନ୍ତନ ଦ୍ୱାରା ନିୟନ୍ତ୍ରିତ ନୁହେଁ । ଏହିସବୁ ମାନସିକ ପ୍ରପଞ୍ଚରାଜି ମଣିଷର ଜୀବନରେ ଗୁରୁତ୍ୱପୂର୍ଣ୍ଣ, କାରଣ ସେମାନେ ତା'ର ଚେତନାକୁ ଧାରାବାହିକ ଚାପରୁ ମୁକ୍ତ ରଖନ୍ତି, ଯେତେବେଳେ ତା'ର ସେସବୁ ଆବଶ୍ୟକ ନଥାଏ । ତା' ସତ୍ତ୍ୱେ ବି ମଣିଷର ଆତ୍ମିକ ଜୀବନରେ ସେସବୁର ଗୁରୁତ୍ୱକୁ ବେଶି କରି ଦେଖିଲେ ଚଳିବ ନାହିଁ, ଯେପରି ଅଯୁକ୍ତିବାଦୀ ଏବଂ ଫ୍ରଏଡ୍‌ପନ୍ଥୀମାନେ କରିଥାନ୍ତି । ଅଯୁକ୍ତିବାଦୀମାନେ ଜଗତକୁ ଅବଗତ ହେବାରେ ପ୍ରଜ୍ଞାର ଭୂମିକାକୁ ନ୍ୟୁନ କରି ଦେଖନ୍ତି ବା ଅସ୍ୱୀକାର କରନ୍ତି । ସେମାନେ ଅବଗତିକୁ ଏକ ରହସ୍ୟପୂର୍ଣ୍ଣ ଆଲୋକୀକରଣ ବା ଚେତନାହୀନ ଆତ୍ମବୋଧ ବୋଲି ମନେ କରନ୍ତି । ପ୍ରାୟ ଖ୍ରୀଷ୍ଟପୂର୍ବ ଦୁଇ ଶହ ବର୍ଷ ଆଗେ ଯୋଗ ଦର୍ଶନର ପ୍ରତିଷ୍ଠାତା ପାତଞ୍ଜଳୀ ଚେତନାହୀନତାକୁ ଜ୍ଞାନର ସର୍ବୋଚ୍ଚ ସ୍ତର ବୋଲି ମତ ଦେଇଥିଲେ । ସେ ତାଙ୍କ ଦର୍ଶନର ମୌଳିକ ଉଦ୍ଦେଶ୍ୟକୁ "ମନର କାର୍ଯ୍ୟକଳାପକୁ ସୀମିତ" କରିବା ବୋଲି ବ୍ୟାଖ୍ୟା କରିଥିଲେ । ପାତଞ୍ଜଳୀଙ୍କ ମତରେ, ଯୋଗୀର ସର୍ବୋଚ୍ଚ, ଶୀର୍ଷତମ ଏବଂ ପ୍ରତ୍ୟକ୍ଷ ଅବସ୍ଥାନ ହେଉଛି ପ୍ରଶାନ୍ତି, ଯେତେବେଳେ ମନ କୌଣସି ବିଷୟରେ ନିବଦ୍ଧ ନରହି ନିଜର ପ୍ରକୃତି ମଧ୍ୟରେ ନିମଜ୍ଜମାନ ହୁଏ ଏବଂ ଚେତନାବର୍ଜିତ ହୋଇ ପଡ଼େ । ଏହି ଯୁକ୍ତିବିବର୍ଜିତ ଅବସ୍ଥାନକୁ ବହୁ ଦାର୍ଶନିକ, ବିଶେଷ କରି ଅସ୍ତିତ୍ୱବାଦୀ, ନିତ୍‌ଜ୍‌ଷିଆନ୍‌ମାନେ ଗ୍ରହଣ କରିଥାନ୍ତି ।

ଫ୍ରଏଡୀୟ ତତ୍ତ୍ୱ ଏବଂ ମନସ୍ତାତ୍ତ୍ୱିକ ବିଶ୍ଲେଷଣ ଏବେ ଅଚେତନ ମନ ସଂପର୍କରେ ଏକ ଖୁବ୍ ଜନପ୍ରିୟ ବୁର୍ଜୁଆ ମତବାଦ । ଅଷ୍ଟ୍ରିୟାର ଅଧିବାସୀ ମନସ୍ତତ୍ତ୍ୱବିଦ୍ ସିଗ୍‌ମଣ୍ଡ ଫ୍ରଏଡ୍ (୧୮୫୬-୧୯୩୯) ତାଙ୍କର ଅଚେତନ ମନସ୍ତାତ୍ତ୍ୱିକ ପ୍ରପଞ୍ଚରାଜି ସଂପର୍କିତ କୃତିରାଜି ପାଇଁ ସୁପରିଚିତ । ସେ ଜଣେ ମାନସିକ ରୋଗୀକୁ ସାହାଯ୍ୟ କରିବାକୁ ଯାଇ

ଚିକିତ୍ସାର ଏକ ଅତି କାର୍ଯ୍ୟକର ପଦ୍ଧତି ପ୍ରସ୍ତାବ କରିଥିଲେ ଏବଂ ସେଥିରୁ ଏଭଳି ଅଭିଜ୍ଞତା ଲାଭ କରିଥିଲେ ଯେ, ଯାହା ପ୍ରଥମେ ତାଙ୍କୁ ଜଣା ନଥିଲା । ଏଥି ସଙ୍ଗେ ସଙ୍ଗେ ସେ ଯୁକ୍ତିହୀନ ଭାବେ ଚେତନାହୀନତାକୁ ମଣିଷର ସମସ୍ତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକର୍ମର ନିର୍ଦ୍ଧାରକ କାରଣ ବୋଲି ବ୍ୟାଖ୍ୟା ମଧ୍ୟ କରିଥିଲେ । ସେ ମଣିଷର ଆଚରଣ, କାର୍ଯ୍ୟକଳାପର ମୂଳ ନିର୍ଦ୍ଧାରକ ରୂପେ ତା'ର ଚିନ୍ତନ, ପ୍ରଜ୍ଞା ଏବଂ ସାମାଜିକ ଅନୁଭବତାକୁ ବିଗ୍ଭର ନକରି ତା'ର ସହଜାତ ପ୍ରକୃତି ତଥା କ୍ଷୁଧାକୁ (ସର୍ବୋପରି ଯୌନକ୍ଷୁଧା) ବିଗ୍ଭର କରିଥିଲେ । ସେ ମଧ୍ୟ ଏ କଥା ବିଶ୍ୱାସ କରୁଥିଲେ ଯେ ପ୍ରବୃତ୍ତି କେବଳ ବ୍ୟକ୍ତିଗତ ଚରିତ୍ର ଏବଂ ଆଚରଣକୁ ନିର୍ଦ୍ଧାରିତ କରେ ନାହିଁ, ସଂସ୍କୃତି, କଳା, ବିଜ୍ଞାନ, ଆଦି ଭଳି ସାମାଜିକ ପ୍ରପଞ୍ଚରାଜିକୁ ନିର୍ଦ୍ଧାରିତ କରିଥାଏ । ଫ୍ରଏଡ୍‌ଙ୍କ ମତବାଦଟି ମୋଟାମୋଟି ଭାବେ ଭ୍ରାନ୍ତିମୂଳକ, ଏହି ମତବାଦର ମାନବ ମନ ସଂପର୍କିତ ମତଟି ଏକଦିଗଦର୍ଶୀ ଜୈବିକ ଆଭିମୁଖ୍ୟ ଦ୍ୱାରା ପ୍ରପୀଡ଼ିତ । ବ୍ୟକ୍ତି ଉପରେ ସାମାଜିକ କାରଣରାଜି ପକାଉଥିବା ନିର୍ଦ୍ଧାରକ ପ୍ରଭାବକୁ ସେ ପ୍ରତ୍ୟାଖ୍ୟାନ କରି ଚେତନାହୀନତାକୁ ମନର ସ୍ୱାଧୀନ ଭିତ୍ତି ବୋଲି ଉପସ୍ଥାପିତ କରିଥିଲେ । ଚେତନାହୀନ ପ୍ରପଞ୍ଚରାଜି, ଅବଶ୍ୟ, ସାମାଜିକ ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ମଣିଷର ଆବଶ୍ୟକୀୟ ସ୍ଥିତିରୁ ଜାତ ଏକ ମାନବିକ ମନର ଉପାଦାନ ହିସାବରେ କାର୍ଯ୍ୟ କରିଥାଏ । ତେଣୁ କରି ମଣିଷର ମନ ହେଉଛି ସମାଜ ସଙ୍ଗେ ଏବଂ ତା ନିଜ ସହିତ (ଆତ୍ମସଚେତନତା) ବ୍ୟକ୍ତିର ସଂପର୍କକୁ କାର୍ଯ୍ୟକର କରିବା ସହିତ ସମାନ । ମଣିଷ ହେଉଛି ପ୍ରଥମତଃ ଏକ ସଚେତନ ପ୍ରାଣୀ । ସମାଜରେ ତା'ର କାର୍ଯ୍ୟକଳାପକୁ ତା'ର ଗୋପନ ପାଶବିକ ପ୍ରବୃତ୍ତିରାଜି ନିୟନ୍ତ୍ରିତ କରେ ନାହିଁ, କରେ ତା'ର ପ୍ରଜ୍ଞା, ତା'ର ବିଶ୍ୱଦୃଷ୍ଟିକୋଣ ଏବଂ ଆତ୍ମିକ ମୂଲ୍ୟବୋଧ, ନୈତିକ ମାନ, ଜୀବନର ଅର୍ଥ ଏବଂ ରାଜନୈତିକ ଆଦର୍ଶରାଜି ସଂପର୍କରେ ତା'ର ଆଭିମୁଖ୍ୟ । ଏହି ଆଭିମୁଖ୍ୟ ରୂପ ପରିଗ୍ରହ କରିଥାଏ ସମାଜରେ ମଣିଷର ଜୀବନକାଳ ମଧ୍ୟରେ ଏବଂ ନିର୍ଦ୍ଧାରିତ ହୋଇଥାଏ ବିଶେଷ ସାମାଜିକ ଅବସ୍ଥାରାଜି ଦ୍ୱାରା ।

ମନ ହେଉଛି ମୂଳତଃ ଅଚେତନ – ଫ୍ରଏଡ୍‌ଙ୍କର ଏହି ବ୍ୟାଖ୍ୟା ସମାଜରେ ଚିନ୍ତାରାଜିର ଭୂମିକାର ସଠିକ ମୂଲ୍ୟାୟନକୁ ପ୍ରତ୍ୟାଖ୍ୟାନ କରିଥାଏ । ଚେତନାର ବିକୃତ ବସ୍ତୁବାଦୀ ମତ ଭଳି ଏହା ଅଗ୍ରହଣୀୟ ।

## ୧୦ – ଚେତନାର ସୃଜନଶୀଳ ଶକ୍ତି

ଚେତନା ବସ୍ତୁଗତ ଜଗତର ପ୍ରତିଫଳନ ରୂପେ କାର୍ଯ୍ୟ କରିଥାଏ । ଭାବବାଦର ବିପରୀତରେ ଏହିଠାରୁ ଚେତନାର ବସ୍ତୁବାଦୀ ଅବଧାରଣାର ଯାତ୍ରା ଆରମ୍ଭ ହୋଇଥାଏ । ଭାବବାଦ ଆଦର୍ଶ ପ୍ରପଞ୍ଚରାଜିକୁ ରହସ୍ୟମୟ କରି ଦିଏ ମାନବ ମସ୍ତିଷ୍କଠାରୁ ସ୍ୱାଧୀନ

ଅଧିଭୌତିକ ସତ୍ତା ରୂପେ ସେସବୁକୁ ବିଗ୍ରହ କରି । ବାସ୍ତବ କ୍ଷେତ୍ରରେ, ଅବଶ୍ୟ, ଚେତନାର ଅନପେକ୍ଷ ସ୍ୱାଧୀନତା ବୋଲି କିଛି ନାହିଁ । ଦୃଷ୍ଟାନ୍ତ ସ୍ୱରୂପ, ସାମାଜିକ ସତ୍ତାରେ ପରିବର୍ତ୍ତନ ଉଲ୍ଲେଖନୀୟ ଭାବେ ମଣିଷର ମତାବଳୀ ଏବଂ ମନକୁ ପ୍ରଭାବିତ କରିଥାଏ । ଭାରତୀୟ ଗ୍ରାମାଞ୍ଚଳରେ ସାମାଜିକ ସତ୍ତାରେ କେତେକ ପରିବର୍ତ୍ତନ ଘଟିଛି, ଉଦାହରଣ ସ୍ୱରୂପ, ନୂତନ କୃଷିଖମାର କାରୁବିଜ୍ଞାନର ପ୍ରଚଳନ ଏବଂ ଉଚ୍ଚ ଫଳନକ୍ଷମ ଧାନ ଆଉ ଗହମ ଚାଷ ଫଳରେ । ଫସଲ ଫଳନ ବୃଦ୍ଧି କ୍ଷେତ୍ରରେ "ସବୁଜ ବିପ୍ଳବ" ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ପ୍ରଭାବ ପକାଇଛି । ଏଥି ସଙ୍ଗେ ସଙ୍ଗେ ଏହା ବିଭିନ୍ନ ଅଞ୍ଚଳ ମଧ୍ୟରେ ଅସମବିକାଶକୁ ବଢ଼ାଇ ଦେଇଛି ଏବଂ ଗ୍ରାମାଞ୍ଚଳରେ ସାମାଜିକ ବିଭେଦକୁ ତୀବ୍ର କରିଛି । କୃଷିର ନୂତନ କାରୁବିଜ୍ଞାନ ଏବଂ ଆଧୁନିକୀକରଣ ପାଇଁ ଦରକାର ପ୍ରଚଳିତ ଜଳସେଚନ ବ୍ୟବସ୍ଥାର ପୁନର୍ଗଠନ । ଛୋଟ ଛୋଟ ଜଳସେଚନ ବ୍ୟବସ୍ଥା ଦ୍ରୁତ ଗତିରେ ବୃଦ୍ଧି ପାଇଛି ଏବଂ ସାର ଆଉ ଯନ୍ତ୍ର ଆଉରି ବ୍ୟାପକ ଭାବେ ବ୍ୟବହୃତ ହେଉଛି । ଏବେ ଭାରତର କୃଷି କ୍ଷେତ୍ରରେ ୨ ଲକ୍ଷରୁ ଅଧିକ ଟ୍ରାକ୍ଟର କାମ କରୁଛି । କିନ୍ତୁ ଏହି ନୂତନ କାରୁକୌଶଳର ଉପଯୋଗ କେବଳ କରୁଛନ୍ତି ଜମିଦାର ଏବଂ ଧନୀ ଚାଷୀମାନେ । ତେଣୁ "ସବୁଜ ବିପ୍ଳବ" ଫଳରେ ଆଉରି ଦରିଦ୍ରତା ବୃଦ୍ଧି ପାଉଛି ଏବଂ ଚାଷୀମାନେ ସର୍ବସ୍ୱାନ୍ତ ହେଉଛନ୍ତି ଏବଂ କୃଷି ଉପରେ ନିର୍ଭରଶୀଳ ଜନସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି; ଏହା ବେକାରି ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଅଧିକ ପରିମାଣରେ ଭଡ଼ାଟିଆ ମଜୁରିଆ ଆବଶ୍ୟକ କରୁଛି । ଏହା ଛଡ଼ା ଭାରତର ଗ୍ରାମାଞ୍ଚଳରେ ମୁଦ୍ରା-ପଣ୍ୟ ସଂପର୍କର ବିକାଶ ତ୍ୱରାନ୍ୱିତ ହୋଇ ଚାଲିଛି । ଏ ସମସ୍ତର ପ୍ରତିଫଳନ ଘଟୁଛି ଲୋକଙ୍କର ଚେତନା ମଧ୍ୟରେ । "ସବୁଜ ବିପ୍ଳବ" ଗ୍ରାମାଞ୍ଚଳର ସମସ୍ତ ସ୍ତରର ଲୋକଙ୍କର ସାମାଜିକ ଚେତନାରେ ପରିବର୍ତ୍ତନ ଘଟାଇଛି । ଶହ ଶହ ବର୍ଷ ଧରି ସୃଷ୍ଟ ପାରମ୍ପରିକ କୃଷି ପଦ୍ଧତିର ଧ୍ୱଂସସାଧନ ଏବଂ ନୂତନ କାରୁକୌଶଳର ଆବଶ୍ୟକତା କୃଷି ତଥା କୃଷକ ସଂପ୍ରଦାୟର ବିକାଶର ସମ୍ଭାବନା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ସମସ୍ୟାରାଜିକୁ ଜନ୍ମ ଦେଉଛି । ଘଟି ଚାଲିଥିବା ସାମାଜିକ ପରିବର୍ତ୍ତନ ଗ୍ରାମାଞ୍ଚଳର ସର୍ବହରା ଆଉ ଚାଷୀମାନଙ୍କ ମନରେ ଏହି ହୃଦ୍‌ବୋଧତା ଆଣୁଛି ଯେ, ପୁଞ୍ଜିବାଦୀ ବିକାଶର "କାର୍ଯ୍ୟକାରିତା" ସଂପର୍କରେ ବୁର୍ଜୁଆ ଚିନ୍ତାଟା ହେଉଛି ଭୁଲ, ଏବଂ ଗ୍ରାମାଞ୍ଚଳର ଜନସାଧାରଣ ଏ କଥା ମଧ୍ୟ ଅନୁଭବ କରିବାକୁ ଆରମ୍ଭ କଲେଣି ଯେ, ସେମାନଙ୍କ ମୌଳିକ ସ୍ୱାର୍ଥ ପୁଞ୍ଜିବାଦୀ ପରିପ୍ରେକ୍ଷିତ ସହିତ ସଂଗତିଶୀଳ ନୁହେଁ ।

ଏହି ଭାବେ ଚେତନା ହେଉଛି ସାମାଜିକ ସତ୍ତାର ପ୍ରତିଫଳନ ଏବଂ ତା'ଠାରୁ ଗୌଣ ଏବଂ ସେଥିରୁ ଜାତ । ଏଥି ସଙ୍ଗେ ସଙ୍ଗେ ପ୍ରତିଫଳନ ପ୍ରକ୍ରିୟା ଏବଂ ଚେତନାର ସୃଜନାତ୍ମକ କାର୍ଯ୍ୟକଳାପ ମଧ୍ୟରେ ତୀବ୍ର ପାର୍ଥକ୍ୟର ରେଖା ଟାଣିବାଟା ମଧ୍ୟ ଭୁଲ ହେବ, ଯାହାକୁ ଭାବବାଦୀମାନେ ଅନପେକ୍ଷ ବୋଲି ବିଗ୍ରହ କରିଥାନ୍ତି । ଚତୁର୍ପାର୍ଶ୍ୱସ୍ଥ ଜଗତକୁ ନିର୍ବାଚିତ ଭାବେ ପ୍ରତିଫଳିତ କରିବା ପାଇଁ କାର୍ଯ୍ୟକଳାପ ବା କ୍ରିୟାଶୀଳତା ହେଉଛି ସମସ୍ତ ଜୀବନ୍ତ ପ୍ରାଣୀମାନଙ୍କର ଧର୍ମ । ଏହା ସେମାନେ କରିଥାନ୍ତି

# ଚେତନାର କ୍ରିୟାକଳାପ

## ଅଧିବିଦ୍ୟାବାଦୀ ବସ୍ତୁବାଦ




ଚେତନା ହେଉଛି ଜଗତ ସଂପର୍କରେ
ନିଷ୍କ୍ରିୟ ଚିନ୍ତନ

## ଭାବବାଦ




ଭାବବାଦ ଚେତନାର କାର୍ଯ୍ୟକଳାପକୁ ଏକ ଉଦ୍ଭଟ
ସିଦ୍ଧାନ୍ତ ରୂପେ ଅତ୍ୟୁକ୍ତି କରି କହେ –
ଚେତନା ହେଉଛି ଜଗତର ସ୍ରଷ୍ଟା

## ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ




"ମଣିଷର ଚେତନା କେବଳ ଜଗତକୁ
ପ୍ରତିଫଳିତ କରେ ନା , ଏହାକୁ ସୃଷ୍ଟି କରେ... ।"
"ଜଗତ ମଣିଷକୁ ସନ୍ତୁଷ୍ଟ କରି ପାରେ ନା
ଏବଂ ମଣିଷ ସ୍ଥିର କରେ ତା'ର କାର୍ଯ୍ୟକଳାପ
ଦ୍ୱାରା ତାକୁ ପରିବର୍ତ୍ତନ କରିବାକୁ ।"

— ଲେନିନ୍

"ଏହା ହେଉଛି ନିର୍ଦ୍ଦିଷ୍ଟ ଭାବେ ମଣିଷ ଦ୍ୱାରା
ପ୍ରକୃତିର ପରିବର୍ତ୍ତନ – କେବଳ ପ୍ରକୃତି ହିସାବରେ
ନୁହଁ , ଏହା ହେଉଛି ଖୁବ୍ ପ୍ରୟୋଜନୀୟ ଏବଂ
ମଣିଷ ଚେତନାର ପ୍ରତ୍ୟକ୍ଷ ଭିତ୍ତି । ମଣିଷ
ପ୍ରକୃତିକୁ ପରିବର୍ତ୍ତନ କରିବାକୁ ଶିଖିଛି ଏବଂ
ତା'ର ଚେତନାରେ ଅଭିବୃଦ୍ଧି ଘଟିଛି – ଏହା ହେଉଛି
ତା'ର ମାପକାଠି ।"

— ଏଙ୍ଗେଲସ୍

ବାହ୍ୟିକ ପ୍ରଭାବର ଚରିତ୍ର ସହିତ ସେମାନଙ୍କ ଆଚରଣକୁ ପାରସ୍ପରିକ ଭାବେ ଯୁକ୍ତ କରି । ମଣିଷ ମଧ୍ୟରେ ପ୍ରତିଫଳନର ସକ୍ରିୟ ଚରିତ୍ର ମୌଳିକ ଭାବେ ନୂତନ ରୂପ ଗ୍ରହଣ କରୁଛି । ମାନବ ଚେତନାର ଶେଷ ଲକ୍ଷ୍ୟ ଓ କାର୍ଯ୍ୟ ନୁହେଁ କେବଳ ଜଗତ ସଂପର୍କରେ ତଥ୍ୟ ସଂଗ୍ରହ କରିବା – ଯଦ୍ୱାରା ଏହା ତା ସହିତ ଖାପଖୁଆଇ ପାରିବ – କିନ୍ତୁ ତା'ର ଜ୍ଞାନ ଦ୍ୱାରା ତାକୁ ରୂପାନ୍ତରିତ କରିବା ।

ମାନବ ଚେତନାର କାର୍ଯ୍ୟକଳାପ କିପରି ନିଜକୁ ପ୍ରତିଫଳିତ କରିଥାଏ ? ଇନ୍ଦ୍ରିୟାନୁଭୂତି ସ୍ତରରେ ଏହାକୁ ଦେଖି ହୁଏ ଇନ୍ଦ୍ରିୟାନୁଭୂତିରାଜିର ସକ୍ରିୟ ନିର୍ବାଚନତା ତଥା ଉଦ୍ଦେଶ୍ୟମୂଳକତା ମଧ୍ୟରେ, ବ୍ୟକ୍ତିର ସ୍ୱାର୍ଥ, ଦକ୍ଷତା ତଥା ଜୀବନ ଅଭିଜ୍ଞତା ଦ୍ୱାରା ନିର୍ଦ୍ଧାରିତ ପ୍ରତିଫଳନର ଚମତ୍କାରିତା ମଧ୍ୟରେ । ଚିନ୍ତନ ପ୍ରକ୍ରିୟା ମଧ୍ୟରେ ଚେତନାର ସୃଜନାତ୍ମକ ଶକ୍ତି ନିମ୍ନଲିଖିତ କାର୍ଯ୍ୟ କରିଥାଏ ; ପଦାର୍ଥରାଜିର ସେହିସବୁ ଧର୍ମକୁ ଆହରଣ କରିବା, ଯେଉଁଗୁଡ଼ିକ କର୍ତ୍ତା ପକ୍ଷରେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ଅବଧାରଣାରାଜିର କାରସାଦୀକରଣ ଏବଂ ଅନୁମାନ ଜରିଆରେ ଜ୍ଞାନାହରଣ କରିବା, ନୂତନ ଚିନ୍ତା, ହାଇପୋଥେସିସ୍, ଯୋଜନା, ଉଦ୍ଦେଶ୍ୟ, ଭବିଷ୍ୟଦ୍‌ବାଣୀ, ଆଦି ପ୍ରଦାନ କରିବା ; ତାତ୍ତ୍ୱିକ ମଡେଲ, ବୈଜ୍ଞାନିକ ଅବଧାରଣାରାଜି ଏବଂ ଅବଗତିର ନୂତନ ପଦ୍ଧତି ଅନ୍ୱେଷଣ କରିବା । ସୃଜନାତ୍ମକ କଳ୍ପନା ତଥା ଉଦ୍‌ଭଟ ଭାବନାତ୍ମକ କାର୍ଯ୍ୟକଳାପ ଏବଂ ଭ୍ରାନ୍ତ ଧାରଣା ତଥା ଧର୍ମୀୟ ରୂପକଳ୍ପ ମଧ୍ୟରେ ବାସ୍ତବତାକୁ କଳ୍ପିତ ଭାବେ ପ୍ରତିଫଳିତ କରିବାର ଶକ୍ତି ମଧ୍ୟ ସକ୍ରିୟ ଚେତନାର ଅବଧାରଣାର ଅନ୍ତର୍ଗତ ।

ଆଜିକାଲି ଚେତନାର ସୃଜନାତ୍ମକ କ୍ରିୟାକଳାପ ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଛି ଏହି କାରଣରୁ ଯେ, ଆମେ ସାଇବେର୍‌ନେଟିକ୍‌ସ ପ୍ରକୌଶଳ – କମ୍ପ୍ୟୁଟର ବ୍ୟବହାର କରି ମାନବ ଚିନ୍ତାର ବହୁ କାର୍ଯ୍ୟକୁ (ଯୁକ୍ତିଯୁକ୍ତ ବିଗ୍ରହ, ସ୍ମୃତି, ରୂପକଳ୍ପର ପରିଚିତି, ଆଦି) ଅନୁରୂପ ଭାବେ କରି ପାରୁଛେ । ମଣିଷର ସୃଜନାତ୍ମକ ଶକ୍ତିର ଉତ୍ତରୋତ୍ତର ବିକାଶ ପାଇଁ କମ୍ପ୍ୟୁଟର ଅବସ୍ଥାରାଜି ସୃଷ୍ଟି କରିଛି, କାରଣ ସେସବୁ ତାକୁ ଅଧିକରୁ ଅଧିକ ସଂପୂର୍ଣ୍ଣ ନିୟମ ମାଫିକ୍, ଯାନ୍ତ୍ରିକ ମାନସିକ କାର୍ଯ୍ୟରେ ନିୟୋଜିତ ହେବାର ଆବଶ୍ୟକତାରୁ ମୁକ୍ତ କରି ଲଗିଛି, ଯଥା ଯୁକ୍ତିଗତ ଗାଣିତିକ ପ୍ରକ୍ରିୟା ଦ୍ୱାରା ସାଧିତ ସୂଚନାରାଜିର ପୁନରୁଦ୍ଧାର ଏବଂ ବିଶ୍ଳେଷଣ, ଆଦି । "ଚିନ୍ତନ ଯନ୍ତ୍ର"ର ସୃଷ୍ଟିଟି ଦର୍ଶାଇ ଦେଇଛି, ମାନବିକ ପ୍ରଜ୍ଞାର ସୃଜନାତ୍ମକ ଶକ୍ତି କେଡ଼େ ବିରାଟ । ଏଥି ସଙ୍ଗେ ସଙ୍ଗେ ଚେତନାର ସ୍ୱାଭାବିକ (ସାମାଜିକ-ଐତିହାସିକ) ଚରିତ୍ର ସଂପର୍କରେ ବସ୍ତୁବାଦୀ ମତବାଦର ସପକ୍ଷରେ ଏହା ହେଉଛି ଆଉ ଏକ ବୈଜ୍ଞାନିକ ଯୁକ୍ତି । କାରଣ, ଏହା ତା'ର କେତେକ କାର୍ଯ୍ୟକଳାପକୁ ମଣିଷ ସୃଷ୍ଟ ଯନ୍ତ୍ର ଉପରେ ନ୍ୟସ୍ତ କରିବାକୁ ସକ୍ଷମ ହୋଇଛି । ମଣିଷର ମାନସିକ କାର୍ଯ୍ୟକୁ ଅନୁକରଣ କରି କମ୍ପ୍ୟୁଟର ବ୍ୟବହାର କରିବା ଅର୍ଥ, ଅବଶ୍ୟ, ଏହା ନୁହେଁ ଯେ, କମ୍ପ୍ୟୁଟର ସହିତ ସେ ତା'ର ଚେତନାକୁ ସମାନ କରି ଦେବ । କମ୍ପ୍ୟୁଟର ମଣିଷର ଜ୍ଞାନଠାରୁ ସ୍ୱାଧୀନ ଏକ ପଦାର୍ଥ ନୁହେଁ, ଏହା ହେଉଛି ମଣିଷର ଚିନ୍ତାଜାତ ଏକ

ଯନ୍ତ୍ର । ସଠିକ ଭାବେ କହିବାକୁ ଗଲେ, କମ୍ପ୍ୟୁଟର ମଧ୍ୟରେ କେବଳ ଭୌତିକ (ଇଲେକ୍ଟ୍ରୋନିକ୍) ପ୍ରକ୍ରିୟା ଘଟିଥାଏ, ଏଥିରେ ସମସ୍ତ କିଛି ଆଦର୍ଶ ଉପାଦାନ, ଯଥା, ଲକ୍ଷ୍ୟ, ଆତ୍ମଚେତନା, ଇଚ୍ଛା ଶକ୍ତି, ମୂଲ୍ୟବୋଧ, ଆଦି ନଥାଏ । ପ୍ରସ୍ତାବିତ ଏକ ନିର୍ଦ୍ଦିଷ୍ଟ କର୍ମସୂଚୀକୁ ନେଇ କମ୍ପ୍ୟୁଟର କାର୍ଯ୍ୟ କରିଥାଏ ଏବଂ ଲୋକଙ୍କର ସୃଜନଶୀଳ ଲକ୍ଷ୍ୟକୁ ପ୍ରକାଶ କରେ, ତେଣୁ ମାନବ ଚେତନାର ସୃଜନଶୀଳ କାର୍ଯ୍ୟକଳାପକୁ ପ୍ରଦର୍ଶନ କରିବାରେ ସାହାଯ୍ୟ କରିଥାଏ ।

ଏହି କାର୍ଯ୍ୟକଳାପକୁ ବିଶେଷ ଭାବେ ପରିଷ୍କାର ରୂପେ ଦେଖି ହୁଏ ମଣିଷର ବ୍ୟାବହାରିକ କାର୍ଯ୍ୟ ଉପରେ ତା'ର ମାନସିକ ନିୟନ୍ତ୍ରଣ ମଧ୍ୟରେ । ଜନସାଧାରଣ ଏବଂ ପାରିପାର୍ଶ୍ୱିକ ପ୍ରାକୃତିକ ତଥା ସାମାଜିକ ଜଗତ ମଧ୍ୟରେ ବାସ୍ତବ ପାରସ୍ପରିକ କ୍ରିୟାକଳାପ ମଧ୍ୟରୁ ଚେତନା ଜାତ ହେବା ସଙ୍ଗେ ସଙ୍ଗେ ମଣିଷର ବାସ୍ତବ କାର୍ଯ୍ୟକଳାପର ଲକ୍ଷ୍ୟ ଆଉ ପଦ୍ଧତିକୁ ନିର୍ଦ୍ଧାରଣ କରିଥାଏ । ଏହା ବ୍ୟକ୍ତିଗତ ଏବଂ ବିଶେଷ କରି ସାମାଜିକ ଚେତନା କ୍ଷେତ୍ରରେ ଘଟିଥାଏ । ସାମାଜିକ ସତ୍ତା – ତା'ର ପ୍ରତିଫଳନ ହିସାବରେ ସାମାଜିକ ଚେତନା – ବାସ୍ତବ ସାମାଜିକ କ୍ରିୟାକଳାପ – ବାସ୍ତବତା ଏବଂ ସାମାଜିକ କର୍ତ୍ତା (ବ୍ୟକ୍ତି, ସାମାଜିକ ଗୋଷ୍ଠୀ, ଶ୍ରେଣୀ, ଆଦି) ମଧ୍ୟରେ ଆନ୍ତଃସଂପର୍କ ପାଇଁ ହେଉଛି ଅତୀବ ସାଧାରଣ ସୁଶୃଙ୍ଖଳ ବ୍ୟବସ୍ଥା । ଚେତନାର ସ୍ତରରେ ପ୍ରତିଫଳିତ ହେଉଥିବା କାର୍ଯ୍ୟଗତ ସାମାଜିକ ସଂପର୍କରାଜି, ମିଳିଥିବା ତଥ୍ୟରାଜି ନିର୍ଦ୍ଦିଷ୍ଟ ଏକ ସାମାଜିକ ଗୋଷ୍ଠୀର ଆବଶ୍ୟକତା ଏବଂ ସ୍ୱାର୍ଥରାଜି ସହିତ ସଂଯୁକ୍ତ ହୋଇଥାଏ ଏବଂ ମଣିଷର କାର୍ଯ୍ୟକଳାପର ଲକ୍ଷ୍ୟରାଜି ଗଠନ କରିଥାଏ । ଲକ୍ଷ୍ୟ ନିର୍ଦ୍ଧାରଣ ମଣିଷକୁ ସାହାଯ୍ୟ କରିଥାଏ ଜ୍ଞାନ ଏବଂ ବାସ୍ତବତା ମଧ୍ୟରେ ବିଶେଷ ସଂପର୍କରାଜି ସ୍ଥାପନ କରିବାରେ । ଏହି ପର୍ଯ୍ୟାୟରେ ମଣିଷର ଚେତନା ଯେଉଁସବୁ ମାନସିକ କ୍ରିୟା କରିଥାଏ, ସେସବୁ ହେଉଛି ବିଶ୍ଳେଷଣାତ୍ମକ, ସାମାଜିକ ନ୍ୟାୟ, ସମାଲୋଚନା, ତାତ୍ତ୍ୱିକ ଗଠନ, ଜଗତ ସଂପର୍କରେ ମତାମତ, ଯୁକ୍ତିଯୁକ୍ତତା ଆଦି । ଲକ୍ଷ୍ୟ ନିର୍ଦ୍ଧାରଣ, ଏହି ଜଟିଳ ମାନସିକ ପ୍ରକ୍ରିୟା ମଧ୍ୟରେ ଲୋକଙ୍କ ଦ୍ୱାରା ସେମାନଙ୍କ ସ୍ୱାର୍ଥ ସଂପର୍କରେ ଅବଗତି ମଧ୍ୟ ହେଉଛି ଚିନ୍ତନରୁ ବାସ୍ତବ କ୍ରିୟାକ[illegible] ଉତ୍ତରଣ ।

ଲକ୍ଷ୍ୟ ଏକ ଅନୁପ୍ରେରକ, ସଚେତନ ସାମାଜିକ କାର୍ଯ୍ୟ ପାଇଁ ପ୍ରତ୍ୟକ୍ଷ ଉଦ୍ଦେଶ୍ୟ ହିସାବରେ କାର୍ଯ୍ୟ କରିଥାଏ । ଜନସାଧାରଣଙ୍କ କାର୍ଯ୍ୟକଳାପ ପାଇଁ ଲକ୍ଷ୍ୟ ହେଉଛି ଏକ ବିଶେଷ ଧରଣର ଭାବଧାରା, ଅର୍ଥାତ୍, ଏକ ଚିନ୍ତନ, ଯିଏକି ବ୍ୟକ୍ତିର ଆତ୍ମିକ ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ସମନ୍ୱୟ କାର୍ଯ୍ୟ କରିଥାଏ । ଭାବଧାରା ଜ୍ଞାନର ଅନ୍ୟ ରୂପରାଜି ତଥା ଅବଧାରଣାଠାରୁ ଭିନ୍ନ, କାରଣ ଏହା ଶ୍ରେଣୀ ସ୍ୱାର୍ଥ ତଥା ଲକ୍ଷ୍ୟକୁ ଘନୀଭୂତ ଆକାରରେ ପ୍ରକାଶ କରିଥାଏ । ଭାବଧାରା ମଧ୍ୟରେ ଥାଏ ସେସବୁର ବାସ୍ତବାୟନ, ରୂପାୟନ ଏବଂ ସ୍ୱଅନୁଭବନ ପାଇଁ ଏକ ଉଦ୍ୟମ । ଭାବଧାରା ମଧ୍ୟରେ ଥାଏ ନିଜକୁ ଲକ୍ଷ୍ୟାୟିତ କରିବାର ପଥ ଏବଂ ଉପାୟ ତଥା କର୍ତ୍ତା ପାଇଁ କାର୍ଯ୍ୟର ଯୋଜନା ।

# ୧୧ – ଭାବରାଜି ମଧ୍ୟରେ ସଂଗ୍ରାମ

ବୈରିତାପୂର୍ଣ୍ଣ ଶ୍ରେଣୀସଂପନ୍ନ ସମାଜରେ କାହିଁକି ଚିନ୍ତାରାଜି ମଧ୍ୟରେ ତୀବ୍ର ସଂଗ୍ରାମ ଦେଖା ଦିଏ ତା'ର କାରଣ ଏହିସବୁରୁ ଜଣାଯାଏ । ଭାବାଦର୍ଶଗତ ସଂଗ୍ରାମ ହେଉଛି, ସର୍ବଶେଷ ବ୍ୟାଖ୍ୟାରେ, ଶ୍ରେଣୀମାନଙ୍କର ସଂଗ୍ରାମ, ଯେଉଁମାନଙ୍କର ସ୍ୱାର୍ଥକୁ ଏହିସବୁ ଭାବଧାରା ପ୍ରକାଶ କରିଥାଏ । ପ୍ରତ୍ୟେକ ସାମାଜିକ କାର୍ଯ୍ୟକଳାପ ପଛରେ ଥାଏ ଏକ ଭାବଧାରା, ଯିଏକି କେବଳ ତା'ର ତାତ୍ତ୍ୱିକ ଯୁକ୍ତିଯୁକ୍ତତା ସ୍ୱରୂପ ନୁହେଁ, ତା'ର ବାସ୍ତବାୟନ ପାଇଁ ଏକ ଅପରିହାର୍ଯ୍ୟ ସର୍ତ୍ତ । କାର୍ଲ ମାର୍କସ୍ ଲେଖିଥିଲେ, "ବାସ୍ତବ ଶକ୍ତିକୁ ବାସ୍ତବ ଶକ୍ତି ଦ୍ୱାରା ଉତ୍‌ଖାତ କରିବାକୁ ହେବ, କିନ୍ତୁ ତତ୍ତ୍ୱ ବି ସଙ୍ଗେ ସଙ୍ଗେ ଏକ ବାସ୍ତବ ଶକ୍ତିରେ ପରିଣତ ହୁଏ, ଯେତେବେଳେ ଏହା ଜନସାଧାରଣଙ୍କୁ ଆଚ୍ଛନ୍ନ କରେ ।"* କୌଣସି ଏକ ଭାବଧାରା ବାସ୍ତବ କାର୍ଯ୍ୟକଳାପର ଏକ ପ୍ରତ୍ୟକ୍ଷ ଗ୍ରହିକା ଶକ୍ତିରେ କେବଳ ସେତିକିବେଳେ ପରିଣତ ହୁଏ, ଯେତେବେଳେ ତାହା ଜନ ଚେତନାର ଏକ ଉପାଦାନକୁ ରୂପାନ୍ତରିତ ହୁଏ, ଅର୍ଥାତ୍, ଯେତେବେଳେ ତାହା ସାମାଜିକ ମନସ୍ତତ୍ତ୍ୱ (ଅର୍ଥାତ୍, ଜନସାଧାରଣଙ୍କ ସ୍ୱାର୍ଥରାଜି ତଥା ପ୍ରୟୋଜନୀୟତା, ସେମାନଙ୍କ ଆଶା ଆକାଂକ୍ଷା ଏବଂ ମନୋଭାବ, ଆଦି) ସହିତ ସଂଯୁକ୍ତ ହୋଇଯାଏ । ଭାବରାଜି ଯେତେବେଳେ ଜନତାକୁ ଆଚ୍ଛନ୍ନ କରେ, ସେତେବେଳେ ସେସବୁ ଏକ ବାସ୍ତବ ଶକ୍ତିରେ ପରିଣତ ହୋଇ ସେସବୁର ବାସ୍ତବ କାର୍ଯ୍ୟକଳାପ ପାଇଁ ସଂଗଠନ ଏବଂ ଉଦ୍ଦେଶ୍ୟ ରଚନା କରେ ଏବଂ ଲୋକଙ୍କ ଇଚ୍ଛା ଶକ୍ତିକୁ ପୋଖତ ସାମାଜିକ କର୍ତ୍ତବ୍ୟରାଜିର ସମାଧାନ ଦିଗରେ ପରିଚାଳିତ କରେ ।

ଉପରୋକ୍ତ ଆଲୋଚନାରୁ ପରିଷ୍କାର ଜଣାଯାଏ ଯେ, ଶ୍ରମଜୀବୀ ଜନସାଧାରଣଙ୍କ ବୈପ୍ଳବିକ ଚେତନାକୁ ଗଢ଼ି ତୋଳିବା ଏବଂ ସମସ୍ତ ପ୍ରତିକ୍ରିୟାଶୀଳ ଭାବଧାରା ବିରୁଦ୍ଧରେ ସଂଗ୍ରାମ କରିବା କାହିଁକି ଏତେ ଗୁରୁତ୍ୱପୂର୍ଣ୍ଣ । ପୁଞ୍ଜିବାଦୀ ଦେଶମାନଙ୍କରେ ଶ୍ରମିକ ଶ୍ରେଣୀର ଏକ ଉଲ୍ଲେଖନୀୟ ଅଂଶ ଏବେ ବି ବୁର୍ଜୁଆ ଭାବାଦର୍ଶ ଦ୍ୱାରା ପ୍ରଭାବିତ । ସେମାନେ ବିପ୍ଳବୀ ମନୋଭାବ ପରିବର୍ତ୍ତେ ସୁଧାରବାଦୀ ମନୋଭାବ ପୋଷଣ କରନ୍ତି । ଏହାର ଅନ୍ୟାନ୍ୟ କାରଣ ମଧ୍ୟରୁ ଗୋଟିଏ କାରଣ ହେଉଛି ଯେ, [illegible] ପ୍ରଚାର ମାଧ୍ୟମ ଦ୍ୱାରା ଜନ ଚେତନାର ଗଭୀର ବିକୃତୀକରଣ । ଆଉ ଏକ ବିପରୀତମୁଖୀ କାରଣ ହେଉଛି ନବ ନୈରାଜ୍ୟବାଦୀ, ଉଗ୍ରବାମପନ୍ଥୀ, ଅତ୍ୟୁଗ୍ରବାଦୀମାନଙ୍କର ନକଲୀ ବିପ୍ଳବୀ ମତରାଜିର ପ୍ରଚାର । ଭାବାଦର୍ଶଗତ ସଂଗ୍ରାମ ଆଉରି ଗୁରୁତ୍ୱପୂର୍ଣ୍ଣ ହେବାରେ ଲାଗିଛି, କାରଣ, ଏହି ସଂଗ୍ରାମ ପରିଚାଳିତ ହେଉଛି ଦୁଇଟି ବିରୋଧୀ ସାମାଜିକ ବ୍ୟବସ୍ଥାର ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଅବସ୍ଥାରାଜି ମଧ୍ୟରେ । ପୁଞ୍ଜିବାଦର ପ୍ରବକ୍ତାମାନେ

---

* କାର୍ଲ ମାର୍କସ୍, "*Contribution to the Critique of Hegel's Philosophy of Law. Introduction*". କାର୍ଲ ମାର୍କସ୍ ଏବଂ ଫ୍ରେଡେରିକ୍ ଏଙ୍ଗେଲସ୍, *Collected Works*, ୩ୟ ଖଣ୍ଡ, ପ୍ରଗତି ପ୍ରକାଶନ, ମସ୍କୋ, ୧୯୭୫, ପୃ: ୧୮୨ ।

ଅଭିଯୋଗ କରନ୍ତି ଯେ, କମ୍ୟୁନିଷ୍ଟମାନଙ୍କର ଭାବାଦର୍ଶଗତ ପ୍ରତିଶ୍ରୁତି ଏବେ ଏକ କାଳଭ୍ରମତାରେ ପରିଣତ ହୋଇଛି ଏବଂ ଜଟିଳ ସମସ୍ୟାବଳୀର ସମାଧାନ ଦିଗରେ କେବଳ ବାଧା ସୃଷ୍ଟି କରିବାରେ ଲାଗିଛି । ତେଣୁ ସେମାନେ ଆହ୍ୱାନ ଦିଅନ୍ତି ଆଧୁନିକ ସାମାଜିକ ଚେତନାର "ଭାବାଦର୍ଶହୀନକରଣ" ପାଇଁ ଏବଂ ଭାବାଦର୍ଶ କ୍ଷେତ୍ରରେ ଶାନ୍ତି ପ୍ରତିଷ୍ଠା ନିମିତ୍ତ (ଯଦିଓ ଆଉ କେତେକ ଦାବୀ କରନ୍ତି ଆଉରି ଅଧିକ ଅନମନୀୟ ଭାବାଦର୍ଶଗତ କର୍ମନୀତି ଗ୍ରହଣ କରିବାକୁ) ।

ଅଥଚ, କମ୍ୟୁନିଷ୍ଟମାନେ କହନ୍ତି, ଶାନ୍ତିପୂର୍ଣ୍ଣ ସହାବସ୍ଥାନ କୌଣସିମତେ ପୁଞ୍ଜିବାଦୀ ସମାଜ ମଧ୍ୟରେ କି ପୁଞ୍ଜିବାଦ ଆଉ ସମାଜବାଦ ମଧ୍ୟରେ ଶ୍ରେଣୀ ସଂଗ୍ରାମକୁ ଅସ୍ୱୀକାର କରେ ନାହିଁ । ଭାବାଦର୍ଶଗତ କ୍ଷେତ୍ରରେ ନିରପେକ୍ଷତା ବା ଆପୋଷର ସ୍ଥାନ ନାହିଁ, କାରଣ କମ୍ୟୁନିଷ୍ଟ ଏବଂ ବୁର୍ଜୁଆ ଭାବଧାରା ହେଉଛି ପରସ୍ପରର ବିରୋଧୀ । ୧୯୦୦ ଦଶକରେ ଲେନିନ୍ ଲେଖିଥିଲେ, "...କେବଳ ଗୋଟିକୁ ବାଛିବାକୁ ହେବ—ହୁଏତ ବୁର୍ଜୁଆ ଭାବାଦର୍ଶ, ନଚେତ୍ ସମାଜବାଦୀ ଭାବାଦର୍ଶ । ଏତଦ୍‌ବ୍ୟତୀତ ଅନ୍ୟ କୌଣସି ମଝିମଝିକିଆ ରାସ୍ତା ନାହିଁ (କାରଣ ମାନବଜାତି ଅନ୍ୟ କୌଣସି "ତୃତୀୟ" ଭାବାଦର୍ଶ ସୃଷ୍ଟି କରି ପାରି ନି ଏବଂ ଏହା ଛଡ଼ା, ଶ୍ରେଣୀ ବୈରିତା ଦ୍ୱାରା ବିଦୀର୍ଣ୍ଣ ଏକ ସମାଜରେ କୌଣସିମତେ ଅଶ୍ରେଣୀ ବା ଶ୍ରେଣୀଊର୍ଦ୍ଧ୍ୱ ଭାବାଦର୍ଶ ରହି ନପାରେ) । ତେଣୁ କୌଣସିମତେ ସମାଜବାଦୀ ଭାବାଦର୍ଶକୁ ନ୍ୟୂନ କରିବା ଏବଂ ସାମାନ୍ୟ ପରିମାଣରେ ଏହାକୁ ଘୁରେଇ ଦେବା ଅର୍ଥ ହେଉଛି ବୁର୍ଜୁଆ ଭାବାଦର୍ଶକୁ ଶକ୍ତିଶାଳୀ କରିବା ।"* ଏହି ପ୍ରଶ୍ନଟିର ଏଭଳି ଏକ ସୁସ୍ପଷ୍ଟ ସୂତ୍ରାୟନ ସାଧାରଣ ଭାବେ ସମାଜରେ ଏବଂ ବିଶେଷ ଭାବେ ସାମାଜିକ ରୂପାନ୍ତରଣରେ ଚିନ୍ତାରାଜିର ଭୂମିକାର ଆବଶ୍ୟକତା ମଧ୍ୟରୁ ଜନ୍ମ ନେଇଥାଏ ;

ପ୍ରତିକ୍ରିୟାଶୀଳ ଶ୍ରେଣୀମାନେ ଭୟ କରନ୍ତି ସେମାନଙ୍କ ପ୍ରଭୁତ୍ୱର ବିଲୋପର ସମ୍ଭାବନାକୁ । ତେଣୁ ସେମାନେ ଚେଷ୍ଟା କରନ୍ତି ଜାତୀୟ ମୁକ୍ତି ତଥା ସାମାଜିକ ମୁକ୍ତିର ବସ୍ତୁଗତ, ନିୟମାନୁଗ ପ୍ରକ୍ରିୟାକୁ ପ୍ରତିହତ କରିବା ପାଇଁ, ସାମ୍ରାଜ୍ୟବାଦୀ ପ୍ରଚାର ଦ୍ୱାରା ଉଦ୍‌ଭାବିତ ବହୁବିଧ ଭାବାଦର୍ଶଗତ ମିଥ୍ୟାର ଆଶ୍ରୟ ନେବା ପାଇଁ । "ସାମ୍ରାଜ୍ୟବାଦ ଯଦି ତା'ର ପ୍ରକୃତ ଲକ୍ଷ୍ୟ କ'ଣ ପ୍ରକାଶ୍ୟରେ କହିବ, ତେବେ ସେ ସଫଳ ହୋଇ ପାରିବ ନାହିଁ ବୋଲି ଜାଣେ । ତେଣୁ ସେ ବାଧ୍ୟ ହୁଏ ତା'ର ପ୍ରକୃତ ଉଦ୍ଦେଶ୍ୟକୁ ଛଦ୍ମ ରୂପ ଦେବା ପାଇଁ, ଏକ ଭାବାଦର୍ଶଗତ କାଳ୍ପନିକତାର ବ୍ୟବସ୍ଥା ସୃଷ୍ଟି କରିବା ପାଇଁ ଏବଂ ଜାତିମାନଙ୍କର ସତର୍କ ଦୃଷ୍ଟିକୁ କ୍ଷୀଣ କରି ଦେବା ପାଇଁ ।"**

---

* ଭି. ଆଇ. ଲେନିନ୍, "କ'ଣ କରିବାକୁ ହେବ", ସଂକଳିତ ରଚନାବଳୀ, (ଇଂରେଜୀ ସଂସ୍କରଣ), ୫ମ ଖଣ୍ଡ, ମସ୍କୋ, ୧୯୭୫, ପୃ: ୩୮୪ ।

** "*International Meeting of Communist and Workers' Parties*", Moscow, 1969, Prague, 1969, p. 163.

ବିଶ୍ୱ ଇତିହାସର ଗତିଧାରା ପୁଞ୍ଜିବାଦୀ ଭାବାଦର୍ଶବାଦୀମାନଙ୍କର ଅନୁନୟସୂଚକ ମତକୁ ଅପ୍ରମାଣିତ କରି ଦେଇଛି । କିନ୍ତୁ, ତା ସଙ୍ଗେ ମଧ୍ୟ ସେସବୁ କଳ୍ପନାଜାତ ମତାବଳୀ ନିଜକୁ ନିଜେ ଲୋପ ପାଇବ ନାହିଁ । ସେସବୁକୁ ଦୂର କରିବା ପାଇଁ ଆବଶ୍ୟକ ଏକ ଦୁର୍ବାର ଏବଂ ନିରବଚ୍ଛିନ୍ନ ସଂଗ୍ରାମ । ବାସ୍ତବତାର ରୂପାନ୍ତରଣ କ୍ଷେତ୍ରରେ ଶ୍ରମିକ ଶ୍ରେଣୀଗୁଡ଼ିକର ଚେତନାକୁ ଏକ ସକ୍ରିୟ ସୃଜନଶୀଳ ଶକ୍ତି ହେବାକୁ ହେଲେ ପ୍ରତିକ୍ରିୟାଶୀଳ ଚିନ୍ତାଧାରାର ଦୂରୀକରଣ ଏକାନ୍ତ ଆବଶ୍ୟକ ।

# ପଞ୍ଚମ ପରିଚ୍ଛେଦ

# ଦ୍ୱନ୍ଦ୍ୱବାଦ : ସର୍ବବ୍ୟାପୀ ଯୋଗସୂତ୍ର ଏବଂ ବିକାଶ

ଦର୍ଶନର ମୌଳିକ ପ୍ରଶ୍ନଟିର କେବଳ ବସ୍ତୁବାଦୀ ସମାଧାନ ଛଡ଼ା ବୈଜ୍ଞାନିକ ଦର୍ଶନର ଆଉରି ଅନେକ କିଛି ଅଛି । ଜଗତର ଐକ୍ୟ ଏବଂ ବସ୍ତୁର ଐତିହାସିକ ସ୍ୱବିକାଶରୁ ଜାତ ଚେତନା ସଂପର୍କରେ ଆମେ ଯାହା କହିଲେ, ସେଥିରୁ ପରିଷ୍କାର ଜଣାଯାଏ, ବାସ୍ତବତାର ଦ୍ୱନ୍ଦ୍ୱମୂଳକ ଅବଧାରଣାର ଗୁରୁତ୍ୱ କେତେ ବେଶି । ବୈଜ୍ଞାନିକ ବିଶ୍ୱଦୃଷ୍ଟିକୋଣରେ ଦ୍ୱନ୍ଦ୍ୱବାଦର ଏକ ବିଶେଷ ସ୍ଥାନ ରହିଛି ।

## ୧ – ମାର୍କସ୍‌ବାଦର 'ଜୀବନୀ ଶକ୍ତି'

ଲେନିନ୍ କହିଥିଲେ, ଦ୍ୱନ୍ଦ୍ୱବାଦ ହେଉଛି "ମାର୍କସ୍‌ବାଦରେ ନିୟାମକ"*, ମାର୍କସ୍‌ବାଦର "ଜୀବନୀ ଶକ୍ତି"**, କାରଣ ଏହା "ଶ୍ରେଣୀ ସଂଗ୍ରାମର ତତ୍ତ୍ୱ ଏବଂ ପ୍ରୟୋଗକୁ ଏକ ଅବିଚ୍ଛିନ୍ନ ସମଗ୍ରତା ମଧ୍ୟରେ ଏକତ୍ର କରି ଦେଇଛି ।"*** ଆମ ଯୁଗରେ ମାର୍କସ୍ ଦ୍ୱନ୍ଦ୍ୱବାଦ ସଂପର୍କରେ କ'ଣ କହିଥିଲେ, ତାହା ବିଶେଷ ଭାବେ ସଂଗତିଶୀଳ : "ଏହା ତା'ର ଯୁକ୍ତିସଂଗତ ରୂପ ଦୃଷ୍ଟିରୁ ବୁର୍ଜୁଆ ଜଗତ ଏବଂ ତା'ର ମତାନ୍ଧ ଅଧ୍ୟାପକମାନଙ୍କ ପକ୍ଷରେ ଏକ ଅପବାଦ ଏବଂ ଘୃଣା ସ୍ୱରୂପ, କାରଣ ଏହାର ଅବଧାରଣା ମଧ୍ୟରେ ବସ୍ତୁରାଜିର ବିଦ୍ୟମାନ ଅବସ୍ଥାର ଅସ୍ତିବାଚକ ସ୍ୱୀକୃତି ସଙ୍ଗେ ସଙ୍ଗେ,

---

* ଭି. ଆଇ. ଲେନିନ୍, "*Our Revolution*", ସଂକଳିତ ରଚନାବଳୀ (ଇଂରେଜୀ), ୩୩ଶ ଖଣ୍ଡ, ମସ୍କୋ, ୧୯୬୬, ପୃ : ୪୭୬ ।

** ଭି. ଆଇ. ଲେନିନ୍, "*Certain Features of the Historical Development of Marxism*", ସଂକଳିତ ରଚନାବଳୀ (ଇଂରେଜୀ), ୧୭ଶ ଖଣ୍ଡ, ମସ୍କୋ, ୧୯୬୩, ପୃ : ୩୯ ।

*** ଭି. ଆଇ. ଲେନିନ୍, "*Preface to the Russian Translation of Karl Marx's Letters to Dr. Kugelmann*", ସଂକଳିତ ରଚନାବଳୀ (ଇଂରେଜୀ), ୧୨ଶ ଖଣ୍ଡ, ମସ୍କୋ, ୧୯୭୨, ପୃ : ୧୦୭-୧୦୮ ।

ସେ ଅବସ୍ଥାର ନେତୀକରଣର ଏବଂ ତା'ର ଅନିବାର୍ଯ୍ୟ ବିଭଙ୍ଗନର ସ୍ୱୀକୃତି ମଧ୍ୟ ଥାଏ ; କାରଣ, ଏହା ପ୍ରତ୍ୟେକ ଐତିହାସିକ ଭାବେ ବିକଶିତ ସାମାଜିକ ରୂପକୁ ତା'ର ଅସ୍ଥିର ଗତି ହିସାବରେ ବିବେଚନା କରେ ଏବଂ ତେଣୁ ତା'ର ଆପାତସ୍ଥାୟୀ ଚରିତ୍ରକୁ ତା'ର କ୍ଷଣିକ ସ୍ଥିତିଠାରୁ ଗୌଣ ହିସାବରେ ବିଗ୍ଚର କରିଥାଏ । କାରଣ, ଏହା ତା ଉପରେ କୌଣସି କିଛିକୁ ଚପେଇ ଦେବାକୁ ଦିଏ ନି, ଏବଂ ଏହା ତା'ର ନିର୍ଯ୍ୟାସ ଦୃଷ୍ଟିରୁ ସମାଲୋଚନାତ୍ମକ ଏବଂ ବିପ୍ଳବୀ ।"* ଆଜି ଦ୍ୱନ୍ଦ୍ୱବାଦର ତତ୍ତ୍ୱ ଯେ ତୀବ୍ର ଭାବାଦର୍ଶଗତ ସଂଗ୍ରାମର ଶରବ୍ୟ ହୋଇଛି, ତାହା ଆକସ୍ମିକ କଥା ନୁହେଁ । ବୁର୍ଜୁଆ ସାହିତ୍ୟରେ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ମିଥ୍ୟାକରଣ ବହୁବିଧ ରୂପରେ ପ୍ରକାଶ ପାଇଥାଏ । ବୁର୍ଜୁଆ ପଣ୍ଡିତମାନେ ଏହାର ବସ୍ତୁଗତ ତାତ୍ପର୍ଯ୍ୟକୁ ଅସ୍ୱୀକାର କରି ନପାରି ଏବଂ ଏହାକୁ ଏକ "ଫମ୍ପା ସୂତ୍ର" ବୋଲି ଅଗ୍ରାହ୍ୟ ନକରି ପାରି ଅନେକ ସମୟରେ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ବିଭିନ୍ନ ମିଥ୍ୟାକରଣ କରିଥାନ୍ତି । ଅନ୍ୟ ଦିଗରେ, ସେମାନେ ପ୍ରକୃତି କ୍ଷେତ୍ରରେ ଦ୍ୱନ୍ଦ୍ୱବାଦର ନିୟମରାଜିର କ୍ରିୟାକୁ ପ୍ରତ୍ୟାଖ୍ୟାନ କରି କେବଳ ମନୋଗତ ଚିନ୍ତାରାଜି କ୍ଷେତ୍ରରେ ଦ୍ୱନ୍ଦ୍ୱବାଦକୁ ସୀମିତ କରି ରଖିଥାନ୍ତି । ଏହା ଛଡ଼ା ସେମାନେ, ମାର୍କସ୍‌ବାଦୀ ଅବଧାରଣାର ବିପରୀତରେ ଦ୍ୱନ୍ଦ୍ୱବାଦର "ନାସ୍ତିବାଚକ", "ପ୍ରପଞ୍ଚଗତ", "ଦୟନୀୟ" ଏବଂ ଅନ୍ୟାନ୍ୟ ବ୍ୟାଖ୍ୟା କରି ସାଧାରଣତଃ, ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ମୌଳିକ ସ୍ୱତଃସିଦ୍ଧଗୁଡ଼ିକୁ, ତା'ର ନିୟମ ଏବଂ ପ୍ରବର୍ଗରାଜିକୁ ବିକୃତ କରିଥାନ୍ତି । ଦ୍ୱନ୍ଦ୍ୱବାଦର ବିଜ୍ଞାନସମ୍ମତ ଆଧେୟକୁ ଆମେ ଆଲୋଚନା କଲ୍ଲ ବେଳେ ସେସବୁ ମତାବଳୀର ଉଦ୍‌ଭଟତା ଏବଂ ଯୁକ୍ତିହୀନତା ପରିଷ୍କାର ଜଣା ପଡ଼େ ।

ଦ୍ୱନ୍ଦ୍ୱବାଦ ବୋଇଲେ କ'ଣ ବୁଝାଏ ? ଏହି ପ୍ରଶ୍ନଟିର ଉତ୍ତର ଦେବାକୁ ହେଲେ ଆମକୁ ସର୍ବପ୍ରଥମେ ଦ୍ୱନ୍ଦ୍ୱବାଦୀ ତତ୍ତ୍ୱ ବା ମତବାଦଠାରୁ ପ୍ରକୃତି ଏବଂ ସମାଜର ବସ୍ତୁଗତ ଦ୍ୱନ୍ଦ୍ୱବାଦକୁ ଅଲଗା କରି ଦେଖିବାକୁ ହେବ । ଏଙ୍ଗେଲସ୍ ଲେଖିଥିଲେ : "ଦ୍ୱନ୍ଦ୍ୱବାଦ, ତଥାକଥିତ <u>ବସ୍ତୁଗତ</u> ଦ୍ୱନ୍ଦ୍ୱବାଦ, ସାରା ପ୍ରକୃତିରେ ବିରାଜମାନ କରେ ଏବଂ ତଥାକଥିତ ମନୋଗତ ଦ୍ୱନ୍ଦ୍ୱବାଦ, ଦ୍ୱନ୍ଦ୍ୱମୂଳକ ଚିନ୍ତା ହେଉଛି କେବଳ ବୈପରୀତ୍ୟଗୁଡ଼ିକ ମାଧ୍ୟମରେ ଗତିର ପ୍ରତିଫଳନ, ଯିଏକି ପ୍ରକୃତି ସାରା ନିଜକୁ ଜାହିର କରିଥାଏ, ଏବଂ ଯିଏକି ବୈପରୀତ୍ୟଗୁଡ଼ିକର ନିରବଚ୍ଛିନ୍ନ ଦ୍ୱନ୍ଦ୍ୱ ଦ୍ୱାରା ଏବଂ ପରସ୍ପର ମଧ୍ୟକୁ ସେମାନଙ୍କର ଅନ୍ତିମ ପ୍ରବେଶ ଦ୍ୱାରା, ଅଥବା ଉଚ୍ଚତର ରୂପକୁ ପ୍ରବେଶ ଦ୍ୱାରା, ପ୍ରକୃତିର ଜୀବନକୁ ନିର୍ଦ୍ଧାରିତ କରିଥାଏ ।"** ଏହି ଭାବେ ବସ୍ତୁଗତ ଦ୍ୱନ୍ଦ୍ୱବାଦ ବୋଇଲେ ସ୍ୱଗତିଯୁକ୍ତ ବସ୍ତୁର ସୀମାହୀନ ବହୁବିଧତାର ଐକ୍ୟକୁ ବୁଝାଉଥିଲା ବେଳେ ମନୋଗତ ଦ୍ୱନ୍ଦ୍ୱବାଦ ହେଉଛି ପ୍ରତିଫଳନ ଆଉ ଚିନ୍ତା କ୍ଷେତ୍ରର ଅନ୍ତର୍ଗତ । ଚିନ୍ତା ମଧ୍ୟ ସ୍ୱତଃସ୍ଫୂର୍ତ୍ତ ଭାବେ ଦ୍ୱନ୍ଦ୍ୱମୂଳକ ହୋଇ ପାରେ :

---

* କାର୍ଲ ମାର୍କସ୍, "କ୍ୟାପିଟାଲ", ୧ମ ଖଣ୍ଡ, ପୃ : ୨୯ ।

** ଫ୍ରେଡେରିକ୍ ଏଙ୍ଗେଲସ୍, "*Dialectics of Nature*", ପୃ : ୨୧୧ ।

| | | | |
|---|---|---|---|
| ଖ୍ରୀ : ପୂ : ୬ଷ୍ଠ-୪ର୍ଥ ଶତାବ୍ଦୀ | ପ୍ରାଚୀନ ଗ୍ରୀସ୍ ଏବଂ ପ୍ରାଚୀନ ପ୍ରାଚ୍ୟର ସ୍ୱତଃସ୍ଫୂର୍ତ୍ତ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ | ହେରାକ୍ଲିଟସ୍, ଆରିଷ୍ଟୋଟଲ | "ଜଗତ ସଂପର୍କରେ ଏହି ଆଦିମ, ସରଳ, ଅଥଚ ସ୍ୱାଭାବିକ ସଠିକ ଅବଧାରଣା ହେଉଛି ପ୍ରାଚୀନ ଗ୍ରୀକ୍ ଦର୍ଶନର ଏବଂ ହେରାକ୍ଲିଟସ୍ ପ୍ରଥମେ ଏହାକୁ ସୂତ୍ରବଦ୍ଧ କରିଥିଲେ : ସବୁ କିଛି ଅଛି ଏବଂ ନାହିଁ, କାରଣ ସବୁ କିଛି ହେଉଛି ଅସ୍ଥିର, ନିରବଚ୍ଛିନ୍ନ ଭାବେ ପରିବର୍ତ୍ତିତ ହେଉଛି, ନିରବଚ୍ଛିନ୍ନ ଭାବେ ରୂପ ପରିଗ୍ରହ କରୁଛି ଏବଂ ବିଲୟ ହେଉଛି ।" — ଏଙ୍ଗେଲସ୍ |
| ୧୮ଶ-୧୯ଶ ଶତାବ୍ଦୀ | ଜର୍ମାନ୍ ଦାର୍ଶନିକମାନଙ୍କର ଭାବବାଦୀ ଦ୍ୱନ୍ଦ୍ୱବାଦ | ଫିଚେ, କାଣ୍ଟ୍, ହେଗେଲ୍ | "ପରିମାଣରୁ ଗୁଣକୁ ଏବଂ ଗୁଣରୁ ପରିମାଣକୁ ରୂପାନ୍ତରଣର ନିୟମ : ବୈପରିତ୍ୟସମୂହର ବ୍ୟାଖ୍ୟାର ନିୟମ ; ନେତାକରଣର ନେତାକରଣ ନିୟମ । ଏହି ତିନୋଟି ହେଗେଲ୍ଙ୍କ ଦ୍ୱାରା ତାଙ୍କ ଭାବବାଦୀ ଢଙ୍ଗରେ ଚିନ୍ତନର ନିୟମ ହିସାବରେ ବିକାଶ ଲାଭ କରିଥିଲା ... । ଭୁଲଟା ହେଉଛି ଏହି ତଥ୍ୟଟିରେ ଯେ, ଏହିସବୁ ନିୟମକୁ ଚିନ୍ତନର ନିୟମ ହିସାବରେ ପ୍ରକୃତି ଏବଂ ଇତିହାସ ଉପରେ ଚପେଇ ଦିଆଗଲା, ସେସବୁରୁ ଆହୃତ ନିୟମ ବୋଲି ବୁଝାଗଲା ନାହିଁ ।" — ଏଙ୍ଗେଲସ୍ |
| ୧୯ଶ-୨୦ଶ ଶତାବ୍ଦୀ | ମାର୍କସ୍‌ବାଦୀ-ଲେନିନ୍‌ବାଦୀ ବୈଜ୍ଞାନିକ, ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ | ମାର୍କସ୍, ଏଙ୍ଗେଲସ୍, ଲେନିନ୍ | "ମାର୍କସ୍‌ଙ୍କର ବିଶେଷତ୍ୱ ହେଉଛି... ସେ ପ୍ରଥମ କରି ପୁଣି ସେଇ ବିସ୍ମୃତ ଦ୍ୱନ୍ଦ୍ୱମୂଳକ ପଦ୍ଧତିଟିକୁ ସାମ୍ନାକୁ ଆଣିଲେ । ହେଗେଲୀୟ ଦ୍ୱନ୍ଦ୍ୱବାଦ ସହିତ ଏହାର ଯୋଗସୂତ୍ର, ଏବଂ ତାଠାରୁ ଏହାର ପାର୍ଥକ୍ୟ ଏବଂ ତତ୍ ସଙ୍ଗେ ସଙ୍ଗେ 'କ୍ୟାପିଟାଲ'ରେ ସେ ଏହି ପଦ୍ଧତିଟିକୁ ପ୍ରୟୋଗ କଲେ... ।" "ଦ୍ୱନ୍ଦ୍ୱବାଦ ଗଢ଼ିଲା, ଉଭୟ ବାହ୍ୟିକ ଜଗତ ଏବଂ ମାନବ ଚିନ୍ତାର ସାଧାରଣ ନିୟମ ସଂପୃକ୍ତ ବିଜ୍ଞାନରେ ପରିଣତ ହେଲା ।" — ଏଙ୍ଗେଲସ୍ |

ପଦାର୍ଥରାଜିର ପରିବର୍ତ୍ତନଶୀଳତା, ବାସ୍ତବ ପ୍ରପଞ୍ଚରାଜିର ବିରୋଧାତ୍ମକତା, ଆଦି ମଧ୍ୟ ଜନସାଧାରଣଙ୍କ ଦୈନନ୍ଦିନ ଜୀବନର ଅଭିଜ୍ଞତାଜାତ ଚେତନା ଦ୍ୱାରା ସ୍ଥିର ହୋଇଥାଏ । ଦୃଷ୍ଟାନ୍ତ ସ୍ୱରୂପ, ଏହା ପ୍ରକାଶ ପାଇଥାଏ ଲୋକକଥା ତଥା ପର୍ଯ୍ୟବେକ୍ଷଣରାଜି ମଧ୍ୟରେ । ବିଭିନ୍ନ ଜନପ୍ରିୟ କଥାରାଜି ମଧ୍ୟରେ ବୈପରୀତ୍ୟଗୁଡ଼ିକର ଐକ୍ୟ ପ୍ରକାଶ ପାଇଥାଏ: "ଆମ ଜନ୍ମର ଧାରେ ଧାରେ ଥାଏ ମୃତ୍ୟୁ ଏବଂ କବର ମଧ୍ୟରେ ଅଛି ଆମର ଅନ୍ତୁଡ଼ିଶାଳ", "ସ୍ୱାସ୍ଥ୍ୟ ମଧ୍ୟରେ ଥାଏ ରୁଗ୍ଣତା, ସଫଳତା ମଧ୍ୟରେ ବିଫଳତା ଏବଂ ଯୌବନ ମଧ୍ୟରେ ବାର୍ଦ୍ଧକ୍ୟ" । ଏ ସତ୍ତ୍ୱେ ସଭାର ଦ୍ୱନ୍ଦ୍ୱବାଦକୁ ଯେତେବେଳେ ତତ୍ତ୍ୱଗତ ଭାବେ ଚିନ୍ତା କରାଯାଏ, ସେତେବେଳେ ଆମକୁ ଦ୍ୱନ୍ଦ୍ୱବାଦର ଦାର୍ଶନିକ ମତବାଦର ଆଶ୍ରୟ ନେବାକୁ ହୁଏ ।

ଆମେ ଲକ୍ଷ୍ୟ କଲେ ଯେ, ଜଗତ ସଂପର୍କିତ ଦ୍ୱନ୍ଦ୍ୱମୂଳକ ଦୃଷ୍ଟିକୋଣ ପ୍ରଥମେ ଦେଖା ଦେଇଥିଲା ପ୍ରାଚୀନ ଚିନ୍ତାବିତ୍‌ମାନଙ୍କ ଦ୍ୱାରା ପ୍ରଚାରିତ ମତବାଦଗୁଡ଼ିକରେ । ଦୃଷ୍ଟାନ୍ତ ସ୍ୱରୂପ, ବୌଦ୍ଧ ତଥା ପ୍ରାଚୀନ ଗ୍ରୀକ୍‌ମାନେ ସ୍ୱତଃସ୍ଫୂର୍ତ୍ତ ଦ୍ୱନ୍ଦ୍ୱମୂଳକ ଚିନ୍ତାପଦ୍ଧତି ଅନୁସରଣ କରୁଥିଲେ । ଖ୍ରୀ: ପୂ: ୬ଷ୍ଠ ଏବଂ ୫ମ ଶତାବ୍ଦୀରେ ବୌଦ୍ଧ ଧର୍ମର ଅନୁଗାମୀମାନେ କହୁଥିଲେ, ଜଗତରେ ଏଭଳି କିଛି ନାହିଁ, ଯିଏକି ପରିବର୍ତ୍ତନଶୀଳ ନୁହେଁ । ସେମାନେ ମନେ କରୁଥିଲେ, ଯେକୌଣସି ଜିନିଷ ତିଷ୍ଠି ରହିଛି ଏବଂ ତିଷ୍ଠି ରହି ନାହିଁ । କୌଣସି ଏକ ଦୀପର ଆଲୋକ ଶିଖା ଅଭିନ୍ନ ଜଣାଗଲେ ମଧ୍ୟ ଯେକୌଣସି ମୁହୂର୍ତ୍ତରେ ଏହା ଭିନ୍ନ ହୋଇ ପାରେ । ଏହା ଏକ ଏବଂ ଅଭିନ୍ନ ନୁହେଁ । ଆମର ଶରୀର, ଅନୁଭୂତିଶକ୍ତି ଏବଂ ଜ୍ଞାନ ମଧ୍ୟ ପରିବର୍ତ୍ତନଶୀଳ । ପ୍ରତ୍ୟେକଟି ମୁହୂର୍ତ୍ତ ବିଗତ ହେବା ସଙ୍ଗେ ସଙ୍ଗେ, ଜୀବନରେ ନୂତନତାର ଆବିର୍ଭାବ ଘଟିବା ସଙ୍ଗେ ସଙ୍ଗେ, ପୁରାତନର ତିରୋଭାବ ଘଟୁଛି । ଜଗତରେ, ତେଣୁ ସ୍ଥିତିଶୀଳତା ନାହିଁ, ସବୁକିଛି କେବଳ ଘଟି ଚାଲିଛି । ନିରବଚ୍ଛିନ୍ନ ଭାବେ ଏହି ଘଟି ଚାଲିବାର ପ୍ରକ୍ରିୟାଟାକୁ ପଦାର୍ଥସକଳର ଐକ୍ୟ ହିସାବରେ ଉପସ୍ଥାପିତ କରାଯାଇଥିଲା । ବୀଜ ଏବଂ ବୃକ୍ଷ ହେଉଛି ଏକ ଏବଂ ଅଭିନ୍ନ । ହଜାର ବର୍ଷର ଏକ ଡିମିରି ଗଛ ହେଉଛି ସେ ଜନ୍ମ ନେଇଥିବା ମଞ୍ଜିଟି ସହିତ ଅଭିନ୍ନ ।

ମାର୍କସ୍‌ଙ୍କ ପୂର୍ବ ଦାର୍ଶନିକମାନଙ୍କ ମଧ୍ୟରେ ହେଗେଲ୍ ଦ୍ୱନ୍ଦ୍ୱବାଦର ଅଧିକ ବିକାଶ ସାଧନ କରିଥିଲେ । କିନ୍ତୁ ତାଙ୍କର ସେ ଦ୍ୱନ୍ଦ୍ୱବାଦ ଥିଲା କେବଳ ଅବଧାରଣାର ଦ୍ୱନ୍ଦ୍ୱବାଦ । ଏଥିରେ ନିହିତ ଥିଲା ଯୁକ୍ତିସମ୍ମତ ସିଦ୍ଧାନ୍ତରାଜି, କିନ୍ତୁ ମୋଟ ଉପରେ ତାଙ୍କର ଭାବବାଦୀ ଭିତ୍ତିଟା ଦ୍ୱନ୍ଦ୍ୱବାଦର ରହସ୍ୟକରଣରେ ପହଞ୍ଚାଇ ଦେଇଥିଲା ।

ମାର୍କସ୍ ଏବଂ ଏଙ୍ଗେଲସ୍ କିନ୍ତୁ ହେଗେଲ୍‌ଙ୍କ ଭଳି ଭାବବାଦୀ ସାରସତ୍ତାର ବିମୂର୍ତ୍ତ କ୍ଷେତ୍ରରୁ ଦ୍ୱନ୍ଦ୍ୱମୂଳକ ଅବଧାରଣା ତଥା ନିୟମରାଜିରେ ନପହଞ୍ଚି ବସ୍ତୁଗତ ପ୍ରପଞ୍ଚରାଜି ତଥା ପ୍ରକ୍ରିୟାସମୂହର ବ୍ୟାଖ୍ୟା ଏବଂ ସାମାଜିକ ପ୍ରୟୋଗ ତଥା ବିଜ୍ଞାନସିଦ୍ଧ ଅବଗତିର ଇତିହାସ ବିଷୟକ ସାଧାରଣୀକରଣରୁ ଦ୍ୱନ୍ଦ୍ୱମୂଳକ ଅବଧାରଣା ଏବଂ ନିୟମରାଜିରେ ପହଞ୍ଚିଥିଲେ । ପ୍ରାଚୀନ ଚିନ୍ତାବିତ୍‌ମାନଙ୍କର ଦ୍ୱନ୍ଦ୍ୱବାଦ ସରଳ ତଥା ସ୍ୱତଃସ୍ଫୂର୍ତ୍ତ ଏବଂ

ହେଗେଲ୍‌ଙ୍କ ଦ୍ୱନ୍ଦ୍ୱବାଦ ଭାବବାଦୀ ଥିଲା ବେଳେ ବୈଜ୍ଞାନିକ କମ୍ୟୁନିଜମ୍‌ର ପ୍ରତିଷ୍ଠାତାମାନେ ଦ୍ୱନ୍ଦ୍ୱବାଦ ସଂପର୍କରେ ଏକ ବସ୍ତୁବାଦୀ ଶିକ୍ଷା ପ୍ରଦାନ କରିଥିଲେ । ଏହା ଯଥେଷ୍ଟ ଭାବେ ବସ୍ତୁରାଜିର ସାର୍ବିକ ଆନ୍ତଃସଂପର୍କ (ଗଠନଗତ ଦିଗ) ଏବଂ ସେମାନଙ୍କ ପରିବର୍ତ୍ତନରେ (ପ୍ରକ୍ରିୟା ଏବଂ ବିକାଶ ଦିଗ) ମୌଳିକ ଉପାଦାନଗୁଡ଼ିକର ଐକ୍ୟରେ ବସ୍ତୁଗତ ଦ୍ୱନ୍ଦ୍ୱବାଦକୁ ପ୍ରକାଶ କରିଥିଲେ ।

## ୨ – ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ନୀତିରାଜି

ଦ୍ୱନ୍ଦ୍ୱବାଦ ସଂକ୍ରାନ୍ତ ବସ୍ତୁବାଦୀ ଶିକ୍ଷା, ଜଗତକୁ ପ୍ରକୃତିର ନିୟମାନୁଯାୟୀ ଚଳମାନ ବସ୍ତୁ ହିସାବରେ ଦେଖେ । ମାର୍କସ୍‌ବାଦୀ ଦ୍ୱନ୍ଦ୍ୱବାଦର ମୌଳିକ ଚିନ୍ତାରାଜିର କେନ୍ଦ୍ରରେ ରହିଛି ଏହି ବୈଜ୍ଞାନିକ ସନ୍ଦର୍ଭଟି । ଏଥିରେ, ସର୍ବୋପରି, ନିହିତ ଅଛି, ସାର୍ବିକ ଯୋଗସୂତ୍ର ଏବଂ ବିକାଶର ନୀତିରାଜି । ଏହିସବୁ ନୀତିରାଜି ପରସ୍ପର ସହିତ ମିଶ୍ରିତ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପ୍ରତିଷ୍ଠାତାମାନେ ତେଣୁ କରି ଦ୍ୱନ୍ଦ୍ୱବାଦକୁ ବ୍ୟାଖ୍ୟା କରିଥିଲେ ଏକଦିଗଦର୍ଶିତାରୁ ମୁକ୍ତ ସଂପୂର୍ଣ୍ଣ ଏବଂ ଗଭୀର ଅର୍ଥରେ ସାର୍ବିକ ଯୋଗସୂତ୍ରର ବିଜ୍ଞାନ ବା ବିକାଶର ବିଜ୍ଞାନ ରୂପେ, ଅର୍ଥାତ୍, ଦ୍ୱନ୍ଦ୍ୱବାଦକୁ ତା'ର ମୌଳିକ ଚିନ୍ତାରାଜି ସହିତ ଏକ ଅବିଚ୍ଛିନ୍ନ ଐକ୍ୟ ହିସାବରେ ବ୍ୟାଖ୍ୟା କରିଥିଲେ । ତେଣୁ, ବସ୍ତୁବାଦୀ ଦ୍ୱନ୍ଦ୍ୱବାଦକୁ ଯୋଗସୂତ୍ର ଏବଂ ବିକାଶର ଅବଧାରଣା ସହିତ ଆଲୋଚନା କରିବାଟା ସବୁଠାରୁ ଭଲ ହେବ ।

ଏ ଜଗତ ବିଚ୍ଛିନ୍ନ ପଦାର୍ଥରାଜିର ଏକ ବିଶୃଙ୍ଖଳ ସ୍ତୂପ ନୁହେଁ । ଏହା ହେଉଛି ପାରସ୍ପରିକ କ୍ରିୟାଶୀଳ ପ୍ରପଞ୍ଚରାଜିର ଏକ ଅଖଣ୍ଡ ସମଗ୍ରତା । ଯୋଗସୂତ୍ରର ଅବଧାରଣା ମଧ୍ୟରେ ପ୍ରକାଶ ପାଇଥାଏ ପଦାର୍ଥରାଜି ଏବଂ ସେସବୁର ଧର୍ମରାଶି ମଧ୍ୟରେ ସଂପର୍କରାଜି, ଯିଏକି ସେମାନଙ୍କର ପାରସ୍ପରିକ ନିର୍ଦ୍ଧାରଣତା, ସର୍ତ୍ତସାପେକ୍ଷତା ଏବଂ ନିର୍ଭରଶୀଳତାରେ ପ୍ରକାଶ ପାଇଥାଏ । ଆଉ ଏକ ନିବିଡ଼ ସଂପର୍କ ବି ଥାଏ, ଦୃଷ୍ଟାନ୍ତ ସ୍ୱରୂପ, ଭୌଗୋଳିକ ଆବହମଣ୍ଡଳର ବିଭିନ୍ନ ଉପାଦାନସମୂହ ମଧ୍ୟରେ, ଯଥା ଲିଥୋସ୍ଫିୟର, ଆବହମଣ୍ଡଳର ନିମ୍ନଭାଗ, ଜଳୀୟ ସ୍ତର, ମାଟି ଉପରର କୃଷ୍ଣ ଧୂଳିସ୍ତର ଏବଂ ଉପରି ମୃତ୍ତିକା ଏବଂ ପ୍ରାଣୀଜଗତ । ଭୌଗୋଳିକ ଆବହମଣ୍ଡଳର ଏହିସବୁ ମୌଳିକ ଅଂଶଗୁଡ଼ିକ ପରସ୍ପର ମଧ୍ୟରେ ଉପାଦାନ ତଥା ଶକ୍ତିର ବିନିମୟ କରିଥାନ୍ତି ଏବଂ ଏହା ଦ୍ୱାରା ଆବହମଣ୍ଡଳରେ ପରିବର୍ତ୍ତନ ଘଟିଥାଏ । ପୃଥିବୀ ପୃଷ୍ଠର ଭୂତାତ୍ତ୍ୱିକ ଗଢ଼ଣ ଭୂତାତ୍ତ୍ୱିକ ପର୍ଯ୍ୟାୟସମୂହ ଉପରେ ଆଉରି ଅଧିକ ଜଟିଳ ହୋଇଛି, ଏବଂ ନୂତନ ତଥା ଅଧିକ ସଂଗଠିତ ଧରଣର ପ୍ରାଣୀ ଏବଂ ଉଦ୍‌ଭିଦସବୁ ଦେଖା ଦେଇଛନ୍ତି । ଏହିସବୁ ସହିତ ମିଶିଥାଏ ନୂଆ, ଆଉରି ଜଟିଳ ଜୈବିକ ମିଶ୍ରିତ ପଦାର୍ଥସମୂହର ବିକାଶ । ନୂଆ ଧରଣର ମୃତ୍ତିକାର ଉଦ୍‌ଭବ ଘଟୁଛି । ନୂଆ ନୂଆ ଜୀବ ଏବଂ ମୃତ୍ତିକାର ଉଦ୍‌ଭବ ଫଳରେ

ଭୂମି, ଜଳ ଏବଂ ମହାସାଗରର ରାସାୟନିକ ଗଠନରେ ଜଟିଳତା ଦେଖାଯାଇଛି । ଏହା ଦ୍ୱାରା ଆବହମଣ୍ଡଳ ମଧ୍ୟ ଆଉରି ଜଟିଳ ପାଲଟିଛି । ମାନବ ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଆମ ପୃଥିବୀର ଚରିତ୍ର ଉପରେ ନୂଆ ପ୍ରଭାବ ପଡ଼ୁଛି । ଏବଂ ଏହିସବୁ ପ୍ରଭାବ ସବୁବେଳେ ଅସ୍ତିବାଚକ ନୁହେଁ । ଭୌଗୋଳିକ ଆବହମଣ୍ଡଳରେ ପରିବର୍ତ୍ତନ ଏବେ ଅଧିକରୁ ଅଧିକ ପ୍ରକାଶ ପାଉଛି ଏକଗୁଟିଆ ପୁଞ୍ଜିପତିମାନଙ୍କ ଦ୍ୱାରା ପ୍ରକୃତିକୁ ଲୋଭୀପଣ ଶୋଷଣ ଫଳରେ, ବୈଜ୍ଞାନିକ ଏବଂ କାରିଗରିଗତ ବିପ୍ଳବ କାଳରେ ଦ୍ରୁତ ଶିଳ୍ପ ଉତ୍ପାଦନର ବିକାଶ ହେତୁ ଏବଂ ପ୍ରକୃତି ଉପରେ ସମାଜର ପ୍ରଭାବର ଯୋଜନାବଦ୍ଧ ବିଶ୍ୱବ୍ୟାପୀ ନିୟନ୍ତ୍ରଣର ଅଭାବ ଫଳରେ । ଏହା ଆବହମଣ୍ଡଳୀୟ ସଂକଟ ସୃଷ୍ଟି କରୁଛି ଏବଂ ତେଣୁ ଏହିସବୁ ପରିବର୍ତ୍ତନ ବହୁଦିଗରୁ ଘୋର ବିପର୍ଯ୍ୟୟ ସ୍ୱରୂପ ହୋଇଛି । ଆବହମଣ୍ଡଳୀୟ ବିରୋଧିତା ହୁଏତ ବହୁବିଧ କାରଣରୁ ଦେଖା ଦେଇ ପାରେ । ସେସବୁ ମଧ୍ୟରୁ କେତେକ ସ୍ଥାନୀୟ କାରଣ ମଧ୍ୟ ରହିଛି : ଯଥା ଭାରତର ଯେଉଁସବୁ ଅଞ୍ଚଳ ମରୁଭୂମିର ପାର୍ଶ୍ୱବର୍ତ୍ତୀ, ସେସବୁ ଜାଗାରେ ସଘନ ପଶୁଚାରଣ, ବିଶେଷତଃ, ଛାଗଳ ଚାରଣ ହେତୁ ମୃତ୍ତିକା କ୍ଷୟ ଘଟେ ଏବଂ ମରୁଭୂମି ମାଡ଼ି ଚାଲେ । ରାଜସ୍ଥାନର କେତେକ ଅଞ୍ଚଳରେ ମରୁଭୂମି ବର୍ଷକୁ ପ୍ରାୟ କିଲୋମିଟର ଲେଖାଏଁ ମାଡ଼ି ମାଡ଼ି ଚାଲିଛି । "ପଶୁଚାରଣ ଏବଂ ଚାରଣ ଭୂମିର କ୍ଷୟ" ମଧ୍ୟରେ ଯୋଗସୂତ୍ର ଫଳରେ ଜଟିଳ ସମସ୍ୟାରାଜି ସୃଷ୍ଟି ହୁଏ, କାରଣ, ଅର୍ଦ୍ଧମରୁ ଅଞ୍ଚଳର ଅଧିବାସୀମାନଙ୍କର ଅନେକ ସମୟରେ ମୁଖ୍ୟ ବେଉସା ହେଉଛି ପଶୁପାଳନ ।

ବସ୍ତୁଗତ ବାସ୍ତବତା ମଧ୍ୟରେ ବସ୍ତୁ, ପ୍ରପଞ୍ଚରାଜି ଏବଂ ଘଟଣାବଳୀ ମଧ୍ୟରେ ଯୋଗସୂତ୍ରସମୂହ ବହୁବିଧ । ସେସବୁ ଆଭ୍ୟନ୍ତରୀଣ ବା ବାହ୍ୟିକ ହୋଇ ପାରେ, ଆଶୁ ବା ପରୋକ୍ଷ, ପ୍ରତ୍ୟକ୍ଷ ବା ବିପରୀତ, ଅସ୍ପଷ୍ଟ ବା ସ୍ପଷ୍ଟ, ଆବଶ୍ୟକୀୟ ବା ଆକସ୍ମିକ, ଅନିବାର୍ଯ୍ୟ ବା ବାର୍ଯ୍ୟ ଆଦି ହୋଇ ପାରେ । ଚଳମାନ ବସ୍ତୁର ମୌଳିକ ରୂପରାଶି ଅନୁଯାୟୀ ଯୋଗସୂତ୍ରସମୂହକୁ ଭୌତିକ, ରାସାୟନିକ, ଜୈବିକ ଏବଂ ସାମାଜିକ ଭାବେ ଶ୍ରେଣୀବଦ୍ଧ କରାଯାଇ ପାରେ । ମହାଜାଗତିକ ଏବଂ ଜାଗତିକ ପାରାମିଟର, ସାଧାରଣତ୍ୱର ମାନ ଆଦି ଅନୁଯାୟୀ ମଧ୍ୟ ସେସବୁକୁ ଚିହ୍ନିତ କରାଯାଇ ପାରେ । ପ୍ରପଞ୍ଚରାଜିର ନିୟମାନୁଗ, ଯୁକ୍ତିସମ୍ମତ ଯୋଗସୂତ୍ର ସଂପର୍କରେ ଜ୍ଞାନ ହେଉଛି ବିଶେଷ ଗୁରୁତ୍ୱପୂର୍ଣ୍ଣ ।

## ୩ – ନିୟମର ଅବଧାରଣା

ନିୟମ ବୋଇଲେ କ'ଣ ? ଏହା ପଦାର୍ଥରାଜି ମଧ୍ୟରେ ସଂପର୍କ କିମ୍ବା ଯୋଗସୂତ୍ରଠାରୁ ଅନେକ ଭିନ୍ନ । ସର୍ବୋପରି ନିୟମ ହେଉଛି ପ୍ରକୃତିରେ ସାଧାରଣତ୍ୱର ଏକ ରୂପ । ଏହା ସେହିସବୁ ସାଧାରଣ ଏବଂ ସାଦୃଶ୍ୟକୁ ନେଇ ଗଠିତ, ଯିଏକି

ପ୍ରପଞ୍ଚରାଜିର ଗୋଟିଏ ଗୋଟିଏ ଗୋଷ୍ଠୀ ମଧ୍ୟରେ ସହଜାତ ଏବଂ ତଦନୁଯାୟୀ ସେସବୁର ଐକ୍ୟକୁ ପ୍ରକାଶ କରିଥାଏ । କୌଣସି ଏକ ନିୟମ ନିର୍ଦ୍ଦିଷ୍ଟ କେତେକ ଅବସ୍ଥାରାଜିରେ କାର୍ଯ୍ୟକର ହୋଇଥାଏ ଏବଂ ସେଥିରେ ବ୍ୟତିକ୍ରମ ବୋଲି କିଛି ନଥାଏ । ଧାନ ଗଛର ମଞ୍ଜିରୁ କେବଳ ଧାନ ଗଛ ହୁଏ, ଅନ୍ୟ କିଛି ହୋଇ ପାରେ ନାହିଁ । ଯେଉଁ ପଦାର୍ଥ ପିଣ୍ଡକୁ ନେଇ ଗଠିତ ସେସବୁ ମହାକର୍ଷଣ ନିୟମର ଅନୁବର୍ତ୍ତୀ । ଯେଉଁଠି ପଣ୍ୟ ଉତ୍ପାଦନ ହୁଏ ସେଇଠି କେବଳ ମୂଲ୍ୟ ନିୟମଟି କାର୍ଯ୍ୟକାରୀ ହୁଏ । ତେଣୁ କରି ନିୟମ ବସ୍ତୁମାନଙ୍କ ମଧ୍ୟରେ ଥିବା ଅଭିନ୍ନତାକୁ ପ୍ରକାଶ କରିଥାଏ ଏବଂ ସେସବୁ ମଧ୍ୟରେ ଥିବା ଆବଶ୍ୟକୀୟତା ଏବଂ ଅନିବାର୍ଯ୍ୟତାକୁ ଉପସ୍ଥାପିତ କରେ । ଏଥିରେ ଦେଖିବାକୁ ମିଳେ ପ୍ରପଞ୍ଚରାଜି ମଧ୍ୟରେ ଥିବା ସ୍ଥାୟୀ ଏବଂ ପୁନରାବର୍ତ୍ତକ ଯୋଗସୂତ୍ରସମୂହ । ଦୃଷ୍ଟାନ୍ତ ସ୍ୱରୂପ, କୌଣସି ଏକ ବୈରିତାପୂର୍ଣ୍ଣ ସମାଜରେ ଶ୍ରେଣୀସମୂହ ତଥା ଶ୍ରେଣୀ ସଂପର୍କରାଜି କିପରି ପରିବର୍ତ୍ତିତ ହେଉଛି, ସେଥିରେ କିଛି ଯାଏ ଆସେ ନାହିଁ । ଯେପର୍ଯ୍ୟନ୍ତ ସେଥିରେ ଶୋଷକ ଏବଂ ଶୋଷିତମାନେ ଥିବେ, ସେପର୍ଯ୍ୟନ୍ତ ସେମାନେ ସର୍ବଦା ଶ୍ରେଣୀ ସଂଗ୍ରାମରେ ଲିପ୍ତ ରହିବେ । ଯେପର୍ଯ୍ୟନ୍ତ ସାମ୍ରାଜ୍ୟବାଦୀ ଉତ୍ପୀଡ଼ନ ଥିବ, ସେପର୍ଯ୍ୟନ୍ତ ଲୋକେ ତା ବିରୁଦ୍ଧରେ ଲଢ଼େଇ କରି ଯିବେ ।

ବସ୍ତୁସମୂହ ଏବଂ ପ୍ରପଞ୍ଚରାଜି ମଧ୍ୟରେ ଯୁକ୍ତିଯୁକ୍ତ ସଂପର୍କ ହେଉଛି ପ୍ରକୃତି ଏବଂ ସମାଜର ଦ୍ୱନ୍ଦ୍ୱବାଦର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ । ଲୋକେ ଗ୍ରହାନ୍ତୁ ବା ନଗ୍ରହାନ୍ତୁ ନିୟମରାଜି ବସ୍ତୁନିଷ୍ଠ ଭାବେ କାର୍ଯ୍ୟ କରିଥାଏ । କିନ୍ତୁ ମଣିଷଠାରୁ ସ୍ୱାଧୀନ ଭାବେ, ମଣିଷର ଚେତନାର ବାହାରେ ନିୟମରାଜି ଅବସ୍ଥାନ କରିବା ଅର୍ଥ ନୁହେଁ ଯେ, ସେସବୁ ବିରୁଦ୍ଧରେ ମଣିଷ ହେଉଛି ଶକ୍ତିହୀନ ।

ମଣିଷ ତା'ର ବ୍ୟାବହାରିକ କାର୍ଯ୍ୟକଳାପରେ ଅବହିତ ନିୟମରାଜିକୁ ବ୍ୟବହାର କରିଥାଏ । ସେସବୁର କାର୍ଯ୍ୟକାରିତା ଅବସ୍ଥାରାଜିକୁ ପ୍ରଭାବିତ କରି ସେସବୁର କାର୍ଯ୍ୟର ଚରିତ୍ର ତଥା ଫଳାଫଳକୁ ପ୍ରଭାବିତ କରି ପାରେ । ଦୃଷ୍ଟାନ୍ତ ସ୍ୱରୂପ, ଏକ ମହାକାଶ ଯାନରେ ଭାରହୀନ ଅବସ୍ଥା ଥିଲେ ମଧ୍ୟ କୃତ୍ରିମ ଭାବେ ସେଠାରେ ମହାକର୍ଷଣ ଶକ୍ତି ସୃଷ୍ଟି କରାଯାଇ ପାରେ । ସମାଜର ନିୟମାବଳୀର ବିଶେଷ ଲକ୍ଷଣସମୂହ ରହିଛି ଏବଂ ସେସବୁ ପ୍ରତିଫଳିତ ହୋଇଥାଏ ଜନସାଧାରଣଙ୍କ କାର୍ଯ୍ୟକଳାପରେ, ଯେଉଁମାନେ ହେଉଛନ୍ତି ଇତିହାସର ପ୍ରକୃତ ସ୍ରଷ୍ଟା । ସାମାଜିକ ଜୀବନର ନିୟମରାଜିକୁ ଜାଣିଲା ପରେ ଲୋକେ ଉଦ୍ଦେଶ୍ୟମୂଳକ ଭାବେ ଐତିହାସିକ ବିକାଶର ଗତିପଥକୁ ପ୍ରଭାବିତ କରି ପାରନ୍ତି ।

ଏ ବସ୍ତୁନିଷ୍ଠ ଜଗତରେ ନାନା ଧରଣର ନିୟମ ରହିଛି । ତଥାକଥିତ ଭୌତିକ ଗତିଉତ୍ପାଦକ ନିୟମରାଜି ପୃଥକ୍ ପୃଥକ୍ ପଦାର୍ଥର ସ୍ଥିତି ତଥା ଗତିକୁ ନିର୍ଦ୍ଧାରିତ କରିଥାଏ । ଦୃଷ୍ଟାନ୍ତ ସ୍ୱରୂପ, ଗାଲିଲିଓ ଏବଂ କେପଲର୍‌ଙ୍କ ବ୍ୟୋମ-ଯନ୍ତ୍ରବିଦ୍ୟାର ନିୟମାବଳୀ, ଉଡ଼ନ୍ତ ବସ୍ତୁର ବକ୍ରଗତିକୁ ନିୟନ୍ତ୍ରଣ କରିବାର ନିୟମ, ଜୀବନ୍ତ ପ୍ରାଣୀର

# ନିୟମସମୂହର ଶ୍ରେଣୀବିନ୍ୟାସ

"ନିୟମର ଅବଧାରଣା ହେଉଛି ମଣିଷ ଦ୍ୱାରା ଐକ୍ୟ ଏବଂ ଯୋଗସୂତ୍ରର, ପାରସ୍ପରିକ ନିର୍ଭରଶୀଳତା ଏବଂ ଜଗତ ପ୍ରକ୍ରିୟାର ସମଗ୍ରତାର ଅବଗତିର ଏକ ପର୍ଯ୍ୟାୟ ।"

— ଲେନିନ୍



କାର୍ଯ୍ୟକଳାପର ନିୟମାବଳୀ, ଆଦି । ଅନ୍ୟ ଦିଗରେ, ଯେଉଁସବୁ ନିୟମ କେବଳ ପ୍ରପଞ୍ଚରାଜି ମଧ୍ୟରେ ପ୍ରକାଶ ପାଏ, ସେସବୁକୁ ସାଧାରଣତଃ ପରିସଂଖ୍ୟକ ନିୟମ ବୋଲି କୁହାଯାଏ । ଗ୍ୟାସ୍ ମଧ୍ୟରେ ଥିବା ଅଣୁରାଶିର ବିଶୃଙ୍ଖଳ ଗତିବିଧି, କ୍ଷୁଦ୍ରାତିକ୍ଷୁଦ୍ର ଅଣୁରାଜିର ଆଚରଣ, ସମାଜର ବହୁ ଜନସଂଖ୍ୟାଗତ ପ୍ରକ୍ରିୟାକୁ (ଯଥା, ୧୦୬ : ୧୦୦ ଆନୁପାତିକରେ ପ୍ରକାଶ ପାଉଥିବା ପୁଅ ଏବଂ ଝିଅମାନଙ୍କ ଜନ୍ମ ହାରର ଆନ୍ତଃସଂପର୍କକୁ) ନିୟନ୍ତ୍ରଣ କରେ ପରିସଂଖ୍ୟାନଗତ ନିୟମରାଜି । ଗତିସଂକ୍ରାନ୍ତ ନିୟମରାଜିକୁ ଜାଣି ପାରିଲେ, ନିର୍ଦ୍ଦିଷ୍ଟ ଏକ ପ୍ରପଞ୍ଚର ଅଭ୍ୟୁଦୟ ଏବଂ ତା'ର ଧର୍ମ ତଥା ଅବସ୍ଥା ସଂପର୍କରେ ଖୁବ୍ ସଠିକ ଭାବେ ଭବିଷ୍ୟଦବାଣୀ କରିବା ସମ୍ଭବ ହୁଏ । ଅଥଚ ପରିସଂଖ୍ୟାନଗତ ନିୟମାବଳୀ ଅନୁରୂପ ପ୍ରପଞ୍ଚର ପରିବର୍ତ୍ତନର ଅଭ୍ୟୁଦୟ ବା ସମ୍ଭାବ୍ୟତାର ପରିମାଣକୁ ନିର୍ଦ୍ଧାରଣ କରିବାର କେବଳ ଭିତ୍ତି ରୂପେ କାର୍ଯ୍ୟ କରିଥାଏ ।

ନିୟମସମୂହର କାର୍ଯ୍ୟକାରୀ କ୍ଷେତ୍ର ବା ସାଧାରଣୀକରଣର ସ୍ତରକୁ ତିନି ଭାଗରେ ଭାଗ କରି ଦିଆଯାଇ ପାରେ, ଯଥା, ବିଶେଷ, ସାଧାରଣ ଏବଂ ସାର୍ବିକ । ବିଶେଷ ନିୟମସକଳ କେବଳ ବସ୍ତୁର ନିର୍ଦ୍ଦିଷ୍ଟ ଏକ ଗତିରୂପ ବା କେତେକ ନିର୍ଦ୍ଦିଷ୍ଟ ପ୍ରପଞ୍ଚରାଜି ପ୍ରତି ପ୍ରଯୋଜ୍ୟ । ସାଧାରଣ ନିୟମରାଜି ଅଜୈବ ଏବଂ ଜୈବ ପ୍ରକୃତି ମଧ୍ୟରେ କାର୍ଯ୍ୟକାରୀ ହୋଇଥାଏ । ପୃଥକ୍ ପୃଥକ୍ ସାମାଜିକ ଅର୍ଥନୈତିକ ଗଢ଼ଣରାଜିର ବିକାଶର ନିୟମାବଳୀ, ମାନବ ଇତିହାସରେ କାର୍ଯ୍ୟକାରୀ ହୁଏ ନାହିଁ, କିନ୍ତୁ ସାଧାରଣ ନିୟମରାଜି କାର୍ଯ୍ୟକାରୀ ହୋଇଥାଏ । ବିଶେଷ ଏବଂ ସାଧାରଣ ନିୟମରାଜିର ସାଥେ ସାଥେ ବସ୍ତୁଗତ ଜଗତରେ ଆବଶ୍ୟକୀୟ, ଅନିବାର୍ଯ୍ୟ ଏବଂ ପୁନରାନୁକ୍ରମିକ ଯୋଗସୂତ୍ରସମୂହ ରହିଛି, ଯିଏକି ମାନବ ଚିନ୍ତା ସମେତ ପ୍ରକୃତି ତଥା ସମାଜର ସମସ୍ତ ପ୍ରପଞ୍ଚ ଏବଂ ପ୍ରକ୍ରିୟାରାଜି ମଧ୍ୟରେ ନିହିତ । ସେସବୁ ହେଉଛି ସାର୍ବିକ ନିୟମାବଳୀ ଏବଂ ସେସବୁ ମଧ୍ୟ ଦ୍ୱନ୍ଦ୍ୱବାଦର ନିୟମରାଶି ହିସାବରେ କଥିତ । ସେସବୁ ମଧ୍ୟରେ ଅଛି, ଦୃଷ୍ଟାନ୍ତ ସ୍ୱରୂପ, ପ୍ରପଞ୍ଚରାଜିର ସାମୟିକ ନିର୍ଦ୍ଧାରଣତାର ନିୟମ, ସଂଖ୍ୟାଗତ ପରିବର୍ତ୍ତନରୁ ଗୁଣଗତ ପରିବର୍ତ୍ତନକୁ ଉତ୍ତରଣର ନିୟମ । ସେସବୁର ବ୍ୟାଖ୍ୟା ଦ୍ୱାରା ବିଶ୍ୱଜଗତର ସମଗ୍ରତାକୁ ଅବଧାରଣା କରିବା ସମ୍ଭବ ହୁଏ ।

## ୪ – ଦ୍ୱନ୍ଦ୍ୱବାଦ ଏବଂ ଅଧିବିଦ୍ୟାବାଦ

ବସ୍ତୁର ସ୍ୱଗତିଶୀଳତା ଏବଂ ସାର୍ବିକ ବିଶ୍ୱଯୋଗସୂତ୍ରର ବିକାଶ ମଧ୍ୟରୁ ତା'ର ବହୁବିଧ ବିଶେଷ ରୂପସମୂହର ଅଭ୍ୟୁଦୟ ଘଟେ, ଯିଏକି ବସ୍ତୁନିଷ୍ଠ ବାସ୍ତବତାର ଅବିରାମ ବିକାଶକୁ ପ୍ରକାଶ କରିଥାଏ । ବସ୍ତୁର ସମସ୍ତ ରୂପର ବିକାଶ ଘଟିଥାଏ ତା'ର ଅନ୍ୟାନ୍ୟ ରୂପ ଏବଂ ଅବସ୍ଥାରାଜି ମଧ୍ୟରୁ ।

ଭୌତିକ ରୂପରାଜି କିଭଳି ବିଭିନ୍ନ ଏବଂ ଜଟିଳ ହୁଏ, ସେ କଥା ଆମେ ବିଶ୍ବରେ ଘଟୁଥିବା ପରିବର୍ତ୍ତନରାଜିର ସାଧାରଣ ଦୃଶ୍ୟକୁ ଲକ୍ଷ୍ୟ କଲେ ଜାଣି ପାରେ । ୧୮,୦୦୦ ନିୟୁତ ବର୍ଷ ଆଗେ ଆମ ଚତୁର୍ପାର୍ଶ୍ବସ୍ଥ ଜଗତର ଅବସ୍ଥା ଯାହା ଥିଲା, ଆଜି ତାହା ଗୁଣଗତ ଭାବେ ଭିନ୍ନ ଭିନ୍ନ । ଏ ଛାୟାପଥ ଏବଂ ତାରକାସମୂହ ସେତେବେଳେ ନଥିଲେ, ବସ୍ତୁ ସେତେବେଳେ ଥିଲା ଖୁବ୍ ଘନ ଏବଂ ଅତି ଉତପ୍ତ । ବସ୍ତୁ ଏବଂ ବିରୋଧ ବସ୍ତୁର (antimatter) ଅଣୁରାଶି ମଧ୍ୟରେ ସଘନ ପ୍ରକ୍ରିୟାମାନ ଘଟୁଥିଲା । ତାପାଙ୍କ କମିଯିବା ଫଳରେ ପ୍ଲାଜମା ମଧ୍ୟରେ ଆଲୋକ ଉପାଦାନସମୂହର ସଂଶ୍ଳେଷଣ ଘଟିଲା । ପ୍ରୋଟନ୍‌ସବୁ ଇଲେକ୍‌ଟ୍ରନ୍‌ଗୁଡ଼ିକ ସହିତ ମିଶ୍ରିତ ହୋଇ ଉଦ୍‌ଜାନ ସୃଷ୍ଟି କଲେ ଏବଂ ଅନ୍ୟାନ୍ୟ ରାସାୟନିକ ଉପାଦାନସମୂହ ରୂପ ପରିଗ୍ରହ କଲା । ପ୍ରାୟ ୧୨,୦୦୦ ନିୟୁତରୁ ୧୫,୦୦୦ ନିୟୁତ ବର୍ଷ ପୂର୍ବେ ବିଭିନ୍ନ ଛାୟାପଥରେ ବସ୍ତୁ ଠୁଳୀକୃତ ହେବାକୁ ଲାଗିଲା । ସୌରଜଗତ ଏବଂ ପୃଥିବୀ ସୃଷ୍ଟି ହୋଇଥିଲା ୫,୦୦୦ ନିୟୁତ ବର୍ଷ ପୂର୍ବେ । ବିକାଶର ବେଗ କ୍ରମଶଃ ତ୍ବରାନ୍ୱିତ ହେବାକୁ ଲାଗିଲା । ପ୍ରାୟ ୩,୦୦୦ ନିୟୁତ ବର୍ଷ ଆଗେ ମୂଳ କୋଷର ଅମ୍ଳ ଏବଂ ଖାଦ୍ୟସାର ମଧ୍ୟରେ ସମ୍ମିଶ୍ରଣରୁ ଜାତ ବସ୍ତୁ ମଧ୍ୟରୁ ଜୀବନର ଅଭ୍ୟୁଦୟ ଘଟିବାକୁ ଲାଗିଲା । ଆଦିମ ଏକକୋଷୀ ପ୍ରାଣୀର ଅଭ୍ୟୁଦୟ, ଅବଶ୍ୟ, ଘଟିଥିଲା ଅନେକ ପରେ । ପରବର୍ତ୍ତୀ କାଳରେ, ଜୀବନର ଆଉରି ଜଟିଳ ରୂପମାନ ଜନ୍ମ ନେଇଥିଲା । ମଣିଷର ବିକାଶ ଘଟିବାକୁ ଲାଗିଥିଲା ପ୍ରାୟ ଦୁଇ ନିୟୁତ ବର୍ଷ ପୂର୍ବେ ଏବଂ କେବଳ ୪୦,୦୦୦ ବର୍ଷ ପୂର୍ବେ ପଶୁଜଗତରୁ ତା'ର ଅଭ୍ୟୁଦୟ ଘଟିଥିଲା । ଏହି ସମୟରେ ଆଦିମ ମାନବ ସମାଜର ବିକାଶ ଘଟିବାକୁ ଲାଗିଲା । ତା'ପରେ ବିକାଶ ଆଉରି ବେଗବାନ ହେବାକୁ ଲାଗିଲା, ଉତ୍ପାଦିକା ଶକ୍ତିସମୂହ, ସାମାଜିକ ଗଢ଼ଣ ଏବଂ ସାମାଜିକ ଚେତନା ଗୁରୁତ୍ବପୂର୍ଣ୍ଣ ପରିବର୍ତ୍ତନମାନ ଘଟିଲା । ପ୍ରାୟ ୫,୦୦୦ ବର୍ଷ ପୂର୍ବେ ସମାଜରେ ହେଲା ଶ୍ରେଣୀ ବିଭାଗ ଏବଂ ଏହାର ଫଳ ସ୍ୱରୂପ, ବୈରିତାପୂର୍ଣ୍ଣ ଦାସମାଲିକ, ସାମନ୍ତବାଦୀ ଏବଂ ପୁଞ୍ଜିବାଦୀ ସାମାଜିକ ଅର୍ଥନୈତିକ ଗଢ଼ଣସମୂହରେ ଦେଖା ଦେଲା ଶୋଷଣର ବିଭିନ୍ନ ରୂପରାଶି । ଷାଠିଏ ବର୍ଷରୁ ଅଧିକ କାଳ ଆଗେ ସମାଜବାଦୀ ସମାଜର ଅଭ୍ୟୁଦୟ ଘଟିଲା, ଶୋଷଣମୁକ୍ତ ଶ୍ରମିକମାନଙ୍କ ମଧ୍ୟରେ ପାରସ୍ପରିକ ସହାୟତା ତଥା ସହଯୋଗ ଉପରେ ଭିତ୍ତି କରି ଲୋକମାନଙ୍କ ଭିତରେ ଦେଖା ଦେଲା ଗୁଣଗତ ଭାବେ ନୂତନ ସଂପର୍କ ।

ଏହି ସମସ୍ତ ତଥ୍ୟ ଜଗତର ବିକାଶକୁ ସ୍ୱୀକାର କରିବା ପାଇଁ ବାଧ୍ୟ କରିଥାଏ । ଆଜିକାଲି ଏଭଳି କୌଣସି ଦାର୍ଶନିକଙ୍କୁ ଦେଖିବାକୁ ମିଳେ ନାହିଁ, ଯିଏକି ଏସବୁକୁ ଅସ୍ୱୀକାର କରନ୍ତି, ଜଗତର ଅପରିବର୍ତ୍ତନୀୟତା ସଂପର୍କରେ ପାରମ୍ପରିକ ଅଧିଭୌତିକ ଅବଧାରଣାର ପ୍ରଭୁତ୍ୱ କାଳରେ ଯେପରି ଥିଲା । କିନ୍ତୁ ଏହା ସତ୍ତ୍ୱେ, ବିକାଶକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଦ୍ୱନ୍ଦ୍ୱବାଦକୁ ମଧ୍ୟ ପ୍ରତ୍ୟାଖ୍ୟାନ କରିବା ସମ୍ଭବ । ଏହା ନିର୍ଭର କରେ ବିକାଶର ପ୍ରକ୍ରିୟାକୁ କିପରି ବ୍ୟାଖ୍ୟା କରାଯାଉଛି । "ବିକାଶର (କ୍ରମବିକାଶ) ଦୁଇଟି ମୌଳିକ (ଅଥବା ଦୁଇଟି ସମ୍ଭାବ୍ୟ ? ବା ଦୁଇଟି ଐତିହାସିକ ଭାବେ

କାର୍ଯ୍ୟକଳାପର ନିୟମାବଳୀ, ଆଦି । ଅନ୍ୟ ଦିଗରେ, ଯେଉଁସବୁ ନିୟମ କେବଳ ପ୍ରପଞ୍ଚରାଜି ମଧ୍ୟରେ ପ୍ରକାଶ ପାଏ, ସେସବୁକୁ ସାଧାରଣତଃ ପରିସଂଖ୍ୟକ ନିୟମ ବୋଲି କୁହାଯାଏ । ଗ୍ୟାସ୍ ମଧ୍ୟରେ ଥିବା ଅଣୁରାଶିର ବିଶୃଙ୍ଖଳ ଗତିବିଧି, କ୍ଷୁଦ୍ରାତିକ୍ଷୁଦ୍ର ଅଣୁରାଜିର ଆଚରଣ, ସମାଜର ବହୁ ଜନସଂଖ୍ୟାଗତ ପ୍ରକ୍ରିୟାକୁ (ଯଥା, ୧୦୬:୧୦୦ ଆନୁପାତିକରେ ପ୍ରକାଶ ପାଉଥିବା ପୁଅ ଏବଂ ଝିଅମାନଙ୍କ ଜନ୍ମ ହାରର ଆନ୍ତଃସଂପର୍କକୁ) ନିୟନ୍ତ୍ରଣ କରେ ପରିସଂଖ୍ୟାନଗତ ନିୟମରାଜି । ଗତିସଂକ୍ରାନ୍ତ ନିୟମରାଜିକୁ ଜାଣି ପାରିଲେ, ନିର୍ଦ୍ଦିଷ୍ଟ ଏକ ପ୍ରପଞ୍ଚର ଅଭ୍ୟୁଦୟ ଏବଂ ତା'ର ଧର୍ମ ତଥା ଅବସ୍ଥା ସଂପର୍କରେ ଖୁବ୍ ସଠିକ ଭାବେ ଭବିଷ୍ୟଦବାଣୀ କରିବା ସମ୍ଭବ ହୁଏ । ଅଥଚ ପରିସଂଖ୍ୟାନଗତ ନିୟମାବଳୀ ଅନୁରୂପ ପ୍ରପଞ୍ଚର ପରିବର୍ତ୍ତନର ଅଭ୍ୟୁଦୟ ବା ସମ୍ଭାବ୍ୟତାର ପରିମାଣକୁ ନିର୍ଦ୍ଧାରଣ କରିବାର କେବଳ ଭିତ୍ତି ରୂପେ କାର୍ଯ୍ୟ କରିଥାଏ ।

ନିୟମସମୂହର କାର୍ଯ୍ୟକାରୀ କ୍ଷେତ୍ର ବା ସାଧାରଣୀକରଣର ସ୍ତରକୁ ତିନି ଭାଗରେ ଭାଗ କରି ଦିଆଯାଇ ପାରେ, ଯଥା, ବିଶେଷ, ସାଧାରଣ ଏବଂ ସାର୍ବିକ । ବିଶେଷ ନିୟମସକଳ କେବଳ ବସ୍ତୁର ନିର୍ଦ୍ଦିଷ୍ଟ ଏକ ଗତିରୂପ ବା କେତେକ ନିର୍ଦ୍ଦିଷ୍ଟ ପ୍ରପଞ୍ଚରାଜି ପ୍ରତି ପ୍ରଯୋଜ୍ୟ । ସାଧାରଣ ନିୟମରାଜି ଅଜୈବ ଏବଂ ଜୈବ ପ୍ରକୃତି ମଧ୍ୟରେ କାର୍ଯ୍ୟକାରୀ ହୋଇଥାଏ । ପୃଥକ୍ ପୃଥକ୍ ସାମାଜିକ ଅର୍ଥନୈତିକ ଗଢ଼ଣରାଜିର ବିକାଶର ନିୟମାବଳୀ, ମାନବ ଇତିହାସରେ କାର୍ଯ୍ୟକାରୀ ହୁଏ ନାହିଁ, କିନ୍ତୁ ସାଧାରଣ ନିୟମରାଜି କାର୍ଯ୍ୟକାରୀ ହୋଇଥାଏ । ବିଶେଷ ଏବଂ ସାଧାରଣ ନିୟମରାଜିର ସାଥେ ସାଥେ ବସ୍ତୁଗତ ଜଗତରେ ଆବଶ୍ୟକୀୟ, ଅନିବାର୍ଯ୍ୟ ଏବଂ ପୁନରାନୁକ୍ରମିକ ଯୋଗସୂତ୍ରସମୂହ ରହିଛି, ଯିଏକି ମାନବ ଚିନ୍ତା ସମେତ ପ୍ରକୃତି ତଥା ସମାଜର ସମସ୍ତ ପ୍ରପଞ୍ଚ ଏବଂ ପ୍ରକ୍ରିୟାରାଜି ମଧ୍ୟରେ ନିହିତ । ସେସବୁ ହେଉଛି ସାର୍ବିକ ନିୟମାବଳୀ ଏବଂ ସେସବୁ ମଧ୍ୟ ଦ୍ୱନ୍ଦ୍ୱବାଦର ନିୟମରାଶି ହିସାବରେ କଥିତ । ସେସବୁ ମଧ୍ୟରେ ଅଛି, ଦ୍ୱନ୍ଦ୍ୱାତ୍ମକ ସ୍ୱରୂପ, ପ୍ରପଞ୍ଚରାଜିର ସାମୟିକ ନିର୍ଦ୍ଧାରଣତାର ନିୟମ, ସଂଖ୍ୟାଗତ ପରିବର୍ତ୍ତନରୁ ଗୁଣଗତ ପରିବର୍ତ୍ତନକୁ ଉତ୍ତରଣର ନିୟମ । ସେସବୁର ବ୍ୟାଖ୍ୟା ଦ୍ୱାରା ବିଶ୍ୱଜଗତର ସମଗ୍ରତାକୁ ଅବଧାରଣା କରିବା ସମ୍ଭବ ହୁଏ ।

## ୪ – ଦ୍ୱନ୍ଦ୍ୱବାଦ ଏବଂ ଅଧିବିଦ୍ୟାବାଦ

ବସ୍ତୁର ସ୍ୱଗତିଶୀଳତା ଏବଂ ସାର୍ବିକ ବିଶ୍ୱଯୋଗସୂତ୍ରର ବିକାଶ ମଧ୍ୟରୁ ତା'ର ବହୁବିଧ ବିଶେଷ ରୂପସମୂହର ଅଭ୍ୟୁଦୟ ଘଟେ, ଯିଏକି ବସ୍ତୁନିଷ୍ଠ ବାସ୍ତବତାର ଅବିରାମ ବିକାଶକୁ ପ୍ରକାଶ କରିଥାଏ । ବସ୍ତୁର ସମସ୍ତ ରୂପର ବିକାଶ ଘଟିଥାଏ ତା'ର ଅନ୍ୟାନ୍ୟ ରୂପ ଏବଂ ଅବସ୍ଥାରାଜି ମଧ୍ୟରୁ ।

ଭୌତିକ ରୂପରାଜି କିଭଳି ବିଭିନ୍ନ ଏବଂ ଜଟିଳ ହୁଏ, ସେ କଥା ଆମେ ବିଶ୍ୱରେ ଘଟୁଥିବା ପରିବର୍ତ୍ତନରାଜିର ସାଧାରଣ ଦୃଶ୍ୟକୁ ଲକ୍ଷ୍ୟ କଲେ ଜାଣି ପାରେ । ୧୮,୦୦୦ ନିୟୁତ ବର୍ଷ ଆଗେ ଆମ ଚତୁର୍ପାର୍ଶ୍ୱସ୍ଥ ଜଗତର ଅବସ୍ଥା ଯାହା ଥିଲ, ଆଜି ତାହା ଗୁଣଗତ ଭାବେ ଭିନ୍ନ ଭିନ୍ନ । ଏ ଛାୟାପଥ ଏବଂ ତାରକାସମୂହ ସେତେବେଳେ ନଥିଲେ, ବସ୍ତୁ ସେତେବେଳେ ଥିଲ ଖୁବ୍ ଘନ ଏବଂ ଅତି ଉତ୍ତପ୍ତ । ବସ୍ତୁ ଏବଂ ବିରୋଧ ବସ୍ତୁର (antimatter) ଅଣୁରାଶି ମଧ୍ୟରେ ସଘନ ପ୍ରକ୍ରିୟାମାନ ଘଟୁଥିଲ । ତାପାଙ୍କ କମିଯିବା ଫଳରେ ପ୍ଲାଜମା ମଧ୍ୟରେ ଆଲେକ ଉପାଦାନସମୂହର ସଂଶ୍ଲେଷଣ ଘଟିଲ । ପ୍ରୋଟନ୍‌ସବୁ ଇଲେକ୍‌ଟ୍ରନ୍‌ଗୁଡ଼ିକ ସହିତ ମିଶ୍ରିତ ହୋଇ ଉଦ୍‌ଜାନ ସୃଷ୍ଟି କଲେ ଏବଂ ଅନ୍ୟାନ୍ୟ ରାସାୟନିକ ଉପାଦାନସମୂହ ରୂପ ପରିଗ୍ରହ କଲ । ପ୍ରାୟ ୧୨,୦୦୦ ନିୟୁତରୁ ୧୫,୦୦୦ ନିୟୁତ ବର୍ଷ ପୂର୍ବେ ବିଭିନ୍ନ ଛାୟାପଥରେ ବସ୍ତୁ ପୁଞ୍ଜୀକୃତ ହେବାକୁ ଲଗିଲ । ସୌରଜଗତ ଏବଂ ପୃଥିବୀ ସୃଷ୍ଟି ହୋଇଥିଲ ୫,୦୦୦ ନିୟୁତ ବର୍ଷ ପୂର୍ବେ । ବିକାଶର ବେଗ କ୍ରମଶଃ ତ୍ୱରାନ୍ୱିତ ହେବାକୁ ଲଗିଲ । ପ୍ରାୟ ୩,୦୦୦ ନିୟୁତ ବର୍ଷ ଆଗେ ମୂଳ କୋଷର ଅମ୍ଳ ଏବଂ ଖାଦ୍ୟସାର ମଧ୍ୟରେ ସମ୍ମିଶ୍ରଣରୁ ଜାତ ବସ୍ତୁ ମଧ୍ୟରୁ ଜୀବନର ଅଭ୍ୟୁଦୟ ଘଟିବାକୁ ଲଗିଲ । ଆଦିମ ଏକକୋଷୀ ପ୍ରାଣୀର ଅଭ୍ୟୁଦୟ, ଅବଶ୍ୟ, ଘଟିଥିଲ ଅନେକ ପରେ । ପରବର୍ତ୍ତୀ କାଳରେ, ଜୀବନର ଆଉରି ଜଟିଳ ରୂପମାନ ଜନ୍ମ ନେଇଥିଲ । ମଣିଷର ବିକାଶ ଘଟିବାକୁ ଲଗିଥିଲ ପ୍ରାୟ ଦୁଇ ନିୟୁତ ବର୍ଷ ପୂର୍ବେ ଏବଂ କେବଳ ୪୦,୦୦୦ ବର୍ଷ ପୂର୍ବେ ପଶୁଜଗତରୁ ତା'ର ଅଭ୍ୟୁଦୟ ଘଟିଥିଲ । ଏହି ସମୟରେ ଆଦିମ ମାନବ ସମାଜର ବିକାଶ ଘଟିବାକୁ ଲଗିଲ । ତା'ପରେ ବିକାଶ ଆଉରି ବେଗବାନ ହେବାକୁ ଲଗିଲ, ଉତ୍ପାଦିକା ଶକ୍ତିସମୂହ, ସାମାଜିକ ଗଢ଼ଣ ଏବଂ ସାମାଜିକ ଚେତନା ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନମାନ ଘଟିଲ । ପ୍ରାୟ ୫,୦୦୦ ବର୍ଷ ପୂର୍ବେ ସମାଜରେ ହେଲ ଶ୍ରେଣୀ ବିଭାଗ ଏବଂ ଏହାର ଫଳ ସ୍ୱରୂପ, ବୈରିତାପୂର୍ଣ୍ଣ ଦାସମାଲିକ, ସାମନ୍ତବାଦୀ ଏବଂ ପୁଞ୍ଜିବାଦୀ ସାମାଜିକ ଅର୍ଥନୈତିକ ଗଢ଼ଣସମୂହରେ ଦେଖା ଦେଲ ଶୋଷଣର ବିଭିନ୍ନ ରୂପରାଶି । ଷାଠିଏ ବର୍ଷରୁ ଅଧିକ କାଳ ଆଗେ ସମାଜବାଦୀ ସମାଜର ଅଭ୍ୟୁଦୟ ଘଟିଲ, ଶୋଷଣମୁକ୍ତ ଶ୍ରମିକମାନଙ୍କ ମଧ୍ୟରେ ପାରସ୍ପରିକ ସହାୟତା ତଥା ସହଯୋଗ ଉପରେ ଭିତ୍ତି କରି ଲୋକମାନଙ୍କ ଭିତରେ ଦେଖା ଦେଲ ଗୁଣଗତ ଭାବେ ନୂତନ ସଂପର୍କ ।

ଏହି ସମସ୍ତ ତଥ୍ୟ ଜଗତର ବିକାଶକୁ ସ୍ୱୀକାର କରିବା ପାଇଁ ବାଧ୍ୟ କରିଥାଏ । ଆଜିକାଲି ଏଭଳି କୌଣସି ଦାର୍ଶନିକଙ୍କୁ ଦେଖିବାକୁ ମିଳେ ନାହିଁ, ଯିଏକି ଏସବୁକୁ ଅସ୍ୱୀକାର କରନ୍ତି, ଜଗତର ଅପରିବର୍ତ୍ତନୀୟତା ସଂପର୍କରେ ପାରମ୍ପରିକ ଅଧିଭୌତିକ ଅବଧାରଣାର ପ୍ରଭୁତ୍ୱ କାଳରେ ଯେପରି ଥିଲ । କିନ୍ତୁ ଏହା ସତ୍ତ୍ୱେ, ବିକାଶକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଦ୍ୱନ୍ଦ୍ୱବାଦକୁ ମଧ୍ୟ ପ୍ରତ୍ୟାଖ୍ୟାନ କରିବା ସମ୍ଭବ । ଏହା ନିର୍ଭର କରେ ବିକାଶର ପ୍ରକ୍ରିୟାକୁ କିପରି ବ୍ୟାଖ୍ୟା କରାଯାଉଛି । "ବିକାଶର (କ୍ରମବିକାଶ) ଦୁଇଟି ମୌଳିକ (ଅଥବା ଦୁଇଟି ସମ୍ଭାବ୍ୟ ? ବା ଦୁଇଟି ଐତିହାସିକ ଭାବେ

# ଏବେକାର ପ୍ରାଣୀମାନଙ୍କର ସୃଷ୍ଟି



# ମଣିଷର ବଂଶଲତା




ମଣିଷର ବଂଶଲତାକୁ ଏହି ଭାବେ କେତେକ ବିଶେଷଜ୍ଞ ମନେ କରିଥାନ୍ତି । ମଣିଷର ଏବଂ ଆଧୁନିକ ଆନ୍ଥ୍ରୋପଏଡ୍ ବାନରମାନଙ୍କର ଏକ ଅଭିନ୍ନ ପୂର୍ବପୁରୁଷ ୧୪ ନିୟୁତ ବର୍ଷ ପୂର୍ବେ ବାସ କରୁଥିଲେ । ତା'ପରେ ଏହି ବଂଶଲତାଟି ତିନୋଟି ଶାଖାରେ ବିଭକ୍ତ ହୋଇଗଲା । ଗୋଟିଏ ଶାଖା ବିକାଶ ଲାଭ କଲା ଗରିଲା, ଶିମ୍ପାଞ୍ଜି ଏବଂ ଓରାଙ୍ଗୁଟାନସ୍ ରୂପେ, ଅନ୍ୟ ଗୋଟିଏ ଜିଗାଣ୍ଟୋପିଥେକସ୍ ରୂପେ – ପରେ ଏହା ଲୋପ ପାଇଯାଇଥିଲା – ଏବଂ ତୃତୀୟଟି ରାମାପିଥେକସ୍ ରୂପେ । ରାମାପିଥେକସ୍ ଶାଖାଟି ଦୁଇଟି ଅଷ୍ଟ୍ରାଲୋପିଥେକସ୍‌ରେ ଭାଗ ଭାଗ ହୋଇ ଯାଇ ଲୋପ ପାଇଗଲେ ଏବଂ ଆଧୁନିକ ମଣିଷର ପୂର୍ବପୁରୁଷ କ୍ରମଶଃ ବିକାଶ ଲାଭ କଲା ମଣିଷରୁ Homo Sapiens (ହୋମୋ ସାପିଏନସ୍‌କୁ) ।

ଦୃଶ୍ୟମାନ ?) ଅବଧାରଣା ହେଉଛି : ଅନୁବର୍ତ୍ତନ ଭଳି, ହ୍ରାସ ତଥା ଅଭିବୃଦ୍ଧି ହିସାବରେ ବିକାଶ ଏବଂ ବିରୋଧରାଜିର ଐକ୍ୟ ହିସାବରେ ବିକାଶ (ଐକ୍ୟକୁ ପାରସ୍ପରିକ ଭାବେ ସଂପୂର୍ଣ୍ଣ ବିରୋଧ ମଧ୍ୟରେ ବିଭକ୍ତିକରଣ ଏବଂ ସେସବୁର ପାରସ୍ପରିକ ସଂପର୍କ) ।

"ଗତିର, ପ୍ରଥମ ଅବଧାରଣାଟିରେ, ସ୍ୱନିୟନ୍ତ୍ରଣ, ତା'ର ଚାଳିକା ଶକ୍ତି, ତା'ର ଉତ୍ସ, ତା'ର ଅଭିପ୍ରାୟ ଲୁକ୍‌କାୟିତ ରହେ (ଅଥବା ଏହି ଉତ୍ସଟିକୁ ବାହ୍ୟିକ—ଈଶ୍ୱର, କର୍ତ୍ତା, ଆଦି ବୋଲି ମନେ କରାଯାଏ) । ଦ୍ୱିତୀୟ ଅବଧାରଣାଟାର ମୁଖ୍ୟ ଦୃଷ୍ଟି ବିଶେଷ ଭାବେ ଦିଆଯାଏ "ସ୍ୱ" ଗତିଶୀଳତାର ଉତ୍ସ ସଂପର୍କିତ ଜ୍ଞାନ ଉପରେ ।

"ପ୍ରଥମ ଅବଧାରଣାଟି ହେଉଛି ପ୍ରାଣହୀନ, ଶୁଷ୍କ ଏବଂ ମଳିନ । ଦ୍ୱିତୀୟ ଅବଧାରଣାଟି ହେଉଛି ଜୀବନ୍ତ । ଏହା ହିଁ କେବଳ ସମସ୍ତ କିଛି ବିଦ୍ୟମାନର "ସ୍ୱଗତିଶୀଳତା"ର ଚାବିକାଠିଟି ପ୍ରଦାନ କରିଥାଏ; ଏହା ହିଁ କେବଳ "ଉଲ୍ଲମ୍ଫନ" ଏବଂ "ଧାରାବାହିକତାର ବିଭଙ୍ଗନ"ର, "ବିରୋଧକୁ ଉତ୍ତରଣ"ର ଏବଂ ପୁରାତନର ବିଧ୍ୱଂସ ଏବଂ ନୂତନର ଅଭ୍ୟୁଦୟର ବ୍ୟାଖ୍ୟା ଦେଇଥାଏ ।"*

ଲେନିନ୍‌ଙ୍କ ଦ୍ୱାରା ପ୍ରଦତ୍ତ ବିକାଶର ଏହି ଦୁଇଟି ଅବଧାରଣାକୁ ଉପଯୋଗ କରି ବାସ୍ତବତା ବିଷୟରେ ଦ୍ୱନ୍ଦ୍ୱମୂଳକ ଏବଂ ଅଧିଭୌତିକ ଧାରଣା ସଂପର୍କରେ ଉପରେ ଆମେ ଯାହା ଉଲ୍ଲେଖ କରିଛେ, ତାକୁ ବିବୃତ କରି ପାରିବା । ସର୍ବପ୍ରଥମେ, ଦ୍ୱନ୍ଦ୍ୱବାଦ ଏବଂ ଅଧିଭୌତିକବାଦ (ଶେଷୋକ୍ତଟି ଯେତେବେଳେ ବିକାଶର ତଥ୍ୟକୁ ମାନିବାକୁ ବାଧ୍ୟ ହୁଏ) ଦ୍ୱୟ ଚାଳିକା ଶକ୍ତି, ଜଗତରେ ପରିବର୍ତ୍ତନର ଉତ୍ସର ମୌଳିକ ଭାବେ ପୃଥକ୍ ପୃଥକ୍ ସଂଜ୍ଞା ପ୍ରଦାନ କରିଥାନ୍ତି । ଦ୍ୱନ୍ଦ୍ୱବାଦ କହେ, ଏହି ଉତ୍ସଟି ସ୍ୱୟଂ ବସ୍ତୁ ମଧ୍ୟରେ ନିହିତ ଥାଏ ଏବଂ ଅଧିଭୌତିକବାଦ କହେ, ଏହା ବସ୍ତୁର ବାହାରେ ଅବସ୍ଥାନ କରେ । ଦ୍ୱନ୍ଦ୍ୱମୂଳକ ଅବଧାରଣାରେ ବିକାଶର ଚାଳିକା ଶକ୍ତି ପ୍ରପଞ୍ଚର ବିରୋଧସମୂହକୁ ନେଇ ଗଠିତ, କିନ୍ତୁ ଅଧିଭୌତିକବାଦରେ ପରିବର୍ତ୍ତନ ଘଟିଥାଏ ବାହ୍ୟିକ ଶକ୍ତିସମୂହ ଦ୍ୱାରା (ଏବଂ ସାର୍ବିକ ଭାବେ ବସ୍ତୁ କ୍ଷେତ୍ରରେ ଏହିସବୁ ଶକ୍ତି ହେଉଛନ୍ତି ଅନପେକ୍ଷ ଆଇଡିଆ, ବ୍ରହ୍ମ ବା ଈଶ୍ୱର) । ଦ୍ୱିତୀୟତଃ, ଦ୍ୱନ୍ଦ୍ୱବାଦ ବିକାଶକୁ ବିଚାର କରିଥାଏ ନୂତନର ସୃଷ୍ଟି ଏବଂ ପୁରାତନର ଧ୍ୱଂସ ହିସାବରେ, ଜଗତର ନିରବଚ୍ଛିନ୍ନ ନବାୟନର ଧାରା ଏବଂ ଅଗ୍ରଗମନ ହିସାବରେ । ଅଧିଭୌତିକବାଦ ବିକାଶକୁ ମନେ କରେ ଏକ ଏବଂ ଅଭିନ୍ନ ଗୁଣର ଅବିଚ୍ଛିନ୍ନ ଏବଂ ଶେଷହୀନ ଅନୁବର୍ତ୍ତନ ରୂପେ । ଏହା ବସ୍ତୁର ଅକୃତ୍ରିମ ନୂତନ ରୂପର ଅଭ୍ୟୁଦୟକୁ ଅସ୍ୱୀକାର କରେ । ବିକାଶ ପ୍ରକ୍ରିୟାର ଆଧେୟକୁ ଦ୍ୱନ୍ଦ୍ୱବାଦ ଏବଂ ଅଧିଭୌତିକବାଦ ଭିନ୍ନ ଭିନ୍ନ ଭାବେ ବୁଝିଥାନ୍ତି । ଦ୍ୱନ୍ଦ୍ୱବାଦ ହେଉଛି ବିକାଶର ଏକ "ଜୀବନ ଆରୋପକ" ଅବଧାରଣା, ଅର୍ଥାତ୍, ଏକ ବିଜ୍ଞାନସିଦ୍ଧ ତତ୍ତ୍ୱ ହିସାବରେ ଏହା

---

* ଭି. ଆଇ. ଲେନିନ୍, "*On the Question of Dialectics*", *Collected Works*, ୩୮ମ ଖଣ୍ଡ, ମସ୍କୋ, ୧୯୭୭, ପୃ: ୩୫୮ ।

ବସ୍ତୁର ସମସ୍ତ ପ୍ରକାର ବହୁବିଧ ରୂପକତା ଏବଂ ବିଭିନ୍ନ ବୈଶିଷ୍ଟ୍ୟ ସହ ତା'ର ସ୍ୱଗତିଶୀଳତାକୁ ପ୍ରକାଶ କରିଥାଏ (ଧାରାବାହିକତା ଏବଂ ଧାରାବାହିକତାହୀନତା, ସ୍ଥିତିଶୀଳତା ଏବଂ ପରିବର୍ତ୍ତନ, କ୍ରମଶଃତା ଏବଂ ଉଲ୍ଲମ୍ଫନ, ନେତୀକରଣ ଏବଂ ଉତ୍ତରାଧିକରଣ, ଆଦି) । ଏହାର ବିପରୀତରେ, ବିକାଶର ଅଧିଭୌତିକ ମତବାଦ ହେଉଛି "ପ୍ରାଣହୀନ" ଏବଂ "ଅସ୍ୱଚ୍ଛ", କାରଣ ଏହା ହେଉଛି ଅତୀବ ସଂକୀର୍ଣ୍ଣ, ଗତିର ସମସ୍ତ ସମୃଦ୍ଧ ଦିଗଗୁଡ଼ିକୁ ଆଲିଙ୍ଗନ କରିବାକୁ ବା ତା'ର ବିରୋଧସମୂହକୁ ପ୍ରକାଶ କରିବାକୁ ଅକ୍ଷମ । ଅଧିଭୌତିକବାଦ ହେଉଛି ଏକ ଏକଦିଗଦର୍ଶୀ ଚିନ୍ତାପଦ୍ଧତି, ଯିଏକି ଜଗତରେ ପ୍ରତୀୟମାନ ପ୍ରକ୍ରିୟାର ଯେକୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷଣକୁ ଅନପେକ୍ଷ ବୋଲି ବିଗ୍ରହ କରେ ।

ଜଗତର ଅଧିଭୌତିକ ଆଭିମୁଖ୍ୟ ବିଭିନ୍ନ ତତ୍ତ୍ୱରେ ପ୍ରକାଶ ପାଇଥାଏ : ବସ୍ତୁର ବିଭିନ୍ନ ଗତି ରୂପ ଅନ୍ତର୍ଗତ ପଦାର୍ଥରାଜି ମଧ୍ୟରେ ଗୁଣଗତ ପାର୍ଥକ୍ୟକୁ ଅସ୍ୱୀକାର କରିବାରେ (ଯନ୍ତ୍ରବିଦ୍ୟା); ସ୍ଥିରତା (ଭାରସାମ୍ୟତାର ତତ୍ତ୍ୱ) ବା ପରିବର୍ତ୍ତନର (ଆପେକ୍ଷିକତା) ମୁହୂର୍ତ୍ତଗୁଡ଼ିକୁ ଅନପେକ୍ଷ ମନେ କରିବାରେ; ସ୍ଥାବର ଉପାଦାନସମୂହର ମତବାଦରେ; ଗତିଶୀଳ ବସ୍ତୁଠାରୁ ସ୍ଥାନ ଆଉ କାଳକୁ ପୃଥକ୍ କରିବାରେ; ସ୍ଥାନ ଏବଂ କାଳ ମଧ୍ୟରେ ଜଗତର ଅନ୍ତିମତାକୁ ସ୍ୱୀକାର କରିବା, ଆଦିରେ ।

ଅତୀତ ଭଳି, ଆଜିକାଲି ବହୁ ବୁର୍ଜୁଆ ପଣ୍ଡିତ ବିକାଶ ସଂପର୍କରେ ଚିନ୍ତା କରିଥାନ୍ତି ସେଇ ନୂତନତ୍ୱ ବର୍ଜିତ କ୍ରମବିବର୍ତ୍ତନତାର ମନୋଭାବ ନେଇ, ଲେନିନ୍ ଯାହାକୁ ସମାଲୋଚନା କରିଥିଲେ । ଅର୍ଥାତ୍, ତାହା ହେଉଛି ସଂପୂର୍ଣ୍ଣ କ୍ରମବିବର୍ତ୍ତନବାଦୀ, ଦ୍ୱନ୍ଦ୍ୱ, ଉଲ୍ଲମ୍ଫନ ବା ମୌଳିକ ଭାବେ ଗୁଣଗତ ପରିବର୍ତ୍ତନ ବିବର୍ଜିତ କ୍ରମାଗତ ପ୍ରକ୍ରିୟା । ଦୃଷ୍ଟାନ୍ତ ସ୍ୱରୂପ, ସେସବୁ ତତ୍ତ୍ୱ ହେଉଛି ବହୁବିଧ ବୁର୍ଜୁଆ ଏବଂ ସଂସ୍କାରବାଦୀ "ଶ୍ରେଣୀ-ଶାନ୍ତି" ଏବଂ ପୁଞ୍ଜିବାଦର "ଶିଳ୍ପୋତ୍ତର" ସମାଜକୁ ରୂପାନ୍ତରଣ, ଆଦି ତତ୍ତ୍ୱରାଜି । ଏହା ଛଡ଼ା, ଆଜିକାଲି ବିକାଶର ମୌଳିକ ଭାବେ ଅଣଦ୍ୱନ୍ଦ୍ୱବାଦୀ ମତସମୂହ, ଯଥା, ଏହାକୁ "ମହାନ୍ ଉଲ୍ଲମ୍ଫନ"ର ଧାରାବାହିକତା ଏବଂ ସ୍ଥାୟୀ ଧ୍ୱଂସମୂଳକ ନେତୀକରଣ ବୋଲି ବିଗ୍ରହ କରିବା ।

ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ହେଉଛି ଅଧିଭୌତିକବାଦ ଏବଂ ତା'ର ସମସ୍ତ ପରିପ୍ରକାଶର ବିରୋଧୀ । ଦ୍ୱନ୍ଦ୍ୱବାଦୀ ଅବସ୍ଥାନରୁ ହିଁ କେବଳ ବସ୍ତୁଗତ ଜଗତ ଏବଂ ବିକାଶର ସର୍ବବ୍ୟାପୀ ନିୟମକୁ ଜାଣି ହୁଏ । ଏହିସବୁ ମୌଳିକ ନିୟମ ମଧ୍ୟରେ ଯାଏ ବିରୋଧସମୂହର ଐକ୍ୟ ଏବଂ ସଂଗ୍ରାମର ନିୟମ, ପରିମାଣାତ୍ମକ ପରିବର୍ତ୍ତନରୁ ଗୁଣାତ୍ମକ ପରିବର୍ତ୍ତନକୁ ଉତ୍ତରଣ ଏବଂ ପଶ୍ଚାଦବସ୍ଥାନ ଏବଂ ନେତୀକରଣର ନେତୀକରଣ ନିୟମ । ଏହିସବୁ ନିୟମ ସେସବୁର ସମଗ୍ରତା ମଧ୍ୟରେ ତା'ର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗଗୁଡ଼ିକର ସମନ୍ୱୟତାକୁ ନେଇ ବିକାଶ ପ୍ରକ୍ରିୟାର ଆଧେୟକୁ ପ୍ରକାଶ କରେ; ଅର୍ଥାତ୍, ଏହାର ମୂଳଉତ୍ସ, କାର୍ଯ୍ୟପଦ୍ଧତି ଏବଂ ଗତିମୁଖକୁ ।

# ଷଷ୍ଠ ପରିଚ୍ଛେଦ

# ବିକାଶର ଉତ୍ସ ହିସାବରେ ବିରୋଧସମୂହ

ବସ୍ତୁର ପ୍ରାଥମିକତାକୁ ଅସ୍ୱୀକାର କରିବାକୁ ଯାଇ ଭାବବାଦୀମାନେ ସଦାସର୍ବଦା ତା'ର ସ୍ୱବିକାଶ ଶକ୍ତିକୁ ବି ଅସ୍ୱୀକାର କରିଥାନ୍ତି । ଅସ୍ତିତ୍ୱମାନ ସବୁ କିଛିର ଗତିଶୀଳତାର କାରଣ ଏବଂ ଉତ୍ସକୁ ସେମାନେ, ସ୍ପିରିଟ୍, ଆତ୍ମା, ଇଚ୍ଛାଶକ୍ତି ବା ସର୍ବଶକ୍ତିମାନ ଏବଂ ସର୍ବସ୍ରଷ୍ଟା ବ୍ରହ୍ମ ଭଳି ଅଲୌକିକ ସତ୍ତାର ସୃଜନମୂଳକ କାର୍ଯ୍ୟକଳାପ ବୋଲି କହିଥାନ୍ତି ।

"ଏହି ଅଦ୍ୱୈତ ହେଉଛନ୍ତି (ଗୌଣ) ବ୍ରହ୍ମ, ଏ ହେଉଛନ୍ତି ଇନ୍ଦ୍ର, ଏ ହେଉଛନ୍ତି ପ୍ରଜାପତି; ଏ ହେଉଛନ୍ତି ଏହିସବୁ ଦେବତା; ଏ ହେଉଛନ୍ତି ସେହିସବୁ ପଞ୍ଚ ମହାଭୂତ, ଯଥା, କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ; ଏବଂ ଏ ହେଉଛନ୍ତି ସେଇସବୁ ବୃହତ୍ ପ୍ରାଣୀସମୂହ କ୍ଷୁଦ୍ର ପ୍ରାଣୀମାନଙ୍କ ସମେତ, ଯେଉଁମାନେ କି ହେଉଛନ୍ତି ଅନ୍ୟମାନଙ୍କର ଜନ୍ମଦାତା ଏବଂ ଯୁଗ୍ମ ରୂପେ ବିବେଚିତ ଏବଂ ଅନ୍ୟ ସମସ୍ତ ଚଳମାନ ବା ଉଡ଼ନ୍ତ ଏବଂ ଅଚଳନ୍ତ ପ୍ରାଣୀସମୂହ । ଏ ସମସ୍ତଙ୍କର ଚେତନା ସେମାନଙ୍କ ବାସ୍ତବତା ପ୍ରଦାୟକଙ୍କ ଭଳି; ଏମାନେ ସମସ୍ତେ ଚେତନା ଦ୍ୱାରା ପ୍ରରୋଚିତ ହୋଇଥାନ୍ତି । ବିଶ୍ୱ ବ୍ରହ୍ମାଣ୍ଡର ଚକ୍ଷୁ ଭଳି ଚେତନା ରହିଛି, ଚେତନା ହେଉଛି ତା'ର ଶେଷ । ଚେତନା ହେଉଛି ବ୍ରହ୍ମ । ଜଗତ ପରିଗ୍ରାହିତ ହୁଏ (ସୃଷ୍ଟି ହୋଇଛି) ଜ୍ଞାନ ଦ୍ୱାରା (ସ୍ୱୟଂ) । ଜ୍ଞାନ ହେଉଛି ତା'ର କାରଣ, ଜ୍ଞାନ ହେଉଛି ବ୍ରହ୍ମ" ।* ଗ୍ରୀକ୍ ଦାର୍ଶନିକ ଆରିଷ୍ଟୋଟଲ (୩୮୪-୩୨୨ ଖ୍ରୀ: ପୂ:) ବସ୍ତୁକୁ ନିଷ୍କ୍ରିୟ ଏବଂ ରୂପହୀନ ବୋଲି ବିଚାର କରୁଥିଲେ ଏବଂ ଅଭୌତିକ ରୂପକୁ କାର୍ଯ୍ୟକଳାପର ମୂଳ ବୋଲି ମନେ କରୁଥିଲେ । ତାଙ୍କ ମତରେ ସମସ୍ତ ଗତିର ଶେଷ ଉତ୍ସ ହେଉଛି "ସବୁ ରୂପର ରୂପ", ଈଶ୍ୱର – "ଅଚଳମାନ, ସର୍ବମୁଖ୍ୟ ଚାଳକ" । ଭାବବାଦୀ ହେଗେଲ୍‌ଙ୍କ ମତରେ ପ୍ରକୃତିର ମୂଳ ଉତ୍ସ ହେଉଛି ତାଙ୍କର ଅନପେକ୍ଷ ଆଇଡିଆ । ନିଓଥୋମିଜମ୍‌ର ଆଧୁନିକ ଧର୍ମୀୟ ଦର୍ଶନ ଭୌତିକ ପଦାର୍ଥରାଜିରେ ପରିବର୍ତ୍ତନକୁ

---

* ଅଷ୍ଟୋପନିଷଦ, ୨ୟ ଖଣ୍ଡ (ଶଂକରାଚାର୍ଯ୍ୟଙ୍କ ଭାଷ୍ୟ ସମେତ) ଅଦ୍ୱୈତ ଆଶ୍ରମ, ୧୯୫୮, ପୃ: ୭୧ ।

ବ୍ୟାଖ୍ୟା କରେ ଲକ୍ଷ୍ୟସ୍ଥାପନ ଆଧ୍ୟାତ୍ମିକ ସତ୍ତାର କାର୍ଯ୍ୟ ବୋଲି । ମାର୍କସ୍‌ଙ୍କ ପୂର୍ବ ବସ୍ତୁବାଦୀମାନେ ମଧ୍ୟ ଜଗତରେ ଗୁଣାତ୍ମକ ପରିବର୍ତ୍ତନର କାରଣ କ'ଣ, ତା'ର ସଠିକ ବ୍ୟାଖ୍ୟା ଦେଇ ପାରି ନଥିଲେ, ବସ୍ତୁକୁ ଅଧିଭୌତିକ ଭାବେ ଅପରିବର୍ତ୍ତନୀୟ ଏବଂ ଗତିହୀନ ବୋଲି ବିଶ୍ଳେଷଣ କରୁଥିଲେ ଏବଂ ପୃଥକ୍ ପୃଥକ୍ ପଦାର୍ଥରାଜିର ଗତିକୁ ବାହ୍ୟିକ ଶକ୍ତିର କାର୍ଯ୍ୟ ବୋଲି କହୁଥିଲେ ।

## ୧ — ଦ୍ୱନ୍ଦ୍ୱବାଦର କୋଷକେନ୍ଦ୍ର

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଅନୁଯାୟୀ ବସ୍ତୁଗତ ଜଗତର ବିକାଶକୁ ବସ୍ତୁବହିର୍ଭୂତ ଶକ୍ତିସମୂହର କାର୍ଯ୍ୟକଳାପ ବିନା ବି ବ୍ୟାଖ୍ୟା କରି ହୁଏ । ବସ୍ତୁର ବିକାଶର ଉତ୍ସ ନିହିତ ଥାଏ ବସ୍ତୁ ମଧ୍ୟରେ, ତା'ର ଆଭ୍ୟନ୍ତରୀଣ ବିରୋଧିତାରେ, ଯିଏକି ହେଉଛି ସେସବୁର ଗୁଣ ଦୃଷ୍ଟିରୁ ସୀମାହୀନ ଭାବେ ବହୁବିଧ ପ୍ରପଞ୍ଚରାଜିର ଐକ୍ୟ, ପରିବର୍ତ୍ତନ ଏବଂ ସ୍ଥିତିଶୀଳତା, ଧାରାବାହିକତା ଏବଂ ଧାରାବାହିକହୀନତାର ଐକ୍ୟ । ଗତିଶୀଳ ବସ୍ତୁର ସ୍ୱବିରୋଧିତା ପ୍ରକୃତି ତଥା ସମାଜର ସମସ୍ତ ପ୍ରପଞ୍ଚର ବିରୋଧିତା ଏବଂ ଚିନ୍ତାରେ ମଧ୍ୟ ପ୍ରକଟିତ ହୋଇଥାଏ । ସମସ୍ତ କ୍ଷେତ୍ରରେ ବିରୋଧିତାକୁ ଦେଖିବାକୁ ମିଳିଥାଏ । ସେସବୁର ଚରିତ୍ର ସାର୍ବିକ । ଏହା ବୈଜ୍ଞାନିକ ତଥ୍ୟ ତଥା ଲୋକଙ୍କର ଅଭିଜ୍ଞତା ଦ୍ୱାରା ପ୍ରମାଣିତ ହୋଇଥାଏ । ଜଡ଼ ଜଗତରେ ବିରୋଧିତା ପ୍ରକାଶ ପାଇଥାଏ ଅଣୁ ଏବଂ ବିରୋଧୀ ଅଣୁସମୂହ ସଂପର୍କ ମଧ୍ୟରେ, ଉପାଦାନ ଏବଂ କ୍ଷେତ୍ର ମଧ୍ୟରେ, ଆକର୍ଷଣ ଏବଂ ପ୍ରତ୍ୟାଖ୍ୟାନ ମଧ୍ୟରେ, ନେତିବାଚକ ଏବଂ ଇତିବାଚକ ବିଦ୍ୟୁତ୍ ସଞ୍ଚଳନ, ଢେଉ ଆଉ ସୂକ୍ଷ୍ମାଣୁ (କର୍‌ପୁସ୍‌କୁଲ), କ୍ରିୟା ଏବଂ ପ୍ରତିକ୍ରିୟା, ପରମାଣୁମାନଙ୍କର ସମ୍ମିଳନ ଏବଂ ଅମିଳନ, ଅମୁକରଣ ଏବଂ ପୁନଃସ୍ଥାପନ ପ୍ରକ୍ରିୟାସମୂହ, ପରିଶୋଷଣ ଏବଂ ପରିବର୍ଜନ, ଏଣ୍ଡୋଥେର୍ମିକ୍ ଏବଂ ଏକ୍‌ସୋଥେର୍ମିକ୍ ପ୍ରକ୍ରିୟାସମୂହ, ଆଦି । ଜୀବନ କ୍ଷେତ୍ରର ମଧ୍ୟ ନିଜସ୍ୱ ବିରୋଧିତାସମୂହ ରହିଛି, ଯଥା, ଆତ୍ମସ୍ଥକରଣ ଏବଂ ବିଚ୍ଛୁରଣ, ଜୀବନ ଏବଂ ମୃତ୍ୟୁ, ବଂଶଗତ ଏବଂ ପରିବର୍ତ୍ତନଶୀଳତା, ଜୀବାଙ୍ଗ ଏବଂ ଆବହମଣ୍ଡଳ, ବ୍ୟକ୍ତି ଏବଂ ଜୀବ-ଜାତି, ଇଣ୍ଟ୍ରାସ୍ପେସି ଏବଂ ଇଣ୍ଟ୍ରାସ୍ପେସି ବିରୋଧସମୂହ । ସମାଜରେ ବିରୋଧସମୂହ ପ୍ରକାଶ ପାଇଥାଏ ଉତ୍ପାଦିକା ଶକ୍ତିସମୂହ ଏବଂ ଉତ୍ପାଦନ ସଂପର୍କସମୂହ, ଶୋଷକ ଏବଂ ଶୋଷିତ, ସମାଜବାଦ ଏବଂ ପୁଞ୍ଜିବାଦ, ଅର୍ଥନୀତି ଏବଂ ରାଜନୀତି, ଯୁଦ୍ଧ ଏବଂ ଶାନ୍ତିର ଶକ୍ତିସମୂହ, ପ୍ରଗତି ଏବଂ ପ୍ରତିକ୍ରିୟାର ଶକ୍ତିସମୂହ ମଧ୍ୟରେ, ବିକାଶମାନ ଦେଶସମୂହ ଏବଂ ନବଉପନିବେଶବାଦ, ଆଦି ମଧ୍ୟରେ । ବ୍ୟକ୍ତି ହିସାବରେ ମଣିଷ ମଧ୍ୟରେ ବିରୋଧସମୂହ ଦେଖା ଦେଇଥାଏ ତା'ର ବିଶ୍ୱର ବୁଦ୍ଧି ଏବଂ ଭାବାନୁଭୂତି ମଧ୍ୟରେ, ଜ୍ଞାନାହରଣ ଦ୍ୱାରା ଆତ୍ମସ୍ଥ କରୁଥିବା ସାମାଜିକ ଅଭିଜ୍ଞତା ଏବଂ ତା'ର

ବ୍ୟକ୍ତିଗତ ଜୀବନର ଅଭିଜ୍ଞତା, ଏକ ଦିଗରେ ତା'ର କ୍ଷୁଧା ତଥା ଅଭୀପ୍ସା ଏବଂ ଅନ୍ୟ ଦିଗରେ, ସେସବୁର ପୂରଣ ପାଇଁ ପରିସ୍ଥିତି ମଧ୍ୟରେ, ତା'ର ବ୍ୟକ୍ତିଗତ ଏବଂ ସାମାଜିକ ଚେତନା, ଆଦି ମଧ୍ୟରେ ।

ବିଦ୍ୟମାନ ସବୁକିଛିର ଏହି ସର୍ବବ୍ୟାପୀ ବିରୋଧାତ୍ମକତା ହେଉଛି ବିକାଶ ପଛରେ ସବୁଠାରୁ ଗଭୀର ଚାଳିକା ଶକ୍ତି ଏବଂ ବସ୍ତୁଗତ ବାସ୍ତବତା ମଧ୍ୟରେ ସମସ୍ତ ପରିବର୍ତ୍ତନର ମୂଳଉତ୍ସ । ତେଣୁ କରି ବିରୋଧିତାସମୂହର ମତବାଦ ହେଉଛି ଦ୍ୱନ୍ଦ୍ୱବାଦର ନିର୍ଯ୍ୟାସ । ଲେନିନ୍ କହିଥିଲେ, "ସଂକ୍ଷେପରେ ଦ୍ୱନ୍ଦ୍ୱବାଦକୁ ବିରୋଧସମୂହର ଐକ୍ୟର ମତବାଦ ବୋଲି ବ୍ୟାଖ୍ୟା କରାଯାଇ ପାରେ । ଏହା ହେଉଛି ଦ୍ୱନ୍ଦ୍ୱବାଦର ନିର୍ଯ୍ୟାସର ପ୍ରତିମୂର୍ତ୍ତି... ।"*

ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ତେବେ ବିରୋଧର ସମସ୍ୟାବଳୀକୁ କିପରି ଭାବେ ଦେଖିଥାଏ ? ସର୍ବୋପରି, ଏହା ବିରୋଧସମୂହର ବସ୍ତୁଗତ ଚରିତ୍ରକୁ ଅନୁଧ୍ୟାନ କରିଥାଏ ଅଧିଭୌତିକବାଦ କହେ ସ୍ୱୟଂ ବସ୍ତୁରାଜି ମଧ୍ୟରେ ବିରୋଧିତା ରହି ନପାରେ । ସେମାନଙ୍କ ମତରେ ଯୁକ୍ତିଜ୍ଞାନର ନିୟମ ଭଙ୍ଗ ଫଳରେ କେବଳ ମଣିଷ ମନ ଭିତରେ ବିରୋଧ ସୃଷ୍ଟି ହୋଇଥାଏ । ସେମାନଙ୍କ ବିଶ୍ୱାସ, ବସ୍ତୁରାଜି ହେଉଛନ୍ତି ଅଭିନ୍ନ ସ୍ୱପରିଚିତି ପ୍ରକୃତିର, ତେଣୁ ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ରହି ନପାରେ । ତା ସତ୍ତ୍ୱେ ବି ସେଭଳି ବିମୂର୍ତ୍ତ ଏବଂ ଅନାପେକ୍ଷିକ ଅଭିନ୍ନତା ତିଷ୍ଠି ପାରେ ନାହିଁ । ଯେକୌଣସି ଭୌତିକ ପଦାର୍ଥର, ନିଶ୍ଚୟ, କେତେକ ଅଭିନ୍ନତା ରହିଛି, ଅର୍ଥାତ୍, ସେଥିରେ ଆଭ୍ୟନ୍ତରୀଣ ଐକ୍ୟ, ସ୍ଥିତିଶୀଳତା ଏବଂ ଆପେକ୍ଷିକ ଅପରିବର୍ତ୍ତନୀୟତା ରହିଛି । ଉପରୋକ୍ତ ହଜାର ବର୍ଷର ଡିମିରିଗଛକୁ, ଏହି ଦୃଷ୍ଟିକୋଣରୁ, ହୁଏତ, ଏକ ସ୍ୱପରିଚିତି ବୋଲି ବିଚାର କରାଯାଇ ପାରେ, କାରଣ ଏହା ଶହ ଶହ ବର୍ଷ ଧରି ସେଇ ଏକା ଏବଂ ଅଭିନ୍ନ ଗଛ ହୋଇ ରହି ଆସିଛି । ଏହା ସତ୍ତ୍ୱେ ମଧ୍ୟ ଦ୍ୱନ୍ଦ୍ୱବାଦ ଏହି ଅଭିନ୍ନତା ମଧ୍ୟରେ ପାର୍ଥକ୍ୟ ଅବଲୋକନ କରିଥାଏ । ଦୃଷ୍ଟାନ୍ତ ସ୍ୱରୂପ, ପ୍ରତ୍ୟେକ ପଦାର୍ଥ ମଧ୍ୟରେ ବିଭିନ୍ନ ଉପାଦାନ ଥାଏ, ପଦାର୍ଥଟି ମଧ୍ୟ ନିଜେ ପରିବର୍ତ୍ତିତ ହେଉଛି, ଏବଂ ଅନ୍ୟ ପଦାର୍ଥ ସହିତ ଏହାର ମଧ୍ୟ ପାର୍ଥକ୍ୟ ରହିଥାଏ । ଉଦାହରଣ ସ୍ୱରୂପ, ଡିମିରି ଗଛଟିକୁ ପାଞ୍ଚ ବର୍ଷ ବେଳେ, ପଚାଶ ବର୍ଷ, ପାଞ୍ଚ ଶହ ବର୍ଷ ଏବଂ ହଜାର ବର୍ଷ ବେଳେ ତା'ର ବହୁ ଭିନ୍ନ ଭିନ୍ନ ଧର୍ମ ରହିଥିଲା, ଯଦିଓ ଏହା ନିର୍ଦ୍ଦିଷ୍ଟ ଏକ ଜାତିର ଗଛ ହିସାବରେ ତା'ର ବିଶେଷ ଗୁଣ ଧାରଣ କରି ଚାଲିଛି । ଆଉ ଏକ ପ୍ରାକୃତିକ ପ୍ରପଞ୍ଚ—ଦୃଶ୍ୟମାନ ଆଲୋକ କଥା ଆପଣ ଧରି ପାରନ୍ତି । ଦୃଶ୍ୟମାନ ଆଲୋକ ହେଉଛି ସଫେଦ ଆଲୋକ । ମଣିଷର ଆଖିରେ ଶୁଭ୍ର ଆଲୋକ ପରିଲକ୍ଷିତ ହୁଏ ଏକ ବିଦ୍ୟୁତ୍ ଚୁମ୍ବକୀୟ ବିକିରଣ ସ୍ରୋତ ହିସାବରେ । ଏହା ଯଦି ତ୍ରିକୋଣାକୃତି କାଚ ମଧ୍ୟ ଦେଇ ଗତି କରେ, ତେବେ ଏହା ନିଜକୁ ବିଭିନ୍ନ ରଙ୍ଗ

---

* ଭି. ଆଇ. ଲେନିନ୍, "Conspectus of Hegel's Book *The Science of Logic*", *Collected Works*, ୩୮ମ ଖଣ୍ଡ, ପୃ: ୨୨୩ ।

ଛଟାରେ ଭିନ୍ନ ଭିନ୍ନ କରି ଦିଏ । ତେଣୁ ଏ କ୍ଷେତ୍ରରେ ବି ଅଭିନ୍ନତା ମଧ୍ୟରେ ପାର୍ଥକ୍ୟ ରହିଛି, ଯେଉଁ ପାର୍ଥକ୍ୟ ଆଲୋକ ସୃଷ୍ଟି କରୁଥିବା ବିଦ୍ୟୁତ୍ ଚୁମ୍ବକୀୟ ଢେଉର ଦୈର୍ଘ୍ୟ ଦ୍ୱାରା ନିର୍ଦ୍ଧାରିତ ହୋଇଥାଏ ।

ଆପଣ ଅନ୍ୟ ଏକ ଦୃଷ୍ଟାନ୍ତ ମଧ୍ୟ ଦେଇ ପାରନ୍ତି । ଜାତୀୟ ମୁକ୍ତି ଆନ୍ଦୋଳନ ତା'ର ସାମ୍ରାଜ୍ୟବାଦ ବିରୋଧୀ ଅଭିମୁଖୀନତାକୁ ରକ୍ଷା କଲା ବେଳେ ତନ୍ମଧ୍ୟରେ ପାର୍ଥକ୍ୟରାଜିକୁ ମଧ୍ୟ ଧାରଣ କରିଥାଏ – ଦଳେ ଉନ୍ନୟନଶୀଳ ଦେଶ ବିଶ୍ୱ ପୁଞ୍ଜିବାଦୀ ଅର୍ଥନୀତିର କକ୍ଷ ମଧ୍ୟରେ ରହିଲା ବେଳେ ଆଉ ଦଳେ ସମାଜବାଦୀ ଅଭିମୁଖୀନତାର ପଥ ଗ୍ରହଣ କରୁଛନ୍ତି ।

ପାର୍ଥକ୍ୟ ହେଉଛି ସ୍ୱୟଂ ପଦାର୍ଥର ତଥା ସେ ପଦାର୍ଥ ଉପାଦାନସମୂହର ଅନୈକ୍ୟ, ବିସଦୃଶତା, ଅସ୍ଥିରତା ତଥା ଅନ୍ୟାନ୍ୟ ପଦାର୍ଥରାଜିର ଧର୍ମରାଶି ମଧ୍ୟରେ ଏକ ଯୋଗସୂତ୍ର । ପ୍ରତ୍ୟେକଟି ବାସ୍ତବ ପଦାର୍ଥରେ ବସ୍ତୁଗତ ଭାବେ ନିହିତ ଥାଏ ଉଭୟ ଅଭିନ୍ନତା ଏବଂ ପାର୍ଥକ୍ୟ । ଅଧିଭୌତିକବାଦୀମାନେ "ହଁ ବା ନା" ସୂତ୍ରର ଯୁକ୍ତି ଅନୁଯାୟୀ ଅଭିନ୍ନତା ଏବଂ ବିବିଧତ୍ୱ ବା ପାର୍ଥକ୍ୟ ମଧ୍ୟରେ ଜଟିଳ ସଂପର୍କକୁ ଲକ୍ଷ୍ୟ କରି ପାରନ୍ତି ନାହିଁ । ତା ସତ୍ତ୍ୱେ ଏହି ଧରଣର ଚିନ୍ତାଟା କେବେହେଲେ ସବୁବେଳେ ସଠିକ୍ ନୁହେଁ । ଦୃଷ୍ଟାନ୍ତ ସ୍ୱରୂପ, ଉନ୍ନୟନଶୀଳ ଦେଶର ଜାତୀୟ ବୁର୍ଜୁଆଜି ପ୍ରଗତିଶୀଳ ନା ପ୍ରତିକ୍ରିୟାଶୀଳ ? ଆମେ ଏହି ପ୍ରଶ୍ନଟିର ଉତ୍ତର ଦ୍ୱ୍ୟର୍ଥହୀନ ଭାବେ ଦେଇ ପାରିବା ନାହିଁ । ମୋଟ ଉପରେ ଏହି ବୁର୍ଜୁଆଜି ସାମ୍ରାଜ୍ୟବାଦୀ ଗୋଷ୍ଠୀଗୁଡ଼ିକ ସହିତ ଯୁକ୍ତ ନୁହେଁ, ତେଣୁ କରି ଏହା ବସ୍ତୁଗତ ଭାବେ ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ବିପ୍ଳବର କର୍ତ୍ତବ୍ୟରାଜି ସଂପନ୍ନ କରିବାକୁ, ଜାତୀୟ ଉତ୍ପାଦିକା ଶକ୍ତିସମୂହର ବିକାଶ ଏବଂ ବିଦେଶୀ ଏକଚାଟିଆମାନଙ୍କ ପ୍ରଭୁତ୍ୱର ଉଚ୍ଛେଦ କରିବାକୁ ଆଗ୍ରହୀ । ତେଣୁ କରି, ଏହାର ଚରିତ୍ର ପ୍ରଗତିଶୀଳ ଏବଂ ସାମ୍ରାଜ୍ୟବାଦ ଏବଂ ସାମନ୍ତବାଦ ବିରୁଦ୍ଧରେ ବିପ୍ଳବୀ ସଂଗ୍ରାମରେ ଅଂଶ ଗ୍ରହଣ କରିବାର କ୍ଷମତା ଏହା ଧାରଣ କରେ । ଏଥି ସଙ୍ଗେ ସଙ୍ଗେ, ବ୍ୟକ୍ତିଗତ ସଂପତ୍ତି ଏବଂ ଶୋଷଣ ଉପରେ ପ୍ରତିଷ୍ଠିତ ଏକ ଶ୍ରେଣୀ ହିସାବରେ ଜାତୀୟ ବୁର୍ଜୁଆଜିର ଅଛି ଯେକୌଣସି ଶୋଷକ ଶ୍ରେଣୀ ସହିତ କେତେକ ଅଭିନ୍ନତା (ଅର୍ଥାତ୍, ଏକତ୍ୱ) ରହିଛି । ତେଣୁ କରି, ଏହା ପ୍ରଗତିଶୀଳ ଚରିତ୍ର ହେଉଛି ଆପେକ୍ଷିକ, କାରଣ, ସାମ୍ରାଜ୍ୟବାଦ ଏବଂ ସାମନ୍ତବାଦ ବିରୋଧୀ ସଂଗ୍ରାମରେ ଏହା ଅସ୍ଥିର ଏବଂ ସେସବୁ ସହିତ ଆପୋଷ କରିବାକୁ ଉନ୍ମୁଖ । ଏହା ଚେଷ୍ଟା କରେ ବିକାଶଶୀଳ ଦେଶମାନଙ୍କ ଉପରେ ଏକ ପୁଞ୍ଜିବାଦୀ ବିକାଶର ପଥ ଚପେଇ ଦେବାକୁ, ଯେଉଁ ବିକାଶର ପଥ ସହର ଏବଂ ଗ୍ରାମାଞ୍ଚଳର ଶ୍ରମିକମାନଙ୍କ ପାଇଁ ନୂତନ ଦୁଃଖକଷ୍ଟ ସୃଷ୍ଟି କରିଥାଏ । ତେଣୁ କରି ଶ୍ରମିକ ଶ୍ରେଣୀ ପକ୍ଷରେ ଜାତୀୟ ବୁର୍ଜୁଆ ଶ୍ରେଣୀ ପ୍ରତି ଐକ୍ୟ ଏବଂ ସଂଗ୍ରାମର ସଠିକ ରଣକୌଶଳ ଗ୍ରହଣ କରିବା ଦରକାର ।

ଉଦାହରଣ ସ୍ୱରୂପ, ଭାରତର କମ୍ୟୁନିଷ୍ଟମାନେ ଭାରତର ଜାତୀୟ ନୀତି ଦ୍ୱାରା

ସାଧାରଣ ଭାବେ ସ୍ୱୀକୃତ ପ୍ରଗତିଶୀଳ ଦିଗଗୁଡ଼ିକୁ, ଯଥା, ଅର୍ଥନୈତିକ ସ୍ୱାଧୀନତା, ରାଷ୍ଟ୍ରାୟର ଉଦ୍ୟୋଗରାଜିର ଦୃଢ଼ୀକରଣ, ମୌଳିକ ସାମାଜିକ ଅର୍ଥନୈତିକ ସଂସ୍କାର, ଧର୍ମନିରପେକ୍ଷତା, ସାମ୍ରାଜ୍ୟବାଦ ବିରୋଧୀ ଗୋଷ୍ଠୀନିରପେକ୍ଷ ନୀତି, ସମାଜବାଦୀ ଦେଶମାନଙ୍କ ସହିତ ମୈତ୍ରୀ ଏବଂ ସହଯୋଗ ପାଇଁ ସଂଗ୍ରାମ ଏବଂ ସମାଜବାଦକୁ ସାମାଜିକ ବିକାଶର ଲକ୍ଷ୍ୟ ହିସାବରେ ସମର୍ଥନ କରୁଛନ୍ତି । ଏଥି ସଙ୍ଗେ ସଙ୍ଗେ ଭାରତ କମ୍ୟୁନିଷ୍ଟ ପାର୍ଟି ବୁର୍ଜୁଆଜି ନୀତିର ସେହିସବୁ ଦିଗଗୁଡ଼ିକର ବିରୋଧିତା କରେ, ଯେଉଁଗୁଡ଼ିକ ହେଉଛି ପ୍ରତିକ୍ରିୟାଶୀଳ ଏବଂ ଜନସାଧାରଣଙ୍କ ସ୍ୱାର୍ଥର ବିରୋଧୀ, ଯଥା, ଶ୍ରମଜୀବୀ ଜନତାର କ୍ରମବର୍ଦ୍ଧମାନ ଶୋଷଣ, ସେମାନଙ୍କ ଜୀବନାବସ୍ଥାର ଅବନତି, ଶକ୍ତିଶାଳୀ ଜମିଦାର ଏବଂ ଧନୀ କୃଷକମାନଙ୍କ ସ୍ୱାର୍ଥର ସଂରକ୍ଷଣ ଏବଂ ଜାତି, ଆଞ୍ଚଳିକତା, ଆଦି ପାରମ୍ପରିକ ପ୍ରତିଷ୍ଠାନଗୁଡ଼ିକ ଉପରେ ନିର୍ଭର କରି ବିଶାଳାକାରର ପେଟି-ବୁର୍ଜୁଆ ଉପରେ ପ୍ରଭାବକୁ ବଜାୟ ରଖିବା ପାଇଁ ଦକ୍ଷିଣପନ୍ଥୀମାନଙ୍କର ଉଦ୍ୟମ ।

## ୨ — ବୈପରିତ୍ୟସମୂହ ମଧ୍ୟରେ ଐକ୍ୟ ଏବଂ ସଂଗ୍ରାମ

ପଦାର୍ଥ ମଧ୍ୟରେ ଏବଂ ପଦାର୍ଥମାନଙ୍କ ମଧ୍ୟରେ ଅନୈକ୍ୟସମୂହ ଅନାବଶ୍ୟକୀୟ ହୋଇ ପାରେ (ସେସବୁର କେତେକ ଧର୍ମର ମାତ୍ରା ଆଉ ତୀବ୍ରତା ଅନୁସାରେ) ଏବଂ ଆବଶ୍ୟକୀୟ ହୋଇ ପାରେ (ଯେତେବେଳେ ସେସବୁର ଧର୍ମରାଜିର ବିନ୍ୟାସ ଭିନ୍ନ ଭିନ୍ନ ହୁଏ, ବିକାଶର ପ୍ରବଣତାରାଜି ବିଭିନ୍ନ ଦିଗରେ ଅଭିମୁଖୀ ହୁଏ) । କୌଣସି ପଦାର୍ଥ ମଧ୍ୟରେ ବା ବିଭିନ୍ନ ପଦାର୍ଥରାଜି ମଧ୍ୟରେ ସଂଗତିହୀନତାର ସଂପର୍କ ବହିଷ୍କରଣ ବା ପାରସ୍ପରିକ ନେତୀକରଣ ଦେଖା ଦେଲେ ବେଳେ ଆବଶ୍ୟକୀୟ ଅନୈକ୍ୟରାଜି ବିରୋଧର ରୂପ ପରିଗ୍ରହ କରେ । ପାର୍ଥକ୍ୟ ଏବଂ ବିରୋଧ ମଧ୍ୟରେ ସୀମାନାଟା ସ୍ଥିର ନୁହେଁ, ତେଣୁ ସେସବୁ ପରସ୍ପରକୁ ପରିବର୍ତ୍ତନ କରିଥାନ୍ତି । କେତେକ ପାରସ୍ପରିକ ସଂପର୍କ ଏବଂ ପାରସ୍ପରିକ କ୍ରିୟାରେ ପାର୍ଥକ୍ୟସମୂହର ସଂପର୍କରାଜି ମଧ୍ୟରେ ଏକ ବିଶେଷ ଭୌତିକ ଗଠନ ଦେଖିବାକୁ ମିଳିଲେ ବେଳେ ଆଉ କେତେକରେ ବିରୋଧସମୂହର ସଂପର୍କ ମଧ୍ୟରେ ଏହା ଦେଖିବାକୁ ମିଳିଥାଏ । ବାସ୍ତବ ପଦାର୍ଥରାଜିର ବିରୋଧସମୂହର ସଂପର୍କ ଏବଂ ସେସବୁର ଧର୍ମରାଜିର ସଂପର୍କ ସମସ୍ତ ବସ୍ତୁରେ ନିହିତ ତଥା ପାର୍ଥକ୍ୟରାଜି ମଧ୍ୟରେ ଥିବା ବିରୋଧସମୂହକୁ ଏକ ଉନ୍ନତ ରୂପରେ ପ୍ରକାଶ କରିଥାଏ । ଏଠାରେ ଆମେ ବିରୋଧସମୂହର ବସ୍ତୁଗତତା ତଥା ସର୍ବବ୍ୟାପକତାର କେବଳ ଏକ ବିବୃତିରୁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ବିଶ୍ୱଦୃଷ୍ଟିକୋଣର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଉପାଦାନର ନିର୍ଯ୍ୟାସର ବିଶ୍ଳେଷଣ ମଧ୍ୟକୁ ଗତି କରିଥାଏ ।

ଏଥର କେତେକ ଉଦାହରଣ ଆମେ ଦେବା । ପରମାଣୁ ଗଠିତ ହୋଇଥାଏ

ଅସ୍ତିବାଚକ ଭାବେ ସଞ୍ଚାରିତ ନିଉକ୍ଲିଅସ୍‌ର (ପ୍ରୋଟନ୍‌ସମୂହ)* ସୂକ୍ଷ୍ମାଣୁସମୂହ ଏବଂ ନେତିବାଚକ ଭାବେ ସଞ୍ଚାରିତ ଇଲେକ୍‌ଟ୍ରନ୍‌ସମୂହର ବିରୋଧାତ୍ମକ ସଂପର୍କ ମଧ୍ୟରୁ । ପୁଞ୍ଜିବାଦୀ ସମାଜର ସମଗ୍ର ସାମାଜିକ ଜୀବନ ବୁର୍ଜୁଆ ଏବଂ ସର୍ବହରା ମଧ୍ୟରେ ବିରୋଧାତ୍ମକ ସଂପର୍କ ଉପରେ ପ୍ରତିଷ୍ଠିତ । ଯେକୌଣସି ଅବଗତିମୂଳକ କ୍ରିୟାରେ ନିହିତ ଥାଏ ବିଶ୍ଳେଷଣ ଏବଂ ସଂଶ୍ଳେଷଣର ବିରୋଧ ମଧ୍ୟରେ ସଂପର୍କ । ଆମେ ଉଦ୍ଦେଶ୍ୟମୂଳକ ଭାବେ ବାସ୍ତବତାର ବିଭିନ୍ନ କ୍ଷେତ୍ରସମୂହରୁ ଅତି ସରଳ ଦୃଷ୍ଟାନ୍ତସମୂହ ନେଇଛେ, ଯଥା, ପ୍ରକୃତି, ସମାଜ ଏବଂ ଚିନ୍ତନ କ୍ଷେତ୍ରରୁ । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ଏକ ବିରୋଧ ଅଛି, ଯେଉଁଥିରେ ପ୍ରତ୍ୟେକଟି ଦିଗ ଅନ୍ୟ ଦିଗଟି ବିରୋଧାତ୍ମକ ସଂପର୍କ ଦ୍ୱାରା ଯୁକ୍ତ । ଏହି ସଂପର୍କ ପ୍ରଥମତଃ ନିହିତ ଥାଏ ଏହିଥିରେ ଯେ, ଏହାର ବାହକସମୂହ (ପାରମାଣବିକ ଅଣୁପିଣ୍ଡ ଏବଂ ଇଲେକ୍‌ଟ୍ରନ, ବୁର୍ଜୁଆ ଏବଂ ସର୍ବହରା, ବିଶ୍ଳେଷଣ ଏବଂ ସଂଶ୍ଳେଷଣ) କେତେକ ନିୟମାନୁଯାୟୀ (ସଂଚରଣ, ଉତ୍ପାଦନର ଉପାୟ ଉପକରଣର ସଂପର୍କ, ତଥ୍ୟସମୂହର ବ୍ୟାଖ୍ୟାର ଚରିତ୍ର) ପରସ୍ପରକୁ ବର୍ଜନ ଏବଂ ଅସ୍ୱୀକାର କରନ୍ତି । ଦ୍ୱିତୀୟତଃ, ଏହି ସଂପର୍କ ପ୍ରକାଶ ପାଇଥାଏ ବିରୋଧୀ ପକ୍ଷଗୁଡ଼ିକର ପାରସ୍ପରିକ ନିର୍ଦ୍ଧାରକତା ଏବଂ ନିର୍ଭରଶୀଳତାରେ : ନିର୍ଦ୍ଦିଷ୍ଟ ଏକ ଭୌତିକ ଗଠନ ହିସାବରେ ଏହା ତିଷ୍ଠି ରହି ପାରେ ଅସ୍ତିବାଚକ ଭାବେ ସଞ୍ଚାରିତ ଅଣୁପିଣ୍ଡ ଏବଂ ନାସ୍ତିବାଚକ ଭାବେ ସଞ୍ଚାରିତ ଇଲେକ୍‌ଟ୍ରନ୍‌ର ଐକ୍ୟ ଉପରେ କେବଳ; ପୁଞ୍ଜିବାଦୀ ଧରଣର ଉତ୍ପାଦନ କେବଳ ସମ୍ଭବ ବୁର୍ଜୁଆଜି ଏବଂ ସର୍ବହରା ମଧ୍ୟରେ ସଂପର୍କର ଭିତ୍ତି ଉପରେ; ଅବଗତିମୂଳକ ପ୍ରକ୍ରିୟାରେ ସଂଶ୍ଳେଷଣ ବିନା ବିଶ୍ଳେଷଣ ସମ୍ଭବ ନୁହେଁ କି ବିଶ୍ଳେଷଣ ବିନା ସଂଶ୍ଳେଷଣ ଅସମ୍ଭବ । ଏହି ଦ୍ୱନ୍ଦ୍ୱତା ବିରୋଧସମୂହର ସଂପର୍କର ଦ୍ୱୈତ ବୈଶିଷ୍ଟ୍ୟକୁ ପ୍ରକାଶ କରେ : ସେଗୁଡ଼ିକ ପରସ୍ପରଠାରୁ ଭିନ୍ନ ଏବଂ ତତ୍ ସଙ୍ଗେ ସଙ୍ଗେ ପରସ୍ପରକୁ ନିର୍ଦ୍ଧାରିତ କରନ୍ତି । ଏହାକୁ ତେଣୁ ସଂକ୍ଷେପରେ କୁହାଯାଇ ପାରେ ବିରୋଧସମୂହର ଐକ୍ୟ ବୋଲି, ଯିଏକି ପରସ୍ପରକୁ ବର୍ଜନ କରନ୍ତି ଏବଂ ପରସ୍ପର ସହିତ ସଂଗ୍ରାମ କରନ୍ତି । ଦ୍ୱନ୍ଦ୍ୱସମୂହର ଗ୍ରହିକା ଶକ୍ତିକୁ ପ୍ରକାଶ କରୁଥିବା ଦ୍ୱନ୍ଦ୍ୱବାଦର ନିୟମ ରଚିତ ହୋଇଛି ବିରୋଧସମୂହ ମଧ୍ୟରେ ଐକ୍ୟ ଏବଂ ସଂଗ୍ରାମର ନିୟମ ଅନୁସାରେ ।

ଏହି ନିୟମ ଅନୁସାରେ ଦ୍ୱନ୍ଦ୍ୱସମୂହ ହେଉଛି ବିକାଶର ଅନ୍ତର୍ନିହିତ ପ୍ରୋତ୍ସାହନ, ସ୍ୱଗତିଶୀଳତା ଏବଂ ବସ୍ତୁରାଜିର ପରିବର୍ତ୍ତନର ମୂଳଉତ୍ସ । ପଦାର୍ଥରାଜି ଯଦି ନିରବଚ୍ଛିନ୍ନ ଭାବେ ସେସବୁ ଅଭିନ୍ନତାକୁ ବଜାଏ ରଖିଥାନ୍ତେ ଏବଂ ସେମାନଙ୍କ ମଧ୍ୟରେ ଅନୈକ୍ୟ ଓ ବିରୋଧ ନଥାନ୍ତା, ତେବେ ସେମାନେ ସଂପୂର୍ଣ୍ଣ ଅପରିବର୍ତ୍ତନୀୟ ହୋଇ ରହିଥାନ୍ତେ । ଭାରତୀୟ କବି ମୋହନ ସିଂହ ଅତି ସଠିକ ଭାବେ କହିଛନ୍ତି, "ସ୍ଥିରାବସ୍ଥା ହେଉଛି

* ଅଣୁପିଣ୍ଡ ଗଠିତ ହୋଇଥାଏ ପ୍ରୋଟନସମୂହ ଏବଂ ନିରପେକ୍ଷ ଭାବେ ସଞ୍ଚାଳିତ ନିଉଟ୍ରନ୍‌ସମୂହ ଦ୍ୱାରା ।

ମୃତ୍ୟୁ ଭଳି, ଜୀବନ ହେଉଛି ପରିବର୍ତ୍ତନ ପାଇଁ ଅଭୀପ୍ସା ।"* ଦ୍ୱନ୍ଦ୍ୱ ହେଉଛି ବିରୋଧସମୂହ ମଧ୍ୟରେ ପରିବର୍ତ୍ତନଶୀଳ ଯୋଗସୂତ୍ର । କୌଣସି ପଦାର୍ଥର କୌଣସି ବୈଶିଷ୍ଟ୍ୟତାର ସୁରକ୍ଷଣ ନିର୍ଦ୍ଧାରିତ ହୋଇଥାଏ ବୈପରିତ୍ୟସମୂହର ବିଶେଷ ଐକ୍ୟ ଦ୍ୱାରା ଏବଂ ବୈପରିତ୍ୟସମୂହ ମଧ୍ୟରେ ସଂଗ୍ରାମ ତଥା ପାରସ୍ପରିକ ନେତୀକରଣ ହେଉଛି ଗୁଣାତ୍ମକ ପରିବର୍ତ୍ତନକୁ ପ୍ରୋତ୍ସାହିତ କରିବାର କାରଣ । ତେଣୁ ଦ୍ୱନ୍ଦ୍ୱ ମଧ୍ୟରେ ନିର୍ଦ୍ଧାରକ ଉପାଦାନ ହେଉଛି ବୈପରିତ୍ୟସମୂହ ମଧ୍ୟରେ ସଂଗ୍ରାମ । ବୈପରିତ୍ୟସମୂହର ଐକ୍ୟ ହେଉଛି ଅସ୍ଥିର ଏବଂ ଆପେକ୍ଷିକ ଏବଂ ସେମାନଙ୍କ ମଧ୍ୟରେ ସଂଗ୍ରାମ ହେଉଛି ଗତି ଭଳି ଅନାପେକ୍ଷିକ । ଭାରସାମ୍ୟର ଉପରୋକ୍ତ ଅଧିଭୌତିକ ତତ୍ତ୍ୱର ଅନୁଗାମୀମାନେ କିନ୍ତୁ ଭିନ୍ନ ଏକ ମତ ପୋଷଣ କରିଥାନ୍ତି । ସେମାନଙ୍କ ପକ୍ଷରେ ବୈପରିତ୍ୟସମୂହ ମଧ୍ୟରେ ସଂଗ୍ରାମଟା ଆକସ୍ମିକତା ଏବଂ ବୈପରିତ୍ୟସମୂହ ମଧ୍ୟରେ ଐକ୍ୟ ଏକ ଆପୋଷ ଏବଂ ଚରମସମୂହର କାର୍ଯ୍ୟ ଭଳି ମନେ ହୁଏ । ଗଠନଗତ କ୍ରିୟାଗତ ବିଶ୍ଳେଷଣର ଗ୍ରଜଚକ୍ୟପୂର୍ଣ୍ଣ ବୁର୍ଜୁଆ ସମାଜତତ୍ତ୍ୱରେ ଏଭଳି ବହୁମତ ଦେଖିବାକୁ ମିଳିଥାଏ । ଏହା ପୁଞ୍ଜିବାଦୀ ସମାଜକୁ ମନେ କରେ ଏକ ଅଖଣ୍ଡ, ସ୍ଥାୟୀ ସାମାଜିକ ବ୍ୟବସ୍ଥା ବୋଲି, ଯା'ର ଉପାଦାନସମୂହ ବିଭିନ୍ନ ସମନ୍ୱୟାତ୍ମକ ମାତ୍ରାନୁଯାୟୀ ପରସ୍ପର ସହିତ କାର୍ଯ୍ୟ କରିଥାନ୍ତି । "କ୍ରିୟାଗତ ଐକ୍ୟର ତତ୍ତ୍ୱଟି" ଶ୍ରେଣୀ ସଂଗ୍ରାମକୁ ଏକ "କ୍ରିୟାର ପରିପନ୍ଥୀ", ଅର୍ଥାତ୍, ବୁର୍ଜୁଆ ସମାଜର କାର୍ଯ୍ୟ ପକ୍ଷରେ "ସ୍ୱାଭାବିକ" ସର୍ତ୍ତସମୂହର ଲଙ୍ଘନ ବୋଲି ବିଗ୍ରର କରେ । ବାସ୍ତବରେ ଦେଖିବାକୁ ଗଲେ ଶୋଷଣ ବିରୁଦ୍ଧରେ ଶ୍ରମଜୀବୀ ଜନସାଧାରଣଙ୍କର ସଂଗ୍ରାମ ହେଉଛି ବୈରିତାପୂର୍ଣ୍ଣ ସମାଜର ଏକ ବସ୍ତୁଗତ ନିୟମ । ବୁର୍ଜୁଆ ତତ୍ତ୍ୱକାରମାନେ ଭାରସାମ୍ୟର ଦାର୍ଶନିକ ଅବଧାରଣାଟିକୁ ଗ୍ରହଣ କରିଥାନ୍ତି ପୁଞ୍ଜିବାଦୀ ବ୍ୟବସ୍ଥାକୁ ସଠିକ ଏବଂ ଚିରସ୍ଥାୟୀ ବୋଲି ପ୍ରମାଣ କରିବା ପାଇଁ ।

ବୈପରିତ୍ୟସମୂହର ଭାରସାମ୍ୟତା ସମେତ ସ୍ଥିତାବସ୍ଥା ଏବଂ ଭାରସାମ୍ୟକୁ ଅନପେକ୍ଷ ବୋଲି ବିଗ୍ରର କରିବାଟା ସବୁବେଳେ ଭୁଲ । ଭାରସାମ୍ୟ ସବୁବେଳେ ପରିବର୍ତ୍ତନଶୀଳ । କୌଣସି ପ୍ରପଞ୍ଚ ମଧ୍ୟରେ ବୈପରିତ୍ୟସମୂହ କେବେହେଲେ ନିରବଚ୍ଛିନ୍ନ ଏବଂ ଅନାପେକ୍ଷିକ ଭାବେ ପରସ୍ପର ସହିତ ସ୍ଥିରତା ବଜାଏ ରଖି ପାରନ୍ତି ନାହିଁ । ସେମାନେ ପରସ୍ପରକୁ ଅସ୍ୱୀକାର କରନ୍ତି, ସଂଘର୍ଷରେ ଲିପ୍ତ ହୁଅନ୍ତି, ପରସ୍ପର ସହିତ ସଂଗ୍ରାମ କରନ୍ତି ଏବଂ ପରସ୍ପରକୁ ବର୍ଜ୍ଜନ କରନ୍ତି । ସେମାନଙ୍କ ସଂଗ୍ରାମ ଆପେକ୍ଷିକ ଭାରସାମ୍ୟତାର କାଳଚିରେ ଛେଦ ଘଟିଥାଏ ଗୋଟିକ ଉପରେ ଅନ୍ୟଟିର ପ୍ରଭୁତ୍ୱ କରିବାର କାଳ ଦ୍ୱାରା । ଏକକ ଭାବେ ବିକାଶ ଲାଭ କରୁଥିବା ଏକ ଜୀବାଙ୍ଗରେ ବିପାକ କ୍ରିୟାଟିରେ ଅନେକୀକରଣ ଉପରେ ଏକୀକରଣ କାର୍ଯ୍ୟଟି ପ୍ରଭୁତ୍ୱ କରିଥାଏ । ଜୀବାଙ୍ଗଟି ବୃଦ୍ଧି ପାଏ,

---

* ମୋହନ ସିଂହ, ନିର୍ବାଚିତ ରଚନାବଳୀ (ରୁଷ୍), ମସ୍କୋ, ୧୯୬୦, ପୃ: ୯୫-୯୬ ।

ବିକାଶ ଲାଭ କରେ ଏବଂ ଶକ୍ତିଶାଳୀ ହୁଏ । ଏହା ପରେ ଆସେ ଆପେକ୍ଷିକ ଭାବେ ଏକ ଦୀର୍ଘ ସମୟ, ଯେତେବେଳେ ଏକୀକରଣ ଏବଂ ଅନେକୀକରଣ ମଧ୍ୟରେ ଭାରସାମ୍ୟ ବା ସ୍ଥିରତା ରହିଥାଏ । ଏହି ସମୟରେ ଜୀବାଙ୍ଗ ପୋଖତ ଅବସ୍ଥାକୁ ଆସେ, ତା'ର ଶକ୍ତି ସର୍ବୋଚ୍ଚ ସୀମାରେ ପହଞ୍ଚେ ଏବଂ ସନ୍ତାନ ଜନ୍ମ କରେ । ସମୟ ବିତି ଚାଲିବା ସଙ୍ଗେ ସଙ୍ଗେ ସେ ବୃଦ୍ଧ ହେବାକୁ ଲାଗେ । ଏହି ସମୟରେ ଅସଂହତି ଏବଂ ଅନେକୀକରଣ ଏକୀକରଣ ଉପରେ ବଳବାନ ହୋଇ ଉଠେ ଏବଂ ଶେଷରେ ଦେହାଙ୍ଗର ମୃତ୍ୟୁ ଘଟାଏ ।

ଭାରସାମ୍ୟ ଏବଂ ସ୍ଥିରତାର ସାମୟିକ ଆଉ ଅସ୍ଥାୟୀ ସମୟ ବ୍ୟତୀତ ବୈପରିତ୍ୟସମୂହର ଐକ୍ୟ ପ୍ରତିଷ୍ଠିତ ହୋଇଥାଏ ସେମାନଙ୍କ ପାରସ୍ପରିକ ମିଳନ ରୂପରେ । ଉଦାହରଣ ସ୍ୱରୂପ, ପରମାଣୁ ମଧ୍ୟରେ ଥିବା ମୌଳିକ ସୂକ୍ଷ୍ମାଣୁରାଜି ମଧ୍ୟରେ ଯେପରି ଘଟିଥାଏ, ଚୁମ୍ବକର ଅସ୍ତିବାଚକ ଏବଂ ନାସ୍ତିବାଚକ ମେରୁ ଦ୍ୱୟର ପାରସ୍ପରିକ କ୍ରିୟା ମଧ୍ୟରେ ଯେପରି ହୋଇଥାଏ । ଏସବୁ କ୍ଷେତ୍ରରେ ବୈପରିତ୍ୟସମୂହର ସଂଗ୍ରାମର ଅନାପେକ୍ଷିକ ଚରିତ୍ର ପ୍ରକାଶ ପାଇଥାଏ ବୈପରିତ୍ୟସମୂହର ପାରସ୍ପରିକ ବର୍ଜନରେ ଏବଂ ଭୌତିକ ଗଠନସମୂହର ଗୁଣାତ୍ମକ ରୂପାନ୍ତରଣରେ ।

ବୈପରିତ୍ୟସମୂହର ସଂଗ୍ରାମ ହେଉଛି ଏହି ଅର୍ଥରେ ଅନାପେକ୍ଷିକ ଯେ, ଏହା ଏକ ଦ୍ୱନ୍ଦ୍ୱର ଆରମ୍ଭ ଓ ବୃଦ୍ଧି ଏବଂ ଶେଷକୁ ସମାଧାନ ଆଡ଼କୁ ଆଗେଇ ନିଏ । ଜଗତର ଅନ୍ୟସବୁ ଭଳି ଦ୍ୱନ୍ଦ୍ୱସମୂହ ବିବର୍ତ୍ତନର ଅଧୀନ । ବସ୍ତୁରାଜିର ସର୍ବବ୍ୟାପୀ ଆନ୍ତଃପ୍ରକ୍ରିୟା ସମୟରେ କେତେକ ଦ୍ୱନ୍ଦ୍ୱ ଦେଖା ଦେବା ସଙ୍ଗେ ସଙ୍ଗେ ଆଉ କେତେକ ଦ୍ୱନ୍ଦ୍ୱର ବିଲୟ ଘଟିଥାଏ । ସାମଗ୍ରିକ ଭାବେ ବିକାଶ ହେଉଛି ଏକ ପ୍ରକ୍ରିୟା, ଯଦ୍ୱାରା ଦ୍ୱନ୍ଦ୍ୱସମୂହ ସୃଷ୍ଟି ହୋଇଥାଏ, ବୃଦ୍ଧି ପାଏ ଏବଂ ସମାହିତ ହୁଏ । ଶେଷ କଥାଟି ଘଟେ, ଯେତେବେଳେ ବୈପରିତ୍ୟସମୂହ ମଧ୍ୟରେ ସଂଗ୍ରାମ ସର୍ବୋଚ୍ଚ ତୀବ୍ରତା ଲାଭ କରେ ଏବଂ ସେଗୁଡ଼ିକ ସେମାନଙ୍କର ବିଦ୍ୟମାନ ଐକ୍ୟର ବ୍ୟବସ୍ଥା ମଧ୍ୟରେ ଆଉ ରହି ପାରନ୍ତି ନାହିଁ । ପ୍ରପଞ୍ଚରାଜିର ବିଶେଷତାସମୂହ ଏବଂ ସେହିସବୁ ବୈପରିତ୍ୟସମୂହର ସଂଗ୍ରାମର ଚରିତ୍ର ଅନୁଯାୟୀ ସମାଧାନର ରୂପ ମଧ୍ୟ ଭିନ୍ନ ହୋଇଥାଏ: ପୁରୁଣା ବୈପରିତ୍ୟସମୂହ ଲୋପ ପାଇ ପାରେ ଏବଂ ବୈପରିତ୍ୟସମୂହର ସଂପୂର୍ଣ୍ଣ ନୂତନ ଐକ୍ୟ ଆଉ ସଂଗ୍ରାମ ସହିତ ନୂତନ ଦ୍ୱନ୍ଦ୍ୱ ଦେଖା ଦେଇ ପାରେ ବା ବୈପରିତ୍ୟସମୂହ ମଧ୍ୟରୁ ଗୋଟିଏ ଜୟ ଲାଭ କରି ପାରେ । ସମସ୍ତ କ୍ଷେତ୍ରରେ ଗୋଟିଏ ଦ୍ୱନ୍ଦ୍ୱର ସମାଧାନ ଅର୍ଥ କେତେକ କ୍ଷେତ୍ରରେ ବୈପରିତ୍ୟସମୂହର ପରସ୍ପରର ଅବସ୍ଥାନକୁ ପରିବର୍ତ୍ତନର ଏକ ପ୍ରକ୍ରିୟା । ମୌଳିକ ଅଣୁକଣାଗୁଡ଼ିକର ବିପରୀତ ଧର୍ମରାଜିକୁ ଗୋଟିକରୁ ଅନ୍ୟଟିକୁ ପରିବର୍ତ୍ତନ ଘଟିଥାଏ । ଅଜୈବ୍ୟ ବସ୍ତୁ କୌଣସି ଏକ ଜୀବାଙ୍ଗରେ ଚତୁର୍ପାର୍ଶ୍ୱସ୍ଥ ପ୍ରକୃତି ସହିତ ତା'ର ପରିପାକ ପ୍ରକ୍ରିୟା ମଧ୍ୟ ଦେଇ ସଜୀବ ବସ୍ତୁରେ ପରିଣତ ହୋଇଥାଏ । ଜୀବନ ବି ସ୍ୱୟଂ ତା'ର ବିପରୀତ, ମୃତ୍ୟୁକୁ ପରିବର୍ତ୍ତିତ ହୁଏ ଏବଂ ମୃତ୍ୟୁ ପୁଣି ନୂଆ ଏକ ଜୀବନର ଆରମ୍ଭ ଘଟାଇ ଥାଏ: ଆଦିମ ଜୀବାଙ୍ଗଗୁଡ଼ିକ ମଧ୍ୟରେ ପୁନରୁତ୍ପାଦନ ଏବଂ ମୃତ୍ୟୁ ଏକତ୍ର

# ବୈପରିତ୍ୟସମୂହ ମଧ୍ୟରେ ଐକ୍ୟ ଏବଂ ସଂଗ୍ରାମ ନିୟମର ଗଢ଼ଣ



ଘଟିଥାଏ । ସାମାଜିକ ପ୍ରକ୍ରିୟାରେ ବୈପରିତ୍ୟସମୂହ ମଧ୍ୟ ଏକରୁ ଅନ୍ୟକୁ ପରିବର୍ତ୍ତିତ ହୋଇଥାନ୍ତି । ବ୍ୟକ୍ତିଗତ ମାଲିକାନାର ନିୟମ ଦାବୀ କରେ, ଉଦାହରଣ ସ୍ୱରୂପ, ପଣ୍ୟରାଜି ସେସବୁର ମୂଲ୍ୟ ଅନୁଯାୟୀ ବିକ୍ରି ଖର୍ଚ୍ଚ ହେବା ଉଚିତ, ଯା ଫଳରେ ମୂଲ୍ୟର ସମତୁଲ ବିନିମୟ ଘଟି ପାରନ୍ତା । ପୁଞ୍ଜିପତି ଏବଂ ଶ୍ରମିକ ଉଭୟ ମାଲିକ ଭଳି ମନେ ହୁଅନ୍ତି: ଜଣେ ଉତ୍ପାଦନ ଉପାୟ ଉପକରଣର ମାଲିକ, ଅନ୍ୟ ଜଣକ ତା'ର ଶ୍ରମ ଶକ୍ତିର ମାଲିକ । ପ୍ରଥମ ଦୃଷ୍ଟିରେ ବିନିମୟଟା ସମତୁଲ ବୋଲି ଲାଗେ: ପୁଞ୍ଜିପତି ଶ୍ରମିକର ଶ୍ରମକୁ ଆତ୍ମସାତ୍ କରେ, ଶ୍ରମିକ ପୁଞ୍ଜିପତିଠାରୁ ମଜୁରି, ତା'ର ଶ୍ରମ ଶକ୍ତିର ମୂଲ୍ୟ ପାଇଥାଏ । ବାସ୍ତବରେ କିନ୍ତୁ ଏହା ସମତୁଲ ବିନିମୟ ନୁହେଁ । ଶ୍ରମିକ ଯେଉଁ ମୂଲ୍ୟ ଉତ୍ପାଦନ କରେ ତା'ର ଗୋଟିଏ ଅଂଶ ପାଇଥାଏ, ଅବଶିଷ୍ଟ ଗ୍ଳଳିଯାଏ ପୁଞ୍ଜିପତିର ପକେଟକୁ, ଉଦ୍ବୃତ୍ତ ମୂଲ୍ୟ ବା ଲାଭ ଆକାରରେ, ଯେଉଁଥି ପାଇଁ ପୁଞ୍ଜିପତିକୁ କିଛି ବ୍ୟୟ କରିବାକୁ ପଡ଼ି ନଥାଏ । ମୂଲ୍ୟର ସମତୁଲ ବିନିମୟ ଦାବୀ କରୁଥିବା ଆତ୍ମସାତ୍କରଣର ନିୟମ ପୁଞ୍ଜିବାଦରେ ଆତ୍ମସାତ୍କରଣର ନିୟମରେ ପରିଣତ ହୁଏ, ଯିଏକି ସମବିନିମୟର ଉଲ୍ଲଘନ ଉପରେ ପ୍ରତିଷ୍ଠିତ, ଅର୍ଥାତ୍, ଏହା ତା'ର ବିପରୀତ ଅବସ୍ଥାନକୁ ଗ୍ଳଳିଯାଏ । ଅନ୍ୟ କ୍ଷେତ୍ରରେ ଚରମତାସବୁ ବି ଏକାଭିମୁଖୀ ହୋଇଥାନ୍ତି, ଯଥା, ଅତି ବାମପନ୍ଥୀ ବିପ୍ଳବିପଣିଆ ଯାଇ ମିଶିଥାଏ ତୀବ୍ର ପ୍ରକ୍ରିୟାରେ; ପୁଞ୍ଜିବାଦ ଯେତେବେଳେ ତା'ର ଶୀର୍ଷ ପର୍ଯ୍ୟାୟ – ସାମ୍ରାଜ୍ୟବାଦରେ ପହଞ୍ଚେ, ମୁକ୍ତ ପ୍ରତିଦ୍ୱନ୍ଦ୍ୱିତା ଜନ୍ମ ଦିଏ ଏକଚ୍ଛତିଆକୁ ।

## ୩ – ଆଭ୍ୟନ୍ତରୀଣ ଏବଂ ବାହ୍ୟିକ ଦ୍ୱନ୍ଦ୍ୱସମୂହ

ବିଦ୍ୟମାନ ଦ୍ୱନ୍ଦ୍ୱସମୂହ ହେଉଛି ବହୁରୂପ ବିଶିଷ୍ଟ, ସେସବୁ ମଧ୍ୟରୁ ପ୍ରତ୍ୟେକ ବିକାଶରେ ଏକା ଭଳି ଭୂମିକା ପାଳନ କରନ୍ତି ନାହିଁ । ସାମଗ୍ରିକ ଭାବେ ଭୌତିକ ଜଗତକୁ ଦେଖିଲେ ଯେକୌଣସି ଦ୍ୱନ୍ଦ୍ୱ ହେଉଛି ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ । ଏହି ଅର୍ଥରେ ଜଗତ ହେଉଛି ଏକ ବସ୍ତୁ, ଯିଏକି ତା'ର ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱସମୂହ ଦ୍ୱାରା ଗତିଶୀଳ । ପୃଥକ୍ ପୃଥକ୍ ପଦାର୍ଥ, ବ୍ୟବସ୍ଥା, ପ୍ରପଞ୍ଚ ଏବଂ ପ୍ରକ୍ରିୟାସମୂହ ମଧ୍ୟରେ, କିନ୍ତୁ ଆମକୁ ଆଭ୍ୟନ୍ତରୀଣ ଏବଂ ବହିର୍ଦ୍ୱନ୍ଦ୍ୱ ମଧ୍ୟରେ ପାର୍ଥକ୍ୟ ଲକ୍ଷ୍ୟ କରିବାକୁ ହୁଏ । ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱସମୂହ ପଦାର୍ଥ ତଥା ପ୍ରପଞ୍ଚରାଜିର ଖୋଦ୍ ସାରସତ୍ତା ମଧ୍ୟରେ ଥିବା ବୈରିତ୍ୟସମୂହର ଐକ୍ୟକୁ ପ୍ରକାଶ କରେ । ଏହାର ବିପରୀତରେ ବହିର୍ଦ୍ୱନ୍ଦ୍ୱଗୁଡ଼ିକ ଦେଖା ଦେଇଥାଏ ଏକସମୟରେ ଅବସ୍ଥିତ ଏବଂ ପାରସ୍ପରିକ ଭାବେ ସଂଯୁକ୍ତ ପ୍ରପଞ୍ଚରାଜି ମଧ୍ୟରେ । ସେସବୁ ନିଜସ୍ୱ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱରାଜି ଧାରଣ କରୁଥିବା ପୃଥକ୍ ପୃଥକ୍ ପଦାର୍ଥରାଜିର ବିରୋଧିତା ମଧ୍ୟରେ ଥିବା ଯୋଗସୂତ୍ରକୁ ପ୍ରକାଶ କରେ ।

କୌଣସି ଏକ ପ୍ରପଞ୍ଚ ମଧ୍ୟରେ ଥିବା ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱସମୂହ ହେଉଛନ୍ତି ତା'ର

ବିକାଶର ନିଷତିମୂଳକ କାରଣ ଏବଂ ପ୍ରତ୍ୟକ୍ଷ ମୂଳଉସ । ବାହ୍ୟିକ ଦ୍ୱନ୍ଦ୍ୱସମୂହ , ଅନ୍ୟ ଦିଗରେ , ପ୍ରପଞ୍ଚଟିର ଆଭ୍ୟନ୍ତରୀଣ ପ୍ରକ୍ରିୟାରାଜିକୁ ପ୍ରଭାବିତ କରନ୍ତି ସେସବୁର ସର୍ତ୍ତରାଜି ହିସାବରେ । ଚାଲିଥିବା ପରିବର୍ତ୍ତନର ଚରିତ୍ର , ମାତ୍ରା ଏବଂ ଦିଗକୁ ସେମାନେ ପ୍ରଭାବିତ କରନ୍ତି । ରାସାୟନିକ ଉପାଦାନସମୂହର ତେଜସ୍କ୍ରିୟ କ୍ଷୟ , ଉଦାହରଣ ସ୍ୱରୂପ , ନିର୍ଦ୍ଧାରିତ ହୋଇଥାଏ ଆଭ୍ୟନ୍ତରୀଣ କାରଣଗୁଡ଼ିକ ଦ୍ୱାରା (ଅର୍ଥାତ୍ , ବିପରୀତ ଧର୍ମଯୁକ୍ତ ଏବଂ ପରମାଣୁ ଗଠନ କରୁଥିବା ମୌଳିକ ସୂକ୍ଷ୍ମାଣୁସମୂହର ପାରସ୍ପରିକ କ୍ରିୟା ଦ୍ୱାରା) । ଏଥି ସଙ୍ଗେ ସଙ୍ଗେ ଏହି ପ୍ରକ୍ରିୟାଟି ମଧ୍ୟ କେତେକ ପରିମାଣରେ ନିର୍ଭର କରେ ବହିର୍ଦ୍ୱନ୍ଦ୍ୱସମୂହ ଉପରେ । ଦୃଷ୍ଟାନ୍ତ ସ୍ୱରୂପ , ତେଜସ୍କ୍ରିୟ ହ୍ରାସର ମାତ୍ରା ପୃଥକ୍ ପୃଥକ୍ ହୋଇଥାଏ ନିର୍ଦ୍ଦିଷ୍ଟ ଉପାଦାନଟି ଯେଉଁସବୁ ରାସାୟନିକ ମିଶ୍ରିତ ଜିନିଷକୁ ନେଇ ଗଠିତ ସେସବୁ ଅନୁଯାୟୀ ଏବଂ ଉପାଦାନଟିର ଘନତା , ଆଦି ଅନୁଯାୟୀ । ସଜୀବ ଦେହାଙ୍ଗର ଗୁଣାତ୍ମକ ବିଶେଷ ଚରିତ୍ର ନିର୍ଦ୍ଧାରିତ ହୋଇଥାଏ ସେସବୁର ବଂଶଗତ କୋଡ୍‌ର ଗଠନ ଦ୍ୱାରା । ଏଥି ସଙ୍ଗେ ସଙ୍ଗେ କୌଣସି ଜୀବାଙ୍ଗ ପରିପାକ ପ୍ରକ୍ରିୟା ବିନା ଆବହମଣ୍ଡଳ ସହିତ ତିଷ୍ଠି ପାରେ ନାହିଁ , କିନ୍ତୁ ବହିଃ କାରଣସମୂହ ଏହାର ବିକାଶକୁ ତ୍ୱରାନ୍ୱିତ ବା ଧୀର କରି ଦେଇ ପାରନ୍ତି ।

ସମାଜର ବିକାଶର ଆଭ୍ୟନ୍ତରୀଣ ଏବଂ ବହିଃ ଦ୍ୱନ୍ଦ୍ୱସମୂହ ମଧ୍ୟରେ ପାରସ୍ପରିକ ସଂପର୍କକୁ ସଠିକ ଭାବେ ହୃଦୟଙ୍ଗମ କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବୈଷୟିକ ସଂପତ୍ତିର ଏକ ନିର୍ଦ୍ଦିଷ୍ଟ ଉତ୍ପାଦନ ପଦ୍ଧତି ଉପରେ ପ୍ରତିଷ୍ଠିତ ସାମାଜିକ ସଂପର୍କରାଜି ଜନସାଧାରଣଙ୍କ ଜୀବନକୁ ପ୍ରଭାବିତ କରିଥାଏ । ଉତ୍ପାଦିକା ଶକ୍ତିସମୂହ ଏବଂ ଉତ୍ପାଦନ ସଂପର୍କସମୂହ ମଧ୍ୟରେ ଦ୍ୱନ୍ଦ୍ୱରାଜି (ଏବଂ ବୈରିତାପୂର୍ଣ୍ଣ ଗଢ଼ଣସମୂହରେ ଶ୍ରେଣୀ ଶ୍ରେଣୀ ମଧ୍ୟରେ ଦ୍ୱନ୍ଦ୍ୱରାଜି) ହେଉଛନ୍ତି ସାମାଜିକ ଅଗ୍ରଗତିର ଚାଳିକା ଶକ୍ତି । ଭୌଗୋଳିକ ପାରିପାର୍ଶ୍ୱିକ ଅବସ୍ଥା , ଜଳବାୟୁ , ପ୍ରାଣୀ ଓ ଉଦ୍‌ଭିଦ ଜଗତ ଏବଂ ଅନ୍ୟାନ୍ୟ ପ୍ରାକୃତିକ କାରଣସମୂହ ସମାଜର ଜୀବନ ଉପରେ ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ପାତ କରୁଥିଲେ ମଧ୍ୟ ସାମାଜିକ ପରିବର୍ତ୍ତନକୁ ଅଟକାଇ ପାରନ୍ତି ନାହିଁ । ବହିଃ ପ୍ରଭାବସମୂହର ଭୂମିକାକୁ ଅତିରଞ୍ଜିତ କରିବାଟା – ବିଭିନ୍ନ ଅବୈଜ୍ଞାନିକ ଭୂରାଜନୈତିକ , ବର୍ଣ୍ଣବୈଷମ୍ୟବାଦୀ , ମାଲଥୁସୀୟ ଏବଂ ଅନ୍ୟାନ୍ୟ ତତ୍ତ୍ୱରେ ଯେଉଳି ଦର୍ଶା ଯାଇଥାଏ – ସଂପୂର୍ଣ୍ଣ ଭୁଲ । ଉଦାହରଣ ସ୍ୱରୂପ , ବିଶ୍ୱ ଇତିହାସରେ ନିର୍ଦ୍ଦିଷ୍ଟ ଏକ ରାଷ୍ଟ୍ରର ଭୂମିକାକୁ , ତା'ର ସାମାଜିକ ବିକାଶ ତଥା ସଂସ୍କୃତିର ସ୍ତରକୁ , ତା'ର ସାମାଜିକ ବିକାଶର ମାତ୍ରାକୁ କେଉଁ ଜିନିଷଟି ନିର୍ଦ୍ଧାରଣ କରିଥାଏ ? ଏହାର ଆଞ୍ଚଳିକ ଅବସ୍ଥାନ , ତା'ର ଭୂଖଣ୍ଡ ତଥା ଜନସଂଖ୍ୟାର ଆକାର ଏବଂ ତା'ର ଜନସାଧାରଣଙ୍କ ବର୍ଣ୍ଣଗତ ବୈଶିଷ୍ଟ୍ୟରାଜି କ'ଣ ସେସବୁକୁ ନିର୍ଦ୍ଧାରଣ କରେ ? ନା , ଏସବୁକୁ ନିର୍ଦ୍ଧାରଣ କରିଥାଏ ଅନ୍ୟାନ୍ୟ ନିଷତିମୂଳକ କାରଣସବୁ , ଯଥା ଉତ୍ପାଦନ ପଦ୍ଧତି , ଉତ୍ପାଦିକା ଶକ୍ତିସମୂହର ସ୍ତର , ଆଭ୍ୟନ୍ତରୀଣ ସାମାଜିକ ଦ୍ୱନ୍ଦ୍ୱସମୂହର ଚରିତ୍ର ଏବଂ ପୋଖତତା । ଏହା ମଧ୍ୟ ବିଭିନ୍ନ ଦେଶରେ ସମାଜବାଦୀ ବିପ୍ଳବର

ସାଫଲ୍ୟ ପ୍ରତି ପ୍ରଯୋଜ୍ୟ । କମ୍ୟୁନିଷ୍ଟମାନେ ସାମାଜିକ ବିକାଶରେ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱରାଶିର ନିଷ୍ପତ୍ତିମୂଳକ ଭୂମିକାକୁ ସ୍ୱୀକାର କରିଥାନ୍ତି ଏବଂ "ବିପ୍ଳବ ରପ୍ତାନି"ର ଧାରଣାଟିକୁ ପ୍ରତ୍ୟାଖ୍ୟାନ କରିଥାନ୍ତି । ବିପ୍ଳବ ବାହାରୁ ଆସେ ନାହିଁ । ଏହା ଶ୍ରେଣୀ ସଂଗ୍ରାମର ଯୁକ୍ତିସଂଗତ ଫଳ ଏବଂ ଶ୍ରେଣୀ ସଂଗ୍ରାମର ସର୍ବୋଚ୍ଚ ରୂପ ଏବଂ ଆଭ୍ୟନ୍ତରୀଣ ସାମାଜିକ ବୈରିତାର ବିଲୋପ ସାଧନ । ନିର୍ଦ୍ଦିଷ୍ଟ ଏକ ଦେଶର କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ଶ୍ରମିକ ଶ୍ରେଣୀର ନେତୃତ୍ୱାଧୀନରେ ଶ୍ରମଜୀବୀ ଜନସାଧାରଣ ବିପ୍ଳବ ସଂଘଟିତ କରିଥାନ୍ତି ।

ଆଭ୍ୟନ୍ତରୀଣ ଏବଂ ବହିର୍ଦ୍ୱନ୍ଦ୍ୱସମୂହ ମଧ୍ୟରେ ବିଦ୍ୟମାନ ସୀମାରେଖା ମଧ୍ୟ ଅନପେକ୍ଷ ନୁହେଁ । ବିଭିନ୍ନ ବ୍ୟବସ୍ଥାରେ ସମାନ ଦ୍ୱନ୍ଦ୍ୱ ବିଭିନ୍ନ ଗୁଣ ଆହରଣ କରିଥାଏ । ତଦୁପରି, ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱସମୂହର ନେତୃତ୍ୱଦାୟୀ ଭୂମିକା ଅର୍ଥ ଏଇ ନୁହେଁ ଯେ, ବାହ୍ୟିକ କାରଣଗୁଡ଼ିକୁ ଏକେବାରେ ଅସ୍ୱୀକାର କରି ଦେବା । ଉଦାହରଣ ସ୍ୱରୂପ, ମଣିଷ କ୍ରମଶଃ ଅଧିକରୁ ଅଧିକ ଆବହମଣ୍ଡଳୀୟ ଦ୍ୱନ୍ଦ୍ୱସମୂହ ଦ୍ୱାରା ପ୍ରଭାବିତ ହେଉଛି । ନିର୍ଦ୍ଦିଷ୍ଟ ଏକ ପୁଞ୍ଜିବାଦୀ ଦେଶରେ ବିପ୍ଳବୀ ଆନ୍ଦୋଳନ ତଥା ସମାଜବାଦୀ ବିପ୍ଳବର ବିଜୟର ପୂର୍ବସର୍ତ୍ତ ତଥା ବିଶେଷ ସମ୍ଭାବନାରାଜିକୁ ବିଶେଷ ଭାବେ ବିଗ୍ଭର କରିବାକୁ ପଡ଼େ । ଆମ ଏହି ଯୁଗରେ ପୁଞ୍ଜିବାଦୀ ବ୍ୟବସ୍ଥା ଏକ ତୀବ୍ର ସଂକଟ ଦ୍ୱାରା ଆଚ୍ଛନ୍ନ ହୋଇ ପଡ଼ିଛି ଏବଂ ଦୁନିଆର ବିକାଶ ଅଧିକରୁ ଅଧିକ ସମାଜବାଦୀ ଶକ୍ତିସମୂହଙ୍କ ଦ୍ୱାରା ନିଷ୍ପତ୍ତିମୂଳକ ଭାବେ ପ୍ରଭାବିତ ହେବାରେ ଲାଗିଛି । ଏହି ଭଳି ଅବସ୍ଥାରେ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମର ସାଫଲ୍ୟ କେବଳ ନିର୍ଦ୍ଦିଷ୍ଟ ଏକ ଦେଶର ଆଭ୍ୟନ୍ତରୀଣ ବିକାଶ ଉପରେ ନିର୍ଭର କରେ ନାହିଁ, ସାମଗ୍ରିକ ଭାବେ ବିଶ୍ୱ ବିପ୍ଳବୀ ପ୍ରକ୍ରିୟାର ବିକାଶ ଉପରେ ନିର୍ଭର କରେ ।

## ୪ — ମୁଖ୍ୟ ଏବଂ ଗୌଣ, ମୌଳିକ ଏବଂ ଅମୌଳିକ ଦ୍ୱନ୍ଦ୍ୱସମୂହ

ଜଟିଳ ପ୍ରାକୃତିକ ତଥା ସାମାଜିକ ବ୍ୟବସ୍ଥାରାଜିରେ ବିଭିନ୍ନ ଉପାଦାନ, ଦିଗ ତଥା ପ୍ରବଣତା ମଧ୍ୟରେ ବହୁ ଦ୍ୱନ୍ଦ୍ୱମୂଳକ ସଂପର୍କ ରହିଥାଏ । ତେଣୁ କରି ବିଶେଷ ଅବସ୍ଥାରାଜିରେ ମୁଖ୍ୟ ଏବଂ ଗୌଣ ସଂପର୍କରାଜିକୁ ପୃଥକ୍ କରି ଦେଖିବା ଦରକାର । ଏପରି ଘଟି ପାରେ ଯେ, କେବଳ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ନୁହେଁ, ବହିର୍ଦ୍ୱନ୍ଦ୍ୱ ମଧ୍ୟ ବିକାଶର ନିର୍ଦ୍ଦିଷ୍ଟ ଏକ ପର୍ଯ୍ୟାୟରେ ମୁଖ୍ୟ ଦ୍ୱନ୍ଦ୍ୱରେ ପରିଣତ ହୋଇଯାଏ । ଉଦାହରଣ ସ୍ୱରୂପ, ଜାତୀୟ ମୁକ୍ତି ସଂଗ୍ରାମ ବେଳେ ମୋଟାମୋଟି ଭାବେ ପୂର୍ବେ ନିର୍ଯାତିତ ଜାତି ଏବଂ ସାମ୍ରାଜ୍ୟବାଦ ମଧ୍ୟରେ ଦ୍ୱନ୍ଦ୍ୱ ବାହାରକୁ ପ୍ରକାଶ ପାଇ ମୁଖ୍ୟ ଦ୍ୱନ୍ଦ୍ୱରେ ପରିଣତ ହୋଇଯାଏ । ବିଦ୍ୟମାନ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱସମୂହର (ଜାତୀୟ ବୁର୍ଜୁଆ ଏବଂ ଶ୍ରମିକ

ଶ୍ରେଣୀ ମଧ୍ୟରେ, ବୁର୍ଜୁଆଜି ଏବଂ ସାମନ୍ତବାଦୀ ଗୋଷ୍ଠୀ ମଧ୍ୟରେ, କୃଷକ ଜନସାଧାରଣ ଏବଂ ବୁର୍ଜୁଆଜି ମଧ୍ୟରେ, ଆଦି) ବିଲୋପ ଘଟେ ନାହିଁ, ବରଂ ଉପନିବେଶବାଦ ତଥା ବିଦେଶୀ ଏକଚ୍ଛତିଆମାନଙ୍କ ବିରୋଧୀ ଜନସାଧାରଣଙ୍କର ଅଭିନ୍ନ ସଂଗ୍ରାମର ପରିପ୍ରେକ୍ଷୀରେ ସେସବୁ ନିଜକୁ ପ୍ରକାଶ କରିଥାଏ । କୌଣସି ଦେଶ ତା'ର ଜାତୀୟ ସ୍ୱାଧୀନତା ଲଭ କଲ୍ପ ପରେ ମୁଖ୍ୟ ଦ୍ୱନ୍ଦ୍ୱର ଦାୟିତ୍ୱ ଅନ୍ୟ ଦ୍ୱନ୍ଦ୍ୱସମୂହ ଗ୍ରହଣ କରିଥାନ୍ତି, ଯଥା ସେସବୁ ହେଲା ଅଗ୍ରଣୀ ସାମାଜିକ ବ୍ୟବସ୍ଥା ଆଉ ଅନଗ୍ରସର ଅର୍ଥନୀତି ମଧ୍ୟରେ ଦ୍ୱନ୍ଦ୍ୱସମୂହ, ଶ୍ରେଣୀ ଶ୍ରେଣୀ ମଧ୍ୟରେ ଦ୍ୱନ୍ଦ୍ୱସମୂହ, ସମାଜର ପ୍ରଗତିଶୀଳ ଏବଂ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ, ଆଦି । ଆମେ ତାହେଲେ ଦେଖିବାକୁ ପାଇଲେ, ବିଭିନ୍ନ ଦ୍ୱନ୍ଦ୍ୱରାଜି ମଧ୍ୟ ମୁଖ୍ୟ ଦ୍ୱନ୍ଦ୍ୱର କାର୍ଯ୍ୟ କରିଥାନ୍ତି । ଏହା ସତ୍ତ୍ୱେ ନିର୍ଦ୍ଦିଷ୍ଟ ଏକ ପଦାର୍ଥ, ବ୍ୟବସ୍ଥା ଅଥବା ପ୍ରପଞ୍ଚର ଦ୍ୱନ୍ଦ୍ୱରାଜି ମଧ୍ୟରେ ବି ଏପରି ଏକ ଦ୍ୱନ୍ଦ୍ୱଥାଏ, ଯିଏକି ତା'ର ସମସ୍ତ ପର୍ଯ୍ୟାୟରେ ତା'ର ବିକାଶ ଉପରେ ନିଷ୍ପତ୍ତିମୂଳକ ପ୍ରଭାବ ପକାଏ । ତାହାକୁ କୁହାଯାଏ ମୌଳିକ ଦ୍ୱନ୍ଦ୍ୱ । ଶେଷରେ ଏହା ଏକ ବ୍ୟବସ୍ଥା ମଧ୍ୟରେ ଥିବା ଅନ୍ୟ ସମସ୍ତ ଦ୍ୱନ୍ଦ୍ୱର ପରିପ୍ରକାଶକୁ ନିର୍ଦ୍ଧାରିତ କରିଥାଏ । ଏହାର ସେସବୁ ସହିତ ସଂପର୍କ ହେଉଛି ପ୍ରାରମ୍ଭିକ ଏବଂ ପ୍ରାଥମିକ । ସଜୀବ ପ୍ରକୃତି ମଧ୍ୟରେ ମୌଳିକ ଦ୍ୱନ୍ଦ୍ୱଟା, ଉଦାହରଣ ସ୍ୱରୂପ, ଥାଏ ଆତ୍ମସ୍ଥକରଣ ଆଉ ପରିବର୍ତ୍ତନ ପ୍ରକ୍ରିୟା ମଧ୍ୟରେ । ଏହି ଦ୍ୱନ୍ଦ୍ୱଟି ନିଜକୁ ପ୍ରକାଶ କରିଥାଏ ବଂଶଗତ ଭାବେ ନିର୍ଦ୍ଧାରିତ ବିପାକ ପ୍ରକ୍ରିୟାର ଯେକୌଣସି ଜୀବାଙ୍ଗରେ ଏକ ବିଶେଷ ରୂପରେ – ଯିଏକି ତା ପକ୍ଷରେ ବୈଶିଷ୍ଟ୍ୟ ସ୍ୱରୂପ – ଏବଂ ତା'ର ସଂଯୁକ୍ତ ଆଭ୍ୟନ୍ତରୀଣ ତଥା ବାହ୍ୟିକ ସଂଗଠନ ତଥା କ୍ରିୟା ମଧ୍ୟରେ । ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଏହା ଜୀବାଙ୍ଗରେ ଥିବା ଅନ୍ୟ ସମସ୍ତ ବିରୋଧୀ ପ୍ରକ୍ରିୟାକୁ ନିର୍ଦ୍ଧାରଣ କରେ (ପାରିପାର୍ଶ୍ୱିକ ଅବସ୍ଥା ସହିତ ନିଜକୁ ଖାପଖୁଆଇବା, ତା'ର ନିଜ ଜାତୀୟ ବା ଅନ୍ୟ ଜାତୀୟ ବ୍ୟକ୍ତିସମୂହ ସହିତ ତା'ର ସଂପର୍କ, ଆଦି) ।

ସମାଜର ବିକାଶ କ୍ଷେତ୍ରରେ ମୌଳିକ ଦ୍ୱନ୍ଦ୍ୱଟା ଥାଏ ଉତ୍ପାଦିକା ଶକ୍ତିସମୂହ ଏବଂ ଉତ୍ପାଦନ ସଂପର୍କରାଜି ମଧ୍ୟରେ । ପୁଞ୍ଜିବାଦୀ ସମାଜରେ ଏହି ଦ୍ୱନ୍ଦ୍ୱ ପ୍ରକାଶ ପାଇଥାଏ ଉତ୍ପାଦନର ସାମାଜିକ ଚରିତ୍ର ଏବଂ ବ୍ୟକ୍ତିଗତ ପୁଞ୍ଜିବାଦୀ ଆତ୍ମସାତ୍‌କରଣର ପଦ୍ଧତି ମଧ୍ୟରେ । ବୁର୍ଜୁଆ ଏବଂ ସର୍ବହରା ମଧ୍ୟରେ ବୈରିତାର କୌଣସି ଉଦ୍ୟୋଗରେ ଉତ୍ପାଦନ ସଂଗଠନ ଆଉ ସାମଗ୍ରିକ ଭାବେ ସାମାଜିକ ଉତ୍ପାଦନର ଅରାଜକତା ମଧ୍ୟରେ ପ୍ରକଟିତ ଦ୍ୱନ୍ଦ୍ୱର ଏବଂ ବିଭିନ୍ନ ପୁଞ୍ଜିପତି ଗୋଷ୍ଠୀ ମଧ୍ୟରେ ଥିବା ଦ୍ୱନ୍ଦ୍ୱର ଭିତ୍ତି ହେଉଛି ଏହି ଦ୍ୱନ୍ଦ୍ୱଟି ।

ଆଧୁନିକ ଯୁଗରେ ମୌଳିକ ଦ୍ୱନ୍ଦ୍ୱର ସମସ୍ୟାଟା ଏବେ ବିଶେଷ ଗୁରୁତ୍ୱ ଅର୍ଜନ କରିଛି । ସାମଗ୍ରିକ ଭାବେ ମାନବ ସମାଜ ସହିତ ସଂପର୍କ ଦୃଷ୍ଟିରୁ ଏହା ହେଉଛି ଦୁଇ ସମାଜ ବ୍ୟବସ୍ଥା – ସମାଜବାଦ ଆଉ ପୁଞ୍ଜିବାଦ ମଧ୍ୟରେ ଦ୍ୱନ୍ଦ୍ୱ । ଏହି ଦୁଇ ବିରୋଧୀ ସମାଜ ବ୍ୟବସ୍ଥା ସଂଗ୍ରାମ ମଧ୍ୟରେ ନିହିତ ରହିଛି ଆମ ଏହି ଯୁଗର ମୂଳ କଥା –

ପୁଞ୍ଜିବାଦରୁ ସମାଜବାଦକୁ ଜାତିମାନଙ୍କର ଉତ୍ତରଣ । ଏହି ମୌଳିକ ଦ୍ୱନ୍ଦ୍ୱ, ଅର୍ଥାତ୍, ସମାଜବାଦୀ ଆଉ ପୁଞ୍ଜିବାଦୀ ବିଶ୍ୱ ବ୍ୟବସ୍ଥା ମଧ୍ୟରେ ସଂପର୍କରାଜି ହେଉଛି ଆଜିକାର ଅନ୍ୟ ସମସ୍ତ ସାମାଜିକ ବିକାଶର ଦ୍ୱନ୍ଦ୍ୱରାଜି ପକ୍ଷରେ (ସାମ୍ରାଜ୍ୟବାଦ ଆଉ ବିକାଶଶୀଳ ଦେଶମାନଙ୍କ ମଧ୍ୟରେ, ବିଭିନ୍ନ ସାମ୍ରାଜ୍ୟବାଦୀ ଦେଶମାନଙ୍କ ମଧ୍ୟରେ, ଗଣତନ୍ତ୍ର ଏବଂ ପ୍ରତିକ୍ରିୟା ମଧ୍ୟରେ, ଯୁଦ୍ଧ ଏବଂ ଶାନ୍ତିର ଶକ୍ତିମାନଙ୍କ ମଧ୍ୟରେ, ଆଦି) ନିଷ୍ପତ୍ତିମୂଳକ । ଆଧୁନିକ ଯୁଗର ଏହି ମୌଳିକ ଦ୍ୱନ୍ଦ୍ୱ କେବଳ ପ୍ରକାଶ ପାଇ ପାରେ ଏବଂ ପ୍ରଗତିଶୀଳ ମାନବଜାତିର ସ୍ୱାର୍ଥ ଦୃଷ୍ଟିରୁ ତା'ର ସମାଧାନ ହୋଇ ପାରେ ବିଭିନ୍ନ ସାମାଜିକ ବ୍ୟବସ୍ଥାସଂପନ୍ନ ରାଷ୍ଟ୍ରମାନଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଜରିଆରେ । ଦୁନିଆରେ ଶାନ୍ତିର ସୁରକ୍ଷା ଦିଗରେ ଭାରତବର୍ଷ ଏକ ଗୁରୁତ୍ୱପୂର୍ଣ୍ଣ ଅବଦାନ ରଖୁଛି । ଏହା ଲଗାତର ଭାବେ ଅନୁସରଣ କରି ଚାଲିଛି ସାମ୍ରାଜ୍ୟବାଦ ବିରୋଧୀ ଗୋଷ୍ଠୀ ନିରପେକ୍ଷ ନୀତି ।

୧୯୮୦ ମସିହାରେ ଲିଓନିଦ୍ ବ୍ରେଜ୍‌ନେଭ୍ ତାଙ୍କ ଭାରତ ଗସ୍ତ ବେଳେ ଇତିହାସରେ ଭାରତର ବିଖ୍ୟାତ ଭୂମିକା କଥା ଉଲ୍ଲେଖ କରି ଶାନ୍ତି ଏବଂ ସ୍ଥିତିଶୀଳତା ଉପରେ ଭାରତର ଗୁରୁତ୍ୱଦାନକୁ ପ୍ରଶଂସା କରିଥିଲେ । ଏହି କାରଣରୁ ସୋଭିଏତ୍ ୟୁନିଅନ୍ ଭାରତ ସହିତ ବନ୍ଧୁତାକୁ ଏତେ ଅଧିକ ଗୁରୁତ୍ୱଦାନ ପ୍ରଦାନ କରିଥାଏ । ସୋଭିଏତ୍ ୟୁନିଅନ୍ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସରେ ଲିଓନିଦ୍ ବ୍ରେଜ୍‌ନେଭ୍ ମଧ୍ୟ ଆନ୍ତର୍ଜାତିକ ବ୍ୟାପାରରେ ଭାରତର କ୍ରମବର୍ଦ୍ଧମାନ ଭୂମିକା ଏବଂ ସୋଭିଏତ୍ ୟୁନିଅନ୍ ଆଉ ଶାନ୍ତିପ୍ରିୟ ସ୍ୱାଧୀନ ଭାରତ ମଧ୍ୟରେ ବନ୍ଧୁତ୍ୱର ଅବିରାମ ଦୃଢ଼ୀକରଣ କଥା ଦର୍ଶାଇଥିଲେ "ଯେଉଁ ବନ୍ଧୁତା ଆମ ଦୁଇ ଦେଶର ସୁଦୃଢ଼ ଜନପ୍ରିୟ ପରମ୍ପରାରେ ପରିଣତ ହୋଇ ପାରିଛି ।" ସେ ମଧ୍ୟ ଆଉ ଦର୍ଶାଇଥିଲେ ଯେ, ସୋଭିଏତ୍ ୟୁନିଅନ୍ ତଥା ଭାରତ ମଧ୍ୟରେ ସଂପର୍କସମୂହର ସଂପୂର୍ଣ୍ଣ ପରିଧି ଆଉରି ପ୍ରସାରିତ ହୋଇଛି ଦିଲ୍ଲୀରେ ଅନୁଷ୍ଠିତ ପ୍ରଧାନ ମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଏବଂ ଅନ୍ୟାନ୍ୟ ଭାରତୀୟ ନେତୃବୃନ୍ଦଙ୍କ ସହିତ ତାଙ୍କର ଆଲୋଚନା ଫଳରେ ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସୋଭିଏତ୍ ଗସ୍ତ (୧୯୮୨, ସେପ୍‌ଟେମ୍ବର) ଉଭୟ ଦେଶର ନେତୃବୃନ୍ଦଙ୍କ ମଧ୍ୟରେ ପାରସ୍ପରିକ ବିଶ୍ୱାସ ଏବଂ ଉଭୟ ଦେଶର ଜାତିମାନଙ୍କ ମଧ୍ୟରେ ନିବିଡ଼ ବନ୍ଧୁତ୍ୱର ସଂପର୍କକୁ ଆଉରି ସୁଦୃଢ଼ କରିଛି ।

## ୫ — ସାମାଜିକ ଦ୍ୱନ୍ଦ୍ୱସମୂହର ପ୍ରକାରଭେଦ

ଦ୍ୱନ୍ଦ୍ୱସମୂହକୁ ମୌଳିକ ଏବଂ ଅମୌଳିକ, ମୁଖ୍ୟ ଏବଂ ଗୌଣ, ଏବଂ ଆଭ୍ୟନ୍ତରୀଣ ଏବଂ ବାହ୍ୟିକ ହିସାବରେ ବିଭାଗକରଣ ଦ୍ୱାରା ପ୍ରକୃତି ଏବଂ ସମାଜରେ ସେସବୁର ଅବସ୍ଥାନକୁ ପ୍ରକାଶ କରାଯାଇଥାଏ । ସାମାଜିକ ଦ୍ୱନ୍ଦ୍ୱସମୂହକୁ ବିଶେଷ ଭାବେ

ଉଲ୍ଲେଖ କରିବାର ଆବଶ୍ୟକତା ରହିଛି । ସେସବୁ ସର୍ବଦା ଜନସାଧାରଣଙ୍କ ମଧ୍ୟରେ ନିର୍ଦ୍ଦିଷ୍ଟ କେତେକ ସଂପର୍କକୁ ପ୍ରକାଶ କରିଥାଏ ଏବଂ ବିଶେଷ ସାମାଜିକ କର୍ତ୍ତାମାନଙ୍କୁ (ସାମାଜିକ ଗୋଷ୍ଠୀସମୂହ, ଶ୍ରେଣୀସମୂହ, ଆଦି) ଦର୍ଶାଇଥାଏ । ସେସବୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଏହିସବୁ ଦ୍ୱନ୍ଦ୍ୱରାଜିର ଗଢ଼ଣ ମଧ୍ୟରେ ନିହିତ । ଲୋକଙ୍କ ମଧ୍ୟରେ ଦ୍ୱନ୍ଦ୍ୱର ଆବିର୍ଭାବ ଘଟେ ଏବଂ ଅବସ୍ଥାନ କରେ ବିଶେଷ ସାମାଜିକ ଜିନିଷସମୂହ ହେତୁ, ଯଥା, ସଂପତ୍ତି, ରାଜନୈତିକ କ୍ଷମତା, ଜାତୀୟ ସ୍ୱାଧୀନତା, ମତାଦର୍ଶ, ସଂସ୍କୃତି, ଧର୍ମ, ସ୍ୱାଧୀନତା ଆଦି ପାଇଁ । ଲୋକ କେତେକ ଦ୍ୱନ୍ଦ୍ୱକୁ ସଂରକ୍ଷଣ ଏବଂ ବିକାଶ କରିବା ପାଇଁ ଆଗ୍ରହୀ ହୋଇଥାନ୍ତି ଏବଂ ଅନ୍ୟ କେତେକକୁ ରୋକିବା ବା ହଟେଇବା ପାଇଁ ଉଦ୍ୟୋଗୀ ହୋଇଥାନ୍ତି । କେଉଁ କେଉଁ ଦ୍ୱନ୍ଦ୍ୱରାଜିକୁ ସାମାଜିକ ଜୀବନରେ ସ୍ୱତନ୍ତ୍ର କରି ଦେଖାଯାଇ ପାରେ ?

ପ୍ରଥମତଃ, ଦୁଇ ଧରଣର ସାମାଜିକ ଦ୍ୱନ୍ଦ୍ୱକୁ ସେସବୁର ସାମାଜିକ ଗୁଣ (ସାମାଜିକ ସଂପର୍କରାଜିର ଚରିତ୍ର) ଦୃଷ୍ଟିରୁ ଅଲଗା କରି ଦେଖାଯାଇ ପାରେ; ସେ ଦୁଇଟି ହେଉଛି ବୈରିତାପୂର୍ଣ୍ଣ ଏବଂ ଅବୈରିତାପୂର୍ଣ୍ଣ ଦ୍ୱନ୍ଦ୍ୱ । ବୈରିତା ବଢ଼ିବାକୁ ଲାଗେ ବ୍ୟକ୍ତି ଜୀବନର ସାମାଜିକ ଅବସ୍ଥାରାଜି ମଧ୍ୟରୁ ଏବଂ ଶେଷକୁ ଏହା ନିର୍ଭର କରେ ଜନସାଧାରଣ ଏବଂ ଭୌତିକ ସଂପଦର ଉତ୍ପାଦନର ଉପାୟ ଉପକରଣ ମଧ୍ୟସ୍ଥ ବିଭିନ୍ନ ସଂପର୍କରାଜି ଉପରେ । ବୈରିତା ହେଉଛି ସମାଜର (ସର୍ବୋପରି ଶୋଷକ ଏବଂ ଶୋଷିତ ଶ୍ରେଣୀସମୂହ) ସଦସ୍ୟମାନଙ୍କର ମୌଳିକ ସ୍ୱାର୍ଥରାଶି ମଧ୍ୟରେ ଅସଙ୍ଗତିପୂର୍ଣ୍ଣ ସଂପର୍କ, ଯିଏକି ବ୍ୟକ୍ତିଗତ ମାଲିକାନା ଆଉ ସାମାଜିକ ଅସମତା ମଧ୍ୟରୁ ଜାତ ହୋଇଥାଏ । ବୈରିତାପୂର୍ଣ୍ଣ ଦ୍ୱନ୍ଦ୍ୱରାଜି ମଧ୍ୟରେ ଯାଏ ଦାସ ଆଉ ଦାସମାଲିକମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ, ସାମନ୍ତବାଦୀ ଜମି ମାଲିକ ଏବଂ ଭୂମିଦାସମାନଙ୍କ ମଧ୍ୟରେ, ବୁର୍ଜୁଆ ଏବଂ ସର୍ବହରାଙ୍କ ମଧ୍ୟରେ, ସାମ୍ରାଜ୍ୟବାଦ ଏବଂ ସମାଜବାଦ, ଉପନିବେଶବାଦ ଏବଂ ଜାତୀୟ ମୁକ୍ତି ଆନ୍ଦୋଳନ ମଧ୍ୟରେ ଦ୍ୱନ୍ଦ୍ୱ । ଏହାର ବିପରୀତରେ, ଅଣବୈରିତାପୂର୍ଣ୍ଣ ଦ୍ୱନ୍ଦ୍ୱସମୂହ ପ୍ରକାଶ କରେ ଜନସାଧାରଣଙ୍କ ମଧ୍ୟରେ ମୌଳିକ ଭାବେ ଭିନ୍ନ ସଂପର୍କରାଜିକୁ । ସେସବୁ ସଂପର୍କ ହେଉଛି ସେହିସବୁ ଶ୍ରେଣୀସମୂହ ଏବଂ ସାମାଚିକ ଗୋଷ୍ଠୀମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱସମୂହ, ଯେଉଁସବୁ ଗୋଷ୍ଠୀମାନଙ୍କର ସ୍ୱାର୍ଥ ମୌଳିକ ଭାବେ ମେଳଖାଏ, ଅଥଚ ଅଲଗା ଅଲଗା ସାମାଜିକ ସାମଗ୍ରୀ ସହିତ ସଂପର୍କ ଦୃଷ୍ଟିରୁ ଭିନ୍ନ ଭିନ୍ନ ହୋଇଥାଏ । ଉଦାହରଣ ସ୍ୱରୂପ, ଶ୍ରମିକ ଶ୍ରେଣୀ ଏବଂ ଶ୍ରମଜୀବୀ କୃଷକ ଶ୍ରେଣୀ ମଧ୍ୟରେ ଅଣବୈରିତାପୂର୍ଣ୍ଣ ସଂପର୍କ ।

ସମାଜରେ ଦ୍ୱନ୍ଦ୍ୱସମୂହ ମଧ୍ୟ ଭିନ୍ନ ଭିନ୍ନ ହୋଇଥାଏ ସେସବୁର ବିଷୟ ଏବଂ ବାହକ ଅନୁଯାୟୀ । ସେସବୁକୁ ଏହିସବୁ ଦୃଷ୍ଟିରୁ ଶ୍ରେଣୀଗତ, ଜାତୀୟ, ସାଧାରଣ ମାନବିକ, ଗୋଷ୍ଠୀଗତ (ଯଥା, ଜାତିଗତ) ଦ୍ୱନ୍ଦ୍ୱ ହିସାବରେ ଭାଗ ଭାଗ କରାଯାଇ ପାରେ ସାମାଜିକ ବ୍ୟବସ୍ଥାସମୂହ, ରାଷ୍ଟ୍ରରାଜି ଏବଂ ରାଜନୈତିକ ପାର୍ଟିସମୂହ, ଆଦିରେ ।

# ଦ୍ୱନ୍ଦ୍ୱସମୂହର ଶ୍ରେଣୀବିନ୍ୟାସ



ପାରି ନାହାନ୍ତି । ସେମାନେ ଏହାକୁ ବିଗ୍ରହ କରିଛନ୍ତି ଏକ ବିଶେଷ ଧରଣର ଗୁଣ ବୋଲି । ଆମେ ଦେଖିବାକୁ ପାଏଁ , ଗୁଣର ପ୍ରବର୍ଗ ମଧ୍ୟ ନିଜେ ନିର୍ଦ୍ଦିଷ୍ଟ , ଶରୀରୀ ଜିନିଷର ପ୍ରତ୍ୟକ୍ଷ ଇନ୍ଦ୍ରିୟାନୁଭୂତି ସହିତ ନିବିଡ଼ ଭାବେ ସଂଯୁକ୍ତ ।

ଜଗତ ସଂପର୍କରେ ଯାନ୍ତ୍ରିକ ଦୃଷ୍ଟିକୋଣ ଯେତେବେଳେ ପ୍ରଭାବଶୀଳ ଥିଲା ଏବଂ ପ୍ରପଞ୍ଚରାଜି ମଧ୍ୟରେ ଗୁଣାତ୍ମକ ବିଭେଦସମୂହକୁ ଅସ୍ୱୀକାର କରାଯାଉଥିଲା , ଏବଂ ବାସ୍ତବତାକୁ ବ୍ୟାପକ ଭାବେ ବ୍ୟାଖ୍ୟା କରାଯାଉଥିଲା ପରିମାଣଗତ ଭାବେ । କେତେକ ଦାର୍ଶନିକ , ଉଦାହରଣ ସ୍ୱରୂପ , ସଜୀବାଙ୍ଗ ଏବଂ ନିର୍ଜୀବ ପଦାର୍ଥରାଜି ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟକୁ ଲକ୍ଷ୍ୟ କରୁ ନଥିଲେ । ସେମାନଙ୍କ ମଧ୍ୟରେ ଅନ୍ୟତମ ହେଉଛନ୍ତି ଫରାସୀ ବସ୍ତୁବାଦୀ ଲମିତ୍ରେ (୧୭୦୯-୧୭୫୧) । "L'Homme-machine" ଶୀର୍ଷକ ପୁସ୍ତକଟିର ସେ ଥିଲେ ରଚୟିତା ।

ବସ୍ତୁବାଦର ବିରୋଧୀମାନଙ୍କ ମଧ୍ୟରେ ମନୋଗତ ଭାବବାଦୀମାନେ ମଣିଷର ଅବଗତି ବାହାରେ କୌଣସି ଗୁଣକୁ ସ୍ୱୀକାର କରୁ ନଥିଲେ । କିନ୍ତୁ ହେଗେଲ୍‌ଙ୍କ ଭଳି ବସ୍ତୁଗତ ଭାବବାଦୀମାନେ ଗୁଣ ଏବଂ ପରିମାଣକୁ ଅନପେକ୍ଷ ଆଇଡିଆର ଉନ୍ନତକରଣର ରୂପ ମାତ୍ର ବୋଲି ବିଗ୍ରହ କରୁଥିଲେ ।

ବାସ୍ତବରେ , ଅବଶ୍ୟ , ଗୁଣ ଏବଂ ପରିମାଣ ପ୍ରବର୍ଗ ଦୁଇଟି ଗତିଶୀଳ ବସ୍ତୁର ବହୁରୂପକତା , ମହାଜାଗତିକ ଯୋଗସୂତ୍ରରାଜି ଏବଂ ପଦାର୍ଥ ତଥା ପ୍ରପଞ୍ଚସମୂହ ମଧ୍ୟରେ ସଂପର୍କ , ସେମାନଙ୍କ ମଧ୍ୟରେ ଅଭିନ୍ନ ପାର୍ଥକ୍ୟ ତଥା କାରଣଗୁଡ଼ିକୁ ପ୍ରକାଶ କରିଥାଏ । ବାସ୍ତବତାର ଅନ୍ୟାନ୍ୟ ପଦାର୍ଥସମୂହ ସହିତ ନିର୍ଦ୍ଦିଷ୍ଟ ଏକ ସଂପର୍କକୁ ଧରିଲେ , ଗୁଣ ହେଉଛି ବସ୍ତୁର ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟରାଜିର ସ୍ଥାୟୀ ଏବଂ ଅଖଣ୍ଡ ସାମଗ୍ରିକତା । ଆମକୁ ଏଠାରେ ଏ କଥା ପରିଷ୍କାର କରି ଦେବାକୁ ହେବ ଯେ , ପଦାର୍ଥ କହିଲେ , ଆମେ ବୁଝୁଛୁ ସେହିସବୁକୁ , ଯେଉଁସବୁ ପ୍ରତି ଆମର ଚିନ୍ତାରାଜି ଉଦ୍ଦିଷ୍ଟ (ବସ୍ତୁରାଜି , ପ୍ରପଞ୍ଚରାଜି , ପ୍ରକ୍ରିୟାସମୂହ , ଆଦି) । ପଦାର୍ଥସମୂହ ନିଜକୁ ନିଜେ ବସ୍ତୁଗତ ଭାବେ ଅବସ୍ଥାନ କରନ୍ତି , ଆମେ ସେସବୁ ସଂପର୍କରେ ଜାଣିଲେ କି ନଜାଣିଲେ , ତା ଉପରେ ସେମାନେ ନିର୍ଭର କରନ୍ତି ନାହିଁ । ପଦାର୍ଥରାଜି ମଧ୍ୟରେ ନିହିତ ଗୁଣସମୂହ ମଧ୍ୟ ବସ୍ତୁଗତ । ସେସବୁ ପ୍ରକଟିତ ହୋଇଥାଏ ପଦାର୍ଥରାଜି ମଧ୍ୟରେ ପାରସ୍ପରିକ ସଂପର୍କ ଭିତରେ । ବିଭିନ୍ନ ପଦାର୍ଥରାଜି ଦୃଷ୍ଟିରୁ ଏକ ପଦାର୍ଥ ବିଭିନ୍ନ ଗୁଣ ଧାରଣ କରିଥାଏ । ତେଣୁ କରି ଏହା ବହୁବିଧ ଗୁଣଧାରୀ ।

ଧର୍ମ ହେଉଛି ଏକ ପଦ୍ଧତି , ଯାହା ମଧ୍ୟରେ ପଦାର୍ଥର ଗୁଣ ଅନ୍ୟାନ୍ୟ ପଦାର୍ଥର ସଂପର୍କ ଦୃଷ୍ଟିରୁ ପ୍ରକଟିତ ହୋଇଥାଏ । ପଦାର୍ଥ ମଧ୍ୟରେ ନିହିତ ଯେକୌଣସି ବୈଶିଷ୍ଟ୍ୟ ହେଉଛି ଧର୍ମ । ଗୁଣ ହେଉଛି ଏଭଳି ଏକ ଜିନିଷ , ଯାହାକୁ ପଦାର୍ଥର ଅବସ୍ଥିତିଠାରୁ ପୃଥକ୍ କରି ହୁଏ ନାହିଁ , କିନ୍ତୁ ଧର୍ମକୁ ପଦାର୍ଥ ହୁଏତ ହରେଇ ପାରେ , ଲାଭ କରି ପାରେ ବିଶେଷ ଏକ ଭୌତିକ ରୂପ ଆକାରରେ ତାହା ବିଲୋପ ନହୋଇ ।

# ଗୁଣ ଏବଂ ଧର୍ମସମୂହ

ଗୁଣ ହେଉଛି ପଦାର୍ଥ ଏବଂ ପ୍ରପଞ୍ଚରାଜିର ଆଭ୍ୟନ୍ତରୀଣ ଗଠଣ, ଯିଏକି ସେସବୁକୁ ଅନ୍ୟାନ୍ୟ ପଦାର୍ଥ ତଥା ପ୍ରପଞ୍ଚରାଜିଠାରୁ ପୃଥକ୍ କରେ ଏବଂ ଗୁଣ ସେସବୁର ସହଜାତ




ଗୁଣ ଯେତେବେଳେ ଅନ୍ୟ ପ୍ରପଞ୍ଚରାଜି ସହିତ ପାରସ୍ପରିକ କ୍ରିୟାରେ ଲିପ୍ତ ହୁଏ ଧର୍ମ ତା'ର ବାହ୍ୟିକ ପ୍ରତିଫଳନ ରୂପେ ପ୍ରକାଶ ପାଏ

"ଯେକୌଣସି ପଦାର୍ଥ ହେଉଛି ବହୁ ଧର୍ମର ସମ୍ମିଶ୍ରଣ, ଏବଂ ତେଣୁ କରି ଏହାକୁ ବିଭିନ୍ନ ଉପାୟରେ ବ୍ୟବହାର କରିହୁଏ । ପଦାର୍ଥସମୂହର ବହୁବିଧ ବ୍ୟବହାରକୁ ଆବିଷ୍କାର କରିବାଟା ହେଉଛି ଇତିହାସର କାର୍ଯ୍ୟ ।"

— ମାର୍କସ୍

ଗୁଣସମୂହ ସେସବୁର ଧର୍ମରାଜି ଦ୍ୱାରା ପୃଥକ୍ ପୃଥକ୍

କାର୍ବନ୍ (C) ପରମାଣୁର ଅବସ୍ଥାନ ପ୍ରଦର୍ଶନ କରୁଥିବା ନକ୍ସା



ହୀରା
କଠିନ ସ୍ୱଚ୍ଛ



ସୀସକ
ନରମ ଧୂସର

ସୀସକରେ ସ୍ଫଟିକ କାର୍ବନ୍ ପରମାଣୁସବୁ ସ୍ତରସ୍ତର ହୋଇ ଥାଏ ଏବଂ ସେସବୁ ଅତି ହାଲୁକା ଭାବେ ପରସ୍ପର ସହିତ ଯୁକ୍ତ । ସେସବୁକୁ ପରସ୍ପରଠାରୁ ଅଲଗା କରି ହୁଏ ଏବଂ ସ୍ଫଟିକଠାରୁ ମଧ୍ୟ ବିଚ୍ଛିନ୍ନ କରି ନେଇ ହୁଏ । ତେଣୁ କରି ସୀସକ ବ୍ୟବହୃତ ହୁଏ ଅଙ୍କନ କାର୍ଯ୍ୟରେ ଏବଂ ପିଚ୍ଛିଳକାରୀ ଘର୍ଷଣ ପୃଷ୍ଠ ପାଇଁ ।

ଏଥି ସଙ୍ଗେ ସଙ୍ଗେ ଗୁଣ ଏବଂ ଧର୍ମ ମଧ୍ୟରେ ପାର୍ଥକ୍ୟଟା ହେଉଛି ଆପେକ୍ଷିକ । କୌଣସି ଏକ ସଂପର୍କ ଦୃଷ୍ଟିରୁ ପଦାର୍ଥର ଧର୍ମ ବୋଲି ଯାହା ପ୍ରତୀତ ହୁଏ, ଅନ୍ୟ ଏକ ସଂପର୍କ ଦୃଷ୍ଟିରୁ ତାହା ଗୁଣ ବୋଲି ମନେ ହୁଏ ।

ହୀରାକୁ ଏକ ଉଦାହରଣ ରୂପେ ଗ୍ରହଣ କରାଯାଉ । ସମସ୍ତ ଜ୍ଞାତ ଉପାଦାନ ମଧ୍ୟରେ ଏହା କଠିନତର । ଏହାକୁ ଘର୍ଷକ ବସ୍ତୁ ହିସାବରେ ବ୍ୟବହାର କଲା ବେଳେ ଏହା ହେଉଛି ତା'ର ଗୁଣ । ଏହି ଗୁଣଟି ପ୍ରକାଶ ପାଇଥାଏ, ଏହା ଯେତେବେଳେ କାଚକୁ ମସୃଣ କରେ । ହୀରା କଠିନ ନହେଲେ ତାକୁ ଯନ୍ତ୍ର ରୂପେ ମଧ୍ୟ ବ୍ୟବହାର କରି ହେବ ନାହିଁ । କିନ୍ତୁ, ଏହି ବିଶେଷ ଗୁଣ ସଂପର୍କରେ (ଅନ୍ୟାନ୍ୟ ଉପାଦାନସମୂହକୁ ମସୃଣ କରିବା) ହୀରାର ସାଧାରଣ ଭାବେ ଅଗୁରୁତ୍ୱପୂର୍ଣ୍ଣ ଧର୍ମରାଶି ଏବଂ ଯିଏକି ଭିନ୍ନ ବି ହୋଇ ପାରେ । ସେ ହେଉଛି ତା'ର ରଙ୍ଗ (ପ୍ରକୃତିରେ ହୀରା ସୃଷ୍ଟି ହୋଇଥାଏ ଅଲଗା ସ୍ଫଟିକସମୂହ ରୂପେ, ଯିଏକି ହେଉଛି ରଙ୍ଗହୀନ ବା ମିଶ୍ରଣ ଦ୍ୱାରା ଈଷତ୍ ରଞ୍ଜିତ) ଏବଂ ତା'ର ସୃଷ୍ଟି (ହୀରାକୁ ଯବକ୍ଷାର ମିଶ୍ରଣରୁ ଅତି ଉଚ୍ଚ ତାପାଙ୍କ ଏବଂ ଗ୍ରପ ମଧ୍ୟ ଦେଇ ସଂଶ୍ଳେଷଣ ଦ୍ୱାରା ତିଆରି କରାଯାଏ) ଏବଂ ରୂପ, ଆଦି । ତଥାପି, ହୀରାକୁ ଯଦି ଏକ ମୂଲ୍ୟବାନ ପ୍ରସ୍ତର ବୋଲି ବିଗ୍ଧର କରାଯାଏ, ତେବେ ମସୃଣ ପ୍ରକ୍ରିୟା ମଧ୍ୟ ଦେଇ ଯିବାର କ୍ଷମତା ଭଳି ଏହାର ଦୃଢ଼ତାଟା ବିଗ୍ଧର୍ଯ୍ୟ ନୁହେଁ, ବିଗ୍ଧର୍ଯ୍ୟ ବିଷୟଟି ହେଉଛି ତା'ର ବିଭିନ୍ନ ରଙ୍ଗ, ଆଦି । ଶେଷତଃ, ହୀରାକୁ ଯେତେବେଳେ ତା'ର ରାସାୟନିକ ଗଢ଼ଣ ଦୃଷ୍ଟିରୁ ବିଗ୍ଧର କରାଯାଏ, ସେତେବେଳେ ତା'ର ଦୃଢ଼ତା, ରଙ୍ଗ, ମସୃଣ କ୍ଷମତା ଏବଂ ଅନ୍ୟାନ୍ୟ ଧର୍ମ ଗୁରୁତ୍ୱ ହରେଇ ବସେ, କାରଣ ଏ କ୍ଷେତ୍ରରେ ମୁଖ୍ୟ କଥାଟି ହେଉଛି ହୀରା ହେଉଛି ଯବକ୍ଷାରର ଏକ ଆଲଟ୍ରଫିକ୍ ଉନ୍ନତୀକରଣ । ରାସାୟନିକ ଦୃଷ୍ଟିରୁ, ହୀରା, ଗ୍ରାଫାଇଟ୍ ଏବଂ କୋଇଲା ଏକା ଗୁଣ ପ୍ରକାଶ କରିଥାନ୍ତି, ଯିଏକି ବିଶେଷ ରାସାୟନିକ ପ୍ରତିକ୍ରିୟାରେ ଯବକ୍ଷାରର ସଂପୃକ୍ତ ଧର୍ମରାଶି ମଧ୍ୟରେ ପ୍ରକାଶ ପାଇଥାଏ ।

ଗୁଣର ଅବଧାରଣାଟି ଏହି ଭାବେ ପ୍ରକାଶ କରିଥାଏ : କ) କୌଣସି ପଦାର୍ଥର ଅଖଣ୍ଡ ଧର୍ମରାଶି, ଖ) ଏହାର ସ୍ଥିରତା, ଗ) ଏହାର ଆପେକ୍ଷିକ ଅପରିବର୍ତ୍ତନୀୟତା, ଘ) ଅନ୍ୟାନ୍ୟ ପଦାର୍ଥଠାରୁ ଏହାର ବିଶେଷ ପାର୍ଥକ୍ୟସମୂହ, ଙ) ଏହାର ନିର୍ଦ୍ଦିଷ୍ଟତା, ଯିଏକି ତା'ର ଅସ୍ତିତ୍ୱଠାରୁ ଅବିଚ୍ଛିନ୍ନ ।

ପରିମାଣ ତାହେଲେ କ'ଣ ? ଏହି ଅବଧାରଣାଟିକୁ ବିଗ୍ଧର କରିବାକୁ ହେବ ଗୁଣର ପ୍ରବର୍ଗ ସହିତ ଏହାର ସଂପର୍କ ଦୃଷ୍ଟିରୁ । ପ୍ରଥମତଃ, ଗୁଣର ଅବଧାରଣା ଦ୍ୱାରା ପ୍ରଦର୍ଶିତ କୌଣସି ଏକ ପଦାର୍ଥର ଅଖଣ୍ଡ ବୈଶିଷ୍ଟ୍ୟ ଭଳି ଏହା ନୁହେଁ, ପରିମାଣ ପ୍ରବର୍ଗଟି କୌଣସି ପଦାର୍ଥର ନିର୍ଦ୍ଦିଷ୍ଟତାକୁ ତା'ର ବ୍ୟକ୍ତିଗତ ଧର୍ମରାଶି ବା ବୈଶିଷ୍ଟ୍ୟସମୂହ ଦିଗରୁ ପ୍ରକାଶ କରିଥାଏ । ଏହି ଭାବେ ଏହିସବୁ ଧର୍ମର ବିକାଶର ମାତ୍ରାକୁ ମାପ କରାଯାଇ ପାରେ ଏବଂ ଅନ୍ୟାନ୍ୟ ପଦାର୍ଥରେ ସେସବୁର ପ୍ରକାଶକୁ ତୁଳନା କରାଯାଇ ପାରେ । ପ୍ରାକୃତିକ ପଦାର୍ଥସମୂହର, ଦୃଷ୍ଟାନ୍ତ ସ୍ୱରୂପ, ଥାଏ ନିର୍ଦ୍ଦିଷ୍ଟ ଗତିବେଗ, ତାପ, ଓଜନ

ଏବଂ ପରିମାଣ, ଆଦି । ପଦାର୍ଥର ଭିନ୍ନ ଧର୍ମରାଶିରେ ଘଟୁଥିବା ପରିବର୍ତ୍ତନରାଜିକୁ, ଯିଏକି ଅନ୍ୟାନ୍ୟ ପଦାର୍ଥର ଧର୍ମରାଶି ସହିତ ସମାନ, ପରିମାଣର ପ୍ରବର୍ଗ ଲିପିବଦ୍ଧ କରିଥାଏ । ପଦାର୍ଥର ଅସ୍ତିତ୍ୱ ସହିତ ଏକେବାରେ ଅବିଚ୍ଛିନ୍ନ ଭାବେ ଗୁଣ ବାନ୍ଧି ହୋଇ ରହିଥିଲା ବେଳେ, ପରିମାଣ, ପ୍ରଥମ ଦୃଷ୍ଟିରେ ମନେ ହୁଏ ତା'ର ଅସ୍ତିତ୍ୱଠାରୁ ବାହ୍ୟିକ ବୋଲି । ତମ୍ବାକୁ ୧୦୦° ହେଉ ବା ୩୦୦° ସେଣ୍ଟିଗ୍ରେଡ୍‌ର ତାପାଙ୍କରେ ଗରମ କଲେ ବି ଏହା ତା'ର ଘନତାର ନିର୍ଦ୍ଦିଷ୍ଟ ମିଳିତ ଅବସ୍ଥାକୁ ରଖି ପାରେ । ଆପଣ ଯେଉଁ ଟେବୁଲରେ ବସି ପଢ଼ୁଛନ୍ତି, ତାହା ଛୋଟ ହେଲେ ବା ବଡ଼ ହେଲେ ମଧ୍ୟ ଏହି କାରଣରୁ ଟେବୁଲ ହୋଇ କି ରହେ ।

ପରିମାଣର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟରାଜି ହେଉଛି ସଂଖ୍ୟା ଏବଂ ପରିସର । ପ୍ରଥମୋକ୍ତଟି ଗଣନା ସହିତ ଐତିହାସିକ ଭାବେ ଯୁକ୍ତ, ଶେଷୋକ୍ତଟି ଏକ ମାପକାଠି ସାହାଯ୍ୟରେ ପଦାର୍ଥର ମାପ ପ୍ରକ୍ରିୟା ସହିତ ସଂଯୁକ୍ତ । ସଂଖ୍ୟା ଏବଂ ପରିସର ସଂକ୍ରାନ୍ତ ଅବଧାରଣାଟି ଗଣିତ ବିଦ୍ୟାର ବିକାଶ ସହିତ ପାଦ ମିଳେଇ ବିକାଶ ଲାଭ କରି ଆସିଛି । ଏବେ ଗଣିତଜ୍ଞମାନେ ପ୍ରାକୃତିକ, ଭୌତିକ, ଜଟିଳ ସଂଖ୍ୟାରାଜି, ଚତୁଃସଂଖ୍ୟକରାଶି ମଧ୍ୟରେ ପାର୍ଥକ୍ୟକୁ ଲକ୍ଷ୍ୟ କରନ୍ତି । ଉଭୟ ସାଧାରଣ ପରିସର ଏବଂ ଭେକ୍ଟରସ୍ ଏବଂ ଟେନ୍‌ସର, ଆଦି ପରିସରଗତ ଅବଧାରଣାର ଅନ୍ତର୍ଗତ । କେତେକ ଆପରି ସତ୍ତ୍ୱେ ବି ପରିମାଣକୁ ପଦାର୍ଥର ନିର୍ଦ୍ଦିଷ୍ଟତା ଅର୍ଥରେ ଗ୍ରହଣ କରାଯାଇ ପାରେ, ଯାହାକୁ ସଂଖ୍ୟା ବା ପରିମିତି ଦ୍ୱାରା ପ୍ରକାଶ କରାଯାଇ ପାରେ । ତା ସତ୍ତ୍ୱେ ପରିମାଣକୁ ସେହିସବୁ ଗାଣିତିକ ଅବଧାରଣା ସହିତ ସଂପୂର୍ଣ୍ଣ ରୂପେ ଏକା ପରି ଦେଖିଲେ ଭୁଲ ହେବ । ସଂଖ୍ୟା ଏବଂ ପରିମିତି ଅନୁଯାୟୀ ସମସ୍ତ ପରିମାଣଗତ ଅବଧାରଣାକୁ ପ୍ରକାଶ କରିବା ସମ୍ଭବ ନୁହେଁ । ଏହା ସ୍ୱାଭାବିକ, ବିଶେଷତଃ, ବହୁ ସାମାଜିକ ପ୍ରପଞ୍ଚ ଏବଂ ପ୍ରକ୍ରିୟାକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ଗାଣିତିକ ପଦ୍ଧତିକୁ ପ୍ରୟୋଗ କରିବାର ସୀମାବଦ୍ଧତା ଦୃଷ୍ଟିରୁ । ଜନସାଧାରଣଙ୍କ ବୈପ୍ଳବିକ ମନୋଭାବ ଚେତନାର ସ୍ତର, ସମାଜରେ ଶ୍ରେଣୀ ସଂଗ୍ରାମର ତୀବ୍ରତାର ମାତ୍ରା, ସାଂସ୍କୃତିକ ମୂଲ୍ୟବୋଧ କେତେ ପରିମାଣରେ ଆତ୍ମସ୍ଥ ହୋଇଛି, କଳାକୃତିର ସୌନ୍ଦର୍ଯ୍ୟବୋଧଗତ ପ୍ରଭାବ, ଧର୍ମୀୟ ମନୋଭାବର ପାର୍ଥକ୍ୟ, ଆଦିକୁ ଏହିସବୁ ସୂତ୍ର ଦ୍ୱାରା ପ୍ରକାଶ କରି ହୁଏ ନାହିଁ ।

## ୨ — ପରିମାଣଗତ ପରିବର୍ତ୍ତନରୁ ଗୁଣଗତ ପାର୍ଥକ୍ୟକୁ ଉତ୍ତରଣ

ଉପରୋକ୍ତ ଆଲୋଚନାରୁ ଜଣାଯାଏ, ପରିମାଣ ଏବଂ ଗୁଣ ହେଉଛି ପରସ୍ପରର ବିପରୀତ । ତା ସତ୍ତ୍ୱେ ବି ସେ ଦୁଇ ମଧ୍ୟରେ ରହିଛି ଦ୍ୱନ୍ଦ୍ୱମୂଳକ ଐକ୍ୟ ସଂପର୍କ । ପ୍ରଥମ ଦୃଷ୍ଟିରେ, ହୁଏତ, ପରିମାଣ ମନେ ହୁଏ ପଦାର୍ଥର ଚରିତ୍ର ସହିତ ସଂପୃକ୍ତ ନୁହେଁ

ବୋଲି । ବାସ୍ତବ କ୍ଷେତ୍ରରେ, ଅଥଚ, ପ୍ରତିଟି ପଦାର୍ଥର କେବଳ ନିଜସ୍ୱ ପରିମାଣ ନଥାଏ, ଥାଏ ନିଜସ୍ୱ ଗୁଣଗତ ଧର୍ମରାଶି । ଏକ ଜଳୀୟ ଅଣୁପିଣ୍ଡ ଦୁଇଟି ଉଦ୍‌ଜାନର ପରମାଣୁ ଏବଂ ଗୋଟିଏ ଅମ୍ଳଜାନର ପରମାଣୁକୁ ନେଇ ଗଠିତ, ଏବଂ ଯବକ୍ଷାରର ଗୋଟିଏ ଅଣୁପିଣ୍ଡ ସୋଡିଅମ୍‌ର ଗୋଟିଏ ପରମାଣୁ ଏବଂ ଗୋଟିଏ କ୍ଲୋରାଇଡ୍‌ର ଅଣୁକୁ ନେଇ ଗଠିତ । ସୌର ବର୍ଣ୍ଣାଳୀର ବିଭିନ୍ନ ରଙ୍ଗର ଢେଉର ବିଭିନ୍ନ ଦୈର୍ଘ୍ୟ ଏବଂ ଦୋଳାୟମାନତାର ପୁନଃପୌନିକ ଦ୍ରୁତତା ଉପରେ ନିର୍ଭର କରେ : ଲାଲ ଆଲୋକ ଢେଉର ଦୈର୍ଘ୍ୟ ହେଉଛି ଏକ ସେଣ୍ଟିମିଟରର ଦଶ ହଜାର ଭାଗଠାରୁ କମ୍, ବାଇଗଣୀ ଆଲୋକ ଢେଉର ଦୈର୍ଘ୍ୟ ତାଠାରୁ ଦୁଇ ଗୁଣରୁ କମ୍ । ମଣିଷ ଦେହର ତାପାଙ୍କର ପରିମାଣ ହେଉଛି ୩୬.୬° ସେଣ୍ଟିଗ୍ରେଡ୍ ଏବଂ ସେଥିରୁ ବେଶି କମ୍ କେବଳ ୨୮°ରୁ ୪୨° ସେଣ୍ଟିଗ୍ରେଡ୍ ମଧ୍ୟରେ ସମ୍ଭବ । ଏହାର ବାହାରକୁ ଗଲିଗଲେ ମଣିଷର ଶରୀର ବଞ୍ଚି ପାରେ ନାହିଁ କି କାର୍ଯ୍ୟ ବି କରି ପାରେ ନାହିଁ । ତମ୍ବାକୁ ୧,୦୮୩° ସେଣ୍ଟିଗ୍ରେଡ୍‌ରୁ ଅଧିକ ଉତ୍ତପ୍ତ କଲେ ତା'ର ସାମଗ୍ରିକ ଅବସ୍ଥାନ (ଘନତାରୁ ତରଳତାକୁ) ପରିବର୍ତ୍ତିତ ହୋଇଥାଏ । ଉପରୋକ୍ତ ଏହିସବୁ ଏବଂ ଅନ୍ୟାନ୍ୟ ଉଦାହରଣ ଆମର ହୃଦ୍‌ବୋଧତା ଆଣେ ଯେ ପରିମାଣ ଏବଂ ଗୁଣ ମଧ୍ୟରେ ଯୋଗସୂତ୍ର ରହିଛି ବୋଲି । ସେମାନଙ୍କ ମଧ୍ୟରେ ଐକ୍ୟ ପ୍ରକାଶ ପାଇଥାଏ ପରିମାପଗତ ଅବଧାରଣାରେ ।

ମାପ ଦ୍ୱାରା ନିର୍ଦ୍ଦିଷ୍ଟ ଏକ ଗୁଣ ସମେତ ସମ୍ଭାବ୍ୟ ପରିମାଣାତ୍ମକ ପରିବର୍ତ୍ତନର ନିମ୍ନତର ଏବଂ ଉଚ୍ଚତର ସୀମାକୁ ଜାଣି ହୁଏ, ଯେଉଁ ଗୁଣଟା ପଦାର୍ଥର ପରିମାଣଗତ ନିର୍ଦ୍ଦିଷ୍ଟତାରେ ପରିବର୍ତ୍ତନର ସୀମାକୁ ଦର୍ଶାଇ ଥାଏ ଏବଂ ଯାହା ମଧ୍ୟରେ ଏହା ନିହିତ ଥାଏ । ପ୍ରତିଟି ଜିନିଷର ରହିଛି ମାପ, ଅର୍ଥାତ୍, ପରିମାଣ ଏବଂ ଗୁଣ ମଧ୍ୟରେ ନିର୍ଦ୍ଦିଷ୍ଟ ପାରସ୍ପରିକ ସଂପର୍କ । ମାପ ମଧ୍ୟରେ ପଦାର୍ଥର ଗୁଣରେ ପରିବର୍ତ୍ତନସମୂହ ବିନା ପରିମାଣାତ୍ମକ ପରିବର୍ତ୍ତନରାଜି ଘଟି ପାରେ । ଏହି ମାପଟା ଯେତେବେଳେ ବଦଳିଯାଏ ଏବଂ ତା'ର ସୀମା ଯେତେବେଳେ ଟପିଯାଏ କୌଣସି ପ୍ରପଞ୍ଚରେ ପରିମାଣଗତ ପରିବର୍ତ୍ତନସମୂହ ଗୁଣାତ୍ମକ ପରିବର୍ତ୍ତନ ଘଟାଇଥାଏ । ନୂତନ ପ୍ରପଞ୍ଚଟିର ନିଜ ତରଫରୁ ନିଜସ୍ୱ ମାପ ଥାଏ, ଯିଏକି ହେଉଛି ଗୁଣାତ୍ମକ ଏବଂ ପରିମାଣାତ୍ମକ ବୈଶିଷ୍ଟ୍ୟରାଜି ମଧ୍ୟରେ ଏକ ବିଶେଷ ଐକ୍ୟ । ଏଥିରେ ପୁଣି ପରିମାଣାତ୍ମକ ପରିବର୍ତ୍ତନ ଘଟେ, ଯିଏକି ଶେଷକୁ ଆଗେଇ ନିଏ ଗୁଣଗତ ପାର୍ଥକ୍ୟ ଆଡ଼କୁ । ଧାରାବାହିକ ଏବଂ ଅଧାରାବାହିକ ମୁହୂର୍ତ୍ତଗୁଡ଼ିକର ବିକାଶରେ ଐକ୍ୟ ହିସାବରେ ମାପର ସ୍ଥିର ରେଖାର ପ୍ରତିଛବି ଦ୍ୱାରା ଏହି ପ୍ରକ୍ରିୟାଟି ପ୍ରକାଶ ପାଇଥାଏ । ପ୍ରଥମୋକ୍ତଟି ବୁଝାଏ କୌଣସି ଏକ ପଦାର୍ଥର ସ୍ଥିତିଶୀଳତାର ସଂରକ୍ଷଣ ଏବଂ ନିର୍ଦ୍ଦିଷ୍ଟ ଏକ ମାପ ମଧ୍ୟରେ ପରିମାଣଗତ ପରିବର୍ତ୍ତନକୁ । ଶେଷୋକ୍ତଟି ହେଉଛି ମାପରେ ଗୋଳମାଳ, ଗୁଣଗତ ପରିବର୍ତ୍ତନ ଏବଂ ନୂଆ ଏକ ପଦାର୍ଥର ଅଭ୍ୟୁଦୟ । ଏଠାରେ ଆଲୋଚିତ ଦ୍ୱନ୍ଦ୍ୱାତ୍ମକ ନିୟମ ବସ୍ତୁର ଗତିର ବିପରୀତ ନିର୍ଦ୍ଦିଷ୍ଟତାର ଏହି ଐକ୍ୟକୁ ପ୍ରମାଣ କରିଥାଏ ।

# ସାମାଜିକ ବିକାଶରେ ମାପର ନୋଡାଲ ରେଖା

"କୌଣସି ସାମାଜିକ ବ୍ୟବସ୍ଥାର ପତନ ଘଟେ ନାହିଁ ତନ୍ ମଧ୍ୟରେ ସମସ୍ତ ଉତ୍ପାଦିକା ଶକ୍ତିସମୂହର ବିକାଶ ପାଇଁ ସୁଯୋଗ ଥିବା ପର୍ଯ୍ୟନ୍ତ...।"

— ମାର୍କସ୍



ବୋଲି । ବାସ୍ତବ କ୍ଷେତ୍ରରେ, ଅଥଚ, ପ୍ରତିଟି ପଦାର୍ଥର କେବଳ ନିଜସ୍ୱ ପରିମାଣ ନଥାଏ, ଥାଏ ନିଜସ୍ୱ ଗୁଣଗତ ଧର୍ମରାଶି । ଏକ ଜଳୀୟ ଅଣୁପିଣ୍ଡ ଦୁଇଟି ଉଦ୍‌ଜାନର ପରମାଣୁ ଏବଂ ଗୋଟିଏ ଅମ୍ଳଜାନର ପରମାଣୁକୁ ନେଇ ଗଠିତ, ଏବଂ ଯବକ୍ଷାରର ଗୋଟିଏ ଅଣୁପିଣ୍ଡ ସୋଡିଅମ୍‌ର ଗୋଟିଏ ପରମାଣୁ ଏବଂ ଗୋଟିଏ କ୍ଲୋରାଇଡ୍‌ର ଅଣୁକୁ ନେଇ ଗଠିତ । ସୌର ବର୍ଣ୍ଣାଳୀର ବିଭିନ୍ନ ରଙ୍ଗର ଢେଉର ବିଭିନ୍ନ ଦୈର୍ଘ୍ୟ ଏବଂ ଦୋଳାୟମାନତାର ପୁନଃପୌନିକ ଦ୍ରୁତତା ଉପରେ ନିର୍ଭର କରେ : ଲାଲ ଆଲୋକ ଢେଉର ଦୈର୍ଘ୍ୟ ହେଉଛି ଏକ ସେଣ୍ଟିମିଟରର ଦଶ ହଜାର ଭାଗଠାରୁ କମ୍, ବାଇଗଣୀ ଆଲୋକ ଢେଉର ଦୈର୍ଘ୍ୟ ତାଠାରୁ ଦୁଇ ଗୁଣରୁ କମ୍ । ମଣିଷ ଦେହର ତାପାଙ୍କର ପରିମାଣ ହେଉଛି ୩୬. ୬° ସେଣ୍ଟିଗ୍ରେଡ୍ ଏବଂ ସେଥିରୁ ବେଶି କମ୍ କେବଳ ୨୮°ରୁ ୪୨° ସେଣ୍ଟିଗ୍ରେଡ୍ ମଧ୍ୟରେ ସମ୍ଭବ । ଏହାର ବାହାରକୁ ଗଲିଗଲେ ମଣିଷର ଶରୀର ବଞ୍ଚି ପାରେ ନାହିଁ କି କାର୍ଯ୍ୟ ବି କରି ପାରେ ନାହିଁ । ଚମ୍ପାକୁ ୧,୦୮୩° ସେଣ୍ଟିଗ୍ରେଡ୍‌ରୁ ଅଧିକ ଉତ୍ତପ୍ତ କଲେ ତା'ର ସାମଗ୍ରିକ ଅବସ୍ଥାନ (ଘନତାରୁ ତରଳତାକୁ) ପରିବର୍ତ୍ତିତ ହୋଇଥାଏ । ଉପରୋକ୍ତ ଏହିସବୁ ଏବଂ ଅନ୍ୟାନ୍ୟ ଉଦାହରଣ ଆମର ହୃଦ୍‌ବୋଧତା ଆଣେ ଯେ ପରିମାଣ ଏବଂ ଗୁଣ ମଧ୍ୟରେ ଯୋଗସୂତ୍ର ରହିଛି ବୋଲି । ସେମାନଙ୍କ ମଧ୍ୟରେ ଐକ୍ୟ ପ୍ରକାଶ ପାଇଥାଏ ପରିମାପଗତ ଅବଧାରଣାରେ ।

ମାପ ଦ୍ୱାରା ନିର୍ଦ୍ଦିଷ୍ଟ ଏକ ଗୁଣ ସମେତ ସମ୍ଭାବ୍ୟ ପରିମାଣାତ୍ମକ ପରିବର୍ତ୍ତନର ନିମ୍ନତର ଏବଂ ଉଚ୍ଚତର ସୀମାକୁ ଜାଣି ହୁଏ, ଯେଉଁ ଗୁଣଟା ପଦାର୍ଥର ପରିମାଣଗତ ନିର୍ଦ୍ଦିଷ୍ଟତାରେ ପରିବର୍ତ୍ତନର ସୀମାକୁ ଦର୍ଶାଇ ଥାଏ ଏବଂ ଯାହା ମଧ୍ୟରେ ଏହା ନିହିତ ଥାଏ । ପ୍ରତିଟି ଜିନିଷର ରହିଛି ମାପ, ଅର୍ଥାତ୍, ପରିମାଣ ଏବଂ ଗୁଣ ମଧ୍ୟରେ ନିର୍ଦ୍ଦିଷ୍ଟ ପାରସ୍ପରିକ ସଂପର୍କ । ମାପ ମଧ୍ୟରେ ପଦାର୍ଥର ଗୁଣରେ ପରିବର୍ତ୍ତନସମୂହ ବିନା ପରିମାଣାତ୍ମକ ପରିବର୍ତ୍ତନରାଜି ଘଟି ପାରେ । ଏହି ମାପଟା ଯେତେବେଳେ ବଦଳିଯାଏ ଏବଂ ତା'ର ସୀମା ଯେତେବେଳେ ଟପିଯାଏ କୌଣସି ପ୍ରପଞ୍ଚରେ ପରିମାଣଗତ ପରିବର୍ତ୍ତନସମୂହ ଗୁଣାତ୍ମକ ପରିବର୍ତ୍ତନ ଘଟାଇଥାଏ । ନୂତନ ପ୍ରପଞ୍ଚଟିର ନିଜ ତରଫରୁ ନିଜସ୍ୱ ମାପ ଥାଏ, ଯିଏକି ହେଉଛି ଗୁଣାତ୍ମକ ଏବଂ ପରିମାଣାତ୍ମକ ବୈଶିଷ୍ଟ୍ୟରାଜି ମଧ୍ୟରେ ଏକ ବିଶେଷ ଐକ୍ୟ । ଏଥିରେ ପୁଣି ପରିମାଣାତ୍ମକ ପରିବର୍ତ୍ତନ ଘଟେ, ଯିଏକି ଶେଷକୁ ଆଗେଇ ନିଏ ଗୁଣଗତ ପାର୍ଥକ୍ୟ ଆଡ଼କୁ । ଧାରାବାହିକ ଏବଂ ଅଧାରାବାହିକ ମୁହୂର୍ତ୍ତଗୁଡ଼ିକର ବିକାଶରେ ଐକ୍ୟ ହିସାବରେ ମାପର ସ୍ଥିର ରେଖାର ପ୍ରତିଛବି ଦ୍ୱାରା ଏହି ପ୍ରକ୍ରିୟାଟି ପ୍ରକାଶ ପାଇଥାଏ । ପ୍ରଥମୋକ୍ତଟି ବୁଝାଏ କୌଣସି ଏକ ପଦାର୍ଥର ସ୍ଥିତିଶୀଳତାର ସଂରକ୍ଷଣ ଏବଂ ନିର୍ଦ୍ଦିଷ୍ଟ ଏକ ମାପ ମଧ୍ୟରେ ପରିମାଣଗତ ପରିବର୍ତ୍ତନକୁ । ଶେଷୋକ୍ତଟି ହେଉଛି ମାପରେ ଗୋଳମାଳ, ଗୁଣଗତ ପରିବର୍ତ୍ତନ ଏବଂ ନୂଆ ଏକ ପଦାର୍ଥର ଅଭ୍ୟୁଦୟ । ଏଠାରେ ଆଲୋଚିତ ଦ୍ୱନ୍ଦ୍ୱାତ୍ମକ ନିୟମ ବସ୍ତୁର ଗତିର ବିପରୀତ ନିର୍ଦ୍ଦିଷ୍ଟତାର ଏହି ଐକ୍ୟକୁ ପ୍ରମାଣ କରିଥାଏ ।

# ସାମାଜିକ ବିକାଶରେ ମାପର ନୋଡାଲ ରେଖା

"କୌଣସି ସାମାଜିକ ବ୍ୟବସ୍ଥାର ପତନ ଘଟେ ନାହିଁ ତନ୍ ମଧ୍ୟରେ ସମସ୍ତ ଉତ୍ପାଦିକା ଶକ୍ତିସମୂହର ବିକାଶ ପାଇଁ ସୁଯୋଗ ଥିଲା ପର୍ଯ୍ୟନ୍ତ...।"

— ମାର୍କସ୍



ଏଙ୍ଗେଲସ୍ ଲେଖିଥିଲେ "... ପ୍ରକୃତିରେ ପ୍ରତ୍ୟେକଟି ଘଟଣାରେ ନିର୍ଦ୍ଦିଷ୍ଟ ଭାବେ ସ୍ଥିର କରାଯାଇଥିବା ପଦ୍ଧତିରେ ବସ୍ତୁ ବା ଗତିର (ତଥାକଥିତ ଶକ୍ତି) ପରିମାଣଗତ ଯୋଗ ବା ପରିମାଣଗତ ବିୟୋଗ ଦ୍ୱାରା ହିଁ କେବଳ ଗୁଣାତ୍ମକ ପରିବର୍ତ୍ତନ ଘଟିଥାଏ ।"* ବିଶେଷ କରି, ପଦାର୍ଥର ଗୁଣର ପରିବର୍ତ୍ତନ ଘଟେ ଉପାଦାନ, ଶକ୍ତି ବା ତଥ୍ୟର ଗୁଣରେ ପରିବର୍ତ୍ତନ ମଧ୍ୟ ଦେଇ, ଯେତେବେଳେ ପଦାର୍ଥଟିରେ ଉପାଦାନ ଏବଂ ଶକ୍ତି ନିଜକୁ ନିଜେ ପୁନର୍ବଣ୍ଟିତ କରେ, ପଦାର୍ଥରେ ଗଠନଗତ ଉପାଦାନରେ ପରିବର୍ତ୍ତନ ଘଟେ ଏବଂ ନୂତନ ଉପାଦାନସମୂହର ଅଭ୍ୟୁଦୟ ହୁଏ, ଆଦି । ପାଣି ଯେତେବେଳେ ଉତ୍ତପ୍ତ ହୁଏ ବା ଶୀତଳ ହୁଏ ଏବଂ ତା'ର ଶକ୍ତି ପରିବର୍ତ୍ତିତ ହୁଏ, ଅର୍ଥାତ୍, ଏହା ଯେତେବେଳେ କିଛି ତାପ ଆହରଣ କରେ ଏହାର ସାମଗ୍ରିକ ଅବସ୍ଥାରେ ପରିବର୍ତ୍ତନ ଘଟେ : ଏହା ୧୦୦° ସେଣ୍ଟିଗ୍ରେଡ୍‌ରେ ବାଷ୍ପକୁ ଏବଂ ০° ସେଣ୍ଟିଗ୍ରେଡ୍‌ରେ ବରଫକୁ ପରିବର୍ତ୍ତିତ ହୋଇଥାଏ । ଗଠନଗତ ଉପାଦାନରେ ପରିବର୍ତ୍ତନ ଦ୍ୱାରା ସଂଘଟିତ ଗୁଣାତ୍ମକ ପରିବର୍ତ୍ତନର ଉଦାହରଣ ସ୍ୱରୂପ ବିଭିନ୍ନ ଧର୍ମଯୁକ୍ତ ଉପାଦାନର ଅଭ୍ୟୁଦୟ, ଯିଏକି ଅଣୁପିଣ୍ଡର ଏକ ଏବଂ ଅଭିନ୍ନ ମୂଳ ଉପାଦାନର ପରମାଣୁର ସଂଖ୍ୟାରେ ପରିବର୍ତ୍ତନ ଦ୍ୱାରା ଘଟିଥାଏ । ଏହି ଭାବେ କୌଣସି ଏକ ଘନ ପଦାର୍ଥରୁ ଯବକ୍ଷାରଜାନର ଦୁଇଟି ପରମାଣୁ ଏବଂ ଅମ୍ଳଜାନର ପାଞ୍ଚଟି ପରମାଣୁ—ନାଇଟ୍ରିକ୍ ଆନ୍‌ହାଇଡ୍ରିଡ୍ ($N_2O_5$) ସୃଷ୍ଟି କଲାବେଳେ ଯବକ୍ଷାରଜାନର ଦୁଇଟି ପରମାଣୁ ଏବଂ ଅମ୍ଳଜାନର ଗୋଟିଏ ପରମାଣୁ ହସନ୍ତ ବାଷ୍ପ ($N_2O$) ନାମକ ଏକ ମିଶ୍ରଣ ସୃଷ୍ଟି କରେ ।

ଗୁଣାତ୍ମକ ପାର୍ଥକ୍ୟ ଦେଖା ଦେବା ସଙ୍ଗେ ସଙ୍ଗେ ପରିମାଣଗତ ପରିବର୍ତ୍ତନ ପ୍ରକ୍ରିୟାରେ ଆମେ ବିପରୀତ ଦିଗକୁ ଉତ୍ତରଣ ଲକ୍ଷ୍ୟ କରିଥାଏ, ଅର୍ଥାତ୍, ପରିମାଣକୁ ଗୁଣରୁ ବା ଆଉରି ସଠିକ୍ ଭାବେ କହିବାକୁ ଗଲେ, ଗୁଣାତ୍ମକ ଉତ୍ତରଣକୁ ଲକ୍ଷ୍ୟ କରିଥାଏ, ଯିଏକି ନୂଆ ପରିମାଣଗତ ବୈଶିଷ୍ଟ୍ୟ ଏବଂ ପରିବର୍ତ୍ତନରାଜି ଆଡ଼କୁ ଆଗେଇ ନିଏ । ଦୃଷ୍ଟାନ୍ତ ସ୍ୱରୂପ, ପାରମାଣବିକ ସଂଗ୍ରନ୍ଥନ ବୃଦ୍ଧି ପାଇଲେ ନୂଆ ଏକ ରାସାୟନିକ ଉପାଦାନ ଦେଖା ଦିଏ, କିନ୍ତୁ ଏହି ନୂଆ ଗୁଣଟିର ମଧ୍ୟ ନିଜସ୍ୱ ପରିମାଣଗତ ବୈଶିଷ୍ଟ୍ୟ ଥାଏ । ଉଦାହରଣ ସ୍ୱରୂପ, ସୋଡ଼ିଅମ୍ ପରମାଣୁପିଣ୍ଡରେ ଗୋଟିଏ ସଂଗ୍ରନ୍ଥନ ଘଟିଲେ ଏହା ମାଗ୍‌ନେସିଅମ୍‌କୁ ପରିବର୍ତ୍ତିତ ହୁଏ, ଯା'ର ପରିମାଣଗତ ଧର୍ମସକଳ ସୋଡ଼ିଅମ୍‌ର ଧର୍ମରାଶିଠାରୁ ପୃଥକ୍ : ଏହା ଏକଭାଲେଣ୍ଟ ସୋଡ଼ିଅମ୍ ନହୋଇ ଦ୍ୱିଭାଲେଣ୍ଟ ସୋଡ଼ିଅମ୍ ହୁଏ ଏବଂ ଏହାର ଘନତା ଏବଂ ତରଳାଙ୍କ, ଫୁଟନାଙ୍କ ହେଉଛି ଭିନ୍ନ, ଏହାର ଧାତବ ଗୁଣସମୂହ ଆଉରି ଦୁର୍ବଳ ଭାବେ ପ୍ରକାଶ ପାଏ, ରାସାୟନିକ ଭାବେ ଏହା କମ୍ ସକ୍ରିୟ, ଆଦି । ଜୀବନ ପ୍ରକ୍ରିୟାରେ ଏତାଦୃଶ ଗୁଣାତ୍ମକ ଏବଂ ପରିମାଣାତ୍ମକ ପରିବର୍ତ୍ତନସମୂହ ମଧ୍ୟରେ ଆଭ୍ୟନ୍ତରୀଣ ଯୋଗସୂତ୍ରକୁ ଲକ୍ଷ୍ୟ କରାଯାଇ

---

* ଫ୍ରେଡେରିକ୍ ଏଙ୍ଗେଲସ୍, "*Dialectics of Nature*", ପୃ: ୬୩ ।

ଥାଏ । ସଜୀବ ଦେହାଙ୍ଗ ବୃଦ୍ଧି ପାଏ, ତା'ର ଜୀବକୋଷଗୁଡ଼ିକର ବିଭାଜନ ହେତୁ । କିନ୍ତୁ ଏକ ଭୌତିକ କୋଷର ଦୁଇଟି ଭାଗକୁ ବିଭାଜନ କରିବା ହେଉଛି ଏକ ଜଟିଳ ପ୍ରକ୍ରିୟା । ଜୀବକୋଷ ନିର୍ଦ୍ଦିଷ୍ଟ ଏକ ଆକାରକୁ ବୃଦ୍ଧି ପାଇଲା ପରେ ଏହା ନିଜକୁ ବିଭାଜିତ କରି ପାରେ ନାହିଁ, କିନ୍ତୁ ତା ମଧ୍ୟରେ ଯେତେବେଳେ ବିଭିନ୍ନ ଗୁଣାତ୍ମକ ପରିବର୍ତ୍ତନରାଜି ଘଟେ (ଏହାର ଅଣୁପିଣ୍ଡ, ମିଟୋଚଣ୍ଡ୍ରିଆ, ସିଟୋପ୍ଲାଜମ୍, ଆଦି) ସେତେବେଳେ ଏହା ଘଟି ପାରେ । ଜୀବକୋଷର ବିଭିନ୍ନ ମୂଳ ଉପାଦାନ ମଧ୍ୟରେ କେତେକ ଗୁଣାତ୍ମକ ପରିବର୍ତ୍ତନ ଘଟିଲା ପରେ ଯାଇ କେବଳ ତା ମଧ୍ୟରେ ଏକ ବିଭାଜନ ଦେଖାଦିଏ ଏବଂ ତାହା ଏହି ଭାବେ ବିଭକ୍ତ ହୋଇଥାଏ ।

ପରିମାଣରୁ ଗୁଣକୁ ଉତ୍ତରଣ ଏବଂ ଗୁଣରୁ ପରିମାଣକୁ ପରିବର୍ତ୍ତନକୁ ମଧ୍ୟ ସାମାଜିକ ବିକାଶର ଉଦାହରଣ ଦ୍ୱାରା ଚିତ୍ରଣ କରାଯାଇ ପାରେ । ପରିମାଣଗତ ପରିବର୍ତ୍ତନରାଜିର ଏକତ୍ରୀକରଣ ଫଳରେ (ଉତ୍ପାଦିକା ଶକ୍ତିସମୂହର ବିକାଶ, ସାମାଜିକ ବୈରିତାର ତୀବ୍ରତା ସାଧନ, ଶ୍ରମିକ ଶ୍ରେଣୀର ସାଂଗଠନିକ କ୍ଷମତାର ଅଭିବୃଦ୍ଧି, ଶ୍ରମଜୀବୀ ଜନତାର କ୍ରମବର୍ଦ୍ଧମାନ କାର୍ଯ୍ୟକଳାପ, ଆଦି) ସମାଜବାଦୀ ବିପ୍ଳବ ସଂଘଟିତ ହୋଇଥାଏ । ବିପ୍ଳବ ଫଳରେ ଯେଉଁ ସାମାଜିକ ଗୁଣ ଦେଖା ଦିଏ (ଉତ୍ପାଦନର ଉପାୟ ଉପକରଣର ସାମାଜିକ ମାଲିକାନା ଉପରେ ପ୍ରତିଷ୍ଠିତ ସମାଜବାଦୀ ଉତ୍ପାଦନ ସଂପର୍କ, ଯୋଜନାବଦ୍ଧ ଅର୍ଥନୈତିକ ବିକାଶ, ସମାଜବାଦୀ ଗଣତନ୍ତ୍ର, ସାମାଜିକ ସମାନତା, ଆଦି), ତାହା ତରଫରୁ ସାମାଜିକ ଜୀବନର ବିଭିନ୍ନ ଦିଗର ପରିମାଣଗତ ପରିମାପକକୁ ପରିବର୍ତ୍ତନ ଘଟାଏ, ଯଥା ଉତ୍ପାଦିକା ଶକ୍ତିସମୂହର ବିକାଶର ମାତ୍ରା, ଲୋକଙ୍କ ଜୀବନଧାରଣର ମାନ, ଶିକ୍ଷାର ମାତ୍ରା, ଆଦି । ନିମ୍ନଲିଖିତ ତଥ୍ୟଗୁଡ଼ିକ ଏ ଦିଗରେ ଯଥେଷ୍ଟ ହେବ– ସୋଭିଏତ୍ ୟୁନିଅନ୍ ଏବେ ଅଢ଼େଇ ଦିନରେ ଯେତେ ଶିଳ୍ପଜାତ ଦ୍ରବ୍ୟ ଉତ୍ପାଦନ କରୁଛି ତାହା ୧୯୧୩ ମସିହାର ବିପ୍ଳବପୂର୍ବ ରୁଷିଆ ଏବଂ ପଚିଶ ବର୍ଷ ଆଗେ ସାରା ପୃଥିବୀର ଉତ୍ପାଦନଠାରୁ ଅଧିକ । ଦୁନିଆର ପ୍ରଥମ ସମାଜବାଦୀ ଦେଶର ଏହି ବିପୁଳ ଅର୍ଥନୈତିକ ଅଭିବୃଦ୍ଧିର ମୂଳରେ ଅଛି ଗୁଣାତ୍ମକ ଭାବେ ନୂତନ ସାମାଜିକ ସଂପର୍କ ଏବଂ ଏହା ଶ୍ରମ ମୁକ୍ତିର ଫଳ ସ୍ୱରୂପ ।

## ୩ — ଉଲ୍ଲମ୍ଫନ ଏବଂ ତା'ର ରୂପସମୂହ

ପରିମାଣଗତ ପରିବର୍ତ୍ତନସକଳ, ସାଧାରଣତଃ, ଧାରାବାହିକ ଭାବେ, କ୍ରମାନ୍ୱୟରେ ଏବଂ ଅନେକ ଦିନ ଧରି ଚାଲିଥାଏ । ଗୁଣାତ୍ମକ ପରିବର୍ତ୍ତନସକଳ, ଅନ୍ୟ ଦିଗରେ, ଧାରାବାହିକତା, କେତେକ ଦିଗରୁ କ୍ରମାଗତ ବିକାଶରେ ଏକ ପୂର୍ଣ୍ଣଚ୍ଛେଦକୁ ବୁଝାଇଥାଏ । ସେସବୁ ନୂଆ ଏକ ପରିମାପ ଏବଂ ନୂତନ ପ୍ରପଞ୍ଚକୁ ଉତ୍ତରଣକୁ ପ୍ରକାଶ କରିଥାଏ । ତେଣୁ ଏକ ପଦାର୍ଥରେ ଗୁଣଗତ ପରିବର୍ତ୍ତନ ବୋଇଲେ ବିକାଶରେ ଏକ ଉଲ୍ଲମ୍ଫନକୁ

ବୁଝାଏ ଏବଂ ବିକାଶ ତଥା ଗତିର ସମଗ୍ର ପ୍ରକ୍ରିୟାଟା ମନେ ହୁଏ ଧାରାବାହିକତା ଏବଂ ଧାରାବାହିକତାହୀନତା , କ୍ରମାନୁଗତି ଏବଂ ଉଲ୍ଲମ୍ଫନ ମଧ୍ୟରେ ଐକ୍ୟ ଭଳି । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ବିଶ୍ୱଦୃଷ୍ଟିକୋଣ କ୍ଷେତ୍ରରେ ଉଲ୍ଲମ୍ଫନର ଅବଧାରଣାଟା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବିକାଶର ଦ୍ୱନ୍ଦ୍ୱମୂଳକ ଅବଧାରଣାରେ ଏହା ପ୍ରକାଶ କରେ (କ) କୌଣସି ନୂତନ ଗୁଣର ଅଭ୍ୟୁଦୟ ପାଇଁ ପ୍ରାଥମିକ ପରିମାଣାତ୍ମକ ପରିବର୍ତ୍ତନରାଜିର ଫଳ ସ୍ୱରୂପ ଯେକୌଣସି ପଦାର୍ଥରେ ଗୁଣାତ୍ମକ ପରିବର୍ତ୍ତନ ଅପରିହାର୍ଯ୍ୟ ; (ଖ) ଏହି ଉଲ୍ଲମ୍ଫନ ପାଇଁ ପ୍ରସ୍ତୁତି ସ୍ୱରୂପ ଏହିସବୁ ପରିବର୍ତ୍ତନ କୌଣସି ଏକ ପଦାର୍ଥର ବିକାଶରେ ଦେଖା ଦେଉଥିବା ଦ୍ୱନ୍ଦ୍ୱସମୂହ ଉପରେ ନିର୍ଭରଶୀଳ ; (ଗ) ଏକ ଗୁଣାତ୍ମକ ପରିବର୍ତ୍ତନ କହିଲେ ଯାହା ବିଦ୍ୟମାନ , ସେଥିରେ , ପରିମାଣାତ୍ମକ ଯୋଗ ବା ବିୟୋଗକୁ ବୁଝାଏ ନାହିଁ , ଏହା ହେଉଛି ଯାହା ବିଦ୍ୟମାନ ତା'ର ଏକ ମୌଳିକ ପରିବର୍ତ୍ତନ , ଯାହା ଫଳରେ ପୁରାତନର ବିଲୋପ ଏବଂ ନୂତନ ପ୍ରପଞ୍ଚର ନିଜସ୍ୱ ଗୁଣାତ୍ମକ ମାପ ଏବଂ ପରିମାଣାତ୍ମକ ଧର୍ମରାଜି ସମେତ ଅଭ୍ୟୁଦୟ ଘଟିଥାଏ ।

ମୁଖ୍ୟ କଥାଟି ହେଉଛି , ପୁରାତନ ନୂତନ ହୁଏ କେବଳ ଉଲ୍ଲମ୍ଫନର ପ୍ରକ୍ରିୟା ମଧ୍ୟ ଦେଇ ଏବଂ ତା'ରି ଫଳ ସ୍ୱରୂପ । ଉଲ୍ଲମ୍ଫନର ରୂପରାଶି ଭିନ୍ନ ଭିନ୍ନ ହୋଇ ପାରେ । ଅନେକ ସମୟରେ ଉଲ୍ଲମ୍ଫନ ଘଟିଥାଏ ପୁରାତନ ଗୁଣର ଅତର୍କିତ ପରିବର୍ତ୍ତନ ହିସାବରେ । ଠିକ୍ ସମୟରେ , ନିର୍ଦ୍ଦିଷ୍ଟ ଏକ ବିନ୍ଦୁରେ , ବିଦ୍ୟମାନ ମାପକୁ ପରିମାଣାତ୍ମକ ପରିବର୍ତ୍ତନ ତୀବ୍ର ଏବଂ ଚଞ୍ଚଳ ଭାବେ ବଦଳେଇ ଦିଏ ଏବଂ ନୂତନ ଏକ ଗୁଣ ପ୍ରତିଷ୍ଠା କରେ । କୌଣସି ଏକ ପରମାଣୁ ପିଣ୍ଡରେ ଗୋଟିଏ ପ୍ରୋଟନ୍‌କୁ ଯଦି ଯୋଗ କରାଯାଏ ବା ସେଥିରୁ ଗୋଟିଏ ପ୍ରୋଟନ୍‌କୁ ବାଦ୍ କରି ଦିଆଯାଏ , ତେବେ ଏହା ଦ୍ୱାରା ସେ ତାହା ସଙ୍ଗେ ସଙ୍ଗେ ଗୁଣାତ୍ମକ ଭାବେ ଭିନ୍ନ ଏକ ରାସାୟନିକ ଉପାଦାନର ପରମାଣୁ ପିଣ୍ଡକୁ ପରିବର୍ତ୍ତିତ ହୋଇ ଯିବ । ଜଳ ବାଷ୍ପକୁ ପରିବର୍ତ୍ତିତ ହୋଇଥାଏ ଏକ ତୀବ୍ର ଉଲ୍ଲମ୍ଫନ ଆକାରରେ । ଜୀବାଙ୍ଗର ବଂଶାନୁଗତ ବୈଶିଷ୍ଟ୍ୟରାଜିର ଯେଉଁ ପରିବର୍ତ୍ତନ ଘଟିଥାଏ , ତାହା ମଧ୍ୟ ଏହି ଉଲ୍ଲମ୍ଫନର ଏକ ନମୁନା । ଜନସାଧାରଣଙ୍କ ଦ୍ୱାରା ସଶସ୍ତ୍ର ଅଭ୍ୟୁତ୍‌ଥାନ ଦ୍ୱାରା ଶୋଷକମାନଙ୍କୁ କ୍ଷମତାରୁ ଉଚ୍ଛେଦ କରିବାଟା ମଧ୍ୟ ହେଉଛି ସାମାଜିକ ବିକାଶରେ ଏକ ତୀବ୍ର ଏବଂ ଅତର୍କିତ ଉଲ୍ଲମ୍ଫନ ।

ତଥାପି , ଉଲ୍ଲମ୍ଫନସମୂହ ବିଭିନ୍ନ ବାଟରେ ଘଟିଥାଏ । ମୌଳିକ ଭାବେ ଗୁଣାତ୍ମକ ପରିବର୍ତ୍ତନ ଘଟିବା ପାଇଁ ତୁଳନାମୂଳକ ଭାବେ ଦୀର୍ଘ ସମୟ ଲାଗିଥାଏ ଏବଂ ସେଥିରେ ଅନେକ କ୍ଷୁଦ୍ରତର ଉଲ୍ଲମ୍ଫନ ମଧ୍ୟ ଘଟିଥାଏ । ପୁରାତନ ଏବଂ ନୂତନ ମାପ ମଧ୍ୟରେ ସୀମା ରେଖାଟା ଏତେ ତୀବ୍ର ଭାବେ ଦେଖା ନଗଲେ ବି ତାହା ଅସ୍ତିତ୍ୱ ଲାଭ କରିଥାଏ ଏବଂ ଏହି ପ୍ରକ୍ରିୟା ମଧ୍ୟରେ ଏପରି ଏକ ମୁହୂର୍ତ୍ତକୁ ଧାରଣ କରିଥାଏ , ଯେଉଁଠି ବିକାଶରେ ଏକ ବିଚ୍ଛେଦ ଘଟିଥାଏ । ଏହି ଭଳି ଉଲ୍ଲମ୍ଫନ ମଧ୍ୟରେ ଯାଏ , ଉଦାହରଣ ସ୍ୱରୂପ , ଭୌଗୋଳିକ ପାରିପାର୍ଶ୍ୱିକ ଅବସ୍ଥାରେ ପରିବର୍ତ୍ତନ , ମରୁଭୂମିର ସୃଷ୍ଟି , ହ୍ରଦ

ଏବଂ ସରୋବର ଆଦିର ଜଳାଭୂମି ସୃଷ୍ଟି, ସାଗର ମହାସାଗରର ବିଷାକ୍ତକରଣ, ଗଳିତ ଉଦ୍ଭିଦ ଗର୍ଭ, କୋଇଲା, ତେଲ ଏବଂ ଅନ୍ୟାନ୍ୟ ଖଣିଜର ଗଠନକୁ ନିର୍ଦ୍ଧାରଣ କରୁଥିବା ଉଲ୍ଲମ୍ଫନସମୂହ । ବସ୍ତୁର ବିକାଶରେ ବିରାଟ ଏକ ଉଲ୍ଲମ୍ଫନ ଘଟିବା ପାଇଁ, ଅର୍ଥାତ୍, ମଣିଷର ଅଭ୍ୟୁଦୟ ଘଟିବା ପାଇଁ, ପଶୁ ଜଗତରୁ ମଣିଷ ସମାଜକୁ ଉତ୍ତରଣ ପାଇଁ ଲାଗିଥିଲା ନିୟୁତ ନିୟୁତ ବର୍ଷ । ଭାଷାରେ ଗୁଣାତ୍ମକ ପରିବର୍ତ୍ତନ ମଧ୍ୟ ଘଟିଥିଲା କ୍ରମାଗତ ଭାବେ । ଭାରତର ବହୁ ଆଧୁନିକ ଭାଷାର, ଯଥା, ହିନ୍ଦିର ମୂଳ ଉତ୍ସ ହେଉଛି ସଂସ୍କୃତ, କିନ୍ତୁ ସେସବୁ ଭାଷା ପରସ୍ପରଠାରୁ ଏବଂ ସଂସ୍କୃତଠାରୁ ଅନେକ ଫରକ । ଅନ୍ୟ ଭାଷାସମୂହକୁ ସଂସ୍କୃତର ଏହି ରୂପାନ୍ତରଣ ଐତିହାସିକ ବିକାଶ ପ୍ରକ୍ରିୟା ମଧ୍ୟରେ ହେଉଛି ଏକ ଗୁଣାତ୍ମକ ପରିବର୍ତ୍ତନ, ଏକ ଉଲ୍ଲମ୍ଫନ । କିନ୍ତୁ ଏହି ଉଲ୍ଲମ୍ଫନ ଘଟିଥିଲା ଧୀରେ ଧୀରେ; ତା'ର କାରଣ ହେଉଛି, ଭାଷା ହେଉଛି ଲୋକମାନଙ୍କ ମଧ୍ୟରେ ଯୋଗାଯୋଗର ଏକ ମାଧ୍ୟମ ଏବଂ ପ୍ରତିଟି ବଂଶଧର ସମାଜରେ ବ୍ୟବହୃତ ଭାଷାକୁ ଆୟତ୍ତ କରିବାକୁ ବାଧ୍ୟ । ଭାଷାର ବିକାଶରେ ଗୁଣାତ୍ମକ ପରିବର୍ତ୍ତନ ଘଟିବା ପାଇଁ ହଜାର ହଜାର ବର୍ଷ ଲାଗିଥାଏ ଏବଂ ତାହା ଘଟିଥାଏ ଭାଷାର ଶବ୍ଦସମୂହ ତଥା ବ୍ୟାକରଣର ବହୁ ପରିବର୍ତ୍ତନ ସଂଘଟିତ ହେବା ଦ୍ୱାରା ଏବଂ ଏହି ପରିବର୍ତ୍ତନ ଘଟିଥାଏ ସମଗ୍ର ସାମାଜିକ ଜୀବନର ବିକାଶ ଦ୍ୱାରା । ନୂତନ ଏକ ଗୁଣର ଅଭ୍ୟୁଦୟ ସହିତ ବହୁ କ୍ଷୁଦ୍ର, ପୃଥକ୍ ପୃଥକ୍ ପରିବର୍ତ୍ତନ ଦ୍ୱାରା ମାପଗୁଡ଼ିକରେ ପରିବର୍ତ୍ତନ ଘଟିଥାଏ; ଏହା ଦ୍ୱାରା ମୌଳିକ ଗୁଣାତ୍ମକ ରୂପାନ୍ତରଣର ମୁହୂର୍ତ୍ତଟିର ସଂଜ୍ଞାଟି ଜଟିଳ ହୋଇଥାଏ ।

ଗୁଣାତ୍ମକ ପରିବର୍ତ୍ତନର ରୂପସମୂହ ଖୋଦ୍ ପଦାର୍ଥରାଜିର ବୈଶିଷ୍ଟ୍ୟସମୂହ ଉପରେ ଏବଂ ସେସବୁ ଯେଉଁ ଅବସ୍ଥାରାଜି ମଧ୍ୟରେ ଅବସ୍ଥାନ କରୁଥାନ୍ତି, ସେସବୁ ଉପରେ ନିର୍ଭର କରେ । ଉଦାହରଣ ସ୍ୱରୂପ, ନଦୀରେ ଯେତେବେଳେ ଜଳର ବାଷ୍ପୀୟକରଣ ଘଟେ ଏବଂ ହେର୍‌ମେଟିକ୍ ବୟଲର ମଧ୍ୟରେ ଯେତେବେଳେ ଏହାକୁ ଫୁଟାଯାଏ, ଉଲ୍ଲମ୍ଫନ ଘଟିଥାଏ ଭିନ୍ନ ଭିନ୍ନ ଭାବେ । ପ୍ରଥମ କ୍ଷେତ୍ରରେ ଏହା ଘଟିଥାଏ ଧୀରେ ଧୀରେ ଏବଂ ଦ୍ୱିତୀୟ କ୍ଷେତ୍ରରେ ତୀବ୍ର ଏବଂ ବିସ୍ଫୋରଣ ଆକାରରେ । ପ୍ରାକୃତିକ ଅବସ୍ଥାରାଜିରେ ରାସାୟନିକ ମୂଳ ଉପାଦାନର ତେଜସ୍କ୍ରିୟତାର ହ୍ରାସ ପାରମାଣବିକ ରିଆକ୍ଟର ମଧ୍ୟରେ ସମାନ ପ୍ରକ୍ରିୟାରାଜି ମଧ୍ୟରେ ମଧ୍ୟ ଭିନ୍ନ ଭିନ୍ନ ହୋଇଥାଏ, ଯେଉଁଠି ପାରମାଣବିକ ବସ୍ତୁ କୃତ୍ରିମ ଉପାୟରେ ଅତି ଚଞ୍ଚଳ ଧ୍ୱଂସ ପାଇଥାଏ, ହଠାତ୍ ବିପୁଳ ପରିମାଣର ଶକ୍ତିର ଉଦ୍ଗିରଣ ଘଟେଇ ।

## ୪ — ବିପ୍ଳବ ଏବଂ ବିବର୍ତ୍ତନ

ବିପ୍ଳବ ହେଉଛି ଉଲ୍ଲମ୍ଫନର ଏକ ବିଶେଷ ରୂପ ଏବଂ ଏହା କେବଳ ସାମାଜିକ ଜୀବନରେ ପ୍ରଯୋଜ୍ୟ । ଏହା ହେଉଛି "ଏଭଳି ଏକ ପରିବର୍ତ୍ତନ, ଯିଏକି ପୁରୁଣା

ବ୍ୟବସ୍ଥାକୁ ମୂଳରୁ ଭାଙ୍ଗି ଚୁରମାର କରି ଦିଏ, ସେ ପରିବର୍ତ୍ତନଟା ସତର୍କତାର ସହିତ, ଧୀରେ ଧୀରେ, କ୍ରମେ କ୍ରମେ ନୁହଁ, ସମ୍ଭବ ମୁତାବକ ଟିକିଏ ଟିକିଏ କରି ଭାଙ୍ଗିବାର ସାବଧାନତା ସହକାରେ ନୁହଁ ।"* ସାମାଜିକ ବିକାଶରେ ଉଲ୍ଲମ୍ଫନ ବିଭିନ୍ନ ବାଟରେ ପରିଲକ୍ଷିତ ହୋଇଥାଏ : କେତେକ ଗୁଣର କ୍ରମଶଃ ଅନ୍ୟ ଗୁଣକୁ ରୂପାନ୍ତରଣ କ୍ଷେତ୍ରରେ (ଉଦାହରଣ ସ୍ୱରୂପ, ଏକଚାଟିଆ ପୂର୍ବ ସ୍ତରରୁ ସାମ୍ରାଜ୍ୟବାଦ ସ୍ତରକୁ ପୁଞ୍ଜିବାଦର ରୂପାନ୍ତରଣ), "ଉପର ଆଡ଼ୁ" କାର୍ଯ୍ୟକାରୀ କରାଯାଉଥିବା କେତେକ ସଂସ୍କାରରେ, ପ୍ରତିବିପ୍ଳବୀ ବଳପୂର୍ବକ କ୍ଷମତା ଦଖଲ କ୍ଷେତ୍ରରେ, ସଂକଟ ଏବଂ ଯୁଦ୍ଧରେ, ଆଦି । ସେହିସବୁ ଉଲ୍ଲମ୍ଫନଠାରୁ ବିପ୍ଳବର ତଫାତ୍ ହେଲା (କ) ପ୍ରତିଷ୍ଠିତ ସାମାଜିକ ସଂପର୍କରାଜିର ଭିତ୍ତିରେ ଏହା ହେଉଛି ତୁଳନାମୂଳକ ଭାବେ ଏକ ତୀବ୍ର ପରିବର୍ତ୍ତନ (ଖ) ସାମାଜିକ ଜୀବନରେ ମୌଳିକ ଭାବେ ପ୍ରଗତିଶୀଳ ଦିଗରେ ପରିବର୍ତ୍ତନ ଏବଂ (ଗ) ବିକାଶର ଏକ ରୂପ ହିସାବରେ ବିବର୍ତ୍ତନର ଏହା ହେଉଛି ବିପରୀତ ।

ସମାଜ କ୍ଷେତ୍ରରେ "ବିବର୍ତ୍ତନର" ଅବଧାରଣାଟି ପ୍ରକାଶ କରେ କ୍ରମଶଃ ପରିବର୍ତ୍ତନକୁ । ଏହା ସମାଜରେ ଘଟିଥାଏ ତା'ର ମୂଳ ଗୁଣାତ୍ମକ ନିର୍ଦ୍ଦିଷ୍ଟତାକୁ ଅକ୍ଷୁଣ୍ଣ ରଖି । ଏହି ଭଳି ଭାବେ ପୁଞ୍ଜିବାଦ ତା'ର ଇତିହାସରେ ଏକଚାଟିଆ ପୂର୍ବ ସ୍ତରରୁ ଏକଚାଟିଆ ସ୍ତର—ସାମ୍ରାଜ୍ୟବାଦକୁ ବିକାଶ ଲାଭ କରିଥିଲା । ଏହା ସତ୍ତ୍ୱେ ବି ସେ ତା'ର ସମଗ୍ର ବିକାଶ ମଧ୍ୟରେ ବୁର୍ଜୁଆ ଉତ୍ପାଦନ ପଦ୍ଧତିର ଅତ୍ୟାବଶ୍ୟକୀୟ ବୈଶିଷ୍ଟ୍ୟରାଜିକୁ ସଂରକ୍ଷିତ କରିଥିଲା, ଯଥା, ପୁଞ୍ଜିବାଦୀ ମାଲିକାନାର ପ୍ରଭୁତ୍ୱ, ଶ୍ରମ ଆଉ ପୁଞ୍ଜି ମଧ୍ୟରେ ଦ୍ୱନ୍ଦ୍ୱ, ବେକାରି, ସଂକଟ, ଆଦିକୁ, ଯିଏକି ଗୁଣଗତ ଭାବେ ଅନ୍ୟ ସମସ୍ତ ସାମାଜିକ ଅର୍ଥନୈତିକ ଗଢ଼ଣଗୁଡ଼ିକଠାରୁ ତାକୁ ଅଲଗା କରି ଦେଇଥାଏ । ବିକାଶର ବିବର୍ତ୍ତନମୂଳକ ରୂପଟା କେତେକ ଗୁଣାତ୍ମକ ପରିବର୍ତ୍ତନ ସହିତ ଘଟିଥାଏ, କିନ୍ତୁ ତାହା ଘଟିଥାଏ ଏକ ଏବଂ ଅଭିନ୍ନ ସାମାଜିକ ମାପର ପରିସର ମଧ୍ୟରେ (ବିଶେଷ ଧରଣର ସାମାଜିକ ସଂପର୍କରାଜି) । ବିବର୍ତ୍ତନମୂଳକ କାଳଟିରେ କେତେକ ଗୁଣାତ୍ମକ ପରିବର୍ତ୍ତନ ଦେଖା ଦେଇଥିଲେ ମଧ୍ୟ ଏହି ରୂପଟି ମଧ୍ୟରେ ଧାରାବାହିକତାରେ କେତେକ ଛେଦ ଏବଂ ବିବିଧ ଉଲ୍ଲମ୍ଫନ ବି ଥାଏ । ଏଥି ସଙ୍ଗେ ସଙ୍ଗେ, ବିପ୍ଳବ ସାଥେ ସାଥେ ବିବର୍ତ୍ତନ ସର୍ବଦା ନିଜକୁ ପ୍ରକଟିତ କରିଥାଏ ନିର୍ଦ୍ଦିଷ୍ଟ ଏକ ମୌଳିକ ଗୁଣର ପରିମାଣଗତ ପରିବର୍ତ୍ତନ ରୂପରେ । ବିବର୍ତ୍ତନ ଏବଂ ବିପ୍ଳବ ତେଣୁ ପାରସ୍ପରିକ ଭାବେ ଯୁକ୍ତ—ବିବର୍ତ୍ତନମୂଳକ ବିକାଶ ଆବଶ୍ୟକୀୟ ଭାବେ ବିପ୍ଳବୀ, ମୌଳିକ ପରିବର୍ତ୍ତନ ଆଡ଼କୁ ଘେନି ଯାଏ ଏବଂ ବିପ୍ଳବ ନିର୍ଦ୍ଦିଷ୍ଟ ସାମାଜିକ ଗୁଣ ମଧ୍ୟରେ ବିବର୍ତ୍ତନମୂଳକ କାଳଟିକୁ ସଂପୂର୍ଣ୍ଣ କରିଥାଏ ଏବଂ

---

* ଭ୍ଲାଦିମିର୍ ଇଲିଚ୍ ଲେନିନ୍, "The Importance of Gold Now and After the Complete Victory of Socialism", *Collected Works*, Vol. 33, Moscow, 1966, p. 110.

ଏହା ହେଉଛି ନୂଆ ଧରଣର ଏକ ବିବର୍ତ୍ତନର ପ୍ରାରମ୍ଭ । ଏହା ବିଭିନ୍ନ ଧରଣର ବିପ୍ଳବ କ୍ଷେତ୍ରରେ ସତ୍ୟ: ଉତ୍ପାଦିକା ଶକ୍ତିସମୂହ କ୍ଷେତ୍ରରେ, ଅର୍ଥନୀତି, ବିଜ୍ଞାନ, କାରୁଶିଳ୍ପ, ସଂସ୍କୃତି, ଆଦି କ୍ଷେତ୍ରରେ । ବିବର୍ତ୍ତନ ଏବଂ ବିପ୍ଳବ ମଧ୍ୟରେ ପାରସ୍ପରିକ ସଂପର୍କ ବିଷୟରେ ସଠିକ ଜ୍ଞାନ ସାମାଜିକ ବିପ୍ଳବସମୂହର (ବୁର୍ଜୁଆ ଗଣତାନ୍ତ୍ରିକ, ଜାତୀୟ ମୁକ୍ତି, ସମାଜବାଦୀ, ଆଦି) ବ୍ୟାବହାରିକ କ୍ଷେତ୍ର ପାଇଁ ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ସମାଜରେ ବିକାଶର ଏ ଦୁଇଟି ଆବଶ୍ୟକୀୟ ରୂପକୁ ପରସ୍ପରର ବିପରୀତ କରି ଦେଖାଇବା ପାଇଁ ଯେକୌଣସି ଉଦ୍ୟମ ହେଉଛି ତତ୍ତ୍ୱଗତ ଭାବେ ଅସମର୍ଥନୀୟ ଏବଂ ପ୍ରୟୋଗ କ୍ଷେତ୍ରରେ କ୍ଷତିକାରକ । ନୂତନତାବର୍ଜିତ ବିବର୍ତ୍ତନବାଦର ଅଧିଭୌତିକ ଅବଧାରଣାଟା ହେଉଛି, ଉଦାହରଣ ସ୍ୱରୂପ, ସୁବିଧାବାଦ ଏବଂ ସଂସ୍କାରବାଦର ଦାର୍ଶନିକ ଭିତ୍ତି, ଯିଏକି ବିକାଶରେ ଉଲ୍ଲମ୍ଫନ ଆଉ ବିପ୍ଳବକୁ ଅସ୍ୱୀକାର କରେ । ପୁଞ୍ଜିବାଦ ସଂପୂର୍ଣ୍ଣ ବିବର୍ତ୍ତନ ମଧ୍ୟ ଦେଇ ସମାଜବାଦରେ ଯାଇ ପହଞ୍ଚିବ ବୋଲି ଭାବିବାଟା ଭ୍ରାନ୍ତିଜନକ । ଏସବୁ ସତ୍ତ୍ୱେ, ସମାଜବାଦୀ ବିପ୍ଳବର ପ୍ରାକ୍କାଳରେ ପୁଞ୍ଜିବାଦରେ ଯେଉଁସବୁ ପରିବର୍ତ୍ତନରାଜି ଘଟେ, ସେସବୁ ସେହି ବିପ୍ଳବ ଆଉ ଫଳାନୁସାରୀ ସମାଜବାଦୀ ବ୍ୟବସ୍ଥା ସହିତ ସଂପର୍କ ଦୃଷ୍ଟିରୁ ପରିମାଣାତ୍ମକ ପରିବର୍ତ୍ତନ ଛଡ଼ା ଆଉ କିଛି ନୁହେଁ, କାରଣ ପୁଞ୍ଜିବାଦ ଏକ ବିଶେଷ ଗଢ଼ଣ ଦୃଷ୍ଟିରୁ ଏକ ଏବଂ ଅଭିନ୍ନ ହୋଇ ରହିଯାଏ । ପୁଞ୍ଜିବାଦର ସାମାଜିକ ସଂପର୍କରାଜିରେ ମୌଳିକ ଗୁଣାତ୍ମକ ପାର୍ଥକ୍ୟସମୂହ ଏବଂ ନୂଆ ଏକ ବ୍ୟବସ୍ଥାର ଅଭ୍ୟୁଦୟ ସମ୍ଭବ କେବଳ ସମାଜବାଦୀ ବିପ୍ଳବର ପ୍ରକ୍ରିୟା ମାଧ୍ୟମରେ, ସର୍ବହରା ଏକନାୟକତ୍ୱ ପ୍ରତିଷ୍ଠା ଫଳରେ, ବ୍ୟକ୍ତିଗତ ମାଲିକାନାର ଉଚ୍ଛେଦ, ଉତ୍ପାଦନର ଉପାୟ ଉପକରଣର ସାମାଜିକୀକରଣ ଏବଂ ଅନ୍ୟାନ୍ୟ ସାମାଜିକ ରୂପାନ୍ତରଣ ଫଳରେ । ପୁଞ୍ଜିବାଦରୁ ସମାଜବାଦକୁ ଉତ୍ତରଣ ଅବଶ୍ୟମ୍ଭାବୀ – କମ୍ୟୁନିଷ୍ଟମାନେ ଏହି କଥାଟିକୁ ବିଶ୍ୱାସ କଲା ବେଳେ ଏହା ବହୁ ବିଶେଷ ରୂପ ମାଧ୍ୟମରେ ସଂଘଟିତ ହୁଏ ବୋଲି ସେମାନେ ବୁଝିଥାନ୍ତି (ବୁର୍ଜୁଆ ଗଣତନ୍ତ୍ରର ପ୍ରତିଷ୍ଠାନସମୂହ, ଅନ୍ୟାନ୍ୟ ଶାନ୍ତିପୂର୍ଣ୍ଣ ଉପାୟ ବା ସଶସ୍ତ୍ର ଅଭ୍ୟୁତ୍ଥାନକୁ ଉପଯୋଗ କରି) ।

ନୈରାଜ୍ୟବାଦ ଏବଂ ବାମପନ୍ଥୀ ଦୁଃସାହସିକତାବାଦ ତୁଳନାମୂଳକ ଭାବେ ଶାନ୍ତିପୂର୍ଣ୍ଣ ଉପାୟସମୂହ ଦ୍ୱାରା ସମାଜବାଦୀ ବିପ୍ଳବ ସଂଘଟିତ ହେବାର ସମ୍ଭାବନାକୁ ଅସ୍ୱୀକାର କରେ; ସେମାନେ ସଶସ୍ତ୍ର ବିପ୍ଳବକୁ ନିଶ୍ଚିତ ବୋଲି କହନ୍ତି ଏବଂ ଗୁଣାତ୍ମକ ସାମାଜିକ ରୂପାନ୍ତରଣର ପ୍ରସ୍ତୁତି କ୍ଷେତ୍ରରେ ବିବର୍ତ୍ତନମୂଳକ ବିକାଶର ଭୂମିକାକୁ ଅସ୍ୱୀକାର କରନ୍ତି । ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ସେସବୁ ମତକୁ ଏକଦିଗଦର୍ଶୀ ଏବଂ ଏହାର ଫଳ ସ୍ୱରୂପ, ଅଧିଭୌତିକ ଏବଂ ନୂତନତାବର୍ଜିତ ବିବର୍ତ୍ତନବାଦ ବୋଲି ବିଗ୍ରହ କରେ ।

ବାସ୍ତବତାର ବିକାଶକୁ ତା'ର ସମସ୍ତ ପୂର୍ଣ୍ଣତା ଏବଂ ବହୁରୂପକତା ସହ ଅବଧାରଣା କରି ହୁଏ କେବଳ ସାମାଜିକ ପ୍ରକ୍ରିୟାରେ ବିବର୍ତ୍ତନ ଓ ବିପ୍ଳବ, ଧାରାବାହିକତା ଏବଂ ଅଧାରାବାହିକତା, କ୍ରମାଗତତା ଏବଂ ଉଲ୍ଲମ୍ଫନ, ପରିମାଣାତ୍ମକ ଏବଂ ଗୁଣାତ୍ମକ

ପରିବର୍ତ୍ତନସମୂହର ଐକ୍ୟ ମଧ୍ୟରେ । ଯେହେତୁ ବୈପରିତ୍ୟଗୁଡ଼ିକ ମଧ୍ୟରେ ସଂଗ୍ରାମ ଏବଂ ପରିମାଣାତ୍ମକ ପରିବର୍ତ୍ତନରୁ ଗୁଣାତ୍ମକ ପାର୍ଥକ୍ୟକୁ ଉତ୍ତରଣ ମଧ୍ୟ ଦେଇ ବିକାଶ ଘଟିଥାଏ , ତେଣୁ କରି ସେଥିରେ ନିହିତ ଥାଏ ପୁରାତନର ନେତୀକରଣ ଏବଂ ନୂତନର ଅଭ୍ୟୁଦୟର ନିଜସ୍ୱ ଆବଶ୍ୟକୀୟ ଏବଂ ଅନିବାର୍ଯ୍ୟ ମୁହୂର୍ତ୍ତ । ପରିଗ୍ରହିତ ଗୁଣାତ୍ମକ ପରିବର୍ତ୍ତନସମୂହରେ ମୁଖ୍ୟ ପ୍ରବଣତା ଏବଂ ବିକାଶର ବିଭିନ୍ନ ପର୍ଯ୍ୟାୟଗୁଡ଼ିକ ମଧ୍ୟରେ ଯୋଗସୂତ୍ର ନିର୍ଦ୍ଧାରିତ ହୋଇଥାଏ ନେତୀକରଣର ନେତୀକରଣ ନିୟମର କ୍ରିୟା ଦ୍ୱାରା ।

# ଅଷ୍ଟମ ପରିଚ୍ଛେଦ

# ବିକାଶରେ ପ୍ରଗତି ଏବଂ ପୁନରାବର୍ତ୍ତନ

ଐତିହାସିକ ତଥା ଯୁକ୍ତିଗତ ଦିଗରୁ ନେତୀକରଣ ସମସ୍ୟାଟି ତା'ର ପ୍ରାରମ୍ଭରୁ ଦର୍ଶନର ଦୃଷ୍ଟି ଆକର୍ଷଣ କରିଥିଲା । ଏହା ଦେଖିବାକୁ ମିଳିଥାଏ ସତ୍ତା ଏବଂ ନିଃସତ୍ତା, ଅସ୍ତିତ୍ୱ ଏବଂ ବିଲୟ ମଧ୍ୟରେ ପାରସ୍ପରିକ ସଂପର୍କ ପ୍ରତି ପ୍ରାଚୀନ ଚିନ୍ତାବିଦ୍‌ମାନଙ୍କର ଆଗ୍ରହ ପ୍ରଦର୍ଶନ ମଧ୍ୟରେ । ପ୍ରାଚୀନ ଭାରତୀୟ ଦର୍ଶନରେ ଏ ସମସ୍ୟାଟି ପ୍ରାଣବନ୍ତ ଭାବେ ଆଲୋଚିତ ହୋଇଛି । ବୈଶେଷିକଙ୍କ ମତାନୁଯାୟୀ, ସତ୍ତା ବହୁବିଧ ନିଃସତ୍ତା ବା ନେତୀକରଣ ସହିତ ପାରସ୍ପରିକ ଭାବେ ଯୁକ୍ତ । ସେସବୁ ନିଃସତ୍ତା ମଧ୍ୟରେ ଯାଏ ପୂର୍ବବର୍ତ୍ତୀ ନିଃସତ୍ତା, କୌଣସି ପଦାର୍ଥର ଧ୍ୱଂସ ପରେ ସେଥିରୁ ଜାତ ନିଃସତ୍ତା, ଅନ୍ୟ ପଦାର୍ଥ ହିସାବରେ କୌଣସି ଏକ ପଦାର୍ଥର ଅନସ୍ତିତ୍ୱ, ଆଦି । ହେରାକ୍ଲିଟସ୍, ଡେମୋକ୍ରିଟସ୍, ପ୍ଲେଟୋ, ଆରିଷ୍ଟୋଟଲ ଏବଂ ଅନ୍ୟାନ୍ୟ ଗ୍ରୀକ୍ ଚିନ୍ତାବିଦ୍‌ମାନେ ସତ୍ତା ଏବଂ ନିଃସତ୍ତା ସଂକ୍ରାନ୍ତ ସମସ୍ୟାଟିକୁ ଭିନ୍ନ ଏକ ଦାର୍ଶନିକ ଅବସ୍ଥାନରୁ ବିଗ୍ଚର କରିଥିଲେ । ପରବର୍ତ୍ତୀ କାଳରେ ମଧ୍ୟ, ନେତୀକରଣର ସାରମର୍ମ ଏବଂ ଅସ୍ତିତ୍ୱ ତଥା ପରିବର୍ତ୍ତନ କ୍ଷେତ୍ରରେ ତା'ର ଭୂମିକା ଉପରେ ବହୁ ଦାର୍ଶନିକ, ବିଶେଷତଃ, ସ୍ପିନୋଜା, କାଣ୍ଟ୍ ଏବଂ ହେଗେଲ୍ ଅଧ୍ୟୟନ କରିଥିଲେ । ନେତୀକରଣର ଏହିସବୁ ବ୍ୟାଖ୍ୟା, ପରିଶେଷରେ, ବାସ୍ତବ ଜଗତରେ ଘଟୁଥିବା ପରିବର୍ତ୍ତନସମୂହ ଏବଂ ଜଗତର ବିକାଶ ଚରିତ୍ରର ନିର୍ଦ୍ଦିଷ୍ଟ ଅବଧାରଣା ସହିତ ସଂପୃକ୍ତ ।

## ୧ — ସଞ୍ଚାଳନ ନା ପ୍ରଗତି?

କୌଣସି ପଦାର୍ଥ ଅନ୍ତର୍ଦ୍ଧାନ ହୋଇଗଲେ ବା ଘଟଣାସବୁ ପରସ୍ପରକୁ ସ୍ଥାନାନ୍ତରିତ କଲାବେଳେ, ଏ ଜଗତରେ କ'ଣ ଘଟେ? — ଏହି ପ୍ରଶ୍ନଟିର ବିଭିନ୍ନ ଉତ୍ତର ଦିଆଯାଇଥାଏ । ବହୁ ଦାର୍ଶନିକ ନେତୀକରଣକୁ ପଦାର୍ଥର ଧ୍ୱଂସ ସହିତ ସିଧାସଳଖ ଏକ କରି ଦେଇଥାନ୍ତି । ଏହିଥିରୁ ସେମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଥାନ୍ତି ଯେ, ଏ ଜଗତରେ ବିକାଶ ଅସମ୍ଭବ । ପ୍ରାଚୀନ କାଳରେ ଅନେକେ ବିଶ୍ୱାସ କରୁଥିଲେ ଯେ, ମଣିଷର "ସ୍ୱର୍ଣ୍ଣ ଯୁଗ" ଅତୀତରେ

ରହି ଯାଇଛି ଏବଂ ପରବର୍ତ୍ତୀ ସମସ୍ତ ଇତିହାସ ହେଉଛି ଅବନତି ଦିଗରେ ଏକ ନିରବଛିନ୍ନ ଗତି, ଏକ ଧାରାବାହିକ ପଶ୍ଚାଦ୍‌ଗମନ । ଜଗତ ସଂପର୍କରେ ଏତାଦୃଶ ମତ, ଉଦାହରଣ ସ୍ୱରୂପ, ପୋଷଣ କରୁଥିଲେ ପ୍ରାଚୀନ ଗ୍ରୀକ୍ କବି ହେସିଓଡ୍ (ଖ୍ରୀ: ପୂ: ୮ମ ଶତାବ୍ଦୀ) । ସେ କହୁଥିଲେ, ମାନବିକ ସୁଖର ଯୁଗ, ସ୍ୱର୍ଣ୍ଣ ଯୁଗ ଅନେକ ପଛରେ ରହି ଯାଇଛି ଏବଂ ଅକଲ୍ୟାଣ ଅନିବାର୍ଯ୍ୟ ଓ ଆସନ୍ନ – ଯିଅସ୍‌ଙ୍କ ଦ୍ୱାରା ଏହା ନିର୍ଦ୍ଧାରିତ । ଏତାଦୃଶ ନିରାଶାଜନକ ମତାଦର୍ଶ ପ୍ରକାଶ କରିଥିଲା କ୍ଷୁଦ୍ର ଜମିମାଲିକମାନଙ୍କର ହତାଶଜନକ ଅବସ୍ଥାକୁ, ଯେଉଁମାନେ ଆଦିମ ଗୋଷ୍ଠୀ ବ୍ୟବସ୍ଥାର ପତନ ସମୟରେ କୂଳର ଅଭିଜାତମାନଙ୍କ ଦ୍ୱାରା ଶୋଷିତ ତଥା ନିପୀଡ଼ିତ ହେଉଥିଲେ ।

ସାମାଜିକ ପଶ୍ଚାଦ୍‌ଗମନର ଏତାଦୃଶ ଅବଧାରଣା ସାଙ୍ଗକୁ ବିଶ୍ୱ ଘଟଣାବଳୀର ଶାଶ୍ୱତ ସଞ୍ଚାଳନର ଅବଧାରଣା ମଧ୍ୟ ପ୍ରଚଳିତ ଥିଲା । ସଂସାର ବା ଆତ୍ମାର ପୁନର୍ଜନ୍ମ ଲାଭ ସଂକ୍ରାନ୍ତ ପ୍ରାଚୀନ ଭାରତୀୟ ଭାବାଦର୍ଶବାଦୀ ମତାଦର୍ଶ, ଯଦ୍ୱାରା ମଣିଷ ଏକ ଅଭିଜ୍ଞତାସିଦ୍ଧ ଅସ୍ତିତ୍ୱର ଶାଶ୍ୱତ ଚକ୍ରାବର୍ତ୍ତନ ଏବଂ ତନ୍ମଧ୍ୟରେ ତା'ର ପୂର୍ବ ଜନ୍ମର କର୍ମାନୁଯାୟୀ ନିରବଛିନ୍ନ ଭାବେ ପୁନର୍ଜୀବିତ ହେବା ସହିତ ସାଂଘାତିକ ଭାବେ ବାନ୍ଧି ହୋଇ ରହିଥାଏ । ଭାରତରେ ଆଉରି ଅନେକ ମତାଦର୍ଶ ମଧ୍ୟ ଏତାଦୃଶ ଚକ୍ରାବର୍ତ୍ତ ଚରିତ୍ର କଥା କହିଛି, ଯଥା, ବିଶ୍ୱ ବ୍ରହ୍ମାଣ୍ଡର ଗୋଟିକ ପରେ ଅନ୍ୟ ଏକ ପର୍ଯ୍ୟାୟ, ଅବସ୍ଥା ଏବଂ କାଳର ଶାଶ୍ୱତ ଆବର୍ତ୍ତନ, ଯିଏକି ହେଉଛି ଲଗାତର ଭାବେ ପଶ୍ଚାଦ୍‌ଗତିକ ଏବଂ ସ୍ରଷ୍ଟା ବ୍ରହ୍ମାଙ୍କର ଗୋଟିଏ ଗୋଟିଏ ମହାଜାଗତିକ ଦିନ ରଚନା କରିଥାଏ ।

ଅନେକ ପରିମାଣରେ ସାଂପ୍ରତିକ କାଳରେ ଶାଶ୍ୱତ ଚକ୍ରାକାର ଗତି ଭଳି ଐତିହାସିକ ପ୍ରକ୍ରିୟାର ଧାରଣାଟି ଦେଇଥିଲେ ଇଟାଲୀୟ ପଣ୍ଡିତ ଗିଓଭାନି ବାତିସ୍ତା ଭିକୋ (୧୬୬୮-୧୭୪୪) । ସେ ବିଶ୍ୱାସ କରୁଥିଲେ, ସମାଜ ଲଗାତର ଭାବେ ପୌନଃପୌନିକ ଆବର୍ତ୍ତନ ସଂପୂର୍ଣ୍ଣ କରି ଚାଲିଛି : ଶୈଶବ କାଳ, ଯେଉଁଥିରେ ଧର୍ମୀୟ ବିଶ୍ୱଦୃଷ୍ଟିକୋଣ ଏବଂ ଏକଛତ୍ରବାଦ ପ୍ରଭୁତ୍ୱ କରେ; ତା'ପରେ ଆସେ ଯୌବନ କାଳ, ଏଥିରେ ଅଭିଜାତ ଶ୍ରେଣୀ ଏବଂ ସାମନ୍ତବାଦ ପ୍ରଭୁତ୍ୱ କରେ; ସର୍ବଶେଷରେ ପୋଖତ କାଳ, ଯେତେବେଳେ ବିଜ୍ଞାନ ଏବଂ ଗଣତନ୍ତ୍ରର ବିକାଶ ଘଟିଛି ଏବଂ ଏଥି ସଙ୍ଗେ ସଙ୍ଗେ ସମାଜ ପଛ ଆଡ଼କୁ, ଅବନତି ଦିଗକୁ ଗତି କରିଛି । ଏହି ଅବନତିର କାଳଟି ସ୍ଥାନରେ ପୁଣି ଆସିଛି ଏକ ଶୈଶବ କାଳ, ତା'ପରେ ଯୌବନ କାଳ ଏବଂ ଏହିପରି ସୀମାହୀନ ଭାବେ ଆବର୍ତ୍ତନ ଘଟେ । ଭିକୋ ତାଙ୍କ ସମୟରେ ୟୁରୋପରେ ପ୍ରତିଷ୍ଠିତ ପୁଞ୍ଜିବାଦୀ ବ୍ୟବସ୍ଥାକୁ ସମାଜ ବିକାଶର ପୋଖତ କାଳ ବୋଲି ବିଚାର କରୁଥିଲେ, ତେଣୁ, ମୁଖ୍ୟତଃ, ବୁର୍ଜୁଆ ସମାଜକୁ ସର୍ବୋଚ୍ଚ ବିନ୍ଦୁ, ମାନବ ସମାଜର ବିକାଶର ଶୀର୍ଷ ବିନ୍ଦୁ ବୋଲି ସ୍ୱୀକାର କରୁଥିଲେ । ତେଣୁ ଏକ ନୂତନ ଚକ୍ର, ତାଙ୍କ ମତରେ, ସମାଜର ଆଦିମ ରୂପ ନେଇ ଆରମ୍ଭ ହେବାକୁ ବାଧ୍ୟ ।

ପଶ୍ଚାଦ୍‌ଗମନ ଏବଂ ଚକ୍ରାକାର ଗତିର ଏହିସବୁ ଅବଧାରଣାସମୂହ ବିକାଶକୁ

ଏକପାଖିଆ ଭାବେ ବ୍ୟାଖ୍ୟା କରିଥାଏ । ସେସବୁର ପ୍ରସ୍ତାବକମାନେ ନେତୀକରଣରେ ଥିବା ନିରବଛିନ୍ନତାର ଶକ୍ତିକୁ ହିସାବକୁ ନେଇ ନଥିଲେ । ଏହି ଶକ୍ତିର ଅତିରଞ୍ଜିତକରଣ ମଧ୍ୟ, ବକ୍ରତାହୀନ ଅଗ୍ରଗତି ତତ୍ତ୍ୱରେ ଯେପରି ବର୍ଣ୍ଣନା କରାଯାଇଥାଏ, କମ୍ ଭ୍ରାନ୍ତିଜନକ ନୁହେଁ । ଏଭଳି ତତ୍ତ୍ୱସବୁ ଉଦୀୟମାନ ବୁର୍ଜୁଆ ସାମାଜିକ ଦର୍ଶନରେ ଦେଖିବାକୁ ମିଳେ – ଆଶାବାଦରେ ପରିପୂର୍ଣ୍ଣ, ଅପରିବର୍ତ୍ତନୀୟତା ତଥା ଶାଶ୍ୱତ ପୁଞ୍ଜିବାଦୀ ବ୍ୟବସ୍ଥାରେ ପୂର୍ଣ୍ଣ ବିଶ୍ୱାସ । ଫରାସୀ ସମାଜବିଜ୍ଞାନୀ କଣ୍ଡୋରସେଟଙ୍କ (୧୭୪୩-୧୭୯୪) ମତାନୁଯାୟୀ, ଦୃଷ୍ଟାନ୍ତ ସ୍ୱରୂପ, ଇତିହାସ ହେଉଛି ଜନସାଧାରଣଙ୍କ ଜ୍ଞାନ ତଥା ଦକ୍ଷତାର ସୀମାହୀନ ନିଖୁଣତା ଉପରେ ପ୍ରତିଷ୍ଠିତ ସିଧା ଏକ ଅବରୋହଣ ପଥ । ବୁର୍ଜୁଆ ବ୍ୟବସ୍ଥାକୁ ଯୁକ୍ତିଯୁକ୍ତତା ଏବଂ "ପ୍ରାକୃତିକତା"ର ଶୀର୍ଷ ବିନ୍ଦୁ ବୋଲି ଘୋଷଣା କରାଯାଇ ପୁଞ୍ଜିବାଦକୁ ଅନିର୍ଦ୍ଦିଷ୍ଟ ପ୍ରଗତିର ଶକ୍ତିଧର ବୋଲି କୁହାଯାଇଥିଲା ।

ଆଧୁନିକ ବୁର୍ଜୁଆ ଦର୍ଶନ ଏବଂ ସମାଜବିଜ୍ଞାନ ବିକାଶର ଏହିସବୁ ଅବଧାରଣାର ବହୁବିଧ ଉନ୍ନତୀକରଣରେ ପରିପୂର୍ଣ୍ଣ । ବକ୍ରତାହୀନ ଅଗ୍ରଗତିର ଅବଧାରଣାଟି ଏବେ "ଶିଳ୍ପୋତ୍ତର", "ଟେକ୍‌ନୋଟ୍ରନିକ" ଏବଂ ଅନ୍ୟାନ୍ୟ ସମାଜର ଆଡ଼ମ୍ବରପୂର୍ଣ୍ଣ ତତ୍ତ୍ୱରାଜିର ମୂଳ ଭିତ୍ତି ରଚନା କରିଛି । ନିରାଶାବାଦୀ ମତାବଳୀ ମଧ୍ୟ ଏବେ ବ୍ୟାପକ ଭାବେ ପ୍ରସାରିତ ହୋଇଛି । ଘଟଣା କ୍ରମେ ୧୬ଶ ବିଶ୍ୱ ଦର୍ଶନ କଂଗ୍ରେସରେ ବହୁ ବୁର୍ଜୁଆ ଦାର୍ଶନିକ ଯୁକ୍ତିସମ୍ମତତାକୁ ଆଧୁନିକ ପ୍ରଗତିର ଅପରିହାର୍ଯ୍ୟ ଉପାଦାନ ରୂପେ ଗ୍ରହଣ କରିବାକୁ ଅସ୍ୱୀକାର କରିଥିଲେ । ପ୍ରଗତି ତଥା ସାମାଜିକ ବିକାଶର ଚିନ୍ତାଧାରାସମୂହକୁ ପୁଣି ସନ୍ଦେହପୂର୍ଣ୍ଣ କରାଯାଇଛି । ସଭ୍ୟତାର ବିନାଶ, ନାସ୍ତିବାଦର ଅଭ୍ୟୁଦୟ ଏବଂ ସମସ୍ତ ଅଗ୍ରଗତିର ଶେଷ ସଂପର୍କିତ ନିତ୍‌ସେ (୧୮୪୪-୧୯୦୦) ଏବଂ ସ୍ପେଙ୍ଗଲରଙ୍କ (୧୮୮୦-୧୯୩୬) ପ୍ରତିକ୍ରିୟାଶୀଳ ଭବିଷ୍ୟତବାଣୀକୁ ବ୍ୟାପକ ଭାବେ ପ୍ରଘର କରାଗଲା । ଐତିହାସିକ ଚକ୍ରାବର୍ତ୍ତତାର ଚିନ୍ତାରାଜିକୁ ପୁଣି ପୁନର୍ଜାଗ୍ରତ କରାଗଲା । ଏହାର ସାକ୍ଷ୍ୟ ଦେଖିବାକୁ ମିଳେ ଇଂରେଜ ଐତିହାସିକ ଆର୍ନୋଲଡ ଟଏନ୍‌ବିଙ୍କ ମତବାଦରୁ । ତାଙ୍କ ମତରେ, ମାନବଜାତି ଏକ ଆରୋହଣମୁଖୀ ବିକାଶରେ ଗତି କରେ ନାହିଁ, ଏହା ଏକକାଳୀନ ବିଦ୍ୟମାନ ଅନେକଗୁଡ଼ିଏ ସଭ୍ୟତାକୁ ପ୍ରକାଶ କରିଥାଏ । ସେସବୁ ମଧ୍ୟରୁ ପ୍ରତ୍ୟେକଟିର ଅଭ୍ୟୁଦୟ, ବିକାଶ, ଅବନତି ଏବଂ ବିନାଶ ଘଟିଥାଏ ।

ଦ୍ୱନ୍ଦ୍ୱମୂଳକ ମତ ବିକାଶର ଏତାଦୃଶ ଯେକୌଣସି ଏକପାଖିଆ ଅଧିଭୌତିକ ଅବଧାରଣାର ବିରୋଧିତା କରେ । ଆମେ ଇତିପୂର୍ବରୁ ଉଲ୍ଲେଖ କରିଛେ ଯେ, ବସ୍ତୁଗତ ଦ୍ୱନ୍ଦ୍ୱବାଦ ହେଉଛି ବସ୍ତୁଗତ ଜଗତର ବିକାଶ ସଂପର୍କରେ ସବୁଠାରୁ ଅଧିକ ବ୍ୟାପକ ଏବଂ ଗଭୀର ଶିକ୍ଷା । ଜଗତର ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଆଭିମୁଖ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟକୁ ଲେନିନ୍ ନିମ୍ନମତେ ପ୍ରକାଶ କରିଥିଲେ – "ବିଗତ ପର୍ଯ୍ୟାୟସମୂହକୁ ବିକାଶ ପୁନରାବୃତ୍ତ କରିଥାଏ, ଆଗେ ଯେମିତି ଘଟିଯାଇଛି, ଭିନ୍ନ ଏକ ବାଟରେ, ଏକ ଉଚ୍ଚତର ଭିତ୍ତିରେ ('ନେତୀକରଣର ନେତୀକରଣ'), ଯିଏକି କୁଣ୍ଡଳାକୃତି ଭାବେ ଗତି କରେ,

ସରଳ ରୈଖିକ ଭାବେ ଗତି କରେ ନାହିଁ ।"* ବିକାଶର ଏହି ବୈଶିଷ୍ଟ୍ୟଟିକୁ ବୁଝିବାର ଚାବିକାଠି ନେତୀକରଣ ପ୍ରବର୍ଗର ସାରମର୍ମକୁ ସଠିକ ଭାବେ ବ୍ୟାଖ୍ୟା କରିବା ମଧ୍ୟରେ ନିହିତ । ମାର୍କସ୍‌ବାଦୀ ଲେନିନ୍‌ବାଦୀ ଦର୍ଶନରେ ଏହା ହେଉଛି ଏକ କେନ୍ଦ୍ରୀୟ ପ୍ରବର୍ଗ । ନେତୀକରଣ ସଂପର୍କରେ ଦ୍ୱନ୍ଦ୍ୱବାଦ ତେବେ କ'ଣ କହେ ?

## ୨ – ନେତୀକରଣ – ଦ୍ୱନ୍ଦ୍ୱବାଦରେ ଏକ ଅତୀବ ଗୁରୁତ୍ୱପୂର୍ଣ୍ଣ ଉପାଦାନ

ଅନେକ ସମୟରେ ନେତୀକରଣକୁ ସଂପୂର୍ଣ୍ଣ ଏକ ଯୁକ୍ତିସମ୍ମତ କ୍ରିୟା ବୋଲି ଧରି ନିଆଯାଇଥାଏ ଏବଂ ଅନେକ ଦାର୍ଶନିକ ନେତୀକରଣ ଅବଧାରଣାକୁ ଚେତନାର ବାହାରେ ବ୍ୟବହାର କରିବାକୁ ଭୁଲ ବୋଲି ଭାବିଥାନ୍ତି । ସେମାନଙ୍କ ମଧ୍ୟରୁ କେତେକ ସେମାନଙ୍କ ମତକୁ ଏହି ଯୁକ୍ତି ଦ୍ୱାରା ସଠିକ ବୋଲି ପ୍ରମାଣ କରିଥାନ୍ତି ଯେ, ସତ୍ତା ହେଉଛି ସର୍ବଦା "ଅସ୍ତିବାଚକ" ଏବଂ "ନିଃସତ୍ତାର" (ଯାହାକୁ ଅନେକ ସମୟରେ ନେତୀକରଣ ସହିତ ସମାନ କରାଯାଇଥାଏ) ବିଲ୍‌କୁଲ୍ "ଅସ୍ତିତ୍ୱ ନାହିଁ" । ଏହା କ'ଣ ପ୍ରକୃତରେ ସତ ? ସତ୍ତା ଏବଂ ନିଃସତ୍ତା ମଧ୍ୟରେ ବିରୋଧକୁ ବିଶେଷ ଭାବେ ବିଚାର ନକରି ଆମେ ସହଜ ଭାବେ ଦେଖାଇ ଦେଇ ପାରେ ଯେ, ଏହି ସମସ୍ୟାର ଦ୍ୱନ୍ଦ୍ୱମୂଳକ ସମାଧାନ ନିହିତ ରହିଛି ଏହି ତଥ୍ୟଟିରେ ଯେ, ଗୋଟିଏ ସଦାସର୍ବଦା ଅନ୍ୟଟିକୁ ରୂପାନ୍ତରିତ ହେବାରେ ଲାଗିଛି, କାରଣ ପ୍ରତ୍ୟେକ ଜିନିଷ ଜନ୍ମ ନେଉଛି, ବିକାଶ ଲାଭ କରୁଛି, ବା ବିଲୟ ଲାଭ କରୁଛି । ଏହିପରି ଭାବେ ଯାହାସବୁ ସତ୍ତା ହିସାବରେ ଅବସ୍ଥିତ ସେସବୁ ମଧ୍ୟରେ ନିଃସତ୍ତା ମଧ୍ୟ ରହିଛି, ଅର୍ଥାତ୍, ସେସବୁ ହେଉଛି ସତ୍ତା ଏବଂ ନିଃସତ୍ତା ମଧ୍ୟରେ ଏକ ଐକ୍ୟ । "ନିଃସତ୍ତା" କେବଳ ସମ୍ଭବ ବିଶେଷ ଭୌତିକ ଗଢ଼ଣସମୂହ (ଅସ୍ତିତ୍ୱ) କ୍ଷେତ୍ରରେ, ସାର୍ବିକ ଭାବେ ବସ୍ତୁନିଷ୍ଠ ବାସ୍ତବତା ମଧ୍ୟରେ ନୁହେଁ – ବସ୍ତୁବାଦୀମାନେ ଏହାକୁ ଏହି ଭାବେ ଦେଖିଥାନ୍ତି । ବସ୍ତୁ ହେଉଛି ଅବିନାଶୀ ଏବଂ ଅସୃଷ୍ଟ । ସର୍ବୋପରି, ସ୍ୱୟଂ "ନିଃସତ୍ତାକୁ" ଏକ ବିମୂର୍ତ୍ତ "କିଛି ନୁହେଁ" ବୋଲି ବ୍ୟାଖ୍ୟା କରିବାଟା ଭୁଲ । ନିଃସତ୍ତା ସର୍ବଦା କୌଣସି କିଛିର, ନିର୍ଦ୍ଦିଷ୍ଟ କିଛିର ନିଃସତ୍ତା । ତେଣୁ କରି ଏହା ସାରଗତଃ ଭାବେ ହେଉଛି "ଅନ୍ୟ-ସତ୍ତା" ଏବଂ ସତ୍ତାରେ କେତେକ "ଦୋଷ" ନୁହେଁ । ଏହା ଛଡ଼ା, ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ କୌଣସିମତେ ନେତୀକରଣ ଏବଂ ନିଃସତ୍ତାର ଅବଧାରଣାକୁ ଏକ ମନେ କରେ ନାହିଁ । ପ୍ରଥମ ପ୍ରବର୍ଗଟିର ଅର୍ଥ ସେତିକିବେଳେ ପରିଷ୍କାର ହୋଇ ଉଠେ, ଯେତେବେଳେ ବିକାଶରେ ଦ୍ୱନ୍ଦ୍ୱସମୂହ ଏବଂ ଗୁଣାତ୍ମକ ପରିବର୍ତ୍ତନ ସଂପର୍କରେ ଆମର ଉପରୋକ୍ତ

---

* ଭ୍ଲାଦିମିର୍ ଇଲିଚ୍ ଲେନିନ୍, "କାର୍ଲ ମାର୍କସ୍", *Collected Works*, ୨୧ଶ ଖଣ୍ଡ, ମସ୍କୋ, ୧୯୭୭, ପୃ: ୫୪ ।

କଥନକୁ ଆମେ ବିଶ୍ୱରକୁ ନିଏଁ । ବିକାଶର ମତାଦର୍ଶ ହିସାବରେ ଦ୍ୱନ୍ଦ୍ୱବାଦର ଆଧେୟ ମଧ୍ୟରେ ରହିଛି, ତା'ର ଅପରିହାର୍ଯ୍ୟ ଉପାଦାନ ରୂପେ, ପୁରାତନର ନେତୀକରଣ ଏବଂ ନୂତନର ସୃଷ୍ଟିର ସ୍ୱୀକୃତି ।

ବସ୍ତୁଗତ ଦ୍ୱନ୍ଦ୍ୱସମୂହର ପରିପ୍ରକାଶ ସେସବୁର ସମାଧାନ ଆଡ଼କୁ, ପ୍ରପଞ୍ଚରେ ଏକ ଗୁଣାତ୍ମକ ପରିବର୍ତ୍ତନ ଆଡ଼କୁ ପଦାର୍ଥସମୂହର ବିପରୀତକୁ ରୂପାନ୍ତରଣ ଏବଂ ତା ଫଳରେ ଧାରାବାହିକତାରେ ଅବଚ୍ଛେଦ ଓ କେତେକ ଭୌତିକ ସ୍ଥିତିର ବିନାଶ ଏବଂ ଆଉ କେତେକର ଅଭ୍ୟୁଦୟ ଆଡ଼କୁ ଆଗେଇ ନିଏ । ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ମତରେ ନେତୀକରଣ ବୋଇଲେ ବୁଝାଏ ସେଇ ପ୍ରକ୍ରିୟାଟିକୁ, ଯଦ୍ୱାରା ସେ ପଦାର୍ଥଟିରେ ସୀମାବଦ୍ଧ ବାହ୍ୟିକ ତଥା ଆଭ୍ୟନ୍ତରୀଣ କାରଣରୁ ମୌଳିକ ଭାବେ ଭିନ୍ନ ଏକ ପଦାର୍ଥକୁ ରୂପାନ୍ତରିତ ହୋଇଥିଲା । ଏହି ବିକାଶରେ ଦ୍ୱନ୍ଦ୍ୱମୂଳକ ନେତୀକରଣର ଭୂମିକା ହେଉଛି ପୁରାତନ ଗୁଣର ଗଠନ ମଧ୍ୟରେ ଏହାକୁ ସଂପୂର୍ଣ୍ଣ କରିବା ଏବଂ ନୂତନ ଏକ ଜିନିଷର ଅଭ୍ୟୁଦୟ ଘଟାଇବା । ନେତୀକରଣ ବିନା (ଏବଂ ଉଲ୍ଲମ୍ଫନ ଏଥି ସହିତ ନିବିଡ଼ ଭାବେ ସଂଯୁକ୍ତ) ବସ୍ତୁକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ଏକ ଏବଂ ଅଭିନ୍ନ ହୋଇ ରହିବାକୁ ପଡ଼ିବ । ନେତୀକରଣ ବିନା ବିକାଶ ଏବଂ ନିମ୍ନତରରୁ ଉଚ୍ଚତରକୁ ଉତ୍ତରଣ ସମ୍ଭବ ହେବ ନାହିଁ । ମାର୍କସ୍ ଲେଖିଛନ୍ତି, "କୌଣସି କ୍ଷେତ୍ରରେ କୌଣସି ଜିନିଷ ତା'ର ପୂର୍ବବର୍ତ୍ତୀ ଅସ୍ତିତ୍ୱର ପଦ୍ଧତିକୁ ନାସ୍ତି ନକରି ବିକାଶ ମଧ୍ୟ ଦେଇ ଯାଇ ପାରେ ନାହିଁ ।"* ଏଠାରେ ଲକ୍ଷ୍ୟ କରିବାର କଥା ଯେ, ଦ୍ୱନ୍ଦ୍ୱବାଦର ଅନ୍ୟାନ୍ୟ ନିୟମର କ୍ରିୟା ସହିତ ନେତୀକରଣ ସମାନ୍ତରାଳ ନହୋଇ ବରଂ ସେସବୁ ସହିତ ନିବିଡ଼ ଭାବେ ଯୁକ୍ତ ହୋଇଥାଏ । ବିକାଶ ପ୍ରକ୍ରିୟାରେ ନେତୀକରଣ ସମ୍ଭବ ହୋଇଥାଏ ଗୁଣକୁ ପରିମାଣରୁ ଉତ୍ତରଣ ଏବଂ ବିରୋଧସମୂହର ସଂଗ୍ରାମ ଫଳରେ । ଯେଉଁଠି ପରିମାଣାତ୍ମକ ସଞ୍ଚୟନ ସଂପୂର୍ଣ୍ଣ ହୋଇ ପାରିନି ଏବଂ ଦ୍ୱନ୍ଦ୍ୱସମୂହ ପରିପକ୍ୱ ହୋଇନି, ସେଠାରେ ନେତୀକରଣ ଏକ ପ୍ରକୃତ ପ୍ରକ୍ରିୟା ହୋଇ ପାରେ ନାହିଁ । ତେଣୁ କରି "ବିପରୀତତା" ଏବଂ "ନେତୀକରଣ"ର ଅବଧାରଣା ମଧ୍ୟରେ ପାର୍ଥକ୍ୟକୁ ଲକ୍ଷ୍ୟ କରିବାଟା ଆବଶ୍ୟକ । ପ୍ରଥମଟି କୌଣସି ପଦାର୍ଥର ସ୍ୱଦ୍ୱନ୍ଦ୍ୱତା, ତା'ର ଅସ୍ତିବାଚକ ଏବଂ ବିପରୀତ ଦିଗଗୁଡ଼ିକର ଐକ୍ୟ ବିନା ଅନ୍ୟ କିଛି ନୁହେଁ, କିନ୍ତୁ ଶେଷଟି ତା'ର ଗୁଣାତ୍ମକ ପରିବର୍ତ୍ତନର ପ୍ରକୃତ କାର୍ଯ୍ୟକୁ ପ୍ରକାଶ କରିଥାଏ । ଯେହେତୁ ଦ୍ୱନ୍ଦ୍ୱସମୂହର ଥାଏ ବସ୍ତୁନିଷ୍ଠ ଏବଂ ସାର୍ବିକ ବୈଶିଷ୍ଟ୍ୟସମୂହ, ତେଣୁ ନେତୀକରଣକୁ ଦେଖିବାକୁ ହେବ ବିକାଶର ଆବଶ୍ୟକୀୟ ଏବଂ ସାର୍ବିକ ମୁହୂର୍ତ୍ତ ହିସାବରେ ।

ଅଜୈବ ପ୍ରକୃତିରେ, ଉଦାହରଣ ସ୍ୱରୂପ, ନେତୀକରଣ ପ୍ରକାଶ ପାଇଥାଏ

---

* କାର୍ଲ ମାର୍କସ୍, "Moralising Criticism and Critical Morality" । କାର୍ଲ ମାର୍କସ୍ ଏବଂ ଫ୍ରେଡେରିକ୍ ଏଙ୍ଗେଲସ୍, *Collected Works*, ୬ଷ୍ଠ ଖଣ୍ଡ, ମସ୍କୋ, ୧୯୭୬, ପୃ: ୩୧୭ ।

ଛାୟାପଥସମୂହର ମୂଳପୀଣ୍ଡର ବ୍ରହ୍ମାଣ୍ଡିକ କ୍ରିୟାକଳାପରେ, ଅର୍ଥାତ୍, ତାରକାସମୂହର ନାକ୍ଷତ୍ରିକ ସମାହାରର ବିସ୍ଫୋରଣ ଚୂର୍ଣ୍ଣୀଭବନ ଏବଂ ଗଠନରେ, ମୌଳିକ ଅଣୁକଣାରାଜିର ପାରସ୍ପରିକ ରୂପାନ୍ତରଣ ଏବଂ ବିନାଶ ମଧ୍ୟରେ, ଜଳ ଏବଂ ବାୟୁ ଭଳି ବିବିଧ ବାହ୍ୟିକ ବସ୍ତୁ ଦ୍ୱାରା ସୃଷ୍ଟ ମୃତ୍ତିକାର କ୍ଷୟଭବନ ଏବଂ ରାସାୟନିକ ପ୍ରତିକ୍ରିୟାସମୂହରେ ଅଣୁକୋଷଗୁଡ଼ିକର ବିଚ୍ଛିନ୍ନକରଣ ଏବଂ ସମ୍ମିଳନ, ଆଦିରେ । ଜୈବ ପ୍ରକୃତିରେ ନେତୀକରଣ ମଧ୍ୟ ଏକ ଆବଶ୍ୟକୀୟ ମୁହୂର୍ତ୍ତ । ବିବର୍ତ୍ତନ ପ୍ରକ୍ରିୟା ମଧ୍ୟରେ ବହୁ ଜୈବିକ ରୂପ ବିଲୋପ ହୋଇ ଯାଇଛି ନୂତନ ରୂପସମୂହର ଅଭ୍ୟୁଦୟ ଦ୍ୱାରା, ଯେଉଁଗୁଡ଼ିକ ପରିବର୍ତ୍ତିତ ଅବସ୍ଥା ସହିତ ନିଜକୁ ଅଧିକ ଖାପଖୁଆଇ ନେଇ ପାରିଛନ୍ତି । ଏବଂ ବିଭିନ୍ନ ଜୀବାଙ୍ଗର ବିକାଶରେ, ସେସବୁର ବିପରୀତ, ନେତୀକରଣ – ମୃତ୍ୟୁ ବିନା ଜୀବନ ଅସମ୍ଭବ । ମାନବ ସମାଜରେ ଅତୀତରେ ଏବଂ ଏବେ ନେତୀକରଣ ପ୍ରକାଶ ପାଇଥାଏ ଅନେକ ଏବଂ ବହୁବିଧ ବୈପ୍ଳବିକ ପରିବର୍ତ୍ତନ ମଧ୍ୟରେ ।

ନେତୀକରଣର ଭିତ୍ତି ହେଉଛି ଦ୍ୱନ୍ଦ୍ୱସମୂହର ପ୍ରକାଶ, ତେଣୁ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦରେ ଏହାକୁ ମନେ କରାଯାଏ ଯେକୌଣସି ପଦାର୍ଥର ସ୍ୱନେତୀକରଣ, ତା'ର ନିଜ ବିକାଶର ଏକ ବିଶେଷ ପର୍ଯ୍ୟାୟ ବା ସ୍ତର । ପୁଞ୍ଜିବାଦୀ ଉତ୍ପାଦନ ପଦ୍ଧତି, ଉଦାହରଣ ସ୍ୱରୂପ, ବିକାଶ ଲାଭ କରିବା ସଙ୍ଗେ ସଙ୍ଗେ ତା'ର ନିଜସ୍ୱ ଦ୍ୱନ୍ଦ୍ୱସମୂହକୁ ପ୍ରକୋପିତ କରିଥାଏ ଏବଂ ତେଣୁ ତା'ର ନିଜସ୍ୱ ବିନାଶକୁ ବସ୍ତୁଗତ ଭାବେ ସମ୍ଭବ ଏବଂ ଆବଶ୍ୟକୀୟ କରି ପକାଏ । ଏହା ମଧ୍ୟ ସେହି ସାମାଜିକ ଶକ୍ତିଟିକୁ – ସର୍ବହରାକୁ ସୃଷ୍ଟି କରିଥାଏ, ଯିଏକି ହୁଏ ତା'ର କବରଖନନକାରୀ ଏବଂ ଆଉରି ଅଧିକ ପ୍ରଗତିଶୀଳ, ସମାଜବାଦୀ ଉତ୍ପାଦନ ପଦ୍ଧତିର ବାହକ । ଏହି ଅର୍ଥରେ ପୁଞ୍ଜିବାଦୀ ବ୍ୟବସ୍ଥା ନିଜର ନେତୀକରଣ କରିଥାଏ, ଯେକୌଣସି ପ୍ରାକୃତିକ ଐତିହାସିକ ପ୍ରକ୍ରିୟା ହିସାବରେ ପ୍ରାକୃତିକ ନିୟମରାଜି ଅନୁଯାୟୀ ।

ଏହି ଉଦାହରଣଟି ଦ୍ୱନ୍ଦ୍ୱମୂଳକ ନେତୀକରଣର ଅନ୍ୟାନ୍ୟ ବୈଶିଷ୍ଟ୍ୟରାଜିକୁ ମଧ୍ୟ ପ୍ରକାଶ କରିଥାଏ । ଦୃଷ୍ଟାନ୍ତ ସ୍ୱରୂପ, ଏହା ତା'ର ଫଳାଫଳ ଦିଗରୁ ଦ୍ୱନ୍ଦ୍ୱାତ୍ମକ : ଏହା ହେଉଛି ବିନାଶ ଏବଂ ସୃଷ୍ଟିର, ନିଃସ୍ୱତା ଏବଂ ରୂପପରିଗ୍ରହତା ମଧ୍ୟରେ ଐକ୍ୟ । ପୁଞ୍ଜିବାଦର ସ୍ୱନେତୀକରଣ ହେଉଛି ଏକାବେଳକେ ଅନ୍ୟ ଏକ ବିପରୀତ ସାମାଜିକ ବ୍ୟବସ୍ଥାର – ସମାଜବାଦର ପ୍ରକାଶ ଏବଂ ସ୍ଥାପନ । ଆଉ ଏକ ସିଦ୍ଧାନ୍ତ ହେଉଛି, ଦ୍ୱନ୍ଦ୍ୱବାଦରେ ନେତୀକରଣର ଥାଏ ନିର୍ଦ୍ଦିଷ୍ଟ ଏକ ଆଧେୟ । ଏହା ବିମୂର୍ତ୍ତ ଶୂନ୍ୟତା ମଧ୍ୟକୁ ଏକ ପଦାର୍ଥର ରୂପାନ୍ତରଣ ନୁହେଁ, ଏହା ହେଉଛି "ଅନ୍ୟ ଏକ ପଦାର୍ଥକୁ" ରୂପାନ୍ତରଣ (seine Andere) । ସର୍ବହରାର ବିପ୍ଳବ ପଥରେ ପୁଞ୍ଜିବାଦର ନେତୀକରଣ ଘଟିଥାଏ ନିର୍ଦ୍ଦିଷ୍ଟ ଏକ ସାମାଜିକ ବ୍ୟବସ୍ଥା – ସମାଜବାଦ ଦ୍ୱାରା, ଅନ୍ୟ କୌଣସି ବ୍ୟବସ୍ଥା ଦ୍ୱାରା ନୁହେଁ । ଏହା ଛଡ଼ା, ଯା'ର ନେତୀକରଣ ଘଟେ ଏବଂ ଯିଏ ନେତୀକରଣ ଘଟାଏ, ସେ ଦୁଇ ମଧ୍ୟରେ ଥାଏ ଏକ ଆବଶ୍ୟକୀୟ ଯୋଗସୂତ୍ର : ସମାଜର ପୂର୍ବବର୍ତ୍ତୀ ପର୍ଯ୍ୟାୟରେ ସୃଷ୍ଟ ଉତ୍ପାଦିକା ଶକ୍ତିସମୂହକୁ ଗ୍ରହଣ କରି ନେଇଥାଏ ନୂତନ ଉତ୍ପାଦନ ପଦ୍ଧତି ।

# ନେତୀକରଣର ନେତୀକରଣ ନିୟମ

କୁଣ୍ଡଳୀଟି ନିୟମର ତିନୋଟି ପାରସ୍ପରିକ ଭାବେ ଯୁକ୍ତ ଦିଗକୁ ପ୍ରକାଶ କରୁଛ :

୧ – ବିକାଶରେ ଧାରାବାହିକତା

୨ – ବିକାଶର ପ୍ରଗତିଶୀଳ ଚରିତ

୩ – ଉଚ୍ଚତର ସ୍ତରରେ ଚକ୍ରାବର୍ତ୍ତିକ ଚରିତ୍ର ଏବଂ ପୁନରାବର୍ତ୍ତିତା




ମେଣ୍ଡେଲେୟେଭ୍‌ଙ୍କ କାଳଗତ ବ୍ୟବସ୍ଥାଟି ପରିଷ୍କାର ଭାବେ ନିୟମର ତିନୋଟି ଦିଗକୁ ପ୍ରକାଶ କରୁଛି :

ପରବର୍ତ୍ତୀ ପ୍ରତ୍ୟେକଟି ଉପାଦାନ ପର୍ବବର୍ତ୍ତୀ ଉପାଦାନଗୁଡ଼ିକୁ ଧାରଣ କରିବା ସଙ୍ଗେ ସଙ୍ଗେ ଆଂଶିକ ଭାବେ ତାକୁ ନାସ୍ତି କରିଥାଏ

ପ୍ରଥମରୁ ଶେଷ ପର୍ବଟି ପର୍ଯ୍ୟନ୍ତ ଉପାଦାନସମୂହ ଏବଂ ସେସବୁର ଧର୍ମ ଆଉରି ଜଟିଳ ହୋଇଥାଏ'

ଉଚ୍ଚତର ପର୍ଯ୍ୟାୟରେ ଉପାଦାନସମୂହର ଧର୍ମରାଶିର ପୁନରାବର୍ତ୍ତନରେ କାଳ ବିନ୍ୟାସ । ସମୟ ବଦଳିବା ସଙ୍ଗେ ସଙ୍ଗେ ଧାତବ ଧର୍ମରାଶି ଅଧିକ ପ୍ରକଟିତ ହୋଇଥାଏ

# ୩ – ନେତୀକରଣର ନିର୍ଦ୍ଦିଷ୍ଟତା

ନେତୀକରଣରେ ସର୍ବଦା ଥାଏ ଏକ ନିର୍ଦ୍ଦିଷ୍ଟ ଭାବେ ବ୍ୟାଖ୍ୟାକରା ଆଧେୟ, ତେଣୁ କରି ଏହା ହେଉଛି ନିର୍ଦ୍ଦିଷ୍ଟ ଏବଂ ବିଶେଷିତ । ତା ଅର୍ଥ, ନେତୀକରଣର ପଦ୍ଧତି ନିର୍ଭର କରେ ପ୍ରପଞ୍ଚର ଚରିତ୍ର ଉପରେ ଏବଂ ଯେଉଁସବୁ ଅବସ୍ଥାରାଜି ମଧ୍ୟରେ ତା'ର ବିକାଶ ଘଟୁଥାଏ, ତା ଉପରେ । ଏଙ୍ଗେଲସ୍ ଲେଖିଛନ୍ତି, "ତେଣୁ କରି ପ୍ରତ୍ୟେକଟି ପଦାର୍ଥର ଏକ ବିଶେଷ ଧରଣର ସତ୍ତା ଅଛି, ଯା'ର ଏପରି ଭାବେ ନେତୀକରଣ ଘଟିଥାଏ ଯେ, ତଦ୍ୱାରା ଏକ ବିକାଶର ଉଦ୍‌ଭବ ହୁଏ ଏବଂ ଏହା ପ୍ରତ୍ୟେକଟି ଅବଧାରଣା ବା ଚିନ୍ତା କ୍ଷେତ୍ରରେ ପୂରାପୂରି ପ୍ରଯୋଜ୍ୟ ।"* ଦ୍ୱନ୍ଦ୍ୱମୂଳକ ନେତୀକରଣର ବିଭିନ୍ନ ପରିପ୍ରକାଶକୁ ମୁଖ୍ୟତଃ ତିନୋଟି ଧରଣରେ ଭାଗ ଭାଗ କରା ଯାଇ ପାରେ ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଧରଣଟି ହେଉଛି ତଥାକଥିତ ଅସ୍ୱୀକୃତି (Aufheben), ଅର୍ଥାତ୍, କୌଣସି ପଦାର୍ଥର ନେତୀକରଣ ଘଟିଲେ ଏହା ତା'ର ନୂତନ ପ୍ରପଞ୍ଚ ମଧ୍ୟରେ ତା'ର କେତେକ ଉପାଦାନ ଆଉ ଗଠନଗତ ଯୋଗସୂତ୍ରକୁ ଗ୍ରହଣ କରିଥାଏ । ସେସବୁ ତା'ର ଆଙ୍ଗିକ ସମଗ୍ରତାର ଅବିଚ୍ଛିନ୍ନ ଅଙ୍ଗ ହିସାବରେ ନୂତନ ଗୁଣ ମଧ୍ୟରେ ମିଶି ଯାଇଥାଏ । ଅସ୍ୱୀକୃତି ରୂପେ ନେତୀକରଣ ବୋଇଲେ ବୁଝାଏ, ଯାହାକୁ ନେତୀକରଣ କରାଗଲା ତାକୁ ଏକାବେଳକେ ଅତିକ୍ରମ କରିବା ଏବଂ ଗ୍ରହଣ କରି ନେବା – ଆଧାରରେ ଅତିକ୍ରମ କରିବା ଏବଂ ଆଧେୟରେ ଗ୍ରହଣ କରିବା । ଚରିତ୍ରଗତ ଭାବେ ଅସ୍ୱୀକୃତି ହେଉଛି ଯୋଗସୂତ୍ର, ଏହା ବିକାଶର ମୁହୂର୍ତ୍ତ ହିସାବରେ ସମସ୍ତ କିଛି ଅସ୍ତିବାଚକ ଜିନିଷକୁ ଗ୍ରହଣ କରି ପରିଷ୍କାର ଭାବେ ପ୍ରକାଶ ପାଇଥାଏ । "ଯାହା କିଛି ଅସ୍ତିବାଚକ ସେସବୁକୁ ଗ୍ରହଣ କରିବା" ଫଳରେ ଯେଉଁ ନୂଆ ଜିନିଷଟିର ଅଭ୍ୟୁଦୟ ଘଟେ, ତାହା ଆବଶ୍ୟକ ଭାବେ ବିକାଶର ଏକ ଉଚ୍ଚତର ଏବଂ ସମୃଦ୍ଧ ପର୍ଯ୍ୟାୟ ହିସାବରେ ଦେଖା ଦେଇଥାଏ । ଅଜୈବ ପ୍ରକୃତିର ପ୍ରକ୍ରିୟା ମଧ୍ୟରେ ଏହି ଧରଣର ନେତୀକରଣ, ଦୃଷ୍ଟାନ୍ତ ସ୍ୱରୂପ, ଦେଖା ଦେଇଥାଏ ଅନେକଗୁଡ଼ିଏ ରାସାୟନିକ ଉପାଦାନସମୂହରେ ପାରମାଣବିକ ଗଢ଼ଣର ଆଉରି ଜଟିଳତା ସହିତ ଯୁକ୍ତ ପ୍ରଥମେ ପ୍ରଥମେ ଗଠିତ ଇଲେକ୍‌ଟ୍ରନିକ ଆସ୍ତରଣକୁ ଗ୍ରହଣ କରି ନେବା ହିସାବରେ । ପ୍ରତିଷ୍ଠିତ ଏବଂ ଅଭ୍ୟୁଦୟ ଲାଭ କରୁଥିବା ଜୀବାଙ୍ଗର ସ୍ଥିତିଶୀଳତାରେ ବିବର୍ତ୍ତନର ଫଳକୁ ସଜୀବ ପ୍ରକୃତି ସଂଘବଦ୍ଧ କରିଥାଏ । ସମାଜର ବିକାଶ ସୁନିଶ୍ଚିତ ହୋଇଥାଏ ମାନବ ବଂଶଧରମାନଙ୍କର, ଉତ୍ପାଦିକା ଶକ୍ତିସମୂହର ଧାରାବାହିକତା ଏବଂ ଅସ୍ୱୀକୃତି ରୂପ ଗ୍ରହଣ କରୁଥିବା ସାମାଜିକ କାରଣସମୂହ ଦ୍ୱାରା । ଅବଗତି ପ୍ରକ୍ରିୟାରେ

---

* ଫ୍ରେଡେରିକ୍ ଏଙ୍ଗେଲସ୍, "*Anti-Dühring*", ପ୍ରଗତି ପ୍ରକାଶନ, ମସ୍କୋ, ୧୯୭୮, ପୃ: ୧୭୩ ।

ଆପେକ୍ଷିକ ଭାବେ ପ୍ରକୃତ ଜ୍ଞାନ ଅସ୍ୱୀକୃତି ଆକାରରେ ନିର୍ଦ୍ଦିଷ୍ଟ ତଥା ବିକଶିତ ହୋଇଥାଏ ।

ଅସ୍ୱୀକୃତି ଏକ ଉନ୍ନତୀକରଣ ହେଉଛି ରୂପାନ୍ତରଣ, ଯାହାକୁ ଦ୍ୱନ୍ଦ୍ୱମୂଳକ ନେତୀକରଣର ଦ୍ୱିତୀୟ ଧରଣ ହିସାବରେ ଅଲଗା କରି ଦର୍ଶା ଯାଇ ପାରେ । ଏହି ଧରଣଟି ମଧ୍ୟରେ ସେହିସବୁ ପ୍ରକ୍ରିୟାକୁ ଅନ୍ତର୍ଭୁକ୍ତ କରାଯାଇ ପାରେ, ଯିଏକି କୌଣସି ପଦାର୍ଥର ପୃଥକ୍ ପୃଥକ୍ ଉପାଦାନସମୂହକୁ "ଗ୍ରହଣ" କରିବା ଅପେକ୍ଷା ତା'ର ଏକାନ୍ତ ଭିତ୍ତି ତଥା ମୂଳ ଜିନିଷଟିକୁ ଗ୍ରହଣ କରିଥାଏ । ଏ କ୍ଷେତ୍ରରେ ନିମ୍ନତରଟି କ୍ରମଶଃ ଅଧିକ ବୃଦ୍ଧି ପାଇଁ ଉଚ୍ଚତରରେ ପରିବର୍ତ୍ତିତ ହୁଏ । ଏହା ଘଟିଥାଏ କୌଣସି ବ୍ୟବସ୍ଥାର ବିକାଶରେ ଗୋଟିଏ ପର୍ଯ୍ୟାୟରୁ ଅନ୍ୟ ଏକ ପର୍ଯ୍ୟାୟକୁ ଉତ୍ତରଣ କାଳରେ । ଧାନ ମଞ୍ଜିର ଅଙ୍କୁରୋଦ୍‌ଗମ ହେଉଛି ତା'ର ନେତୀକରଣ । ଏହି ନେତୀକରଣଟି ପ୍ରକାଶ ପାଇଥାଏ ଅଙ୍କୁର ଏବଂ ଗଣ୍ଡିକୁ ତା'ର ରୂପାନ୍ତରଣ ମଧ୍ୟରେ; ଏବଂ ଏହି ରୂପାନ୍ତରଣଟି ପରବର୍ତ୍ତୀ କାଳରେ ଶହ ଶହ ଧାନ ମଞ୍ଜି ସୃଷ୍ଟି କରିଥାଏ । ରୂପାନ୍ତରଣଟା ମଧ୍ୟ ବହୁ ସାମାଜିକ ପ୍ରକ୍ରିୟା ପ୍ରତି ପ୍ରଯୋଜ୍ୟ, ଯଥା, ଏକଗୁଣିଆ ପୂର୍ବ ପୁଞ୍ଜିବାଦର ସାମ୍ରାଜ୍ୟବାଦକୁ ପରିବର୍ତ୍ତନ, ସମାଜବାଦରେ ସର୍ବହରା ଏକଛତ୍ରବାଦୀ ରାଷ୍ଟ୍ରର ସମଗ୍ର ଜନସାଧାରଣଙ୍କ ରାଷ୍ଟ୍ରକୁ ଉତ୍ତରଣ, ଅଥବା ବ୍ୟକ୍ତିଗତ କ୍ଷେତ୍ରରେ, ଶିଶୁ ହିସାବରେ ଲାଳିତ ଏକ ବ୍ୟକ୍ତି ପ୍ରାପ୍ତ ବୟସରେ ପରିଣତ ହୁଏ ।

ଦ୍ୱନ୍ଦ୍ୱମୂଳକ ନେତୀକରଣର ତୃତୀୟ ପ୍ରକାର ଭେଦଟି ପଦାର୍ଥ ମଧ୍ୟରେ ସେହିସବୁ ଗୁଣାତ୍ମକ ପରିବର୍ତ୍ତନକୁ ନେଇ ଗଠିତ, ଯେଉଁସବୁକୁ ନାମିତ କରାଯାଇଥାଏ, ବିଖଣ୍ଡନ, ବିଲୟ, ଧ୍ୱଂସ, ବିସ୍ଫୋରଣ, ଉଚ୍ଛେଦ, ବିଧ୍ୱଂସ, ବିଲୋପ, ଅଧଃପତନ, ଲୋପ, ଆଦି ଭାବେ । ଏହା ହେଉଛି ତଥାକଥିତ ବିଧ୍ୱଂସୀ ନେତୀକରଣ ବା ଧ୍ୱଂସସାଧନ । ଧ୍ୱଂସ ମଧ୍ୟରେ "ଅସ୍ତିବାଚକକୁ ଧରି ରଖିବା" ମୁହୂର୍ତ୍ତଟି ଆଦୌ ନଥାଏ, କିମ୍ବା ଅତି ସାମାନ୍ୟ ଭାବେ ପ୍ରକାଶ ପାଇଥାଏ । ଧ୍ୱଂସ ଅର୍ଥ ନିର୍ଦ୍ଦିଷ୍ଟ ଏକ ପଦାର୍ଥର ଅସ୍ତିତ୍ୱର ବିଲୋପ ଏବଂ ବିକାଶର କେତେକ ଦିଗରେ ଏକ ସ୍ଥିରାବସ୍ଥାକୁ ବୁଝାଇ ପାରେ । ଏଭଳି ନେତୀକରଣ ଘଟି ପାରେ ନିର୍ଦ୍ଦିଷ୍ଟ ଏକ ବ୍ୟବସ୍ଥା ଉପରେ ବାହ୍ୟିକ ପ୍ରଭାବର ଫଳ ସ୍ୱରୂପ, ଯିଏକି ତା'ର ଗଢ଼ଣକୁ ଧ୍ୱଂସ କରି ଦିଏ ଏବଂ ପ୍ରଭାବର ଶକ୍ତି ଯଦି ବ୍ୟବସ୍ଥାର ଆଭ୍ୟନ୍ତରୀଣ ଯୋଗସୂତ୍ରର ଶକ୍ତିକୁ ବଳିଯାଏ, ତେବେ ତାକୁ ଲୋପ କରି ଦିଏ । ଅଜୈବ ପ୍ରକୃତିରେ ବହୁ ପ୍ରକ୍ରିୟା ହେଉଛି ଧ୍ୱଂସକାରକ । ଧ୍ୱଂସକାରକ ନେତୀକରଣ ପ୍ରାଣୀ ଏବଂ ଉଦ୍‌ଭିଦ ଜଗତରେ ବିଶେଷ କରି ଆବଶ୍ୟକୀୟ । ଖାଦ୍ୟ ଏବଂ ତା'ର ଖାଦକମାନଙ୍କ ମଧ୍ୟରେ ସଂପର୍କଟା (ଉଦ୍‌ଭିଦ ଏବଂ ଉଦ୍‌ଭିଦ ଖାଦକ କୀଟ, ଶିକାରୀଜୀବୀ ପ୍ରାଣୀ ଏବଂ ସେମାନଙ୍କ ଶିକାର) ଧ୍ୱଂସର ସଂପର୍କ ଛଡ଼ା ଆଉ କିଛି ନୁହେଁ । ଉଚ୍ଛେଦ, ଧ୍ୱଂସ, ମୃତ୍ୟୁ ଏବଂ ଅନ୍ୟାନ୍ୟ ଧ୍ୱଂସାତ୍ମକ ପ୍ରକ୍ରିୟାସମୂହ ଯଦି ବିଚ୍ଛିନ୍ନ ଘଟଣାସମୂହ ହିସାବରେ ବିବେଚିତ ନହୋଇ ନେତୀକରଣର ପ୍ରତିଷ୍ଠିତ ପ୍ରକାରସମୂହ ପ୍ରତି ଦୃଷ୍ଟି ରଖି ଭୌତିକ

ପଦାର୍ଥସମୂହ ମଧ୍ୟରେ ସାର୍ବିକ ଯୋଗସୂତ୍ର ରୂପେ ବିବେଚିତ ହୁଏ, ତେବେ ସେସବୁ ବିକାଶର ସୀମା ବାହାରେ ବୋଲି ବିବେଚିତ ନହୋଇ ବିକାଶର ଅନ୍ତର୍ଗତ ବୋଲି ପ୍ରମାଣିତ ହେବ; ସେସବୁ ହେଉଛି ବିକାଶର ଆବଶ୍ୟକୀୟ ମୁହୂର୍ତ୍ତରାଜି, ଯାହା ବିନା ବିକାଶ ଅସମ୍ଭବ ।

ବିଭିନ୍ନ ପ୍ରକାରର ନେତୀକରଣ, ଯଥା ଅସ୍ବୀକୃତି, ରୂପାନ୍ତରଣ ଏବଂ ଧ୍ୱଂସକୁ ଚିହ୍ନିତ କରିବା ଦ୍ୱାରା ଦ୍ୱନ୍ଦ୍ୱମୂଳକ ଏବଂ ଅଧିଭୌତିକ ନେତୀକରଣର ଅବଧାରଣା ମଧ୍ୟରେ ବୈପରିତ୍ୟକୁ ଗଭୀର ଭାବେ ବୁଝିବା ସମ୍ଭବ ହୋଇଥାଏ । ପ୍ରକୃତିରେ ଯେକୌଣସି ନେତୀକରଣ ହେଉଛି ଦ୍ୱନ୍ଦ୍ୱମୂଳକ – ସେସବୁକୁ ଯଦି ମଣିଷଠାରୁ ଅଲଗା କରି ଦେଖାଯାଏ । ସମାଜରେ ଏହା କିନ୍ତୁ ଭିନ୍ନ ଏକ ବ୍ୟାପାର, କାରଣ ସମାଜ ହେଉଛି ଜନସାଧାରଣଙ୍କ କର୍ମ କ୍ଷେତ୍ର, ଯେଉଁମାନେ ନିର୍ଦ୍ଦିଷ୍ଟ ନେତୀକରଣସମୂହକୁ ହୃଦୟଙ୍ଗମ କରିଥାନ୍ତି । ଜନସାଧାରଣଙ୍କ କ୍ରିୟାକଳାପ, ହୁଏତ, କେତେକ ପରିମାଣରେ, ନିର୍ଦ୍ଦିଷ୍ଟ ସାମାଜିକ ପ୍ରପଞ୍ଚର ବିକାଶକୁ ନିର୍ଦ୍ଧାରିତ କରୁଥିବା ବସ୍ତୁଗତ ନିୟମରାଜି ସହିତ ସଙ୍ଗତିପୂର୍ଣ୍ଣ ନହୋଇ ପାରେ, ସେମାନେ, ହୁଏତ, ସେ ନିୟମକୁ ବୁଝି ନପାରିଥାନ୍ତି ବା ସେମାନଙ୍କର ଏକ ନ୍ୟସ୍ତ ଶ୍ରେଣୀ ସ୍ୱାର୍ଥ ଥାଇ ପାରେ । ଜନସାଧାରଣଙ୍କ ଚେତନା ଏବଂ କ୍ରିୟାକର୍ମ ସଂପର୍କରେ, ତେଣୁ କରି ଆମେ ଦ୍ୱନ୍ଦ୍ୱମୂଳକ ତଥା ଅଧିଭୌତିକ ନେତୀକରଣର ଅବଧାରଣାକୁ ଉପଯୋଗ କରି ପାରେ ଏବଂ କରିବା ଉଚିତ ।

ଅଦ୍ୱନ୍ଦ୍ୱମୂଳକ ନେତୀକରଣ ହେଉଛି ସଂପୂର୍ଣ୍ଣ ରୂପେ ମନୋଗତ, "ଫମ୍ପା" ଏବଂ "କ୍ଷଣସ୍ଥାୟୀ" – ନେତୀକରଣର ଏତାଦୃଶ ମତ ପୋଷଣ କରିଛନ୍ତି, ଦୃଷ୍ଟାନ୍ତ ସ୍ୱରୂପ, "ବିପରୀତ ଦ୍ୱନ୍ଦ୍ୱବାଦର" ଅନୁଗାମୀମାନେ (ଥିଏଡୋର ଆଡୋର୍ଣ୍ଣୋ, ହେର୍‌ବର୍ଟ ମାର୍କ୍ୟୁଜ୍ ଏବଂ ଅନ୍ୟାନ୍ୟ) । ସେମାନେ ଧ୍ୱଂସକୁ ଅନାପେକ୍ଷିକ ବୋଲି ବର୍ଣ୍ଣନା କରିଥାନ୍ତି, ନେତୀକରଣକୁ ସାର୍ବିକ ଭାବେ ବର୍ଜନ କ୍ରିୟାରେ ପରିଣତ କରିଥାନ୍ତି, ତା'ର ଅସ୍ତିବାଚକ ଆଧେୟଟିକୁ କାଢ଼ି ନେଇ । ତଥାକଥିତ "ନାସ୍ତିବାଦ" ସମସ୍ତ ନେତୀକରଣକୁ ସୀମିତ କରି ଆଣିଥାଏ କେବଳ ଧ୍ୱଂସାତ୍ମକତାକୁ ଏବଂ ତା'ର ନିଜ ସ୍ୱାର୍ଥ ଦୃଷ୍ଟିରୁ ନେତୀକରଣକୁ ପ୍ରଘର କରିଥାଏ । "ନାସ୍ତିବାଦ" ବିଭିନ୍ନ ରୂପ ପରିଗ୍ରହ କରିଥାଏ, ଯଥା, ପଶ୍ଚାଦ୍‌ପଦ ଉପାଦାନସମୂହ ଦ୍ୱାରା ସାଂସ୍କୃତିକ ସ୍ମୃତି ସ୍ତମ୍ଭରାଜିର ଧ୍ୱଂସସାଧନ, ବିପ୍ଳବୀ ବାଗାଡ଼ମ୍ବରତାର ଆବରଣ ଦ୍ୱାରା ଏହି କାର୍ଯ୍ୟକୁ ଆବୃତ କରି, ହିପି ଦଳମାନଙ୍କ ଦ୍ୱାରା ପ୍ରତିଷ୍ଠିତ ବାସ୍ତବତାକୁ ନିଷ୍କ୍ରିୟ ବର୍ଜନ ଦ୍ୱାରା, ବାମପନ୍ଥୀ ଉଗ୍ରବାଦୀ ଏବଂ ନକଲୀ ବିପ୍ଳବୀ ଗୋଷ୍ଠୀଗୁଡ଼ିକ ଦ୍ୱାରା "ସଂପୂର୍ଣ୍ଣ ନେତୀକରଣ", ହତାଶ ଲୋକଙ୍କର ସୀମାହୀନ ସଂଶୟତା, ଏବଂ ବର୍ବରତା ତଥା ଗଣ ହତ୍ୟାମୂଳକ କାର୍ଯ୍ୟକଳାପ ।

ବୁର୍ଜୁଆ ପୁସ୍ତକ ପୁସ୍ତିକାଗୁଡ଼ିକ ଅନେକ ସମୟରେ କମ୍ୟୁନିଷ୍ଟମାନଙ୍କୁ ସୃଜନଶୀଳ କାର୍ଯ୍ୟକଳାପରେ ଅକ୍ଷମ, ଧ୍ୱଂସକାରକ ଏବଂ "ନାସ୍ତିବାଦୀ" ବୋଲି ଚିତ୍ରଣ କରିଥାନ୍ତି । ଏହା ନିଶ୍ଚିତ ରୂପେ ଏକ କୁତ୍ସାରଟନା, କାରଣ ସମାଜବାଦ ସବୁ କିଛି ପ୍ରତିକ୍ରିୟାଶୀଳ,

ପୁରାତନର ନେତୀକରଣ ଘଟାଇବା ସଙ୍ଗେ ସଙ୍ଗେ ନୂଆ ସମାଜର ବିକାଶ ପାଇଁ ଯାହା କିଛି ମୂଲ୍ୟବାନ, ସେସବୁକୁ ସାଇତିଥାଏ । ଲେନିନ୍ ଲେଖିଛନ୍ତି, "ପୁଞ୍ଜିବାଦ ତା ପଛରେ ଯେଉଁସବୁ ସଂସ୍କୃତିକୁ ରଖିଯାଇଛି, ସେସବୁକୁ ଆମକୁ ଗ୍ରହଣ କରିବାକୁ ହେବ ଏବଂ ସମାଜବାଦ ଗଢ଼ିବାକୁ ହେବ । ତା'ର ସମସ୍ତ ବିଜ୍ଞାନ, କାରିଗରି ବିଦ୍ୟା, ଜ୍ଞାନ, କଳାକୁ ନେବାକୁ ହେବ । ଏସବୁ ବିନା ଆମେ କମ୍ୟୁନିଷ୍ଟ ସମାଜ ଗଢ଼ି ପାରିବା ନାହିଁ ।"*

ନାସ୍ତିବାଦକୁ ସମାଲୋଚନା କଲା ବେଳେ ଯେକୌଣସି ନେତୀକରଣରେ କିଛି "ଅସ୍ତିବାଚକକୁ" ଖୋଜିବା ପାଇଁ ଉଦ୍ୟମ କରି ଅନ୍ୟ ଏକ ଚରମତାକୁ ଯିବା ମଧ୍ୟ ଭୁଲ । ସୁନିର୍ଦ୍ଦିଷ୍ଟ ନେତୀକରଣର ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦାବିରୁ ଏହା ଦ୍ୱାରା ଦୂରେଇ ଯିବାକୁ ହୁଏ । ସାମାଜିକ ପ୍ରଗତିର ସ୍ୱାର୍ଥ ଦିଗରୁ, ଏ କଥା ମଧ୍ୟ ଘଟିଥାଏ, ବେଳେ ବେଳେ ଦୃଢ଼ ଭାବେ କେତେକ ସାମାଜିକ ପ୍ରପଞ୍ଚକୁ କ୍ଷେପ କରି ଦିଆଯାଇଥାଏ, ତନ୍ମଧ୍ୟରେ ଥିବା କୌଣସି "ଅସ୍ତିବାଚକ" ଦିଗଗୁଡ଼ିକ ପ୍ରତି ଦୃଷ୍ଟି ନଦେଇ, କାରଣ ପ୍ରଗତିଶୀଳ ସାମାଜିକ ଶକ୍ତିସମୂହର ଆବଶ୍ୟକତା ତଥା ଆଦର୍ଶ ସହିତ ଏହା ସାମଗ୍ରିକ ଭାବେ ସଂଗତିଶୀଳ ହୁଏ ନାହିଁ ବୋଲି । ଦୃଷ୍ଟାନ୍ତ ସ୍ୱରୂପ, ଉନ୍ନୟନଶୀଳ ଦେଶମାନଙ୍କରେ ଧ୍ୱଂସମୂଳକ ନେତୀକରଣ ପ୍ରୟୋଗ କରିବାକୁ ପଡ଼ିବ ଉପନିବେଶବାଦ ଆଉ ସାମନ୍ତବାଦର ଅବଶେଷାଂଶସମୂହ ପ୍ରତି, ଆଉରି ଅଧିକ ଭାବେ ଦାସମାଲିକାନା ବ୍ୟବସ୍ଥାର ଉପାଦାନସମୂହ ଏବଂ ଶ୍ରେଣୀ ତଥା ଜାତିଗତ ଅନ୍ଧବିଶ୍ୱାସ, ଆଦି ପ୍ରତି ।

## ୪ – ବିକାଶର ସର୍ବବ୍ୟାପୀ ନିୟମ

ନେତୀକରଣର ଅବଧାରଣା ପ୍ରତି ଦ୍ୱନ୍ଦ୍ୱମୂଳକ ଏବଂ ଅଧିଭୌତିକ ଦୃଷ୍ଟିକୋଣର ମଧ୍ୟରେ ଥିବା ବିରୋଧିତାକୁ ବ୍ୟାଖ୍ୟା କଲା ପରେ ଆମେ ଏବେ ବିକାଶର ସାର୍ବିକ ନିୟମ ହିସାବରେ ନେତୀକରଣର ନେତୀକରଣ ସାରମର୍ମକୁ ବିଚାର କରି ପାରିବା । ଆମେ ଦେଖିଲେ, ଦ୍ୱନ୍ଦ୍ୱମୂଳକ ନେତୀକରଣ ଗୁଣାତ୍ମକ ଭାବେ ନୂତନ ପ୍ରପଞ୍ଚକୁ ଜନ୍ମ ଦେଇଥାଏ, ଯିଏକି ତା ପକ୍ଷରୁ ହେଉଛି ସହଜାତ ଭାବେ ବିରୋଧାତ୍ମକ ଏବଂ ଫଳତଃ, କେତେକ ପର୍ଯ୍ୟାୟରେ ନିଜର ନେତୀକରଣ ଘଟାଇଥାଏ । ତେଣୁ ସ୍ୱଭାବତଃ ଏହି ଦିଗରୁ ପ୍ରଶ୍ନ ଉଠେ: ଗୋଟିକ ପରେ ଗୋଟିଏ ଘଟି ଚାଲିଥିବା ଏହିସବୁ ନେତୀକରଣର କ'ଣ ଏକ

---

* ଭ୍ଲାଦିମିର୍ ଇଲିଚ୍ ଲେନିନ୍, "The Achievements and Difficulties of the Soviet Government", *Collected Works*, ୨୯ଶ ଖଣ୍ଡ, ମସ୍କୋ, ୧୯୬୫, ପୃ: ୭୦ ।

ନିୟମବଦ୍ଧତା ଅଛି ? ଗୁଣଗତ ପରିବର୍ତ୍ତନସମୂହର ସମଗ୍ର ପ୍ରକ୍ରିୟାର ସାଧାରଣ ପ୍ରବଣତା ଏବଂ ରୂପଟି ତା ହେଲେ କ'ଣ ?

ଏହିସବୁ ପ୍ରଶ୍ନର ଉତ୍ତର ଯେଉଁ ପଣ୍ଡିତ ଦେବାକୁ ଚେଷ୍ଟା କରିଥିଲେ ସେ ହେଉଛନ୍ତି ହେଗେଲ୍ । ସିଏହିଁ ପ୍ରଥମ କରି "ନେତୀକରଣର ନେତୀକରଣ" କଥାଟି ରଚନା କରିଥିଲେ, ବିକାଶର ବିଶେଷ ଏକ ନିୟମକୁ ଚିହ୍ନିତ କରିବାରେ ଏହାକୁ ବ୍ୟବହାର କରିବା ପାଇଁ । ହେଗେଲ୍‌ଙ୍କ ମତରେ ଅନାପେକ୍ଷିକ ଆଇଡିଆର ଯେକୌଣସି ସଂଜ୍ଞା ହେଉଛି ବିରୋଧାତ୍ମକ, ନିଜ ମଧ୍ୟରେ ଏକ ନେତୀକରଣର ବାହକ ତେଣୁ ଏହା ବିପରୀତରେ ପରିଣତ ହୁଏ ।* ଏହାର ପ୍ରତିବଦଳରେ, ପ୍ରଥମର ବିରୋଧିତା କରୁଥିବା ସଂଜ୍ଞାଟି (ପ୍ରବର୍ଗ) ନିଜେ ନେତୀକରଣର ଅଧୀନସ୍ଥ । ଦ୍ୱିତୀୟ ସଂଜ୍ଞାଟି ଯେହେତୁ ତା'ର ନିଜସ୍ୱ ନେତୀକରଣର ଯାତ୍ରାବିନ୍ଦୁର ନେତୀକରଣ, ଯିଏକି "ନେତୀକରଣର ନେତୀକରଣ" ରୂପେ ପ୍ରକଟିତ । ଏହି ପରି, ସାମଗ୍ରିକ ଭାବେ ବିକାଶ ତା'ର ଯାତ୍ରାବିନ୍ଦୁକୁ (ଥିସିସ୍) ଗ୍ରହଣ କରେ ଏକ ଗତି ରୂପ, ତା'ର ନେତୀକରଣ କରିଥାରେ ନେତୀକରଣର ନେତୀକରଣକୁ । ହେଗେଲ୍‌ଙ୍କ ମତରେ ନେତୀକରଣର ନେତୀକରଣ ପର୍ଯ୍ୟାୟରେ ଯାହା ଘଟେ, ସେ ହେଉଛି ଏକ ଦିଗରେ, ଯାତ୍ରାବିନ୍ଦୁଟି ଆଡ଼କୁ ପୁଣି ପ୍ରତ୍ୟାବର୍ତ୍ତନ ଏବଂ ଅନ୍ୟ ଦିଗରେ, ଆଇଡିଆର ସମୃଦ୍ଧୀକରଣ, କାରଣ ନେତୀକରଣର ନେତୀକରଣ ହେଉଛି ଅସ୍ତିବାଚକ ଏବଂ ନାସ୍ତିବାଚକ ସଂଜ୍ଞା ବା ଗୁଣସମୂହର ସର୍ବୋଚ୍ଚ ସମନ୍ୱୟ । ଅନ୍ୟାନ୍ୟ ବହୁ ଘଟଣା ଭଳି ହେଗେଲ୍ ଏଠାରେ ଅବଧାରଣାର ଦ୍ୱନ୍ଦ୍ୱବାଦ ମଧ୍ୟରେ ପଦାର୍ଥସମୂହର ବସ୍ତୁନିଷ୍ଠ ଦ୍ୱନ୍ଦ୍ୱର କେତେକ ଲକ୍ଷଣକୁ ଅନୁମାନ କରିଥିଲେ ।

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପ୍ରତିଷ୍ଠାତାମାନେ ନେତୀକରଣର ପ୍ରବର୍ଗର ଭାବବାଦୀ ବ୍ୟାଖ୍ୟା, ଏବଂ ହେଗେଲ୍‌ଙ୍କ ପରିକଳ୍ପନାକରଣକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ଦ୍ୱନ୍ଦ୍ୱବାଦର ଏକ ଉପାଦାନ ହିସାବରେ ନେତୀକରଣର ନେତୀକରଣର ପ୍ରକୃତ ଅର୍ଥକୁ ଉଦ୍‌ଘାଟନ କରିଥିଲେ । ବିକାଶର ଏହି ସର୍ବବ୍ୟାପୀ ନିୟମର ଆଧେୟଟି ସଂକ୍ଷେପ ଭାବେ ପ୍ରକାଶ ପାଇଥିଲା ନିମ୍ନଲିଖିତ ମତେ : (କ) ଯେକୌଣସି ବିକାଶ କେତେକ ପର୍ଯ୍ୟାୟ ହିସାବରେ ପ୍ରକାଶ ପାଇଥାଏ ଏବଂ ସେସବୁ ପରସ୍ପର ସହିତ ଏପରି ଭାବେ ଯୁକ୍ତ ଯେ, ଗୋଟିଏ ହେଉଛି ଅନ୍ୟଟିର ନେତୀକରଣ; (ଖ) ଦ୍ୱନ୍ଦ୍ୱମୂଳକ ନେତୀକରଣର ପ୍ରକ୍ରିୟାଟା ବିକାଶର ପୂର୍ବବର୍ତ୍ତୀ ପର୍ଯ୍ୟାୟସମୂହର ଅସ୍ତିବାଚକ ଦିଗଗୁଡ଼ିକର ସମନ୍ୱୟ ଘଟାଇଥାଏ, ଯିଏକି ପୁରୁଣା ଏବଂ ନୂଆ ଗୁଣସମୂହ ମଧ୍ୟରେ ଧାରାବାହିକତା ବଜାଏ ରଖେ; (ଗ) ଏହି ଧାରାବାହିକତା ସମଗ୍ର ପ୍ରକ୍ରିୟାକୁ ସମୃଦ୍ଧ କରିଥାଏ ତାକୁ ଆରୋହରଣମୁଖୀ ଏବଂ

---

*ଆମକୁ ମନେ ରଖିବାକୁ ହେବ ଯେ, ହେଗେଲ୍‌ଙ୍କ ମତରେ ବିକାଶ ବୋଇଲେ ଅନପେକ୍ଷ ପରମାତ୍ମା ବା ଆବସଲ୍ୟୁଟ ଆଇଡିଆ ମଧ୍ୟରେ ନିହିତ ଅବଧାରଣା ଏବଂ ପ୍ରବର୍ଗଗୁଡ଼ିକର ଆତ୍ମପ୍ରକାଶ ରୂପ ।

ପ୍ରଗତିଶୀଳ ଗତିର ଚରିତ୍ର ପ୍ରଦାନ କରି ; (ଘ) ଆପେକ୍ଷିକ ପୁନରାବର୍ତ୍ତନ , ସମ୍ଭବତଃ , ବିକାଶ ପ୍ରକ୍ରିୟାରେ ପୁରାତନକୁ ପ୍ରତ୍ୟାବର୍ତ୍ତନ କରେ , ପରବର୍ତ୍ତୀ ଗୋଟିକ ପରେ ଗୋଟିଏ ପ୍ରକ୍ରିୟାରେ ବିରୋଧଗୁଡ଼ିକର ପାରସ୍ପରିକ ଉତ୍ତରଣ ଦ୍ୱାରା ତା'ର ବ୍ୟାଖ୍ୟା ମିଳିଥାଏ ।

ତେଣୁ କରି ପ୍ରକୃତି ଏବଂ ମାନବ ସମାଜରେ ବିକାଶ ଏବଂ ଅବଗତିର ପ୍ରକ୍ରିୟାକୁ ଏକ ସରଳ ରେଖା ଦ୍ୱାରା ପ୍ରକାଶ ନକରି ଆଉରି ଯଥେଷ୍ଟ ଭାବେ ପ୍ରକାଶ କରି ହେବ ଏକ "କୁଣ୍ଡଳିର" ପ୍ରତୀକ ଦ୍ୱାରା । ଏହି ପ୍ରତୀକଟି ବିକାଶର ଅଗ୍ରଗତି , ପ୍ରଗତିଶୀଳ ତଥା ପ୍ରତ୍ୟାବର୍ତ୍ତନଶୀଳ ପରିବର୍ତ୍ତନରାଜି ମଧ୍ୟରେ ଐକ୍ୟ , ଅର୍ଦ୍ଧ ପ୍ରତ୍ୟାବର୍ତ୍ତନ ଏବଂ ଗୋଟିଏ ଚକ୍ରର ଆପେକ୍ଷିକ ସଂପୂର୍ଣ୍ଣତାର ଦିଗଗୁଡ଼ିକୁ ପ୍ରକାଶ କରିଥାଏ ।

ଏଠାରେ କେତେକ ଉଦାହରଣ ଦେଉଛୁ । ଅଜୈବ ପ୍ରକୃତିରେ ନେତୀକରଣର ନେତୀକରଣ ରାସାୟନିକ ଉପାଦାନସମୂହର ବିବର୍ତ୍ତନରେ ଆଉରି ଅଧିକ ପରିଷ୍କାର ଭାବେ ପ୍ରକାଶ ପାଇଥାଏ । ଅଣୁପିଣ୍ଡଗୁଡ଼ିକ ଏବଂ ଆଣବିକ ଖୋଳପାଗୁଡ଼ିକ ସେମାନଙ୍କ ଗଠଣରେ



୧ ୨ ୩ ୪

ବିକାଶର ବିଭିନ୍ନ ପର୍ଯ୍ୟାୟରେ ମେରୁଦଣ୍ଡୀ ପ୍ରାଣୀମାନଙ୍କର ଭ୍ରୂଣ

୧ ମାଛ ୨ ଏଣ୍ଡୁଅ ୩ ଠେକୁଆ ୪ ମଣିଷ

ଯେତେ ଜଟିଳ ହୁଅନ୍ତି ରାସାୟନିକ ଉପାଦାନସମୂହର ରାସାୟନିକ ଧର୍ମସମୂହ ସାମୟିକ ଭାବେ ନିଜକୁ ପୁନରାବୃତ୍ତ କରିଥାନ୍ତି କିଛି ପରିମାଣରେ ରାସାୟନିକ ଉପାଦାନସମୂହର ମେଣ୍ଡେଲେୟେଭ୍‌ଙ୍କ ନିୟମ ଅନୁଯାୟୀ । ଏହି ସମସ୍ତ ଧର୍ମର ପୁନରାବର୍ତ୍ତନକୁ ପାରମାଣବିକ ଖୋଳପାରେ ଇଲେକ୍‌ଟ୍ରନ୍‌ସମୂହର ସଂଖ୍ୟାରେ ନିୟମିତ ଅଭିବୃଦ୍ଧିର ପ୍ରକ୍ରିୟାରେ ପୁନରାବୃତ୍ତ ଇଲେକ୍‌ଟ୍ରନିକର ବହିରାକୃତି ଦ୍ୱାରା ବିଶ୍ଳେଷିତ ହୋଇଥାଏ । ଜୀବବିଜ୍ଞାନ କ୍ଷେତ୍ରରେ ନେତୀକରଣର ନେତୀକରଣ ପ୍ରକାଶ ପାଇଥାଏ ଜୀବାଙ୍ଗର ପୁନଃସୃଷ୍ଟିକରଣ ମଧ୍ୟରେ, ତା'ର ନିଜସ୍ୱ ବିକାଶ, କ୍ଷୁଦ୍ରାୟିତ ଗଢ଼ଣରେ ମୁଖ୍ୟ ପର୍ଯ୍ୟାୟ ମଧ୍ୟରେ, ତା'ର ଜୀବଜାତିର ବିକାଶ, ତା'ର ସୁଦୂର ବା ଅଦୂର ପୂର୍ବପୁରୁଷମାନଙ୍କ ଇତିହାସରେ । ମଣିଷର ଭ୍ରୂଣ ଡିମ୍ବକୋଷର ଗର୍ଭାଧାନ ମଧ୍ୟରୁ ସୃଷ୍ଟ ହୋଇ ତା'ର ଭ୍ରୂଣଗତ ବିକାଶ ପ୍ରକ୍ରିୟା ମଧ୍ୟ ଦେଇ, ଯେମିତି ଯିବାର କଥା, ପ୍ରାଣୀଜଗତର ମୁଖ୍ୟ ପର୍ଯ୍ୟାୟଗୁଡ଼ିକ ମଧ୍ୟ ଦେଇ ଯାଏ (ପ୍ରଥମ ଅବସ୍ଥାରେ ଏହାର ମାଛ ଗାଲି, ଲାଙ୍ଗୁଡ଼, ଆଦି ଥାଏ) । ଶିଶୁଟି ଜନ୍ମ ନେଲା ପରେ ତା ଅଙ୍ଗ ବିକାଶ ଲାଭ କରି କରିବା ଯାଏ । ଏଥି ସଙ୍ଗେ ସଙ୍ଗେ ଜୈବିକ ପ୍ରକ୍ରିୟା ଉପରେ ଆରୋପିତ ହେବାକୁ ଲାଗେ ସାମାଜିକ ପ୍ରକ୍ରିୟା : ଶିଶୁଟି ସାମାଜିକ ପରମ୍ପରାକୁ ଆୟତ୍ତ କରିବାକୁ ଲାଗେ, ଅର୍ଥାତ୍, ଭାଷା, କାର୍ଯ୍ୟାଭ୍ୟାସ, ମିଳାମିଶା ଆଦି, ଜନସାଧାରଣଙ୍କ ସହିତ ଭାବର ଆଦାନ ପ୍ରଦାନ ଏବଂ ତା'ର ଲାଳନ ପାଳନ ମାଧ୍ୟମରେ । ଏଠାରେ ମଧ୍ୟ, ଶିଶୁଟି ତା'ର ବିକାଶରେ ପୁନରାବୃତ୍ତି ଘଟାଏ ଶ୍ରମ, ଚିନ୍ତନ ଏବଂ ଭାଷାର ବିକାଶର ମୁଖ୍ୟ ପର୍ଯ୍ୟାୟଗୁଡ଼ିକରେ ।

ନେତୀକରଣର ନେତୀକରଣ ଜରିଆରେ ସାମାଜିକ ପ୍ରପଞ୍ଚର ବିକାଶକୁ ଚିତ୍ରଣ କରି ହେବ ମାର୍କସ୍‌ଙ୍କ ଦ୍ୱାରା "କ୍ୟାପିଟାଲ" ଗ୍ରନ୍ଥରେ ପ୍ରଦତ୍ତ ଦୃଷ୍ଟାନ୍ତ ଦ୍ୱାରା । ପୁଞ୍ଜିବାଦୀ ଉତ୍ପାଦନ ପଦ୍ଧତିର ଅଭ୍ୟୁଦୟ କାଳରେ କ୍ଷୁଦ୍ର କ୍ଷୁଦ୍ର ଉତ୍ପାଦକମାନଙ୍କର ଶ୍ରମ ସଂପଦକୁ ଅପହରଣ କରାଯାଇଥିଲା । ଶ୍ରମର ଉପାୟ ଉପକରଣ, ଜମି ଉପରେ କୃଷକମାନଙ୍କ ମାଲିକାନା ଏବଂ ସାର୍ବିକ ଭାବେ କ୍ଷୁଦ୍ର ଉତ୍ପାଦନର ନେତୀକରଣ ଘଟାଇଥିଲା ଅନ୍ୟର ଶ୍ରମକୁ ଶୋଷଣ କରିବା ଉପରେ ପ୍ରତିଷ୍ଠିତ ବୃହଦାକାର ପୁଞ୍ଜିବାଦୀ ଉତ୍ପାଦନ । ବୁର୍ଜୁଆ ସମାଜର ବିକାଶ ଭଳି ଏହା ବିକାଶ ଲାଭ କରିଥିଲା ପୁଞ୍ଜିର ଠୁଳୀକରଣ, ଉପାୟ ଉପକରଣର ଠୁଳୀକରଣ ଏବଂ ଶ୍ରମର ସାମାଜିକୀକରଣ ଆଡ଼କୁ; ଶେଷତଃ ଏସବୁ ଏଭଳି ଏକ ସ୍ତରରେ ପହଞ୍ଚିଥିଲା ଯେ, ଯେଉଁଠି ଉତ୍ପାଦନର ବୁର୍ଜୁଆ ସଂପର୍କରାଜି ସହିତ ସଂଗତିହୀନ ହୋଇ ପଡ଼ିଲା । ମାର୍କସ୍ କହିଥିଲେ, "ପୁଞ୍ଜିବାଦୀ ବ୍ୟକ୍ତିଗତ ମାଲିକାନାର ମୃତ୍ୟୁ ଘଣ୍ଟା କହୁଛି, ଅପହରଣକାରୀମାନେ ଅପହୃତ ହେଉଛନ୍ତି ।

"ପୁଞ୍ଜିବାଦୀ ଆତ୍ମସାତକରଣ ପଦ୍ଧତି, ପୁଞ୍ଜିବାଦୀ ଉତ୍ପାଦନ ପଦ୍ଧତିର ଫଳ ଦ୍ୱାରା ପୁଞ୍ଜିବାଦୀ ବ୍ୟକ୍ତିଗତ ସଂପଦ ସୃଷ୍ଟି ହୁଏ । ମାଲିକର ଶ୍ରମ ଉପରେ ଗଠିତ ବ୍ୟକ୍ତିର ବ୍ୟକ୍ତିଗତ ସଂପଦର ଏହା ହେଉଛି ପ୍ରଥମ ନେତୀକରଣ । କିନ୍ତୁ ପୁଞ୍ଜିବାଦୀ ଉତ୍ପାଦନ, ପ୍ରକୃତିର ନିୟମର କଠିନତା ଅନୁଯାୟୀ ଜନ୍ମ ଦିଏ ତା'ର ନିଜସ୍ୱ ନେତୀକରଣକୁ । ଏହା

ହେଉଛି ନେତୀକରଣର ନେତୀକରଣ । ଏହା ଉତ୍ପାଦକର ବ୍ୟକ୍ତିଗତ ସଂପତ୍ତିକୁ ପୁନର୍ସ୍ଥାପନ କରେ ନାହିଁ, କିନ୍ତୁ ତାକୁ ବ୍ୟକ୍ତିଗତ ମାଲିକାନା କରେ, ଯେଉଁ ମାଲିକାନା ପୁଞ୍ଜିବାଦୀ ଯୁଗର ଅର୍ଜନ ଉପରେ ପ୍ରତିଷ୍ଠିତ, ଅର୍ଥାତ୍, ସମବାୟ, ଜମି ତଥା ଉତ୍ପାଦନର ଉପାୟ ଉପକରଣ ଉପରେ ସାଧାରଣ ମାଲିକାନା ଉପରେ ପ୍ରତିଷ୍ଠିତ ।"*

## ୫.—ଦ୍ୱନ୍ଦ୍ୱବାଦ ଏବଂ "ତ୍ରୟୀ"

ଆମକୁ ମନେ ରଖିବାକୁ ହେବ ଯେ, ମାର୍କସ୍‌ଙ୍କ ବିରୋଧୀମାନେ ଅନେକ ସମୟରେ ଏହି ନଜିରଟିର ଏକ ଅପବ୍ୟାଖ୍ୟା ଦେଇଥାନ୍ତି ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ଏବଂ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ପଦ୍ଧତି ସହିତ ତଥାକଥିତ "ତ୍ରୟୀ"କୁ ମିଶେଇ ଦେଇ, କିନ୍ତୁ ନେତୀକରଣର ନେତୀକରଣକୁ (ସମସ୍ତ ଦ୍ୱନ୍ଦ୍ୱବାଦକୁ କହିଲେ ଚଳେ) ତ୍ରୟୀକୁ ସୀମିତ କରି ଆଣିବାଟା ଏକ ଉଦ୍‌ଭଟତା ଛଡ଼ା ଆଉ କିଛି ନୁହେଁ । ଅସ୍ତିତ୍ୱସୂଚକତା (ଥିସିସ୍), ନେତୀକରଣ (ଆଣ୍ଟିଥିସିସ୍), ନେତୀକରଣର ନେତୀକରଣର (ସମନ୍ୱୟ) କଠୋର ଭାବେ ବ୍ୟାଖ୍ୟା କରୁଥିବା ସୂତ୍ର ଅନୁଯାୟୀ ତ୍ରୟୀ ହେଉଛି ଏକ ଚକ୍ରାକାର ବିକାଶ । ଏହି ତିନୋଟି ଯାକ ପର୍ଯ୍ୟାୟ ପୃଥକ୍ ପୃଥକ୍ ଭାବେ ଅବସ୍ଥାନ କରେ, ପ୍ରଥମ ଏବଂ ଦ୍ୱିତୀୟଟି ମନେ ହୁଏ ଏକ ଅସ୍ଥାୟୀ ବିରତି ଦ୍ୱାରା ପୃଥକ୍ କରା ଭିନ୍ନ ପ୍ରପଞ୍ଚରାଶି ଭଳି । ଏହାର ପ୍ରବକ୍ତାଗଣ ଘୋଷଣା କରନ୍ତି ତ୍ରୟୀକୁ ବିକାଶର ଅନପେକ୍ଷ ରୂପ ବୋଲି ଏବଂ ବ୍ୟାପକ ଭାବେ ଭିନ୍ନ ଭିନ୍ନ ପ୍ରକ୍ରିୟାସମୂହକୁ ବିଶ୍ଳେଷଣ କରିବା ପାଇଁ ଏହାକୁ ଏକ ସାର୍ବିକ ପଦ୍ଧତିର ପ୍ରମାଣ ରୂପେ ବ୍ୟବହାର କରନ୍ତି ।

ନେତୀକରଣର ନେତୀକରଣ ନିୟମର ସାରମର୍ମ କ'ଣ ତ୍ରୟୀର ଅବଧାରଣା ଦ୍ୱାରା ନିଃଶେଷିତ ହୋଇ ଯାଏ ? ନିଶ୍ଚୟ ନୁହେଁ । ତ୍ରୟୀର ଅର୍ଥ ସେତିକିବେଳେ ପ୍ରକାଶ ପାଏ, ଯେତେବେଳେ ଏହା ଏକ ଦ୍ୱନ୍ଦ୍ୱର ବିକାଶକୁ ତା'ର ବିରୋଧସମୂହର ମେରୁଭବନ ଏବଂ ଦ୍ୱନ୍ଦ୍ୱର ସମାଧାନ ପାଇଁ ସଂଗ୍ରାମ ମାଧ୍ୟମରେ ସେସବୁର ପରିଚିତିର ପ୍ରାରମ୍ଭିକ ଅବସ୍ଥାରୁ ସେ ଦ୍ୱନ୍ଦ୍ୱର ବିକାଶର ଅବଧାରଣାମୂଳକ ବ୍ୟାଖ୍ୟା କଥା ଉଲ୍ଲେଖ କରେ । ତେଣୁ କରି ହେଗେଲ୍‌ଙ୍କ ଦର୍ଶନରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଥିଲା ଅବଧାରଣାର ସ୍ୱବିକାଶ ଉପରେ ଗୁରୁତ୍ୱ ପ୍ରଦାନ ଦ୍ୱାରା । ଏତଦ୍‌ବ୍ୟତୀତ, ହେଗେଲ୍ "ନେତୀକରଣର ନେତୀକରଣ" ବା "ତୃତୀୟ"କୁ ପ୍ରକୃତ ଦ୍ୱନ୍ଦ୍ୱର ସମାଧାନ ହିସାବରେ ବ୍ୟାଖ୍ୟା କରିବା ପରିବର୍ତ୍ତେ କେତେକ ଉଚ୍ଚତର ସମନ୍ୱୟରେ ବିରୋଧସମୂହର ନିରପେକ୍ଷକରଣ ବା ସୁସମଞ୍ଜସକରଣ ହିସାବରେ । ତା ସତ୍ତ୍ୱେ ବି ସେ ତ୍ରୟୀକୁ (Triplicität) ବିଚାର କରୁଥିଲେ "ପ୍ରକୃତିରେ ଏବଂ ମୋଟାମୋଟି ଭାବେ ଜ୍ଞାନ ପଦ୍ଧତିର, କେବଳ ଉପରଠାଉରିଆ

---

* କାର୍ଲ ମାର୍କସ୍, "କ୍ୟାପିଟାଲ", ୧ମ ଖଣ୍ଡ, ପୃ: ୭୧୫ ।

ଏବଂ ବାହ୍ୟିକ ଦିଗ ହିସାବରେ ।"* ଏ କଥା ସତ ଯେ, ଏହି ସଠିକ ଆଇଡିଆର ବିପରୀତରେ ହେଗେଲ୍ ମଧ୍ୟ ଘୋଷଣା କରିଥିଲେ ଯେ, ତ୍ରୟୀକୁ ତାଙ୍କ ଦ୍ୱନ୍ଦ୍ୱମୂଳକ ପଦ୍ଧତିର ସାର୍ବିକ ରୂପ ହେବାକୁ ହେବ, ଯିଏକି ଅନେକ କ୍ଷେତ୍ରରେ ତାଙ୍କୁ ଆଗେଇ ନେଇଥିଲା ବାସ୍ତବ ପ୍ରପଞ୍ଚରାଜିର ଜୋରଜବରଦସ୍ତ ପରିଯୋଜନା ଆଡ଼କୁ ।

ପ୍ରକୃତିରେ ଅନେକ ସମୟରେ ପ୍ରକ୍ରିୟାସବୁ ଘଟିଥାଏ, ଯାହାକୁ ସେ ତ୍ରିଚାଳର ଅନୁବର୍ତ୍ତୀ ବୋଲି ବିଗ୍ଭର କରୁଥିଲେ । ଖାଦ୍ୟ ଦ୍ରବ୍ୟସମୂହର ବିକାଶ ତନ୍ମଧ୍ୟରେ ଯାଏ, ଯଥା ଶସ୍ୟ – ଉଦ୍‌ଭିଦ – ପତ୍ର, କିନ୍ତୁ ନେତୀକରଣର ନେତୀକରଣର ସମସ୍ତ ଉଦାହରଣ (ଅସ୍ୱୀକୃତି, ଧ୍ୱଂସ, ଅଗ୍ରଗମନ, ନକଲି ପ୍ରତ୍ୟାବର୍ତ୍ତନ, ଆଦି) ମଧ୍ୟରେ ଏକ୍ୟ ତା'ର ଏକାନ୍ତ ଆଧେୟ ପାଇଁ ଏହି "ହିସାବଟା" ମନେ ହୁଏ ବାହାରୁ ଯେମିତି ସେଥିରେ ଉପରଠାଉରିଆ ଭାବେ ପ୍ରବେଶ କରାଇ ଦିଆଯାଇଛି । ତ୍ରୟୀ ହେଉଛି ପ୍ରକ୍ରିୟାର ପରିମାଣଗତ ଦିଗର କେତେକ ଦୃଷ୍ଟିରୁ ଏକ ସ୍ଥାୟୀ ଭାବେ ଯୁକ୍ତ ସରଞ୍ଜାମ । ହିସାବର ଏକକ ହିସାବରେ କୌଣସି ପଦାର୍ଥର ବିଭିନ୍ନ ନିର୍ଦ୍ଦିଷ୍ଟତାକୁ – ଉଭୟ 'ତିନି' ଏବଂ ଅନ୍ୟାନ୍ୟ ସଂଖ୍ୟାକୁ ଗ୍ରହଣ କରାଯାଇ ପାରେ । ଉଦାହରଣ ସ୍ୱରୂପ, ରାସାୟନିକ ଉପାଦାନସମୂହର ସାମୟିକ ବ୍ୟବସ୍ଥାରେ କେତେକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟର ପୁନରାବର୍ତ୍ତନ ପ୍ରକଟିତ ହୋଇଥାଏ ଦୁଇଟିରୁ ଅଧିକ ଲଗାଲଗି "ନେତୀକରଣରେ", କାରଣ ଉପାଦାନଗୁଡ଼ିକ ମଧ୍ୟରୁ ପ୍ରତ୍ୟେକଟି ତତ୍‌ପୂର୍ବବର୍ତ୍ତୀ ଉପାଦାନଠାରୁ, ଅର୍ଥାତ୍, ତା'ର ନେତୀକରଣ ହିସାବରେ କିଛି ପରିମାଣରେ ଭିନ୍ନ ବୋଲି ମନେ ହୁଏ । ପୃଥକ୍ ପୃଥକ୍ ଭାବେ ପ୍ରତିଷ୍ଠିତ ବିକାଶର ତିନୋଟି ପର୍ଯ୍ୟାୟ ହିସାବରେ ତ୍ରୟୀର ଅନ୍ୱେଷଣ କରିବାଟା ଅନେକ ସମୟରେ ବାସ୍ତବ ପ୍ରକ୍ରିୟାର ଏକ ସ୍ଥୂଳ ଯୋଜନାବଦ୍ଧତା ଆଡ଼କୁ ଘେନିଯାଏ ।

ଯୁକ୍ତିବିଦ୍ୟା କ୍ଷେତ୍ରରେ ତ୍ରୟୀ ସୂତ୍ରଟିର ବ୍ୟବହାର ପ୍ରତି ମଧ୍ୟ ଏହା ପ୍ରଯୋଜ୍ୟ । ମାର୍କସ୍‌ବାଦ ତ୍ରୟୀ ଉପରେ ଏବଂ ବିମୂର୍ତ୍ତ ଶୃଙ୍ଖଳାବଦ୍ଧ ବ୍ୟବସ୍ଥାରେ ବିଶ୍ୱାସ କରେ ବୋଲି ଯେଉଁ ଅଭିଯୋଗ ହୁଏ, ତା, ହୁଏତ, ବସ୍ତୁର ସାରସତ୍ତା ସଂପର୍କରେ ଅଜ୍ଞତା ବା ଇଚ୍ଛାକୃତ ମିଥ୍ୟାକରଣ ହେତୁ କରାଯାଇଥାଏ । ମାର୍କସ୍ ତାଙ୍କ "କ୍ୟାପିଟାଲ" ଗ୍ରନ୍ଥରେ ଯେଉଁ ଭିତ୍ତିରେ ସମାଜବାଦୀ ବିପ୍ଳବର ନିୟମାନୁଗ ଚରିତ୍ର ଏବଂ "ଉଚ୍ଛେଦକାରୀମାନଙ୍କର ଉଚ୍ଛେଦକରଣର" ସିଦ୍ଧାନ୍ତ ଟାଣିଥିଲେ ତାହା କ'ଣ ସେଇ ତ୍ରୟୀ ଉପରେ ଭିତ୍ତି କରି ? ନିଶ୍ଚୟ ନୁହେଁ । ପୁଞ୍ଜିବାଦୀ ଉତ୍ପାଦନ ପଦ୍ଧତିର ସାରମର୍ମ ଏବଂ ନିୟମର ବିଶ୍ଳେଷଣ ଏବଂ ବୁର୍ଜୁଆ ସମାଜର ଆଭ୍ୟନ୍ତରୀଣ ବୈରିତା ଏବଂ ଶ୍ରେଣୀ ସଂପର୍କର ବ୍ୟାଖ୍ୟା ଦ୍ୱାରା ମାର୍କସ୍ ଏକ

---

*G. W. F. Hegel, "*Sämtliche Werke*", Fünfter Band. Wissenschaft der Logik, Zweiter Teil. Die subjektive Logik oder Lehre vom Begriff, Fr. Frommanns Verlag, Stuttgart, 1928, S. 344.


ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ଗଢ଼ଣ
ନୀତିରାଜି
ନିୟମାବଳୀ
ପ୍ରବର୍ଗସମୂହ
ପ୍ରପଞ୍ଚସମୂହର ବିଶ୍ୱବ୍ୟାପୀ ଯୋଗସୂତ୍ରର ନୀତି
ଗତି ଏବଂ ବିକାଶର ବିଶ୍ୱବ୍ୟାପୀ ଯୋଗସୂତ୍ରର ନୀତି
ପ୍ରପଞ୍ଚସମୂହ ପ୍ରତି ଐତିହାସିକ ଦୃଷ୍ଟିକୋଣ
ବିଶେଷ ଅବସ୍ଥାର ନିର୍ଦ୍ଦିଷ୍ଟ ବିଶ୍ଳେଷଣ
ଐତିହାସିକ ଘଟଣାସମୂହ ଏବଂ କର୍ତ୍ତବ୍ୟରାଜିର କଞ୍ଜିରରେ ମୁଖ୍ୟ କଡ଼ି
ବୈପରିତ୍ୟସମୂହ ମଧ୍ୟରେ ଐକ୍ୟ ଏବଂ ସଂଗ୍ରାମର ନିୟମଟି ହେଉଛି ଦ୍ୱନ୍ଦ୍ୱବାଦର କେନ୍ଦ୍ର ଏବଂ ସାରମର୍ମ
ଗୁଣାତ୍ମକ ପରିବର୍ତ୍ତନକୁ ପରିମାଣାତ୍ମକ ପରିବର୍ତ୍ତନର ଉତ୍ତରଣ ଏବଂ ପଶ୍ଚାଦ୍‌ଗମନର ନିୟମ
ନେତୀକରଣର ନେତୀକରଣ ନିୟମ
ସାରମର୍ମ
ପ୍ରପଞ୍ଚ
ଆଧେୟ
ରୂପ
କାରଣ
ଫଳ
ଆବଶ୍ୟକତା
ଆକସ୍ମିକତା
ସମ୍ଭାବ୍ୟତା
ବାସ୍ତବତା
ଐତିହାସିକ
ଯୁକ୍ତିଯୁକ୍ତ
ବ୍ୟକ୍ତିଗତ
ନିର୍ଦ୍ଦିଷ୍ଟ
ସାର୍ବିକ

ବୈଜ୍ଞାନିକ ଇତିହାସସମ୍ମତ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ – ସାମାଜିକ ବ୍ୟବସ୍ଥା ହିସାବରେ ନିୟମାନୁଗ ନିଜକୁ ନିଜେ ନେତୀକରଣ କରୁଥିବା ପୁଞ୍ଜିବାଦ ସଂପର୍କରେ । ଅନ୍ୟ ଦିଗରେ, ମାର୍କସ୍ ସାର୍ବିକ ଭାବେ ସମସ୍ତ ଜଗତ କ୍ଷେତ୍ରରେ ଏବଂ ବିଶେଷ କରି ତା'ର ପ୍ରତ୍ୟେକଟି ଭିନ୍ନ ଭିନ୍ନ ପରିପ୍ରକାଶର ଦ୍ୱନ୍ଦ୍ୱମୂଳକ ପଥରେ ବିକାଶ କ୍ଷେତ୍ରରେ ତାଙ୍କର ସିଦ୍ଧାନ୍ତଗୁଡ଼ିକର ସୂତ୍ରାୟନ କରିବା ପାଇଁ ନେତୀକରଣର ନେତୀକରଣ ଅବଧାରଣାକୁ ବ୍ୟବହାର କରିଥିଲେ ଏବଂ ପୁଞ୍ଜିବାଦ ସେଥିରୁ ବାଦ୍ ଯିବାର କଥା ନୁହେଁ ।

ନିଜକୁ ନିଜେ ବିକାଶ ଲାଭ କରୁଥିବା ବସ୍ତୁର ସାଧାରଣ ନିୟମାନୁଗତତାର ବିଜ୍ଞାନସିଦ୍ଧ ଅବଧାରଣା ଦ୍ୱନ୍ଦ୍ୱବାଦର ମୁଖ୍ୟ ନିୟମଗୁଡ଼ିକର ଅନ୍ତର୍ଗତ, ଯେଉଁସବୁ ସଂପର୍କରେ ଆମେ ଏଠାରେ ଆଲୋଚନା କଲେ । ଆମେ ଯଦି ବସ୍ତୁଗତ ବାସ୍ତବତାକୁ ତା'ର ସମସ୍ତ ଜଟିଳତା ଏବଂ ବ୍ୟାପକତା ସହ ଚିନ୍ତା କରେ, ତେବେ ଆମେ କେବଳ ବିକାଶର ମୂଳ ଉତ୍ସଟିକୁ (ବୈରିତ୍ୟସମୂହ ମଧ୍ୟରେ ଐକ୍ୟ ଏବଂ ସଂଗ୍ରାମ), ବାସ୍ତବତା ମଧ୍ୟରେ ପରିବର୍ତ୍ତନରାଜି ସଂଘଟିତ କରିବାର ଉପାୟ (ଗୁଣରୁ ପରିମାଣରୁ ଉତ୍ତରଣ ଏବଂ ପ୍ରତ୍ୟାବର୍ତ୍ତନ) ଏବଂ ନିର୍ଦ୍ଦିଷ୍ଟ ବସ୍ତୁବାଦୀ ବ୍ୟବସ୍ଥାରେ ଗୁଣାତ୍ମକ ପରିବର୍ତ୍ତନରାଜିର ଗତିମୁଖ (ନେତୀକରଣର ନେତୀକରଣ) ବାହାର କରି ପାରିବା ନାହିଁ, ଆମେ ବସ୍ତୁଗତ ବାସ୍ତବତାର ଅନ୍ୟାନ୍ୟ ବହୁ ଆବଶ୍ୟକୀୟ ଦିଗ ସଂପର୍କରେ ନିଶ୍ଚିତ ରୂପେ ଜାଣି ପାରିବା । ଏହା ଛଡ଼ା, ବିକାଶର ଦ୍ୱନ୍ଦ୍ୱମୂଳକ ଅବଧାରଣାର ମୁଖ୍ୟ ଅବସ୍ଥାନସମୂହ ସେତିକିବେଳେ ଆଉରି ଅଧିକ ନିର୍ଦ୍ଦିଷ୍ଟ ହୋଇ ଉଠେ, ସେଗୁଡ଼ିକ ଯେତେବେଳେ ବାସ୍ତବତାର ବିଭିନ୍ନ ଦିଗ ପ୍ରତି ପ୍ରଯୁକ୍ତ ହୁଏ । ଏ କ୍ଷେତ୍ରରେ ମାନବ ସମାଜର ବିଶେଷ ଦ୍ୱନ୍ଦ୍ୱବାଦ ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରିବାକୁ ପଡ଼େ ।

# ନବମ ପରିଚ୍ଛେଦ

# ସମାଜ : ବିକାଶର ବସ୍ତୁଗତ ନିୟମାନୁଗତା ଏବଂ ଜନସାଧାରଣଙ୍କ କ୍ରିୟାକଳାପ

ବସ୍ତୁର ବିକାଶ ସଙ୍ଗେ ସଙ୍ଗେ ବସ୍ତୁଗତ ଦ୍ୱନ୍ଦ୍ୱବାଦର ପରିବର୍ତ୍ତନ ଘଟିଥାଏ : ଗୁଣଗତ ଭାବେ ନୂତନ ନିୟମ ଏବଂ ଦ୍ୱନ୍ଦ୍ୱସମୂହ ଦେଖା ଦିଏ ଏବଂ ବିବର୍ତ୍ତନର ମାତ୍ରାରେ ଅଭିବୃଦ୍ଧି ଘଟେ , ଆଦି । ଏହି ଭାବେ ସାଧାରଣ ଦ୍ୱନ୍ଦ୍ୱମୂଳକ ନିୟମବଦ୍ଧତା ବିଶେଷ ନିୟମବଦ୍ଧତାରେ ପରିଣତ ହୁଏ ଏବଂ ସାମାଜିକ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଭାବେ ବିଶଦ ଭାବେ ପ୍ରକାଶ ପାଇଥାଏ ।

## ୧ – ସାମାଜିକ ଜୀବନର ଦ୍ୱନ୍ଦ୍ୱବାଦ

ବସ୍ତୁ ଗତିର ସର୍ବୋଚ୍ଚ , ସାମାଜିକ ରୂପ ହେଉଛି ମାନବ ସମାଜ । ଏହା ହେଉଛି ଜନସାଧାରଣଙ୍କ ମଧ୍ୟରେ ପାରସ୍ପରିକ କ୍ରିୟାର ଫଳ , ଅର୍ଥାତ୍ , ଏହା ପ୍ରକାଶ କରିଥାଏ ସେମାନଙ୍କର ବହୁବିଧ ଭୌତିକ ଏବଂ ଆତ୍ମିକ ସଂପର୍କରାଜିର ଜଟିଳ ଗତିମାନ ବ୍ୟବସ୍ଥାକୁ ।

ସମାଜର ବିକାଶ ସଙ୍ଗେ ସଙ୍ଗେ ବିକାଶର ବସ୍ତୁନିଷ୍ଠ ଦ୍ୱନ୍ଦ୍ୱବାଦ ଆଉରି ମୌଳିକ ଭାବେ ସମୃଦ୍ଧ ଏବଂ ଆଉରି ଜଟିଳ ହୋଇ ଉଠେ । ତା'ର କାରଣ ହେଉଛି , ଲୋକମାନଙ୍କର ଥାଏ ଚେତନା , ଅନୁଭବ ଶକ୍ତି ଏବଂ ଇଚ୍ଛା , ଯେଉଁଟା କି ପ୍ରକୃତିରେ ନଥାଏ । ସେମାନଙ୍କର ଆକାଂକ୍ଷା , ଉଦ୍ୟମ ଏବଂ ବ୍ୟାବହାରିକ କାର୍ଯ୍ୟକଳାପ ଅନେକ ସମୟରେ ବହୁମୁଖୀ ଏବଂ ବୈଚିତ୍ର୍ୟସଂପନ୍ନ ସମାଜରେ , ସେସବୁ ପ୍ରତ୍ୟକ୍ଷ ଭାବେ ବିରୋଧୀ ହୋଇଥାଏ । ସମାଜରେ ଦ୍ୱନ୍ଦ୍ୱମୂଳକ ନିୟମସକଳ ମଧ୍ୟ ବିଶେଷ ଭାବେ ପ୍ରକଟିତ ହୋଇଥାଏ , କାରଣ ସାମାଜିକ ପ୍ରକ୍ରିୟାସମୂହ ଭୌତିକ ତଥା ଆତ୍ମିକ କାରଣସମୂହ ତଥା ବସ୍ତୁଗତ ଏବଂ ମନୋଗତ ଉପାଦାନସମୂହକୁ ପ୍ରକାଶ କରିଥାଏ । ସାମାଜିକ ନିୟମାବଳୀର କାର୍ଯ୍ୟକାରିତାର ପ୍ରଣାଳୀର ଅନ୍ତର୍ଗତ ହେଉଛି ପ୍ରକୃତିର ନିୟମ ସହିତ ତୁଳନା ଦୃଷ୍ଟିରୁ ମୌଳିକ ଭାବେ ନୂତନ ଏକ ଉପାଦାନ – ସାମାଜିକ କର୍ତ୍ତା (ବ୍ୟକ୍ତି , ସାମାଜିକ ଗୋଷ୍ଠୀ , ଶ୍ରେଣୀ , ସାର୍ବିକ ଭାବେ ସମାଜ) ସାମାଜିକ

ପ୍ରକ୍ରିୟାସମୂହର ପ୍ରତିନିଧି ହିସାବରେ । ସାମାଜିକ ବିକାଶର ନିୟମାବଳୀ ଲୋକଙ୍କ କାର୍ଯ୍ୟକଳାପ ସହିତ ସଂପୃକ୍ତ ଏବଂ ସେସବୁର ବାହାରେ ସେମାନେ ତିଷ୍ଠି ପାରନ୍ତି ନାହିଁ । ପ୍ରକୃତିର ନିୟମ କିନ୍ତୁ ଏଭଳି ନୁହେଁ । ଏହି କଥାଟିକୁ ରବୀନ୍ଦ୍ରନାଥ ଠାକୁର ଅତି ସୂତ୍ରବଦ୍ଧ ଭାବେ ପ୍ରକାଶ କରିଥିଲେ : "ମଣିଷ ନିଜକୁ ତା ଇତିହାସ ମଧ୍ୟରେ ପ୍ରକଟିତ କରେ ନାହିଁ, ତା ମଧ୍ୟ ଦେଇ ସେ ସଂଗ୍ରାମ କରି ଚାଲେ ।"* ଏ ସତ୍ତ୍ୱେ କେବଳ ସାମାଜିକ ନିୟମରାଜି ସଠିକ ନୁହଁ – ଅର୍ଥାତ୍, ବୈରିତାସଂପନ୍ନ ସମାଜରେ ଶ୍ରେଣୀ ସଂଗ୍ରାମର ନିୟମ, ପଣ୍ୟ ଉତ୍ପାଦନରେ ମୂଲ୍ୟର ନିୟମ, ଆଦି – ଦ୍ୱନ୍ଦ୍ୱବାଦର ସାଧାରଣ ନିୟମରାଜି ମଧ୍ୟ ମାନବ ଇତିହାସରେ, ସାମାଜିକ ସଂପର୍କରାଜିର ବିକାଶ ଏବଂ ଲୋକଙ୍କର ସାମାଜିକ କ୍ରିୟାକଳାପର ରୂପରେ ନିଜକୁ ପ୍ରକାଶ କରିଥାଏ । ତେଣୁ ସାମାଜିକ ଆବଶ୍ୟକତା ପ୍ରକାଶ ପାଇଥାଏ ଜନସାଧାରଣ ତଥା ପ୍ରଗତିଶୀଳ ଶ୍ରେଣୀସମୂହର ସକ୍ରିୟ କାର୍ଯ୍ୟାବଳୀ ମଧ୍ୟରେ । ଅନ୍ୟ ଦିଗରେ, ପ୍ରତିକ୍ରିୟାଶୀଳ ଶ୍ରେଣୀମାନେ ଉତ୍ପାହର ସହିତ ପ୍ରଗତିଶୀଳ ସାମାଜିକ ପ୍ରବଣତାସମୂହର ଦୃଢ଼ୀକରଣ ଏବଂ କାର୍ଯ୍ୟକାରିତାକୁ ରୋକିଥାନ୍ତି ।

ଏଥି ସଙ୍ଗେ ସଙ୍ଗେ ସାମାଜିକ ନିୟମସକଳ ଲୋକଙ୍କର ସଂପୂର୍ଣ୍ଣ ଭାବେ ମନୋଗତ କାର୍ଯ୍ୟକଳାପକୁ ଧ୍ୱଂସ କରି ଦିଏ ନାହିଁ । ସମାଜର ନିୟମାବଳୀ ମଧ୍ୟ ପ୍ରକୃତିର ନିୟମାବଳୀ ପରି ବସ୍ତୁଗତ । ସେସବୁ ହେଉଛି ଚରିତ୍ର ଦିଗରୁ ଦୃଢ଼ ଏବଂ ସେସବୁ ସ୍ଥାୟିତ୍ୱ ଏବଂ ସାମଞ୍ଜସ୍ୟତା ଦୃଷ୍ଟିରୁ ଲୋକଙ୍କ କ୍ରିୟାକଳାପଠାରୁ ପୃଥକ୍ । ତା'ର କାରଣ, 'ସମାଜର ପ୍ରୟୋଜନୀୟ ଭିତ୍ତି ହେଉଛି ବୈଷୟିକ ଉତ୍ପାଦନ । ବସ୍ତୁନିଷ୍ଠ ନିୟମାନୁଗତତା ଏବଂ ଜନସାଧାରଣଙ୍କ ସଚେତନ କ୍ରିୟାକଳାପର ଐକ୍ୟ ମଧ୍ୟରେ ସାମାଜିକ ଜୀବନର ଦ୍ୱନ୍ଦ୍ୱବାଦର ଅବଧାରଣା ସମ୍ଭବ କେବଳ ଐତିହାସିକ ବସ୍ତୁବାଦର ସୃଷ୍ଟି ସହିତ । ମାର୍କସ୍ ଏବଂ ଏଙ୍ଗେଲସ୍ ମାନବ ଇତିହାସର ସାଧାରଣ ନିୟମରାଜିକୁ ଆବିଷ୍କାର କରି ସମାଜ କ୍ଷେତ୍ରରେ ପ୍ରଯୁକ୍ତ ଦର୍ଶନର ମୌଳିକ ପ୍ରଶ୍ନଟିର ଉତ୍ତର ଯୋଗାଇ ଦେଇଥିଲେ । ଆମେ ଇତିପୂର୍ବରୁ ଉଲ୍ଲେଖ କରିଛେ ଯେ, ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦର ଅଭ୍ୟୁଦୟ ଘଟିଥିଲା ଏକ ଏକକ ଶିକ୍ଷା ତଥା ଏକ ଅଖଣ୍ଡ ଦର୍ଶନ ହିସାବରେ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ବ୍ୟତିରେକେ ଐତିହାସିକ ବସ୍ତୁବାଦ ଅସମ୍ଭବ ଏବଂ ଐତିହାସିକ ବସ୍ତୁବାଦ ବିନା ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ବି ଅସମ୍ଭବ । "ଅଦ୍ୱନ୍ଦ୍ୱବାଦୀ" ଐତିହାସିକ ବସ୍ତୁବାଦ ଭଳି "ଅଣଐତିହାସିକ" ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ କଥା ମଧ୍ୟ ଚିନ୍ତା କରାଯାଇ ପାରେ ନାହିଁ । ମାର୍କସ୍ ଐତିହାସିକ ବସ୍ତୁବାଦର ମୁଖ୍ୟ ନୀତିରାଜିର ପ୍ରମାଣସିଦ୍ଧ ବର୍ଣ୍ଣନା ଦେଇଥିଲେ ତାଙ୍କ "*A Contribution to the Critique of Political Economy*"ର ମୁଖବନ୍ଧରେ: "ମାନବ ଜୀବନର ସାମାଜିକ ଉତ୍ପାଦନ ମଧ୍ୟରେ ମଣିଷ ପ୍ରବେଶ କରେ କେତେକ ଅନିବାର୍ଯ୍ୟ ଏବଂ ଇଚ୍ଛା ନିରପେକ୍ଷ ନିର୍ଦ୍ଦିଷ୍ଟ ସଂପର୍କରେ – ଉତ୍ପାଦନ ସଂପର୍କରେ, ଯିଏକି

---

* ରବୀନ୍ଦ୍ରନାଥ ଠାକୁର, "*Stray Birds*", Macmillan, ଲଣ୍ଡନ, ୧୯୨୬, ପୃ : ୧୪ ।

ମଣିଷର ବୈଷୟିକ ଉତ୍ପାଦିକା ଶକ୍ତିର ବିକାଶର ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟର ଅନୁରୂପ । ଏହିସବୁ ଉତ୍ପାଦନ ସଂପର୍କର ସମଷ୍ଟି ହେଉଛି ସମାଜର ଅର୍ଥନୈତିକ ଗଢ଼ଣ, ତା'ର ଅସଲ ଭିତ୍ତି, ଯାହା ଉପରେ ଗଢ଼ି ଉଠେ ଆଇନଗତ ଏବଂ ରାଜନୈତିକ ଉପରିଗଢ଼ଣ ଏବଂ ସାମାଜିକ ଚେତନାର ନିର୍ଦ୍ଦିଷ୍ଟ ରୂପଗୁଡ଼ିକ ହୁଏ ତା'ର ଅନୁରୂପ । ବୈଷୟିକ ଜୀବନର ଉତ୍ପାଦନ ପଦ୍ଧତି ହିଁ ସାଧାରଣ ଭାବେ ମଣିଷର ସାମାଜିକ, ରାଜନୈତିକ, ଓ ବୌଦ୍ଧିକ ଜୀବନ ପ୍ରକ୍ରିୟାକୁ ନିର୍ଦ୍ଧାରଣ କରେ । ମଣିଷର ସତ୍ତା ନିର୍ଦ୍ଧାରିତ ହୁଏ ନାହିଁ ତା'ର ଚେତନା ଦ୍ୱାରା ଏବଂ ଏହାର ଠିକ୍ ବିପରୀତ ଭାବେ, ମଣିଷର ସାମାଜିକ ସତ୍ତା ହିଁ ନିର୍ଦ୍ଧାରିତ କରେ ତା'ର ଚେତନାକୁ । ସମାଜର ବୈଷୟିକ ଉତ୍ପାଦିକା ଶକ୍ତି ବିକାଶର ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ପହଞ୍ଚିଲା ପରେ, ତା ସହିତ ପ୍ରଚଳିତ ଉତ୍ପାଦନ ସଂପର୍କର ସଂଘର୍ଷ ଲାଗେ, ଅର୍ଥାତ୍, ଆଇନଗତ ଭାଷା ବ୍ୟବହାର କଲେ କହିବାକୁ ହୁଏ, ଏତେ ଦିନ ଧରି ଯେଉଁ ସଂପତ୍ତି ସଂପର୍କ ମଧ୍ୟରେ ଉତ୍ପାଦିକା ଶକ୍ତି ସକ୍ରିୟ ଥିଲା ତାହା ସହିତ ସଂଘର୍ଷ ଲାଗେ । ସେ ସଂପର୍କ ଉତ୍ପାଦିକା ଶକ୍ତିର ବିକାଶର ରୂପରୁ ପରିବର୍ତ୍ତିତ ହୋଇ ପରିଣତ ହୁଏ ଉତ୍ପାଦନ ଶକ୍ତିର ଶୃଙ୍ଖଳରେ । ତା'ପରେ ଆରମ୍ଭ ହୁଏ ସାମାଜିକ ବିପ୍ଳବର ଏକ ଯୁଗ । ଅର୍ଥନୈତିକ ଭିତ୍ତିଟାର ପରିବର୍ତ୍ତନ ଘଟିବା ସଙ୍ଗେ ସଙ୍ଗେ ସମଗ୍ର ଉପରିଗଢ଼ଣର ମଧ୍ୟ ଅଳ୍ପ ବହୁତ ଦ୍ରୁତ ପରିବର୍ତ୍ତନ ଘଟେ । ଏହିସବୁ ପରିବର୍ତ୍ତନକୁ ଅନୁଧ୍ୟାନ କରିବାକୁ ଗଲେ, ଉତ୍ପାଦନର ଅର୍ଥନୈତିକ ଯେଉଁ ପରିସ୍ଥିତିର ବୈଷୟିକ ରୂପାନ୍ତରଣ ପ୍ରାକୃତିକ ବିଜ୍ଞାନସିଦ୍ଧ ସୂକ୍ଷ୍ମତା ସହିତ ନିରୂପଣ କରାଯାଏ ସେଥିରୁ ପୃଥକ୍ କରି ଦେଖିବାକୁ ହେବ ଆଇନଗତ, ରାଜନୈତିକ, ଧର୍ମଗତ ସୌନ୍ଦର୍ଯ୍ୟବୋଧଗତ ବା ଦର୍ଶନଗତ, ସଂକ୍ଷେପରେ କହିବାକୁ ଗଲେ, ଭାବାଦର୍ଶଗତ ରୂପଗୁଡ଼ିକୁ, ଯାହା ମାଧ୍ୟମରେ ମଣିଷ ଏ ସଂଘର୍ଷ ସଂପର୍କରେ ସଚେତନ ହୋଇ ଉଠେ ଏବଂ ସଂଗ୍ରାମ କରି ସେସବୁର ନିଷ୍ପତ୍ତି କରେ । ବ୍ୟକ୍ତି ବିଶେଷ ସଂପର୍କରେ ଆମର ଧାରଣା ଯେପରି ନିର୍ଭର କରେ ନାହିଁ, ସେ ବ୍ୟକ୍ତି ତା ସଂପର୍କରେ କିପରି ଚିନ୍ତା କରେ, ସେଇପରି କୌଣସି ରୂପାନ୍ତରଣର ସମୟ କାଳକୁ ସେ ଯୁଗର ସ୍ୱକୀୟ ଚେତନା ଦେଇ ଆମେ ବିଗ୍ଭର କରି ପାରିବା ନାହିଁ; ଏହାର ବିପରୀତରେ, ସେଇ ଚେତନାକୁ ବ୍ୟାଖ୍ୟା କରିବାକୁ ହେବ ବୈଷୟିକ ଜୀବନର ବିରୋଧିତା ଦ୍ୱାରା, ସାମାଜିକ ଉତ୍ପାଦିକା ଶକ୍ତି ଓ ଉତ୍ପାଦନ ସଂପର୍କ ମଧ୍ୟରେ ସଂଘର୍ଷ ଦ୍ୱାରା । କୌଣସି ସାମାଜିକ ବ୍ୟବସ୍ଥା ମଧ୍ୟରେ ଯେତେ ଉତ୍ପାଦିକା ଶକ୍ତିର ସ୍ଥାନ ଧରି ପାରେ, ତା'ର ସବୁ କିଛିର ବିକାଶ ନହେଲା ପର୍ଯ୍ୟନ୍ତ ସେ ସାମାଜିକ ବ୍ୟବସ୍ଥାର କୌଣସିମତେ ବିନାଶ ଘଟେ ନାହିଁ । ଏବଂ ନୂତନ ଉନ୍ନତତର ଉତ୍ପାଦନ ସଂପର୍କର ଆବିର୍ଭାବ ସେପର୍ଯ୍ୟନ୍ତ ଘଟି ପାରେ ନାହିଁ, ଯେପର୍ଯ୍ୟନ୍ତ ପୁରୁଣା ସମାଜ ଗର୍ଭରେ ସେପରି ସଂପର୍କର ଅସ୍ତିତ୍ୱ ପାଇଁ ବୈଷୟିକ ପରିସ୍ଥିତି ପରିପକ୍ୱ ନହୋଇଛି । ସୁତରାଂ, ମାନବଜାତି ସର୍ବଦା ସେହି କର୍ତ୍ତବ୍ୟରେ ପ୍ରବୃତ୍ତ ହୁଏ, ଯାହାକୁ ସାଧନ କରିବା ସମ୍ଭବ; କାରଣ ବିଷୟଟି ପ୍ରତି ଆଉରି ଗଭୀର ଦୃଷ୍ଟିପାତ କଲେ ସର୍ବଦା ଦେଖିବାକୁ ମିଳେ ଯେ,

କର୍ତ୍ତବ୍ୟଟି ସେତିକିବେଳେ ଦେଖା ଦିଏ, ଯେତେବେଳେ ତାକୁ ସମାଧାନ କରିବାର ବୈଷୟିକ ଅବସ୍ଥା ଇତି ମଧ୍ୟରେ ବିଦ୍ୟମାନ କିମ୍ବା ଅନ୍ତତଃ ଗଢ଼ି ଉଠିବାକୁ ଆରମ୍ଭ କରିଛି ।"*

ମାର୍କସ୍ ଏଠାରେ ସାମାଜିକ ବିକାଶର ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଅବଧାରଣାର ସାରମର୍ମକୁ ସୂତ୍ରବଦ୍ଧ କରିଛନ୍ତି : ଗୋଟିଏ ସାମାଜିକ ଅର୍ଥନୈତିକ ଗଢ଼ଣରୁ ଅନ୍ୟ ଏକ ସାମାଜିକ ଅର୍ଥନୈତିକ ଗଢ଼ଣକୁ ଯୁକ୍ତିସଂଗତ ଭାବେ ଉତ୍ତରଣ ଘଟେ ଉତ୍ପାଦିକା ଶକ୍ତିସମୂହ ଏବଂ ଉତ୍ପାଦନ ସଂପର୍କରାଜି ମଧ୍ୟରେ ଚାଲିଥିବା ସଂଘର୍ଷର ଫଳ ସ୍ୱରୂପ, ଉତ୍ପାଦନ ପଦ୍ଧତିର, ସମସ୍ତ ସାମାଜିକ ପ୍ରପଞ୍ଚର ଅସ୍ତିତ୍ୱର ଭୌତିକ ଭିତ୍ତିର ଦୁଇଟି ଦିଗ ରହିଛି, ଏହି ସଂଘର୍ଷ ଯଦିଓ ସମାହିତ ହୋଇଥାଏ ଜନସାଧାରଣଙ୍କ ସଂଗ୍ରାମ ଏବଂ ସାମାଜିକ କ୍ରିୟା ଦ୍ୱାରା ।

## ୨ — ସାମାଜିକ କ୍ରିୟା ଏବଂ ତା'ର ନିୟମରାଜି

ଐତିହାସିକ ବସ୍ତୁବାଦ ମଣିଷ ଜୀବନର ଉଭୟ ସ୍ୱତଃପ୍ରବଣତାବାଦୀ ଏବଂ ଅଦୃଷ୍ଟବାଦୀ ଅବଧାରଣାକୁ ଅସ୍ୱୀକାର କରେ । ସ୍ୱତଃପ୍ରବଣତା ବୋଇଲେ କ'ଣ ବୁଝାଏ ? ଏହା ହେଉଛି ସାମାଜିକ ଜୀବନରେ ଯେକୌଣସି ନିୟମାନୁଗତତାର ଅସ୍ୱୀକୃତି ଏବଂ ଇତିହାସର ମନୋଗତ ଭାବବାଦୀ ଦୃଷ୍ଟିକୋଣ । ସ୍ୱତଃପ୍ରବଣତାବାଦୀମାନେ ସମାଜର ଇତିହାସକୁ ବହିଃକାରଣସମୂହ ଦ୍ୱାରା, ଅନିୟନ୍ତ୍ରିତ ପୃଥକ୍ ପୃଥକ୍ ବ୍ୟକ୍ତିମାନଙ୍କ ଦ୍ୱାରା ଅନାପେକ୍ଷିକ ମୁକ୍ତ ଇଚ୍ଛାପ୍ରଣୋଦିତ କ୍ରିୟାକଳାପର ଫଳ ବୋଲି ବିଚାର କରିଥାନ୍ତି । ସେହିସବୁ ବ୍ୟକ୍ତିବିଶେଷ ହେଉଛନ୍ତି ନାୟକ; ସେମାନେ ହେଉଛନ୍ତି ପ୍ରତିଭାବାନ ବ୍ୟକ୍ତି, ସେନାପତି, ରାଜା, ରାଷ୍ଟ୍ରପତି, ବିଧାୟକ ଏବଂ ସନ୍ଥବୃନ୍ଦ । ସେହିମାନଙ୍କ ଉଦ୍ୟମ ବଳରେ ହିଁ କେବଳ ସମାଜର ଅଗ୍ରଗତି ସମ୍ଭବ ହୁଏ । ଆଧୁନିକ ସ୍ୱତଃପ୍ରବଣତାବାଦୀମାନେ ମନେ କରନ୍ତି, ଦୃଷ୍ଟାନ୍ତ ସ୍ୱରୂପ, ଇତିହାସର ଗତିକୁ ଇଚ୍ଛା ମୁତାବକ ପରିବର୍ତ୍ତନ କରାଯାଇ ପାରେ, ଅର୍ଥାତ୍, ଶାନ୍ତି, ଜାତୀୟ ଏବଂ ସାମାଜିକ ମୁକ୍ତି ଏବଂ ସମାଜବାଦ ଆଡ଼କୁ ଜାତିମାନଙ୍କର ଗତିକୁ ରୋକି ଦେଇ ହେବ, ସାମ୍ରାଜ୍ୟବାଦ ଉପରେ ଉନ୍ନୟନଶୀଳ ଦେଶମାନଙ୍କର ନିର୍ଭରଶୀଳତାକୁ ଚିରସ୍ଥାୟୀ କରି ହେବ, ସାମାଜିକ ବିକାଶର ଆବଶ୍ୟକୀୟ ପର୍ଯ୍ୟାୟସମୂହକୁ ଡେଇଁ ଯାଇ ହେବ, ପୃଥକ୍ ପୃଥକ୍ ମନୋଗତ ପ୍ରଶାସନିକ ପଦକ୍ଷେପ ଦ୍ୱାରା ମୌଳିକ ସାମାଜିକ ଅର୍ଥନୈତିକ ସମସ୍ୟାବଳୀକୁ ସମାଧାନ କରି ହେବ, ଆଦି ।

---

* କାର୍ଲ ମାର୍କସ୍, "*A Contribution to the Critique of Political Economy*", ପ୍ରଗତି ପ୍ରକାଶନ, ମସ୍କୋ, ୧୯୭୮, ପୃ: ୨୦-୨୧ ।

ଅନ୍ୟ ଦିଗରେ, ଅଦୃଷ୍ଟବାଦ ହେଉଛି ଏକ ଧର୍ମୀୟ ଭାବବାଦୀ ମତବାଦ, ଯିଏକି ମଣିଷର ପୂର୍ବନିର୍ଦ୍ଧାରିତ ଅଦୃଷ୍ଟ, ଭାଗ୍ୟର ପ୍ରାଧାନ୍ୟ ଏବଂ ଅନ୍ଧ ଆବଶ୍ୟକତା ସହିତ ସଂଯୁକ୍ତ । ମଣିଷ ଘଟନାବଳୀର ପ୍ରକ୍ରିୟାକୁ ପ୍ରଭାବିତ କରି ପାରେ ବୋଲି ଅଦୃଷ୍ଟବାଦୀମାନେ ଅସ୍ୱୀକାର କରନ୍ତି ଏବଂ ଜନସାଧାରଣଙ୍କୁ ସଂପୂର୍ଣ୍ଣ ରୂପେ ପ୍ରତିକୂଳ, ମାନବୀୟ ଜ୍ଞାନ ଦ୍ୱାରା ଅବୋଧ୍ୟ ଶକ୍ତିର ଅଧୀନ କରି ଦିଅନ୍ତି । ଆଜିକାଲି ଅଦୃଷ୍ଟବାଦୀମାନଙ୍କର ମତକୁ, ବିଶେଷ କରି, ସେଇମାନେ ପୋଷଣ କରନ୍ତି, ଯେଉଁମାନେ ଭାବନ୍ତି ନୂତନ ବିଶ୍ୱଯୁଦ୍ଧକୁ ରୋକିବା, ଦ୍ରୁତ ଗତିରେ ବୃଦ୍ଧି ପାଉଥିବା ପୃଥିବୀ ଜନସଂଖ୍ୟା ପାଇଁ ଖାଦ୍ୟ ଯୋଗାଣ, ଅର୍ଥନୈତିକ ସଂକଟ ତଥା ବିପଦାତ୍ମକ ସଂକ୍ରାମକ ରୋଗସମୂହର ବିସ୍ତାରର ପ୍ରତିରୋଧ କରିବା, ଆଦି ଭଳି ବିଶ୍ୱ ସମସ୍ୟାବଳୀକୁ ସମାଧାନ କରିବା ସମ୍ଭବ ନୁହେଁ ।

କିନ୍ତୁ ସ୍ୱତଃପ୍ରବଣତାବାଦ ଏବଂ ଅଦୃଷ୍ଟବାଦର ବିପରୀତରେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦର୍ଶନ ମତରେ, ଜନସାଧାରଣ ଯଦିଓ ବସ୍ତୁଗତ ନିୟମକୁ ଉଚ୍ଛେଦ କରିବାକୁ ସକ୍ଷମ ନୁହଁନ୍ତି, କିନ୍ତୁ ସେସବୁ ଆଗରେ ସେମାନେ ଶକ୍ତିହୀନ ମଧ୍ୟ ନୁହନ୍ତି ।

ଇତିହାସର ବସ୍ତୁବାଦୀ ଅବଧାରଣା, ସାମାଜିକ ବିକାଶର ବସ୍ତୁଗତ ନିୟମବଦ୍ଧତାକୁ ସ୍ୱୀକାର କରିବା ଦ୍ୱାରା ସକ୍ରିୟ ଏକ ସାମାଜିକ କର୍ତ୍ତାକୁ ବାଦ୍ ଦିଏ ନାହିଁ ବରଂ ତା'ର ପୂର୍ବାବସ୍ଥାନକୁ ସ୍ୱୀକାର କରିଥାଏ । ସାମାଜିକ ଜୀବନ ହେଉଛି ଜନସାଧାରଣଙ୍କ ବ୍ୟାବହାରିକ କ୍ରିୟାକଳାପର ରୂପାୟନ ଏବଂ ଫଳ ସ୍ୱରୂପ । ତେଣୁ କରି, ଏହି ଦୃଷ୍ଟିରୁ, ଜନସାଧାରଣଙ୍କ କ୍ରିୟାକଳାପର ଆଉରି ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ଦରକାର । ବୁର୍ଜୁଆ ଲେଖକମାନେ ସାଧାରଣତଃ ସାମାଜିକ କ୍ରିୟାକଳାପକୁ ବ୍ୟକ୍ତିବିଶେଷଙ୍କର ବ୍ୟବହାରର ଯେକୌଣସି ପରିପ୍ରକାଶ ସହିତ ଏକ କରି ଦେଖିଥାନ୍ତି ଏବଂ ସାମାଜିକ କ୍ରିୟାକଳାପକୁ ଲୋକଙ୍କ ମଧ୍ୟରେ ନିରୋଳା ମନସ୍ତାତ୍ତ୍ୱିକ ସଂପର୍କ, ଆନ୍ତଃକ୍ରିୟା ବୋଲି ଧରି ନିଅନ୍ତି । ନିର୍ଦ୍ଦିଷ୍ଟ ଏକ ଅର୍ଥରେ ସାମାଜିକ କ୍ରିୟାକଳାପକୁ, ଅବଶ୍ୟ, ବିଶ୍ଳେଷଣ କରାଯାଇ ପାରେ, ପୃଥକ୍ ପୃଥକ୍ ବ୍ୟକ୍ତିଙ୍କ ପକ୍ଷରେ ଇଚ୍ଛାସମ୍ଭବ, ବୌଦ୍ଧିକ ଏବଂ ଆବେଗପ୍ରସୂତ ଉଦ୍ୟମସକଳର ସମନ୍ୱିତ ଫଳ ବୋଲି, କିନ୍ତୁ ଏହା ଯଦି କେବଳ ଆନ୍ତଃକ୍ରିୟା, ବ୍ୟକ୍ତିବିଶେଷଙ୍କର ମାନସିକ ପ୍ରତିକ୍ରିୟା ବୋଲି ଧରାଯାଏ, ତେବେ ଭୁଲ ହେବ । ଏହି ଭଳି ଏକ ନ୍ୟୂନୀକରଣ ଦ୍ୱାରା ଲୋକମାନଙ୍କର ସାମାଜିକ ଭାବେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକଳାପର ଆଧେୟର କାରଣ ଏବଂ ଗତିମୁଖକୁ ପ୍ରକାଶ କରି ହୁଏ ନାହିଁ । ଆମେ କେମିତି, ଉଦାହରଣ ସ୍ୱରୂପ, ପ୍ରତିକ୍ରିୟାଶୀଳ ଶାସନର ଆକ୍ରମଣାତ୍ମକ ନୀତି, ଶ୍ରେଣୀ ସଂଘର୍ଷ, ଜାତୀୟ ମୁକ୍ତି ଆନ୍ଦୋଳନ, ଆଦିକୁ ବ୍ୟାଖ୍ୟା କରିବା, ଯଦି କେବଳ ମନସ୍ତାତ୍ତ୍ୱିକ କାରଣଗୁଡ଼ିକ ଉପରେ ନିର୍ଭର କରେ ? ଏ କଥା, ଅବଶ୍ୟ, ସତ ଯେ, ମନସ୍ତାତ୍ତ୍ୱିକ କାରଣସମୂହ, ଅର୍ଥାତ୍, ରାଜନୈତିକ ନେତାମାନଙ୍କର ବ୍ୟକ୍ତିଗତ ଗୁଣରାଶି, ସାମାଜିକ ବିକାଶର ଧାରା ଆଉ ଚରିତ୍ରକୁ ପ୍ରଭାବିତ କରେ । ସାମାଜିକ ଦ୍ୱନ୍ଦ୍ୱବାଦରେ ବଡ଼ ବଡ଼

ଜନଗୋଷ୍ଠୀ, ଜନସାଧାରଣ ଏବଂ ଶ୍ରେଣୀମାନଙ୍କର କ୍ରିୟାକଳାପକୁ ନିର୍ଦ୍ଧାରଣ କରୁଥିବା ନିୟମାବଳୀର ଉଦ୍‌ଘାଟନ ଗୁରୁତ୍ୱପୂର୍ଣ୍ଣ ହୋଇଥିଲା, କିନ୍ତୁ ଏଥିରେ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କର ଆଚରଣ ବଡ଼ କଥା ନୁହେଁ । ଲେନିନ୍ ଲେଖିଛନ୍ତି, ମାର୍କସ୍ ଏଙ୍ଗେଲସ୍‌ଙ୍କର ବଡ଼ ଅବଦାନ ହେଉଛି ଯେ, ସେମାନେ "'ଜୀବିତ ବ୍ୟକ୍ତିମାନଙ୍କର' କ୍ରିୟାକଳାପର ସାଧାରଣୀକୃତ, ସଂକ୍ଷିପ୍ତକରଣ କରି ଦେଇଥିଲେ... ଅସଂଖ୍ୟ ଭାବେ ସେମାନେ ବହୁବିଧ, କୌଣସି ଏକ ବ୍ୟବସ୍ଥାର ଅନ୍ତର୍ଭୁକ୍ତ ବୋଲି ବାହ୍ୟତଃ ମନେ ହୁଅନ୍ତି ନାହିଁ... ବ୍ୟକ୍ତିମାନଙ୍କୁ ନେଇ ଗଠିତ ଗୋଷ୍ଠୀକୁ... ଶ୍ରେଣୀମାନଙ୍କର କ୍ରିୟାକଳାପକୁ..."* ସାମାଜିକ କ୍ରିୟାକଳାପ ହେଉଛି ସର୍ବୋପରି ବିପୁଳ ଜନସାଧାରଣଙ୍କର (ଶ୍ରେଣୀସମୂହ, ଶ୍ରମଜୀବୀ ଜନସାଧାରଣ, ଜନତା) ଉଦ୍ୟମରାଜି ।

ସାମାଜିକ କ୍ରିୟାକଳାପ ବହୁବିଧ ରୂପରେ ପ୍ରକାଶ ପାଏ । ସାମାଜିକ ସଂପର୍କରାଜିର ଚରିତ୍ର, କାର୍ଯ୍ୟକଳାପର କ୍ଷେତ୍ର ଅନୁଯାୟୀ ଅର୍ଥନୈତିକ, ଉତ୍ପାଦନମୂଳକ, ରାଜନୈତିକ, ଅବଗତିମୂଳକ, ନୈତିକ, ଧର୍ମୀୟ ଏବଂ ଅନ୍ୟାନ୍ୟ କାର୍ଯ୍ୟକଳାପ ମଧ୍ୟରେ ପାର୍ଥକ୍ୟ ଲକ୍ଷ୍ୟ କରାଯାଇଥାଏ । କାର୍ଯ୍ୟକଳାପ ବଳପୂର୍ବକ (ବାଧ୍ୟତାମୂଳକ, ସାମରିକ) ବା ଅହିଂସ, ସ୍ୱତଃସ୍ଫୂର୍ତ୍ତ ବା ସଚେତନ ହୋଇ ପାରେ । କର୍ତ୍ତା ଉପରେ ନିର୍ଭର କରି ଆମେ ଗୋଷ୍ଠୀ, ଶ୍ରେଣୀ, ଜାତୀୟ, ରାଷ୍ଟ୍ରୀୟ ବା ଅନ୍ୟାନ୍ୟ ପ୍ରକାରର କାର୍ଯ୍ୟକଳାପ କଥା କହି ପାରେ । ସାମାଜିକ ଅଗ୍ରଗତି ଦୃଷ୍ଟିରୁ କ୍ରିୟାକଳାପ ବିପ୍ଳବୀ ବା ପ୍ରତିବିପ୍ଳବୀ, ପ୍ରଗତିଶୀଳ ବା ପ୍ରତିକ୍ରିୟାଶୀଳ ହୋଇ ପାରେ ।

ଇତିହାସର ବସ୍ତୁବାଦୀ ଅବଧାରଣା ଜନସାଧାରଣଙ୍କ କ୍ରିୟାକଳାପକୁ ନିର୍ଦ୍ଧାରଣ କରୁଥିବା ମୌଳିକ ନିୟମଗୁଡ଼ିକର ଏକ ବିଜ୍ଞାନସମ୍ମତ ବ୍ୟାଖ୍ୟା ପ୍ରଦାନ କରିଥାଏ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥାଟି ହେଉଛି ସାମାଜିକ କ୍ରିୟାକଳାପର ବସ୍ତୁଗତ ନିୟାମକତାର ନିୟମ । ମାନବିକ କ୍ରିୟାକଳାପର ମୌଳିକ ରୂପଟି ହେଉଛି ବୈଷୟିକ କ୍ରିୟାକଳାପ ଏବଂ ଅନ୍ୟସବୁ କ୍ରିୟାକଳାପକୁ, ଯଥା ଭାବାଦର୍ଶଗତ, ରାଜନୈତିକ, ସାଂସ୍କୃତିକ ବା ଧର୍ମୀୟ କ୍ରିୟାକଳାପକୁ ନିର୍ଦ୍ଧାରିତ କରିଥାଏ । ଏହି ନିୟମଟି ହିଁ ବହୁବିଧ ସାମାଜିକ କ୍ରିୟାକଳାପକୁ ସାଧାରଣତଃ ନିର୍ଦ୍ଧାରଣ କରିଥାଏ । ବୈଷୟିକ ଉତ୍ପାଦନ କ୍ଷେତ୍ରରେ (ଉତ୍ପାଦିକା ଶକ୍ତିସମୂହର ବିକାଶରେ ଏବଂ ଉତ୍ପାଦନ ସଂପର୍କରେ ପରିବର୍ତ୍ତନ କ୍ଷେତ୍ରରେ) ଜନସାଧାରଣଙ୍କ କ୍ରିୟାକଳାପ ହେଉଛି ବସ୍ତୁଗତ ଭିତ୍ତି ଏବଂ ଅନ୍ୟ ସମସ୍ତ ସାମାଜିକ କ୍ରିୟାକଳାପର ଆବଶ୍ୟକୀୟ ପୂର୍ବସର୍ତ୍ତ । ଏହା ଅର୍ଥ ନୁହେଁ ଯେ, ଲୋକମାନଙ୍କ ଅନୁତ୍ପାଦକ କ୍ରିୟାକଳାପର (ପ୍ରଥମତଃ ରାଜନୀତିର) ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଅସ୍ୱୀକାର

---

* ଭ୍ଲାଦିମିର୍ ଇଲିଚ୍ ଲେନିନ୍, "The Economic Content of Narodism and the Criticism of it in Mr. Struve's Book", *Collected Works*, ୧ମ ଖଣ୍ଡ, ମସ୍କୋ, ୧୯୬୪, ପୃ: ୪୧୧ ।

କରିବା । ବିଶେଷ ଐତିହାସିକ ପରିସ୍ଥିତିରେ (ଅର୍ଥାତ୍, ଜାତୀୟ ମୁକ୍ତି ସଂଗ୍ରାମ ବା ବିପ୍ଳବ କାଳରେ) ସାମାଜିକ ଘଟଣାବଳୀକୁ ଜନସାଧାରଣଙ୍କ ରାଜନୈତିକ କ୍ରିୟାକଳାପ ଆଗକୁ ଆଗେଇ ନେଇଯାଏ । ଅଧିକନ୍ତୁ, ଉତ୍ପାଦନ ଏବଂ ରାଜନୈତିକ କ୍ରିୟାକଳାପ ମଧ୍ୟରେ ଏକ ତୀକ୍ଷ୍ଣ ପାର୍ଥକ୍ୟ ରେଖା ଟାଣିବାଟା ମଧ୍ୟ ଭୁଲ — କାରଣ, ରାଜନୀତି ହେଉଛି, ମୋଟ ଉପରେ, ଅର୍ଥନୀତିର ଏକ ଘନୀଭୂତ ପରିପ୍ରକାଶ । ଶୋଷକ ରାଷ୍ଟ୍ର ତା'ର ଦମନମୂଳକ ଯନ୍ତ୍ରର ସମସ୍ତ ଶକ୍ତି ଦେଇ ପ୍ରତିଷ୍ଠିତ, ଅଥଚ, ଉତ୍ପାଦନର ପୁରୁଣା ସଂପର୍କକୁ ରକ୍ଷା କରିଥାଏ । ତେଣୁ ସାମାଜିକ ବିପ୍ଳବର ମୁଖ୍ୟ ପ୍ରଶ୍ନଟି ହେଉଛି କ୍ଷମତାର ପ୍ରଶ୍ନ, ରାଷ୍ଟ୍ର ସହିତ ତା'ର ସଂପର୍କ । ଅର୍ଥନୈତିକ ଭିତ୍ତି ଏବଂ ସାମାଜିକ ଉପରିଗଢ଼ଣର ରୂପାନ୍ତରଣରେ ରାଜନୈତିକ କାର୍ଯ୍ୟକଳାପ ଏବଂ ଶ୍ରେଣୀ ସଂଗ୍ରାମ ହେଉଛି, ସ୍ୱଭାବତଃ, ନିଷ୍ପତ୍ତିମୂଳକ କାରଣ ।

ଐତିହାସିକ ପ୍ରକ୍ରିୟାରେ ବ୍ୟାପକ ଜନସାଧାରଣଙ୍କର କ୍ରମବର୍ଦ୍ଧମାନ ଭୂମିକାର ନିୟମଟିର, ସାମାଜିକ କ୍ରିୟାକଳାପର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ନିୟମଟିର ସାରାର୍ଥ ହେଉଛି ଐତିହାସିକ କ୍ରିୟାକଳାପର କ୍ରମବର୍ଦ୍ଧମାନ ସମ୍ଭାବ୍ୟତା ଏବଂ ଗୁରୁତ୍ୱ ସାଙ୍ଗକୁ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଲୋକଙ୍କର ସଂଖ୍ୟା ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି । ଯେତେ ବଡ଼ ସାମାଜିକ ସମସ୍ୟାର ସମାଧାନ ଘଟୁଛି, ସାମାଜିକ କ୍ରିୟାକଳାପର ଅଖଣ୍ଡ ବିଷୟଟିକୁ ରଚନା କରୁଥିବା ବ୍ୟକ୍ତିମାନଙ୍କର ସମଗ୍ରତାଟା ସେତେ ବ୍ୟାପକ ହେଉଛି । ଜନସାଧାରଣ ହେଉଛନ୍ତି ଇତିହାସର ସ୍ରଷ୍ଟା । ଏହା ହେଉଛି ଐତିହାସିକ ବସ୍ତୁବାଦର ଏକ ମୌଳିକ ନୀତି । ଇତିହାସର ଗତି ପଥରେ "ବ୍ୟାପକ ଜନସାଧାରଣ"ର ଅବଧାରଣାଟିରେ ମଧ୍ୟ ପରିବର୍ତ୍ତନ ଘଟିଛି । ଶ୍ରେଣୀଯୁକ୍ତ ସମାଜରେ ସେମାନେ ବିଭିନ୍ନ ଶ୍ରେଣୀକୁ ନେଇ ଗଠିତ, କିନ୍ତୁ ଜନସାଧାରଣଙ୍କର କେନ୍ଦ୍ର ଅଂଶଟି ଏବେବି ହେଉଛନ୍ତି ଶ୍ରମଜୀବୀ ଜନତା, ବୈଷୟିକ ସଂପଦର ଉତ୍ପାଦନକାରୀ । ଜନସାଧାରଣ ହେଉଛନ୍ତି ଜନସଂଖ୍ୟାର ବ୍ୟାପକ ସଂଖ୍ୟାଗରିଷ୍ଠ ଅଂଶ ଏବଂ ସେମାନେ ହେଉଛନ୍ତି ଜନବିରୋଧୀ ଉପର ସ୍ତର, ପ୍ରତିକ୍ରିୟାଶୀଳ ଶ୍ରେଣୀସମୂହର ବିରୋଧୀ । ସେମାନଙ୍କ ମଧ୍ୟରେ ଯାଆନ୍ତି ସାମାଜିକ ପ୍ରଗତିକୁ ସହାୟକ ହେଉଥିବା ସମସ୍ତ ସାମାଜିକ ଗୋଷ୍ଠୀ । ତେଣୁ କରି, କେତେକ ପରିସ୍ଥିତିରେ ଜନସାଧାରଣଙ୍କ ମଧ୍ୟରେ କେତେକ ଅଣଶ୍ରମଜୀବୀ ଶ୍ରେଣୀ ବି ଥାଆନ୍ତି, ଯଥା ଜାତୀୟ ବୁର୍ଜୁଆ — ଯେପର୍ଯ୍ୟନ୍ତ ସେମାନେ ପ୍ରଗତିଶୀଳ ସାମାଜିକ ପରିବର୍ତ୍ତନ ପ୍ରତି ଅବଦାନ ରଖନ୍ତି ଏବଂ ସାମ୍ରାଜ୍ୟବାଦ, ଉପନିବେଶବାଦ ଏବଂ ନବ ଉପନିବେଶବାଦ ବିରୁଦ୍ଧରେ ଏବଂ ଜାତୀୟ ମୁକ୍ତି ତଥା ଶାନ୍ତି ପାଇଁ ସଂଗ୍ରାମ କରନ୍ତି ।

ଏପର୍ଯ୍ୟନ୍ତ ମାନବଜାତି ଯେଉଁସବୁ ସାମାଜିକ କର୍ତ୍ତବ୍ୟ ସାଧନ କରିଛି, ସେସବୁ ମଧ୍ୟରେ ସବୁଠାରୁ ବିରାଟ ସାମାଜିକ କର୍ତ୍ତବ୍ୟ — ସମାଜର ସମାଜବାଦୀ ରୂପାନ୍ତରଣ, ସମସ୍ତ ପ୍ରକାରର ଉତ୍ପୀଡ଼ନ ତଥା ଶୋଷଣର ମଣିଷର ମୁକ୍ତି ଏବଂ ଶ୍ରମଜୀବୀ

ଜନସାଧାରଣଙ୍କ ସର୍ବବିଧ ଉନ୍ନତି ପାଇଁ ଅବସ୍ଥାରାଜି ସୃଷ୍ଟି – କେବଳ ସଂପନ୍ନ ହୋଇ ପାରେ ବ୍ୟାପକ ଶ୍ରମଜୀବୀ ଜନତା (ସର୍ବୋପରି କୃଷକ ସଂପ୍ରଦାୟ) ସହିତ ଐକ୍ୟବଦ୍ଧ ଶ୍ରମିକ ଶ୍ରେଣୀର ସକ୍ରିୟ ସଚେତନ ସାମାଜିକ କ୍ରିୟାକଳାପ ଦ୍ୱାରା ।

ସାମାଜିକ କ୍ରିୟାକଳାପର ଅନ୍ୟାନ୍ୟ ସାଧାରଣ ନିୟମରାଜିର ଅନ୍ତର୍ଭୁକ୍ତ ହେଉଛି ଐତିହାସିକ ପ୍ରଗତି ସହିତ ପାଦ ମିଳାଇ ଚାଲିଥିବା ସାମାଜିକ କ୍ରିୟାକଳାପରେ ମନୋଗତ କାରଣ ଏବଂ ଜନସାଧାରଣଙ୍କ ବାସ୍ତବ କ୍ରିୟାକଳାପରେ ରୂପ ପରିଗ୍ରହ କରୁଥିବା ପ୍ରଗତିଶୀଳ ଚିନ୍ତାଧାରାର କ୍ରମବର୍ଦ୍ଧମାନ ଭୂମିକା ।

ଜନସାଧାରଣଙ୍କ କ୍ରିୟାକଳାପ ସାମାଜିକ ଦ୍ୱନ୍ଦ୍ୱବାଦକୁ ଚମତ୍କାର କରିଥାଏ । ସାମାଜିକ ବିକାଶର ଏହି ବସ୍ତୁଗତ ଦ୍ୱନ୍ଦ୍ୱବାଦ ବାସ୍ତବାୟିତ ହୋଇଥାଏ ଜନସାଧାରଣଙ୍କ କ୍ରିୟାକଳାପ ଦ୍ୱାରା, ଯାହାକି ଗତିମୁଖ, ଆଧେୟ ଏବଂ ପରିଣାମ ଦୃଷ୍ଟିରୁ ଭିନ୍ନ ଭିନ୍ନ । ଦ୍ୱନ୍ଦ୍ୱବାଦର ସାଧାରଣ ନିୟମରାଜିର ପ୍ରକାଶର ଚରିତ୍ର ନିର୍ଭର କରେ ବିଦ୍ୟମାନ ସାମାଜିକ ସଂପର୍କରାଜିର ବିଶେଷତା ଉପରେ ।

## ୩ – ପୁଞ୍ଜିବାଦ : ବୈରିତାର ଦ୍ୱନ୍ଦ୍ୱବାଦ

ଇତିହାସରେ ସର୍ବହୀନ ଭାବେ କାର୍ଯ୍ୟ କରୁଥିବା ଦ୍ୱନ୍ଦ୍ୱବାଦର ସାର୍ବିକ ନିୟମାବଳୀ ବିଭିନ୍ନ ଭାବେ ପ୍ରକଟିତ ହୋଇଛି ନିର୍ଦ୍ଦିଷ୍ଟ ସାମାଜିକ ଅର୍ଥନୈତିକ ଗଢ଼ଣଗୁଡ଼ିକର ବିକାଶରେ । ତେଣୁ ଶ୍ରେଣୀଗତ ବୈରିତାସଂପନ୍ନ ସମାଜର ଦ୍ୱନ୍ଦ୍ୱବାଦ ଏବଂ ସମାଜବାଦର ଦ୍ୱନ୍ଦ୍ୱବାଦ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟସମୂହକୁ ଆମେ ଯଦି ଦେଖି ନପାରେ, ତେବେ ଭୁଲ ହେବ । ଲେନିନ୍ ଲେଖିଛନ୍ତି, "ମାର୍କସ୍‌ଙ୍କ ପକ୍ଷରେ ବୁର୍ଜୁଆ ସମାଜର ଦ୍ୱନ୍ଦ୍ୱବାଦଟା ହେଉ ଦ୍ୱନ୍ଦ୍ୱବାଦର କେବଳ ଏକ ନିର୍ଦ୍ଦିଷ୍ଟ ବ୍ୟାପାର ।"* "କ୍ୟାପିଟାଲ" ଗ୍ରନ୍ଥରେ ମାର୍କସ୍ ବୁର୍ଜୁଆ ଅର୍ଥନୈତିକ ସଂପର୍କର ସାରମର୍ମ ଉଦ୍‌ଘାଟନ କରି ଏହା ଯେ ବୁର୍ଜୁଆ ଏବଂ ସର୍ବହରା ସ୍ୱାର୍ଥରାଜି ମଧ୍ୟରେ ଆପୋଷହୀନ ବିରୋଧିତାର ମୂଳ ଉତ୍ସ ବୋଲି ଦର୍ଶାଇଥିଲେ । ଏଥି ସଙ୍ଗେ ସଙ୍ଗେ ବୁର୍ଜୁଆ ସମାଜକୁ ଭିତ୍ତି କରି ସେ ଯେଉଁ ଦ୍ୱନ୍ଦ୍ୱବାଦ ରଚନା କରିଥିଲେ, ତାହା ସାଧାରଣ ଭାବେ ସାମାଜିକ ଦ୍ୱନ୍ଦ୍ୱବାଦକୁ ବୁଝିବା ଦିଗରେ ମୌଳିକ ଭାବେ ଗୁରୁତ୍ୱପୂର୍ଣ୍ଣ । ବୁର୍ଜୁଆ ସମାଜର ଦ୍ୱନ୍ଦ୍ୱବାଦ ହେଉଛି ଦ୍ୱନ୍ଦ୍ୱବାଦର ଏକ ନିର୍ଦ୍ଦିଷ୍ଟ ବ୍ୟାପାର, କାରଣ, ପ୍ରଥମତଃ, ପ୍ରକୃତିର ବସ୍ତୁଗତ ଦ୍ୱନ୍ଦ୍ୱବାଦ ମଧ୍ୟ ଏଥି ସହିତ ବିଦ୍ୟମାନ, ଯେଉଁଥିରେ ସାଧାରଣ ନିୟମବଦ୍ଧତାଗୁଡ଼ିକ ନିଜ ନିଜକୁ ପ୍ରକାଶ କରିଥାନ୍ତି ଜନସାଧାରଣଙ୍କ ସାମାଜିକ କ୍ରିୟାକଳାପକୁ ନିର୍ଦ୍ଧାରିତ କରୁଥିବା ନିୟମବଦ୍ଧତାଠାରୁ ଭିନ୍ନ

---

* ଭ୍ଲାଦିମିର୍ ଇଲିଚ୍ ଲେନିନ୍, "On the Question of Dialectics", *Collected Works*, Vol. 38, Moscow, 1964, p. 361.

ଭାବେ । ଦ୍ୱିତୀୟତଃ, ଏହା ହେଉଛି ସାର୍ବିକ ଭାବେ ସାମାଜିକ ଅର୍ଥନୈତିକ ପ୍ରକ୍ରିୟା ସଂକ୍ରାନ୍ତ ଦ୍ୱନ୍ଦ୍ୱବାଦର ଏକ ବିଶେଷ ବ୍ୟାପାର ।

ବୁର୍ଜୁଆ ସମାଜର ବସ୍ତୁଗତ ଦ୍ୱନ୍ଦ୍ୱବାଦର ନିଜସ୍ୱ ଚରିତ୍ରିକ ବୈଶିଷ୍ଟ୍ୟ ରହିଛି । ସର୍ବୋପରି ଏଥିରେ ରହିଛି ବୈରିତାସଂପନ୍ନ ସାମାଜିକ ଦ୍ୱନ୍ଦ୍ୱସମୂହ, ଯିଏକି ବ୍ୟକ୍ତିଗତ ସଂପତ୍ତି, ମଣିଷ ଦ୍ୱାରା ମଣିଷର ଶୋଷଣ ଏବଂ ତତ୍‌ସଙ୍ଗେ ସଙ୍ଗେ ସାମାଜିକ ତଥା ଜାତୀୟ ଉତ୍ପୀଡ଼ନ ଦ୍ୱାରା ସୃଷ୍ଟ । ବୁର୍ଜୁଆ ସମାଜ ବିକାଶ ଲାଭ କରେ ଶ୍ରେଣୀ ସଂଗ୍ରାମ ମଧ୍ୟ ଦେଇ । ପୁଞ୍ଜିବାଦ ଅଧୀନରେ ପ୍ରଗତି ହେଉଛି ଅସମ ଏବଂ ସୀମାବଦ୍ଧ । ଦ୍ୱନ୍ଦ୍ୱଯୁକ୍ତ ଏବଂ ସ୍ୱତଃସ୍ଫୂର୍ତ୍ତ ଢଙ୍ଗରେ ସମାଜ ବିକାଶ ଲାଭ କରେ । ସାମାଜିକ ସଂପର୍କରାଜି ଉପରେ ପ୍ରଭୁତ୍ୱ କରେ ସଂଘର୍ଷ ଏବଂ ଅସମନ୍ୱୟତା । ଜନସାଧାରଣ ତଥା ଶ୍ରେଣୀମାନଙ୍କର ସାମାଜିକ କ୍ରିୟାକଳାପର ଥାଏ ବିଭିନ୍ନ ଲକ୍ଷ୍ୟ ଏବଂ ପରସ୍ପରର ବିରୋଧୀ । ଏସବୁ ତେଣୁ ପୁଞ୍ଜିବାଦର ନିଜସ୍ୱ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱବାଦର ଫଳ ସ୍ୱରୂପ ପୁଞ୍ଜିବାଦର ସ୍ୱନେତୀକରଣ ଆଡ଼କୁ ଯୁକ୍ତିସଂଗତ ଭାବେ ବାଟ କଢ଼େଇ ନିଏ ।

ଇତିହାସର ବସ୍ତୁବାଦୀ ଅବଧାରଣା ଅନୁଯାୟୀ, ଗୋଟିଏ ଅଧିକ ପ୍ରଗତିଶୀଳ ସାମାଜିକ ଅର୍ଥନୈତିକ ଗଢ଼ଣ ଦ୍ୱାରା ଅନ୍ୟ ଗୋଟିକର ସ୍ଥାନାନ୍ତରଣ ହେଉଛି ଏକ ସାମାଜିକ ନିୟମ । ଏହା ପ୍ରକାଶ ପାଇଥାଏ ବ୍ୟାପକ ଜନସାଧାରଣଙ୍କ କାର୍ଯ୍ୟକଳାପରେ । ସମାଜବାଦ ଏବଂ କମ୍ୟୁନିଜିମ୍ ହେଉଛି ସମଗ୍ର ମାନବ ଇତିହାସର ଆବଶ୍ୟକୀୟ ପରିଣାମ ଏବଂ ପୁଞ୍ଜିବାଦର ବିପ୍ଳବୀ ରୂପାନ୍ତରଣର ପ୍ରତ୍ୟକ୍ଷ ଫଳ । ବିଶ୍ୱ ସମାଜବାଦର ବାସ୍ତବତା ଦ୍ୱାରା ସଂପୂର୍ଣ୍ଣ ରୂପେ ପ୍ରମାଣିତ ଏହି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ସିଦ୍ଧାନ୍ତଟି, ଏବେ ତୀବ୍ର ଭାବାଦର୍ଶଗତ ସଂଗ୍ରାମର କେନ୍ଦ୍ର ବିନ୍ଦୁରେ ପରିଣତ ହୋଇଛି । ବୁର୍ଜୁଆ ଲେଖକମାନେ କହନ୍ତି ସମାଜବାଦୀ ବିପ୍ଳବ "ପୁରୁଣାକାଳିଆ" ହୋଇ ଗଲାଣି । ସେମାନେ ଅଭିଯୋଗ କରନ୍ତି ଯେ, ଏହି ବିପ୍ଳବ ଘଟାଇବା ପାଇଁ ଯେଉଁସବୁ ବସ୍ତୁଗତ କାରଣ ଦାୟୀ ସେସବୁ ଲୋପ ପାଇ ଗଲାଣି ଏବଂ ବୈଜ୍ଞାନିକ ତଥା କାରିଗରୀ ବିପ୍ଳବ ଅଧୀନରେ ପୁଞ୍ଜିବାଦ କାଳେ ତା'ର ସୀମିତ ଦ୍ୱନ୍ଦ୍ୱସମୂହକୁ ଅତିକ୍ରମ କରି ଗଲାଣି । ଏହି ଧାରଣାଟି କେତେକ ଅଦଳବଦଳ ରୂପ ନେଇ "ଶିଳ୍ପୋତ୍ତର ସମାଜ", "ସୁସଂଗଠିତ ପୁଞ୍ଜିବାଦ", "ସାମାଜିକ ଭାଗୁଆଳୀ ସମାଜ", "ଗଣତାନ୍ତ୍ରିକ ସମାଜବାଦ" ଏବଂ ଅନ୍ୟାନ୍ୟ ତତ୍ତ୍ୱରେ ପ୍ରକାଶ ପାଇଥାଏ । ଭାରତବର୍ଷରେ ଏହି ତତ୍ତ୍ୱଟିକୁ ବୃହତ୍ ବୁର୍ଜୁଆର ତତ୍ତ୍ୱକାରମାନେ ପ୍ରଚାର କରିଥାନ୍ତି, ଯେଉଁମାନେ କି ଜାତୀୟ ମୁକ୍ତି ବିପ୍ଳବର ବିଜୟ ପରେ ପୁଞ୍ଜିବାଦୀ ବିକାଶ ଦିଗରେ ନିଜକୁ ମୁହାଁଇ ନେଇଛନ୍ତି । ପୁଞ୍ଜିବାଦର ନେତୀକରଣ ଘଟାଇବା ପାଇଁ ବସ୍ତୁଗତ ଭିତ୍ତି ନାହିଁ ବୋଲି କହୁଥିବା ସନ୍ଦର୍ଭଟି ଅନେକ ସମୟରେ ବିଭିନ୍ନ ଉଗ୍ରବାଦୀମାନଙ୍କର ଅଭିଯୋଗ ଦ୍ୱାରା ଯୁକ୍ତ ହୋଇଥାଏ—ଯଥା, ଶ୍ରମିକ ଶ୍ରେଣୀ ଏବେ ବିପ୍ଳବର ବାହକ ହେବାକୁ ଅକ୍ଷମ, କାରଣ ସେ "ବୁର୍ଜୁଆ ପାଲଟି ଗଲାଣି" ଏବଂ ବିଦ୍ୟମାନ ସାମାଜିକ ଶାସନ ସହିତ "ମିଶି ଗଲାଣି" । ସାଧାରଣ ଭାବେ ଇତିହାସରେ ଏବଂ ବିପ୍ଳବୀ

କ୍ରିୟାକଳାପରେ ବିଶେଷ ଭାବେ ବସ୍ତୁଗତ ଏବଂ ମନୋଗତ କାରଣସମୂହ ମଧ୍ୟରେ ଆନ୍ତଃସଂପର୍କ ବିଷୟରେ କେତେକ ସ୍ପଷ୍ଟୀକରଣ ଆବଶ୍ୟକ ।

## ୪ – ସାମାଜିକ ବିକାଶର ବସ୍ତୁଗତ ଅବସ୍ଥାରାଜି ଏବଂ ମନୋଗତ କାରଣସମୂହ

ମଣିଷର ସଚେତନ କ୍ରିୟାକଳାପ ଏବଂ ଯେଉଁ ଅବସ୍ଥାରାଜି ମଧ୍ୟରେ ସେ କାର୍ଯ୍ୟ କରେ – ଏ ଦୁଇଟି କଥା ପ୍ରକାଶ ପାଇଥାଏ "ବସ୍ତୁଗତ ଅବସ୍ଥାରାଜି" ଏବଂ "ମନୋଗତ କାରଣ" ଶୀର୍ଷକ ପ୍ରବର୍ଗ ଦୁଇଟିରେ । ଶେଷଟି ହେଉଛି ଜନସାଧାରଣଙ୍କ ଚେତନା, ସଂଗଠିତ କ୍ରିୟାକଳାପ, ଇଚ୍ଛା ଏବଂ ଶକ୍ତିର ନିର୍ଦ୍ଦିଷ୍ଟ ଏକ ମାତ୍ରାକୁ ବୁଝାଏ, ଯିଏକି ଆବଶ୍ୟକ ହୁଏ ସେମାନଙ୍କ ଦ୍ୱାରା ନିର୍ଦ୍ଧାରିତ ଲକ୍ଷ୍ୟକୁ ହାସଲ କରିବା ପାଇଁ । ତେଣୁ କରି "କ୍ରିୟାର କର୍ତ୍ତା" ଏବଂ "ମନୋଗତ କାରଣ" – ଏହି ଦୁଇଟି ଅବଧାରଣା ମଧ୍ୟରେ ପାର୍ଥକ୍ୟଟା ଟାଣିବା ଦରକାର । ସାମରିକ କ୍ରିୟାର ମୁଖ୍ୟ କର୍ତ୍ତା ହେଉଛି, ଉଦାହରଣ ସ୍ୱରୂପ, ସଶସ୍ତ୍ର ବାହିନୀସମୂହ, ସେନାବାହିନୀ ଏବଂ ସାମଗ୍ରିକ ଭାବେ ସେନାବାହିନୀ ପାଇଁ ମନୋଗତ କାରଣ ହେଉଛି ସେନାଦଳଗୁଡ଼ିକର ମନୋବଳ, ଇଚ୍ଛା ପ୍ରଣୋଦକ ଗୁଣସମୂହ, ଯଥା, ସାମରିକ ତାଲିମ୍, ଶୃଙ୍ଖଳାବୋଧ, ସେମାନଙ୍କ ସେନାପତିମାନଙ୍କ ଅଭିଜ୍ଞତା, କ୍ଷମତା ଆଉ ମନୋବଳ, ସାମରିକ ଜ୍ଞାନ ଏବଂ ଦକ୍ଷତା, ସୈନ୍ୟମାନଙ୍କର ଭାବାଦର୍ଶଗତ ବିଶ୍ୱାସ ଏବଂ ନୈତିକ ସହ୍ୟ ଶକ୍ତି, ଆଦି ।

ସାମାଜିକ ରୂପାନ୍ତରଣ କ୍ଷେତ୍ରରେ ମନୋଗତ କାରଣ ପ୍ରବର୍ଗଟି ପ୍ରକାଶ କରେ ଜନସାଧାରଣଙ୍କ ଉଦ୍ଦେଶ୍ୟପୂର୍ଣ୍ଣ ଏବଂ ସଂଗଠିତ କାର୍ଯ୍ୟ ସହିତ ସନ୍ନିଶ୍ରଣକୁ । ମନୋଗତ କାରଣ ତେଣୁ ମନୋଗତ କ୍ରିୟାକୁ ଚରିତ୍ରାୟିତ କରିଥାଏ । ଅନ୍ୟ ଦିଗରେ, "ବସ୍ତୁଗତ ଅବସ୍ଥାରାଜି" ପ୍ରବର୍ଗଟି ସୂଚିତ କରେ ଯେ, ବିଶେଷ ସାମାଜିକ ପ୍ରକ୍ରିୟାର ପରିପ୍ରେକ୍ଷୀରେ ଏହା ଇଚ୍ଛା, ନିର୍ଦ୍ଦିଷ୍ଟ ଏକ ଲୋକ ଗୋଷ୍ଠୀଙ୍କ କ୍ରିୟାକଳାପ, ପାର୍ଟି, ଶ୍ରେଣୀ ବା ସାମଗ୍ରିକ ଭାବେ ସମାଜ ଉପରେ ନିର୍ଭର କରେ ନାହିଁ । ବସ୍ତୁନିଷ୍ଠ ପରିସ୍ଥିତି ହେଉଛି ସାମାଜିକ କ୍ରିୟାକଳାପର ନିର୍ଦ୍ଧାରକ ଉତ୍ସ ।

ବସ୍ତୁନିଷ୍ଠ ଅବସ୍ଥାରାଜିର ଅଗ୍ରଣୀ ଭୂମିକା ସଂପୂର୍ଣ୍ଣ ରୂପେ ପ୍ରକାଶ ପାଇଥାଏ ବିପ୍ଳବୀ କାର୍ଯ୍ୟକଳାପ ମଧ୍ୟରେ । ସାମାଜିକ ପରିବର୍ତ୍ତନରେ ସେସବୁ ହେଉଛି ନିଷ୍ପତ୍ତିମୂଳକ, କାରଣ ସେସବୁ ପ୍ରଥମତଃ ପୋଖତ ସାମାଜିକ ଦ୍ୱନ୍ଦ୍ୱସମୂହକୁ ଅତିକ୍ରମ କରିବାର ଏବଂ ଫଳତଃ ପ୍ରତ୍ୟକ୍ଷ ଜନସାଧାରଣଙ୍କ କ୍ରିୟାକଳାପର ପ୍ରକୃତ ଆବଶ୍ୟକତାକୁ ନିର୍ଦ୍ଧାରଣ କରେ । ସେସବୁ ମଧ୍ୟ ପ୍ରକୃତ ସମ୍ଭାବନା ସୃଷ୍ଟି କରନ୍ତି ସାମାଜିକ ସଂପର୍କରାଜିର ରୂପାନ୍ତରଣ ସହିତ ଯୁକ୍ତ ସାମାଜିକ ଲକ୍ଷ୍ୟରାଜିକୁ ହାସଲ କରିବା ପାଇଁ ।

ସମାଜବାଦୀ ବିପ୍ଳବର ତେବେ, ବିଶେଷ ଭାବେ, ବସ୍ତୁନିଷ୍ଠ ଅବସ୍ଥାସକଳ କ'ଣ ? ମୋଟ ଉପରେ ସେସବୁ ହେଉଛି ବୈଷୟିକ ପୂର୍ବସର୍ତ୍ତରାଜି : ଉତ୍ପାଦିକା ଶକ୍ତିସମୂହର ନିର୍ଦ୍ଦିଷ୍ଟ ଏକ ସ୍ତର, ଉତ୍ପାଦିକା ଶକ୍ତିସମୂହ ଓ ଉତ୍ପାଦନ ସଂପର୍କ ମଧ୍ୟରେ ସଂଘର୍ଷ ଏବଂ ବୁର୍ଜୁଆ ସମାଜର ସମସ୍ତ ସାମାଜିକ ବୈରିତାର ପ୍ରକୋପନ । ଏଠାରେ ବିଶେଷ ଭାବେ ଜୋର ଦେବା କଥା ଯେ, ବିପ୍ଳବର ବସ୍ତୁଗତ ପୂର୍ବସର୍ତ୍ତରାଜି ମଧ୍ୟରେ ଯାଏ ଶ୍ରମିକ ଶ୍ରେଣୀ, ଯିଏକି ହେଉଛି ସମାଜର ସମାଜବାଦୀ ରୂପାନ୍ତରଣ ପାଇଁ ଅଗ୍ରଣୀ ଶକ୍ତି । ସେସବୁ ମଧ୍ୟରେ ଆଉ ଏକ ଅବସ୍ଥାର ସମାହାର ବି ଅନ୍ତର୍ଭୁକ୍ତ, ଯାହାକୁ "ବିପ୍ଳବୀ ପରିସ୍ଥିତି" ବୋଲି ନାମିତ କରାଯାଇଥାଏ । ଯଥା, ଶାସକ ଶ୍ରେଣୀମାନଙ୍କ ପକ୍ଷରେ ସେମାନଙ୍କ ପ୍ରଭୁତ୍ୱକୁ ସଂପୂର୍ଣ୍ଣ ବଜାଏ ରଖିବା ଅସମ୍ଭବ ହୋଇ ପଡ଼େ, ସମାଜର "ଉପର ମହଲ"ରେ ସଂକଟ ଦେଖା ଦିଏ ; ନିପୀଡ଼ିତ ଶ୍ରେଣୀମାନେ ପୂର୍ବ ଭଳି ବଞ୍ଚିବାକୁ ଅକ୍ଷମ ହୋଇ ପଡ଼ନ୍ତି, ଶ୍ରମଜୀବୀ ଜନସାଧାରଣଙ୍କର ଦରିଦ୍ରତା ଆଉ ଦୁଃସ୍ଥତା ଏତେ ବୃଦ୍ଧି ପାଏ ଯେ, ସମସ୍ତ ସୀମା ଟପିଯାଏ, ଆଦି ।

ବସ୍ତୁନିଷ୍ଠ ପରିସ୍ଥିତିସମୂହ ଶେଷକୁ ବିପ୍ଳବର ଆବଶ୍ୟକତାର ଭିତ୍ତି ରୂପେ କାର୍ଯ୍ୟ କରିଥାଏ । ତା ସତ୍ତ୍ୱେ ବି ସାମାଜିକ ରୂପାନ୍ତରଣ ସଂଘଟିତ ହୋଇଥାଏ ଏକ ଅଗ୍ରଣୀ ଶ୍ରେଣୀ ଦ୍ୱାରା, ଯାର କାର୍ଯ୍ୟକଳାପ ମଧ୍ୟ ସମାଜରେ ଘଟୁଥିବା ପରିବର୍ତ୍ତନରାଜିର ଆଧେୟକୁ ନିର୍ଦ୍ଧାରଣ କରିଥାଏ । ତେଣୁ କରି ମନୋଗତ କାରଣଟା ମଧ୍ୟ ବିପ୍ଳବରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥାଏ । ଏହା ସର୍ବହରା ତଥା ଅନ୍ୟାନ୍ୟ ଶ୍ରମଜୀବୀ ଜନସାଧାରଣଙ୍କ ଦ୍ୱାରା କମ୍ୟୁନିଷ୍ଟ ଚିନ୍ତାଧାରାକୁ (ଭାବାଦର୍ଶଗତ ଉପାଦାନ) ଆୟତ୍ତ କରିବା, ବୁର୍ଜୁଆ ବିରୁଦ୍ଧରେ ଶ୍ରମିକ ଶ୍ରେଣୀର ସଂଗ୍ରାମରେ ତା'ର ମନୋବଳ ଏବଂ ଦୃଢ଼ ସଂକଳ୍ପ ; ଏବଂ ଜନସାଧାରଣଙ୍କର ସଂଗଠିତ ଏବଂ ଉଦ୍ଦେଶ୍ୟପୂର୍ଣ୍ଣ କାର୍ଯ୍ୟକଳାପକୁ ବୁଝାଏ, ଯାର ପୂର୍ବସର୍ତ୍ତ ହିସାବରେ ସର୍ବୋପରି ବିପ୍ଳବୀ ସଂଗ୍ରାମରେ କମ୍ୟୁନିଷ୍ଟ ପାର୍ଟିର ଅଗ୍ରଣୀ ଭୂମିକା ଆବଶ୍ୟକ (ସାଂଗଠନିକ ଓ ବ୍ୟାବହାରିକ ଉପାଦାନ) ।

ବିପ୍ଳବୀ କ୍ରିୟାକଳାପରେ ମନୋଗତ ଏବଂ ବସ୍ତୁଗତ କାରଣସମୂହ ମଧ୍ୟରେ ଆନ୍ତଃସଂପର୍କକୁ ଏହି ଭାବେ ବିଶ୍ଳେଷଣ କଲା ପରେ ଆମେ ଏବେ ଆଧୁନିକ ପୁଞ୍ଜିବାଦର ଦ୍ୱନ୍ଦ୍ୱବାଦ ସଂପର୍କରେ ଆଲୋଚନା କରି ପାରିବା । ବୁର୍ଜୁଆ ଭାବାଦର୍ଶବାଦୀମାନଙ୍କ ଦୃଢ଼ ଘୋଷଣା ସତ୍ତ୍ୱେ ବି ପୁଞ୍ଜିବାଦର ଚରିତ୍ରରେ ପରିବର୍ତ୍ତନ ଘଟିଲା ନାହିଁ । ବୁର୍ଜୁଆ ସାମାଜିକ ସଂପର୍କରାଜି ସ୍ଥାନରେ ଆଉରି ଏକ ପ୍ରଗତିଶୀଳ, ସମାଜବାଦୀ ସଂପର୍କରାଜି ସ୍ଥାପନ କରିବାର ବସ୍ତୁନିଷ୍ଠ ଆବଶ୍ୟକତା ଆଉରି ଅଧିକ ବୃଦ୍ଧି ପାଇଛି ବୈଜ୍ଞାନିକ ଏବଂ କାରିଗରିଗତ ବିପ୍ଳବ ଅମଳରେ ।

# ୫ – ସମାଜବାଦୀ ବିପ୍ଳବର ନିୟମାନୁଗ ପ୍ରକୃତି

ଆଧୁନିକ ପୁଞ୍ଜିବାଦର ବିକାଶରେ, ଅବଶ୍ୟ, ସଂପୂର୍ଣ୍ଣ ନୂତନ ପ୍ରପଞ୍ଚରାଜି ଦେଖିବାକୁ ମିଳେ । ଦୁଇଟି ବ୍ୟବସ୍ଥା ମଧ୍ୟରେ ସଂଗ୍ରାମର ଅବସ୍ଥା ସହିତ ବୈଜ୍ଞାନିକ ତଥା କାରିଗରୀ ବିପ୍ଳବର ଆବଶ୍ୟକତା ନିଜକୁ ଖାପଖୁଆଇ ନେବାର ପ୍ରବଣତା ସାମ୍ରାଜ୍ୟବାଦର ରାଷ୍ଟ୍ରୀୟ ଏକଚାଟିଆ ଚରିତ୍ରକୁ ଶକ୍ତିଶାଳୀ କରିଛି ଏବଂ ଶାସକ ଶ୍ରେଣୀମାନଙ୍କୁ ବାଧ୍ୟ କରିଛି ଆଉରି ଅଧିକ ନମନୀୟ ସାମାଜିକ ନୀତି ଗ୍ରହଣ କରିବାକୁ । ଏହିସବୁ ଶ୍ରେଣୀମାନେ ଉତ୍ପାଦନ ଏବଂ ପୁଞ୍ଜିର ଏକଚାଟିଆ ଠୁଳୀକରଣ ପାଇଁ ରାଷ୍ଟ୍ରର ପ୍ରୋତ୍ସାହନ, ଜାତୀୟ ଆୟର ଅଧିକତର ଅଂଶକୁ ରାଷ୍ଟ୍ର ଦ୍ୱାରା ପୁନର୍ବଣ୍ଟନ, ଏକଚାଟିଆମାନଙ୍କୁ ସାମରିକ ଅସ୍ତ୍ରଶସ୍ତ୍ର ଉତ୍ପାଦନ ପାଇଁ ବରାଦ ଦାନ, ଶିଳ୍ପ କର୍ମସୂଚୀ ଏବଂ ବୈଜ୍ଞାନିକ ଗବେଷଣା ପାଇଁ ସରକାର କର୍ତ୍ତୃକ ଅର୍ଥ ଯୋଗାଣ, ଦେଶବ୍ୟାପୀ ଅର୍ଥନୈତିକ ବିକାଶ ପାଇଁ କର୍ମସୂଚୀ ପ୍ରଣୟନ, ଅର୍ଥନୈତିକ ସମନ୍ୱୟ ନୀତି, ପୁଞ୍ଜି ରପ୍ତାନିର ନୂତନ ରୂପ, ବହୁଜାତୀୟ ଏକଚାଟିଆ ସ୍ଥାପନ ଏବଂ ନବ ଉପନିବେଶବାଦ ଭଳି ଘବିକାଠିଟିକୁ ବ୍ୟାପକ ଭାବେ ଉପଯୋଗ କରୁଛନ୍ତି । ଶ୍ରେଣୀ ସଂଗ୍ରାମ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ବୁର୍ଜୁଆ ଶ୍ରେଣୀ ସାମାଜିକ କୌଶଳ ଗ୍ରହଣ କରୁଛି ଏବଂ କେତେକ ସାମାଜିକ ସୁଯୋଗ ଦେବାକୁ ବାଧ୍ୟ ହେଉଛି । ପୁଞ୍ଜି ସହିତ ଶ୍ରେଣୀ ସଂଗ୍ରାମ ମଧ୍ୟରେ ଶ୍ରମଜୀବୀ ଜନସାଧାରଣ କେତେକ ଅଧିକାର ଏବଂ ସୁନିଶ୍ଚିତତା ନିଜ ପାଇଁ ହାସଲ କରୁଛନ୍ତି ।

ଏସବୁ ସତ୍ତ୍ୱେ ପୁଞ୍ଜିବାଦକୁ ନିରୋଗ କରି ତା'ର ଗଠନ ମଧ୍ୟରେ ଏକ "କଲ୍ୟାଣକର ରାଷ୍ଟ୍ର" ଗଢ଼ିବାର ସମସ୍ତ ଉଦ୍ୟମ ସ୍ୱଭାବିକ ଭାବେ ବିଫଳତାରେ ପର୍ଯ୍ୟବସିତ ହୋଇଛି । ପୁଞ୍ଜିବାଦ ଯେ ଏକ ଭବିଷ୍ୟତହୀନ ସମାଜ ଏହା, କ୍ରମଶଃ, ଅଧିକରୁ ଅଧିକ ପ୍ରମାଣିତ ହେବାରେ ଲାଗିଛି । ଏକଚାଟିଆମାନଙ୍କର ଆଧିପତ୍ୟ ସାମାଜିକ ବୈରିତାରାଜିକୁ ସଂରକ୍ଷଣ କରିବାରେ ଲାଗିଛି, ଯିଏକି ପ୍ରକାଶ ପାଉଛି ଲୋକମାନଙ୍କର ଦୁଃଖକଷ୍ଟ, ବେକାରି, ଉଚ୍ଚ ମୂଲ୍ୟ ଏବଂ ଅର୍ଥନୈତିକ ମାନ୍ଦାବସ୍ଥାରେ । ଏହା ମଧ୍ୟ ନୂଆ ବୈରିତାପୂର୍ଣ୍ଣ ଦ୍ୱନ୍ଦ୍ୱରାଜିକୁ ଜନ୍ମ ଦେଉଛି । "ଏହା ବିଶେଷ ଭାବେ ପ୍ରଯୋଜ୍ୟ ବୈଜ୍ଞାନିକ ଏବଂ କାରିଗରୀ ବିପ୍ଳବ ଦ୍ୱାରା ଉନ୍ମୋଚିତ ସୀମାହୀନ ସମ୍ଭାବନାସମୂହ ଏବଂ ସାମଗ୍ରିକ ଭାବେ ସମାଜର ଉପକାରରେ ସେସବୁକୁ ଉପଯୋଗ କରିବା ପଥରେ ପୁଞ୍ଜିବାଦ ଦ୍ୱାରା ସୃଷ୍ଟ ପ୍ରତିବନ୍ଧକରାଜି ମଧ୍ୟରେ ଦ୍ୱନ୍ଦ୍ୱ ପ୍ରତି । ପୁଞ୍ଜିବାଦ ଜାତୀୟ ସଂପଦର ଅପବ୍ୟୟ କରେ, ବୈଜ୍ଞାନିକ ଆବିଷ୍କାର ଏବଂ ଅପରିମେୟ ବୈଷୟିକ ସମ୍ବଳର ବିରାଟ ଏକ ଅଂଶକୁ ଯୁଦ୍ଧ ଉଦ୍ଦେଶ୍ୟରେ ବ୍ୟୟ କରେ । ଏହାହିଁ ହେଉଛି ବର୍ତ୍ତମାନ ଉତ୍ପାଦନର ସାମାଜିକ ଚରିତ୍ର ଏବଂ ତା'ର ନିୟନ୍ତ୍ରଣର ରାଷ୍ଟ୍ରୀୟ ଏକଚାଟିଆ ଚରିତ୍ର ମଧ୍ୟରେ ଦ୍ୱନ୍ଦ୍ୱ । ଏହା କେବଳ ପୁଞ୍ଜି ଏବଂ ଶ୍ରମ ମଧ୍ୟରେ ଦ୍ୱନ୍ଦ୍ୱର ଅଭିବୃଦ୍ଧି ନୁହେଁ, ଏହା ହେଉଛି ଅତ୍ୟଧିକ

ସଂଖ୍ୟକ ଜାତି ଏବଂ ଆର୍ଥିକ ଏକଗୁଟିଆ ଗୋଷ୍ଠୀ ମଧ୍ୟରେ ବୈରିତାର ଗଭୀରକରଣ ।”*
ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସକୁ ପ୍ରଦତ୍ତ ରିପୋର୍ଟରେ ଲିଓନିଦ୍ ବ୍ରେଜ୍‌ନେଭ୍ କହିଥିଲେ, ସାଂପ୍ରତିକ ବର୍ଷମାନଙ୍କରେ ପୁଞ୍ଜିବାଦର ସାଧାରଣ ସଂକଟ ଆଉରି ପ୍ରକୋପିତ ହୋଇ ଦୁନିଆରେ ସାମ୍ରାଜ୍ୟବାଦୀ ପ୍ରଭାବର କ୍ଷେତ୍ର ସଂକୁଚିତ ହୋଇଛି, ଦଶ ବର୍ଷ ମଧ୍ୟରେ ପୁଞ୍ଜିବାଦର ତୃତୀୟ ଅର୍ଥନୈତିକ ମାନ୍ଦାବସ୍ଥା ଦେଖା ଦେଇଛି, ଜନସାଧାରଣଙ୍କ ଜୀବନଯାତ୍ରାର ମାନ ତଳକୁ ଖସି ଆସିଛି, ଆନ୍ତଃସାମ୍ରାଜ୍ୟବାଦୀ ଦ୍ୱନ୍ଦ୍ୱସମୂହ ଆଉରି ତୀବ୍ର ହୋଇଛି, କଞ୍ଚାମାଲ ଏବଂ ଶକ୍ତିର ଉତ୍ସ ପାଇଁ ପ୍ରାଣମୂର୍ଚ୍ଛା ଟଣାଓଟରା ଲାଗିଛି, ସାମରିକ ବ୍ୟୟରେ ଅଭୂତପୂର୍ବ ଅଭିବୃଦ୍ଧି ଘଟିଛି, ସାମ୍ରାଜ୍ୟବାଦୀ ନୀତିରେ ସର୍ବୋପରି ଆମେରିକାର ସାମ୍ରାଜ୍ୟବାଦୀ ନୀତିରେ ଆକ୍ରମଣମୁଖିତା ଏବଂ ଦୁଃସାହସିକତା ତୀବ୍ର ଭାବେ ବଢ଼ି ଚାଲିଛି ଏବଂ ପୁଞ୍ଜିବାଦୀ ଦେଶମାନଙ୍କ ମଧ୍ୟରେ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱରାଶି ତୀବ୍ର ଭାବେ ପ୍ରକୋପିତ ହୋଇଛି । ଶିଳ୍ପୋନ୍ନତ ପୁଞ୍ଜିବାଦୀ ଦେଶ ଏବଂ ଉନ୍ନୟନଶୀଳ ଦେଶମାନଙ୍କ ଦ୍ୱନ୍ଦ୍ୱସମୂହ ଅଧିକ ଜଟିଳ ହେବାରେ ଲାଗିଛି । ରାଷ୍ଟ୍ରୀୟ ଏକଗୁଟିଆ ପୁଞ୍ଜିବାଦ ଅଧୀନରେ, ବୈଜ୍ଞାନିକ ଏବଂ କାରିଗରୀ ବିପ୍ଳବ ବିଭିନ୍ନ ଦେଶର ଅଭ୍ୟନ୍ତରରେ ଏବଂ ଦେଶ ଦେଶ ମଧ୍ୟରେ ସାମାଜିକ ଅସାମ୍ୟତାକୁ ଗଭୀର କରିଛି । ବେକାରି ଆଉରି ବ୍ୟାପକ ଏବଂ ସ୍ଥାୟୀ ହେବାରେ ଲାଗିଛି । ୧୯୮୨ ମସିହା ଅକ୍ଟୋବର ବେଳକୁ ଆମେରିକା ଯୁକ୍ତ ରାଷ୍ଟ୍ରରେ ପ୍ରାୟ ୨ କୋଟି ଲୋକ ବେକାର ଥିଲେ । ଗତ ତିନି ବର୍ଷ ମଧ୍ୟରେ ପାଶ୍ଚାତ୍ୟ ଶିଳ୍ପୋନ୍ନତ ପୁଞ୍ଜିବାଦୀ ଦେଶମାନଙ୍କରେ ବେକାର ବାହିନୀର ସଂଖ୍ୟା ୧ କୋଟି ୯୦ ଲକ୍ଷରୁ ୩ କୋଟିକୁ ବୃଦ୍ଧି ପାଇଛି । ପ୍ରଭୁତ୍ୱକାରୀ ସଂପ୍ରଦାୟ ଏବଂ ଶ୍ରମଜୀବୀ ଜନସାଧାରଣଙ୍କ ଜୀବନଧାରଣର ସ୍ତର ମଧ୍ୟରେ ପାର୍ଥକ୍ୟ ବଢ଼ି ଚାଲିଛି । ଏପରିକି, ସବୁଠାରୁ ଉନ୍ନତ ପୁଞ୍ଜିବାଦୀ ଦେଶରେ, ଅର୍ଥାତ୍, ଆମେରିକା ଯୁକ୍ତ ରାଷ୍ଟ୍ରରେ ୫୦ ନିୟୁତ ଲୋକ ଦରିଦ୍ରତା ମଧ୍ୟରେ ବାସ କରନ୍ତି । “ତୃତୀୟ ଦୁନିଆ”ରେ, ଏପରିକି ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କରେ ଦରିଦ୍ରତା ଏବଂ କ୍ଷୁଧାର ଅଞ୍ଚଳଗୁଡ଼ିକ ବଢ଼ିବାରେ ଲାଗିଛି । କ୍ଷୁଧା ଏବଂ ଚିକିତ୍ସାହୀନତା ହେତୁ ବର୍ଷକୁ ୨୫ ନିୟୁତ ଲୋକ ମୃତ୍ୟୁବରଣ କରୁଛନ୍ତି । ଅବହମଣ୍ଡଳୀୟ ଏବଂ ପାରିପାର୍ଶ୍ୱିକ ଅବସ୍ଥାରେ ସଂକଟର ଫଳ ସ୍ୱରୂପ ଜୀବନାବସ୍ଥାରେ ଦ୍ରୁତ ଅବନତି ଘଟି ଚାଲିଛି ।

ଏହିସବୁ ଏବଂ ଅନ୍ୟାନ୍ୟ ଦ୍ୱନ୍ଦ୍ୱରାଜି ଆଉରି ଅଧିକ ତୀବ୍ର ହେବାରେ ଲାଗିଛି ଏବଂ ସେସବୁ ୧୯୧୭ ମସିହାରେ ରୁଷିଆରେ ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବ ଦ୍ୱାରା ପୃଥିବୀରେ ସୃଷ୍ଟ ହୋଇଥିବା ବିଶ୍ୱ ବୈପ୍ଳବିକ ପ୍ରକ୍ରିୟାକୁ ସଂପ୍ରସାରିତ ତଥା ଗଭୀର କରିବାର ଐତିହାସିକ ଆବଶ୍ୟକତା ସୃଷ୍ଟି କରିଛି ।

---

* କମ୍ୟୁନିଷ୍ଟ ଏବଂ ଶ୍ରମିକ ପାର୍ଟିମାନଙ୍କର ଆନ୍ତର୍ଜାତିକ ବୈଠକ, ମସ୍କୋ, ୧୯୬୯, ପ୍ରାଗ୍, ୧୯୬୯, ପୃ: ୧୯ ।

ପୁଞ୍ଜିବାଦର ସ୍ୱନେଚୀକରଣ ପାଇଁ ବସ୍ତୁନିଷ୍ଠ ଅବସ୍ଥାରାଜି ଏବଂ କାରଣସମୂହ ଏହି ଭାବେ ସେସବୁର ଶକ୍ତି ହରେଇ ନାହାନ୍ତି, ବରଂ ସେସବୁ ଆଉରି ପରିପକ୍ୱ ଏବଂ ଫଳପ୍ରଦ ହୋଇଛନ୍ତି । ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ଗଠନ ଏବଂ ଦୃଢ଼ୀକରଣ ଦ୍ୱାରା ଏହାକୁ ଐତିହାସିକ ପ୍ରଗତି ପକ୍ଷରେ ଏକ ଶକ୍ତିଶାଳୀ ଗତିପରିବର୍ତ୍ତକରେ ପରିଣତ କରିଛି । ପୁଞ୍ଜିବାଦୀ ଦୁନିଆ ଉପରେ ଏହି ବ୍ୟବସ୍ଥାର ରହିଛି ଏକ ବିଶାଳ ବୈପ୍ଳବିକ ପ୍ରଭାବ ଏବଂ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରେ ଏହା ଏକ ନିୟାମକ ଶକ୍ତି ରୂପେ କାର୍ଯ୍ୟ କରୁଛି । ଜାତୀୟ ମୁକ୍ତି ଏବଂ ଜାତୀୟ ସ୍ୱାଧୀନତାକୁ ରକ୍ଷା କରିବା ପାଇଁ ସଂଗ୍ରାମ କରୁଥିବା ଜାତିମାନେ ସାମ୍ରାଜ୍ୟବାଦ ଉପରେ ଅଧିକରୁ ଅଧିକ ଆକ୍ରମଣ ଚଳେଇ ଯାଉଛନ୍ତି । ପୃଥିବୀର ସମସ୍ତ ମହାଦେଶର ପ୍ରାୟ ଶହେଟି ଦେଶକୁ ଐକ୍ୟବଦ୍ଧ କରିଛି ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ, ସେସବୁ ଦେଶର ଲୋକ ସଂଖ୍ୟା ୧୫୦ କୋଟି । ଏହି ଆନ୍ଦୋଳନର ଶକ୍ତି ଏବଂ ବିଶ୍ୱ ରାଜନୀତିରେ ତା'ର ଅଧିକତର ଭୂମିକା ନିର୍ଭର କରୁଛି ସାମ୍ରାଜ୍ୟବାଦ ଏବଂ ଉପନିବେଶବାଦ ବିରୁଦ୍ଧରେ, ଯୁଦ୍ଧ ଏବଂ ଆକ୍ରମଣ ବିରୁଦ୍ଧରେ ଏହା ପରିଚାଳିତ । ଯେଉଁସବୁ ଉନ୍ନୟନଶୀଳ ଦେଶମାନେ ସେମାନଙ୍କ ଉପନିବେଶବାଦୀ ଯୁଆଳିକୁ ଫିଙ୍ଗି ଦେଇଛନ୍ତି ସେମାନଙ୍କୁ ସେମାନଙ୍କର କଠିନ ଅର୍ଥନୈତିକ, ସାମାଜିକ, ଲୋକସଂଖ୍ୟାଗତ, ସାଂସ୍କୃତିକ ଏବଂ ଭାବାଦର୍ଶଗତ ସମସ୍ୟାକୁ ସମାଧାନ କରିବାକୁ ପଡ଼ିବ ।

ସମସ୍ତ ଶ୍ରମଜୀବୀ ସ୍ତରକୁ ଅଧିକରୁ ଅଧିକତର ଆକର୍ଷଣ କରିବାର କେନ୍ଦ୍ର ହିସାବରେ ଶ୍ରମିକ ଶ୍ରେଣୀ ହେଉଛି ଆଧୁନିକ ବିପ୍ଳବୀ ପ୍ରକ୍ରିୟାରେ ଅଗ୍ରଣୀ ଶକ୍ତି । ଏହାର ନିରବଚ୍ଛିନ୍ନ ବିପ୍ଳବୀ ଚରିତ୍ର ନିର୍ଦ୍ଧାରିତ ହୋଇଥାଏ, ସର୍ବୋପରି, ତା'ର ସାମାଜିକ ସତ୍ତା ଦ୍ୱାରା, ବୁର୍ଜୁଆ ସମାଜରେ ଉତ୍ପାଦନ ବ୍ୟବସ୍ଥାରେ ତା'ର ସ୍ଥାନ ଦ୍ୱାରା ଏବଂ ପୁଞ୍ଜିବାଦୀ ଉତ୍ପାଦନ ପଦ୍ଧତିଠାରୁ ଆଉ ଏକ ଉଚ୍ଚତର ପଦ୍ଧତିକୁ ନେଇ ଯିବାର ଏ ଶ୍ରେଣୀ ହେଉଛି ଯେ ବାହକ, ସେଇ ନିୟାମକ ଅବସ୍ଥାଟି ଦ୍ୱାରା ।

ଆଉରି ଅଧିକ ପ୍ରଯୁକ୍ତିଗତ ଅଗ୍ରଗତି ଶ୍ରମିକ ଶ୍ରେଣୀ ମଧ୍ୟରେ ଗଠନଗତ ପରିବର୍ତ୍ତନ ଆଣିଥାଏ । ତା'ର କେନ୍ଦ୍ର ବିନ୍ଦୁ ହେଉଛି ଯେଉଁ ସର୍ବହରା ଶ୍ରେଣୀ, ତାହା ଚତୁଃପାର୍ଶ୍ୱରେ ବିବିଧ ସଂପ୍ରଦାୟ ଏବଂ ଗୋଷ୍ଠୀ ଦ୍ୱାରା "ବେଷ୍ଟିତ" ହେବାରେ ଲାଗିଛି, (ସେବାସମୂହ, ବିକ୍ରୟ ସଂସ୍ଥା, ସୂଚନା ଏବଂ ଯୋଗାଯୋଗ ସଂସ୍ଥାର କର୍ମୀବୃନ୍ଦ, କାରିଗର ବୁଦ୍ଧିଜୀବୀ, ଆଦି) । ସେମାନେ ସମସ୍ତେ ସେମାନଙ୍କର ଅର୍ଥନୈତିକ ତଥା ସାମାଜିକ ଅବସ୍ଥାନ ଦ୍ୱାରା ସର୍ବହରାର ନିକଟତର ହୋଇ ଆସୁଛନ୍ତି । ଏହି ଅବସ୍ଥାନରେ ନିମ୍ନଲିଖିତ ବୈଶିଷ୍ଟ୍ୟଗୁଡ଼ିକ ପ୍ରକାଶ ପାଇଥାଏ : ପୁଞ୍ଜିବାଦୀ ଶୋଷଣ ବ୍ୟବସ୍ଥା ପ୍ରତି ସାର୍ବିକ ନତିସ୍ୱୀକାର, ପରିଚାଳନା ଏବଂ ସଂଗଠନ କାର୍ଯ୍ୟକରଣଠାରୁ ସଂପୂର୍ଣ୍ଣ ପୃଥକ୍ତା ; ନିର୍ଭରଶୀଳ ଏବଂ ସଂପୂର୍ଣ୍ଣ ରୂପେ ଯାନ୍ତ୍ରିକ ଶ୍ରମଗତ କାର୍ଯ୍ୟକଳାପ ।

ରାଷ୍ଟ୍ରୀୟ ଏକଚଟିଆ ପ୍ରଭୁତ୍ୱର ଏକମାତ୍ର ବ୍ୟବସ୍ଥା ପ୍ରତି ସମାନ ଅଧୀନ ଅବସ୍ଥାରେ

ନିଜକୁ ଦେଖି ପାରି ବିଭିନ୍ନ ଶ୍ରମିକ ଶ୍ରେଣୀର ଗୋଷ୍ଠୀଗୁଡ଼ିକ ବସ୍ତୁନିଷ୍ଠ ଭାବେ ଅନିବାର୍ଯ୍ୟ ରୂପେ ପୁଞ୍ଜିବାଦ ବିରୁଦ୍ଧରେ ଶ୍ରେଣୀ ସଂଗ୍ରାମର ସାଧାରଣ ସ୍ୱାର୍ଥ ପାଇଁ ଐକ୍ୟବଦ୍ଧ ହେଉଛନ୍ତି । ଏହା ଦ୍ୱାରା ଏକ ଜାତୀୟ ଶକ୍ତି ହିସାବରେ ଶ୍ରମିକ ଶ୍ରେଣୀର ଅନ୍ତର୍ନିହିତ ଶକ୍ତି ଏବଂ ଭୂମିକା ବିପୁଳ ପରିମାଣରେ ବୃଦ୍ଧି ପାଇଛି ।

ଭାରତର ଶ୍ରମିକ ଶ୍ରେଣୀର ସଂଖ୍ୟା ଦ୍ରୁତ ଭାବେ ବୃଦ୍ଧି ପାଇବାରେ ଲାଗିଛି । ଦ୍ୱିତୀୟ ମହାଯୁଦ୍ଧ ପରେ ଶିଳ୍ପୋତ୍ପାଦନ ବୃଦ୍ଧି ପାଇଛି ଚାରି ଗୁଣ, ମେସିନ୍ ନିର୍ମାଣ ଆଠ ଗୁଣ, ବହୁ ନୂଆ ନୂଆ ଶିଳ୍ପ ଶାଖା ମଧ୍ୟ ମୁଣ୍ଡ ଟେକି ଉଠିଛି । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କ ଗତ ସୋଭିଏତ୍ ୟୁନିଅନ୍ ଗସ୍ତ ବେଳେ ଭାରତରେ ବିରାଟ ସାମାଜିକ-ଅର୍ଥନୈତିକ ଏବଂ କାରିଗରୀ ରୂପାନ୍ତରଣ ଘଟିଛି ବୋଲି ଜୋର ଦେଇ କହିଥିଲେ । ଏହା ଭାରତୀୟ ଲୋକଙ୍କ ଦ୍ୱାରା ଏବଂ ଭାରତର ସମ୍ବଳରାଶି ଦ୍ୱାରା ସାଧିତ ହୋଇଛି ବୋଲି ସେ କହିଥିଲେ । ଶିଳ୍ପାୟନ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରୁଛି ରାଷ୍ଟ୍ରାୟତ୍ତ ଶିଳ୍ପ, ଯିଏକି ସମଗ୍ର ଶିଳ୍ପୋତ୍ପାଦନର ଶତକଡ଼ା କୋଡ଼ିଏ ଭାଗ ଉତ୍ପାଦନ କରୁଛି । ଭାରତର ଜାତୀୟ ଅର୍ଥନୀତିର ବିକାଶ କ୍ଷେତ୍ରରେ ସୋଭିଏତ୍ ୟୁନିଅନ୍ ବିପୁଳ ସହାୟତା ଦାନ କରୁଛି । ସୋଭିଏତ୍ ଭାରତ ସହଯୋଗିତାର ଭିତ୍ତିରେ ପ୍ରାୟ ୭୦ଟି ଶିଳ୍ପ ପ୍ରକଳ୍ପ ଗଢ଼ି ଉଠିଛି ବା ଗଢ଼ା ହେଉଛି । ସୋଭିଏତ୍ ସହାୟତାରେ ଗଢ଼ି ଉଠିଥିବା ଶିଳ୍ପୋଦ୍ୟୋଗସମୂହ ଭାରତୀୟ ତୈଳର ଶତକଡ଼ା ୭୦ ଭାଗ, ଧାତବ ଶିଳ୍ପ ଯନ୍ତ୍ରର ଶତକଡ଼ା ୮୦ ଭାଗ, ଭାରୀ ବୈଦ୍ୟୁତିକ ଯନ୍ତ୍ରପାତିରେ ଶତକଡ଼ା ୬୦ ଭାଗ, ଇସ୍ପାତର ଶତକଡ଼ା ପ୍ରାୟ ୩୦ ଏବଂ ବିଦ୍ୟୁତ୍‌ର ଶତକଡ଼ା ୨୦ ଭାଗ ଉତ୍ପାଦନ କରୁଛନ୍ତି । ଭାରତ ମୋଟ ଶିଳ୍ପୋତ୍ପାଦନ ଦିଗରୁ ପୃଥିବୀର ଦଶଟି ସବୁଠାରୁ ଶିଳ୍ପୋନ୍ନତ ଦେଶମାନଙ୍କ ମଧ୍ୟରେ ଅନ୍ୟତମ । ଦେଶର ଏହି ଶିଳ୍ପାୟନ ଫଳରେ ଶିଳ୍ପ ଶ୍ରମିକମାନଙ୍କର ସଂଖ୍ୟାରେ ମଧ୍ୟ ବୃଦ୍ଧି ଘଟିଛି । କାରିଗରୀ ବିଶେଷଜ୍ଞ ଏବଂ ସୁଦକ୍ଷ ଶ୍ରମିକମାନଙ୍କର ସଂଖ୍ୟା ଦୃଷ୍ଟିରୁ ପୃଥିବୀରେ ଭାରତର ସ୍ଥାନ ହେଉଛି ତୃତୀୟ । ଏଥି ସଙ୍ଗେ ସଙ୍ଗେ ଭାରତୀୟ ଶ୍ରମିକମାନଙ୍କର ସବୁଠାରୁ ବହୁବିଧ ବାହିନୀଗୁଡ଼ିକ ହେଉଛନ୍ତି କୃଷିରେ ନିୟୋଜିତ ସର୍ବହରା । ୧୯୭୧ର ଜନଗଣନା ଅନୁଯାୟୀ ଗ୍ରାମ୍ୟ ଶ୍ରମିକମାନେ (କୃଷିରେ ନିୟୋଜିତ ଏବଂ ଦିନ ମଜୁରିଆ) ହେଉଛନ୍ତି କେରଳରେ କୃଷିରେ ନିୟୋଜିତ ଜନସଂଖ୍ୟାର ଶତକଡ଼ା ୬୩.୨ ଭାଗ, ଆନ୍ଧ୍ରରେ ୫୪ ଭାଗ, ବିହାରରେ ୪୭.୩ ଭାଗ ଏବଂ ପଶ୍ଚିମ ବଙ୍ଗରେ ୪୫.୩ ଭାଗ ।

ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରେ ଶ୍ରମିକ ଶ୍ରେଣୀର ଅଗ୍ରଣୀ ଭୂମିକା ଏବଂ ଆଜିକାଲି ତା'ର କ୍ରମବର୍ଦ୍ଧମାନ ବିପ୍ଳବୀ ଶକ୍ତିକୁ ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଆମକୁ ବିପ୍ଳବୀ କ୍ରିୟାକଳାପର ଦ୍ୱନ୍ଦ୍ୱବାଦରେ ଅନ୍ୟାନ୍ୟ ଆବଶ୍ୟକୀୟ ମୁହୂର୍ତ୍ତଗୁଡ଼ିକୁ ବିଚାର କରିବାକୁ ପଡ଼ିବ । ଏ କଥା ଗୁରୁତ୍ୱପୂର୍ଣ୍ଣ ଯେ, ସମାଜବାଦୀ ବିପ୍ଳବର ସାମାଜିକ ଭିତ୍ତି କେବଳ ଶ୍ରମିକ ଶ୍ରେଣୀ ମଧ୍ୟରେ ସୀମିତ ନୁହଁ । ଏହି ବିପ୍ଳବ ତା'ର ପୂର୍ବବର୍ତ୍ତୀ ସମସ୍ତ ବିପ୍ଳବଠାରୁ

ମୌଳିକ ଭାବେ ଭିନ୍ନ । ଏହା ଶ୍ରମଜୀବୀ ଜନସାଧାରଣଙ୍କୁ ଶୋଷଣର ସମସ୍ତ ପ୍ରକାର ରୂପରୁ ମୁକ୍ତ କରି ସେମାନଙ୍କୁ ସକ୍ରିୟ କ୍ରିୟାକଳାପ ପାଇଁ ଉତ୍‌ଥିତ କରିଥାଏ । ତେଣୁ କରି ସମାଜବାଦୀ ବିପ୍ଳବ ହେଉଛି ତା'ର ଚରିତ୍ର ଏବଂ ଲକ୍ଷ୍ୟ ଦୃଷ୍ଟିରୁ ଏକ ଅକୃତ୍ରିମ ଗଣ ବିପ୍ଳବ, ଜନସାଧାରଣଙ୍କର ଅଧିକାଂଶ ଲୋକଙ୍କର ସାମାଜିକ କାର୍ଯ୍ୟକଳାପର ଫଳ ସ୍ୱରୂପ । କେବଳ ସର୍ବହରା ନୁହେଁ, ଅର୍ଦ୍ଧସର୍ବହରା ଏବଂ ସହର ତଥା ଗ୍ରାମାଞ୍ଚଳର ପେଟି-ବୁର୍ଜୁଆ ସଂପ୍ରଦାୟଗୁଡ଼ିକ ସମାଜବାଦୀ ବିପ୍ଳବରେ ଅଂଶ ଗ୍ରହଣ କରିଥାନ୍ତି । ସାମାଜିକ ତଥା ଜାତୀୟ ଉତ୍‌ପୀଡ଼ନର ଏକ ବ୍ୟବସ୍ଥା ହିସାବରେ ସାମ୍ରାଜ୍ୟବାଦ କେବଳ ଶୋଷଣର ନୂତନ ରୂପସବୁ ପ୍ରତିଷ୍ଠା କରେ ନାହିଁ, ପୁଞ୍ଜିବାଦପୂର୍ବ ରୂପଗୁଡ଼ିକୁ ମଧ୍ୟ ସଂରକ୍ଷିତ କରିଥାଏ । ସର୍ବହରା ଶ୍ରେଣୀ ଭଳି କୃଷକ ଏବଂ ପେଟି-ବୁର୍ଜୁଆ ଜନସାଧାରଣ ମଧ୍ୟ ସମାଜବାଦରେ ଆଗ୍ରହୀ । ଏହା ସେମାନଙ୍କୁ ଉତ୍‌ପୀଡ଼ନରୁ ମୁକ୍ତ କରିଥାଏ । ବିକାଶଶୀଳ ଦେଶମାନଙ୍କରେ ଜନସଂଖ୍ୟାର ଅଧିକାଂଶ ହେଉଛନ୍ତି ଅଣସର୍ବହରା ସାମାଜିକ ସଂପ୍ରଦାୟଗୁଡ଼ିକ । ଏସବୁ ଦେଶରେ ବିପ୍ଳବୀ ପ୍ରକ୍ରିୟା ମଧ୍ୟରେ ବିଶେଷ ଗୁରୁତ୍ୱ ଲାଭ କରିଥାଏ କୃଷକ ଏବଂ ଅଣସର୍ବହରା ଜନସାଧାରଣଙ୍କ ସହିତ ଶ୍ରମିକ ଶ୍ରେଣୀର ଐକ୍ୟ । ଶ୍ରମିକ ଶ୍ରେଣୀ ଯଦି ଏହି ଐକ୍ୟକୁ ନେତୃତ୍ୱ ଦିଏ, ତେବେ ତାହା ଜାତୀୟ ଏବଂ ସାମାଜିକ ମୁକ୍ତି ପାଇଁ ଉନ୍ନୟନଶୀଳ ଦେଶମାନଙ୍କର ସଫଳ ସଂଗ୍ରାମ ଦିଗରେ ନିଷ୍ପତ୍ତିମୂଳକ ହୋଇଥାଏ ।

ପୁଞ୍ଜିବାଦରୁ ସମାଜବାଦକୁ ଉତ୍ତରଣର ବସ୍ତୁଗତ ନିୟମ କ୍ରମଶଃ ଆମ ଯୁଗରେ ଅଧିକ ସ୍ପଷ୍ଟ ହୋଇ ଉଠୁଛି, କିନ୍ତୁ ଏହା ସ୍ୱୟଂକ୍ରିୟ ଭାବେ ବାସ୍ତବାୟିତ ନହୋଇ ସାମ୍ରାଜ୍ୟବାଦ ଏବଂ ପ୍ରତିକ୍ରିୟା ବିରୁଦ୍ଧରେ ବିପ୍ଳବୀ ଶକ୍ତିସମୂହର ତୀବ୍ର ସଂଗ୍ରାମ ମଧ୍ୟ ଦେଇ ହୋଇଥାଏ । ଏହିସବୁ ଅବସ୍ଥାରେ ବିପ୍ଳବୀ କ୍ରିୟାକଳାପର ବସ୍ତୁଗତ କାରଣର ତାତ୍ପର୍ଯ୍ୟ ବୃଦ୍ଧି ପାଇବାରେ ଲାଗିଛି, ବିଶେଷ କରି ସର୍ବହରା ଶ୍ରେଣୀ ଚେତନାର ବିକାଶ ତଥା ବିପ୍ଳବୀ ଅଗ୍ରପଦକ୍ଷେପ, ସଂସ୍କାରମୂଳକ ବିଭ୍ରାନ୍ତିରୁ ଶ୍ରମିକ ଶ୍ରେଣୀ ଏବଂ ତା'ର ମିତ୍ରମାନଙ୍କର ମୁକ୍ତି, ସମସ୍ତ ସାମ୍ରାଜ୍ୟବାଦ ବିରୋଧୀ ଶକ୍ତିମାନଙ୍କର ସଂଗଠନ, ବିପ୍ଳବୀ ରୂପାନ୍ତରଣରେ ଦୃଢ଼ ସଂକଳ୍ପ ଏବଂ ସଙ୍ଗତିପୂର୍ଣ୍ଣ, ଆଦି । ଶ୍ରମିକମାନଙ୍କର ଶ୍ରେଣୀ ଲକ୍ଷ୍ୟସମୂହକୁ ହାସଲ କରିବା ପାଇଁ ସେମାନଙ୍କ ସଂଗ୍ରାମରେ ସାଫଲ୍ୟ ବିପୁଳ ଭାବେ ନିର୍ଭର କରେ ଏହାକୁ ନେତୃତ୍ୱ ଦେଉଥିବା ଶ୍ରମିକ ଶ୍ରେଣୀ ଏବଂ କମ୍ୟୁନିଷ୍ଟ ପାର୍ଟିମାନଙ୍କ ଦ୍ୱାରା ବିପ୍ଳବୀ କ୍ରିୟାକଳାପର ଅତୀବ ଜରୁରୀ ରୂପ ଏବଂ ପଦ୍ଧତିଗୁଡ଼ିକର ସଠିକ ନିର୍ଦ୍ଧାରଣ ଉପରେ ।

# ୬ – ଇତିହାସରେ ସାମାଜିକ ବଳପ୍ରୟୋଗର ଭୂମିକା

ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ବଳପ୍ରୟୋଗର ଭୂମିକାର ଖୁବ୍ ପ୍ରାସଙ୍ଗିକ ସମସ୍ୟାଟି ନେଇ ଆଲୋଚନା କରିବା ଏବେ ଖୁବ୍ ଆବଶ୍ୟକ । ଏହି ସମସ୍ୟାଟି ଉପରେ ଦୁଇଟି ଏକପାଖିଆ ତତ୍ତ୍ୱ ରହିଛି । ପ୍ରଥମ ତତ୍ତ୍ୱଟିର ଅନୁଗାମୀମାନେ ମାନବ ଇତିହାସରେ ବଳପ୍ରୟୋଗକୁ ନିଶ୍ଚିତ ବୋଲି ମନେ କରନ୍ତି ଏବଂ ସମସ୍ତ ସାମାଜିକ ପରିବର୍ତ୍ତନର ଅନ୍ତିମ କାରଣ ଏବଂ ମୁଖ୍ୟ ପଦ୍ଧତି ବୋଲି ଘୋଷଣା କରିଥାନ୍ତି । ଆଜି କାଲି ଏହି ଧରଣର ଭାବବାଦୀ ଏବଂ ସ୍ୱତଃସ୍ଫୂର୍ତ୍ତବାଦୀ ମତରାଜି ପୋଷଣ କରିଥାନ୍ତି ଅତୀବ ପ୍ରତିକ୍ରିୟାଶୀଳ ସାମ୍ରାଜ୍ୟବାଦୀ ମହଲଗୁଡ଼ିକ । ଆନ୍ତର୍ଜାତିକ ପ୍ରଶ୍ନଗୁଡ଼ିକର ସମାଧାନ ପାଇଁ ସେମାନେ ଆଣବିକ କ୍ଷେପଣାସ୍ତ୍ର ଉପରେ ନିର୍ଭର କରନ୍ତି । ଏହି ତତ୍ତ୍ୱଟିକୁ ସମରବାଦୀ ଶକ୍ତିମାନେ ମଧ୍ୟ ଘୋଷଣା କରିଥାନ୍ତି, ଯେଉଁମାନେ କି ଜାତିମାନଙ୍କୁ ନୂତନ ବିଶ୍ୱଯୁଦ୍ଧ ମଧ୍ୟକୁ ଠେଲି ଦେବାକୁ ଚାହାନ୍ତି । ପେଟି-ବୁର୍ଜୁଆ ବିପ୍ଳବବାଦର ନବନୈରାଜ୍ୟବାଦୀ, ନବ-ଟ୍ରଟସ୍କାଇଟ୍ ଏବଂ ଅନ୍ୟାନ୍ୟ ଉଗ୍ରବାଦୀ ଗୋଷ୍ଠୀମାନେ ମଧ୍ୟ ଏକାନ୍ତ ଭାବେ ନିର୍ଭର କରନ୍ତି ହିଂସା ଉପରେ । ଉଗ୍ରପନ୍ଥୀମାନଙ୍କ ଦ୍ୱାରା ଅନୁଷ୍ଠିତ ହିଂସାତ୍ମକ କାର୍ଯ୍ୟ, ଗୁଣ୍ଡାମି ଏବଂ ହତ୍ୟା କେବଳ ଲୋକଙ୍କ ବିପ୍ଳବୀ ଚେତନାର ସୃଷ୍ଟି ଏବଂ ଐକ୍ୟବଦ୍ଧ କାର୍ଯ୍ୟରେ ବାଧା ସୃଷ୍ଟି କରିଥାଏ । ହିଂସାର ଏତାଦୃଶ ଏକାନ୍ତ ନିର୍ଦ୍ଧିତୀକରଣ ହେଉଛି ରାଜନୈତିକ ଭାବେ କ୍ଷତିକାରକ ଏବଂ ତତ୍ତ୍ୱଗତ ଭାବେ ଯୁକ୍ତିହୀନ ।

ଏହା ହେଉଛି ଇତିହାସର ଏକ ଭାବବାଦୀ ମତ । ହିଂସା ସାମାଜିକ ବିକାଶର ଏକ ସ୍ୱାଧୀନ ଏବଂ ନିୟାମକ କାରଣ ନୁହେଁ । ଏହା କେବେହେଲେ ଅର୍ଥନୈତିକ ସଂପର୍କରାଜି ସୃଷ୍ଟି କରେ ନାହିଁ, ବରଂ ଏହା ସେସବୁ ଉପରେ ନିର୍ଭରଶୀଳ ଏବଂ ଶ୍ରେଣୀଯୁକ୍ତ ସମାଜରେ ବୈରିତାପୂର୍ଣ୍ଣ ଦ୍ୱନ୍ଦ୍ୱସମୂହର ବିକାଶ ମଧ୍ୟରୁ ଏହା ଜନ୍ମ ନେଇଥାଏ । ମାର୍କସ୍ ଲେଖିଥିଲେ, "ଶକ୍ତି ହେଉଛି ସ୍ୱୟଂ ଏକ ଅର୍ଥନୈତିକ ବଳ ।"* "ସମାଜର ଏକ ସୁସଂବଦ୍ଧ ଏବଂ ସଂଗଠିତ ଶକ୍ତି"** ହିସାବରେ ରାଷ୍ଟ୍ର ହେଉଛି ଏକ ସଂଗଠନ ଯିଏକି ଶାସକ ଶ୍ରେଣୀମାନଙ୍କର ବଳପ୍ରୟୋଗକୁ କାର୍ଯ୍ୟକାରୀ କରିଥାଏ । ଅର୍ଥନୈତିକ ଭାବେ ପ୍ରଭୁତ୍ୱକାରୀ ଶ୍ରେଣୀଟି ଶେଷକୁ ତା'ର ରାଜନୈତିକ ପ୍ରଭୁତ୍ୱକୁ ସ୍ଥାପନ କରିଥାଏ । ଏବଂ ଏହି ଶ୍ରେଣୀଟି ଯଦି ଇତିହାସରେ ଶେଷକୁ ତା'ର ପ୍ରଭୁତ୍ୱକାରୀ ଅବସ୍ଥାନକୁ ହରାଇ

---

* କାର୍ଲ ମାର୍କସ୍, "*Capital*", Vol. I, p. 703.

** *Ibid*

ବସେ, ତେବେ ରାଜନୈତିକ ଶକ୍ତି ଅନିବାର୍ଯ୍ୟ ଭାବେ ଅନ୍ୟ ଶ୍ରେଣୀ ହାତକୁ ଗ୍ଲଚିଯାଏ, ଯିଏକି ସମାଜର ପରିପକ୍ୱ ଅର୍ଥନୈତିକ ଆବଶ୍ୟକତା ଦୃଷ୍ଟିରୁ ହେଉଛି ପ୍ରଗତିଶୀଳ।

ବଳପ୍ରୟୋଗ ହେଉଛି ନିର୍ଭରଶୀଳ ଏବଂ ଅର୍ଥନୈତିକ ଅବସ୍ଥାରାଜି ମଧ୍ୟରୁ ଜାତ ବୋଲି ଉଲ୍ଲେଖ କଲାବେଳେ ସାମାଜିକ ବିକାଶରେ ଏହାର ଭୂମିକାକୁ ଅସ୍ୱୀକାର କଲେ ଚଳିବ ନାହିଁ। ଠିକ୍ ଏହିପରି, ସାମାଜିକ ପ୍ରପଞ୍ଚରାଜି ପ୍ରତି ବିପରୀତ ଦୃଷ୍ଟିକୋଣ ମଧ୍ୟ ଅଣଦ୍ୱନ୍ଦ୍ୱବାଦୀ।

ବଳପ୍ରୟୋଗ ତତ୍ତ୍ୱର ପ୍ରବକ୍ତାମାନେ ସାମାଜିକ ବିକାଶ କ୍ଷେତ୍ରରେ ଏହାକୁ ମୁଖ୍ୟ କାରଣ ବୋଲି ବିଚାର କଲାବେଳେ, ଆଉ କେତେକ ଅଛନ୍ତି, ଯେଉଁମାନେ ବଳପ୍ରୟୋଗକୁ ସଂପୂର୍ଣ୍ଣ ଅମଙ୍ଗଳ ରୂପେ ଦେଖନ୍ତି ଏବଂ ସବୁମତେ ତାକୁ ବର୍ଜନ କରିବା ଉଚିତ ବୋଲି କହନ୍ତି। ଏହି ମତଗୁଡ଼ିକ ବିଶେଷ ରୂପ ଭିନ୍ନ ଭିନ୍ନ। "ହିଂସା ଦ୍ୱାରା ଅଶୁଭର ଅପ୍ରତିରୋଧ" – ଏହା ହେଉଛି ଏକ ବିମୂର୍ତ୍ତ ନୈତିକ ନୀତି, ଜୈନ ଧର୍ମ ଭଳି କେତେକ ଧର୍ମ ଦ୍ୱାରା ପ୍ରଚାରିତ ନିର୍ଦ୍ଦେଶ – ପ୍ରାଣୀମାନଙ୍କୁ ହିଂସା କରିବାରୁ ବିରତ ରୁହ; ରାଜନୈତିକ ସଂଗ୍ରାମରେ ବଳପ୍ରୟୋଗ ବର୍ଜନ (ଯଥା, ମହାତ୍ମା ଗାନ୍ଧୀଙ୍କ ଶିକ୍ଷାରେ ଅହିଂସା ନୀତି); "ଖାଣ୍ଟି ଗଣତନ୍ତ୍ର" ଏବଂ "ଅଖଣ୍ଡ ସ୍ୱାଧୀନତା" ଆଦି କଳ୍ପନାବିଳାସୀ ଚିନ୍ତା ପଛରେ ରହିଛି ଏତାଦୃଶ ମତାମତସମୂହ।

କେବଳ ବିପ୍ଳବୀ କ୍ରିୟାକଳାପ ପ୍ରତି ପ୍ରୟୋଗ କରି ବଳପ୍ରୟୋଗର ସମସ୍ୟାଟିକୁ ଯଦି ତା'ର ସମସ୍ତ ତାତ୍ପର୍ଯ୍ୟ ଦିଗରୁ ବିଚାର କରା ନଯାଏ, ତେବେ ତା'ର କେତେକ ଗୁରୁତ୍ୱପୂର୍ଣ୍ଣ ଦିଗକୁ ବୈଜ୍ଞାନିକ ବ୍ୟାଖ୍ୟା ଦ୍ୱାରା ପ୍ରକାଶ କରାଯାଇ ପାରେ। ଐତିହାସିକ ବସ୍ତୁବାଦ ଅନୁଯାୟୀ ସାମାଜିକ ହିଂସା ହେଉଛି ଶୋଷକ ସମାଜର ଅନିବାର୍ଯ୍ୟ ଯୁକ୍ତିସମ୍ମତ ଫଳ। ଶ୍ରେଣୀସମୂହ ଏବଂ ରାଷ୍ଟ୍ର ସହିତ ଜନ୍ମ ନେଇ ବଳପ୍ରୟୋଗ ସାମାଜିକ ସଂପର୍କରାଜି ଏବଂ ରାଜନୈତିକ ଜୀବନର ଏକ ଅବିଚ୍ଛେଦ ଅଙ୍ଗରେ ପରିଣତ ହୋଇଛି। ବ୍ୟକ୍ତିଗତ ମାଲିକାନା ଏବଂ ମଣିଷ ଦ୍ୱାରା ମଣିଷର ଶୋଷଣ ମଧ୍ୟରେ ଶୋଷକ ଶ୍ରେଣୀ ଦ୍ୱାରା ଅନୁସୃତ ବଳପ୍ରୟୋଗ ନିର୍ଦ୍ଦିଷ୍ଟ ସାମାଜିକ ସଂପର୍କରାଜିକୁ ସଂରକ୍ଷିତ କରିବାରେ ମୁଖ୍ୟ ଉପାୟରେ ପରିଣତ ହୋଇଥାଏ। ସ୍ୱଦେଶର ଏବଂ ଅନ୍ୟ ଦେଶର ଶୋଷିତ ଜନସାଧାରଣଙ୍କ ବିରୁଦ୍ଧରେ ବଳପ୍ରୟୋଗ ନକରି ଦାସମାଲିକ ଏବଂ ସାମନ୍ତ ପ୍ରଭୁମାନେ କେବେହେଲେ ସେମାନଙ୍କ ପ୍ରଭୁତ୍ୱକୁ ଜାହିର କରି ପାରି ନଥାନ୍ତେ। ପୁଞ୍ଜିବାଦୀ ବ୍ୟବସ୍ଥା ବି ହିଂସା ବିନା ତିଷ୍ଠି ପାରି ନଥାନ୍ତା।

ତେଣୁ କରି ବଳପ୍ରୟୋଗ ପ୍ରତି ଦ୍ୱନ୍ଦ୍ୱବାଦ ଏକ ସୁନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ପୋଷଣ କରିଥାଏ। ଏହା ଦ୍ୱିବିଧ ଭୂମିକା ପାଳନ କରିଥାଏ – ଏହା ଯଦି ଏକ ଅତିପୁରୁଣା ସାମାଜିକ ବ୍ୟବସ୍ଥାକୁ ସଂରକ୍ଷିତ କରିବା ଦିଗରେ ଉଦ୍ଦିଷ୍ଟ ହୁଏ, ତେବେ ପ୍ରତିକ୍ରିୟାଶୀଳ ହେବ ଏବଂ ଯଦି ସେ ଅତିପୁରୁଣା ବ୍ୟବସ୍ଥାର ଉଚ୍ଛେଦର ଉପାୟ ହିସାବରେ କାର୍ଯ୍ୟ କରେ, ନୂଆ ସମାଜର ବିଜୟକୁ ସଫଳ କରେ, ତେବେ ତାହା ହେବ ବିପ୍ଳବାତ୍ମକ। ତେବେ ବିପ୍ଳବାତ୍ମକ ବଳପ୍ରୟୋଗ କରିବାର ଆବଶ୍ୟକତା ସୃଷ୍ଟି ହୁଏ କାହିଁକି?

ପ୍ରଥମତଃ, ଆମେ ଲକ୍ଷ୍ୟ କରିବାର କଥା ଯେ, ସ୍ୱୟଂ ଶ୍ରେଣୀ ସଂଗ୍ରାମ, ଯିଏକି ହେଉଛି ବୈରିତ୍ୟସଂପନ୍ନ ଗଢ଼ଣଗୁଡ଼ିକର ନିୟମାନୁଗ ବିକାଶ, ବାସ୍ତବରେ ବଳପ୍ରୟୋଗ ବ୍ୟତୀତ ଆଉ କିଛି ନୁହେଁ । ନିର୍ଯାତିତ ଶ୍ରେଣୀମାନଙ୍କ ପକ୍ଷରେ ଏହା ହେଉଛି ଉତ୍ପୀଡ଼ନ ଏବଂ ଶୋଷଣ ଶାସନ ପ୍ରତି ପ୍ରତିକ୍ରିୟା ବୋଲି ସଂପୂର୍ଣ୍ଣ ବୋଧଗମ୍ୟ । ବିପ୍ଳବ ହେଉଛି ଶ୍ରେଣୀ ସଂଗ୍ରାମର ସର୍ବୋଚ୍ଚ ରୂପ ଏବଂ ବୈରିତ୍ୟସଂପନ୍ନ ସମାଜରେ ସର୍ବଦା ବିଦ୍ୟମାନ ଉତ୍ପୀଡ଼ିତ ଜନସାଧାରଣଙ୍କର ଶାସକ ଶ୍ରେଣୀମାନଙ୍କର ବଳପ୍ରୟୋଗ ପ୍ରତି ପ୍ରତିରୋଧକୁ ପ୍ରକାଶ କରିଥାଏ । ତେଣୁ କରି ବିପ୍ଳବ ବଳପ୍ରୟୋଗକୁ ଜନ୍ମ ଦିଏ ନାହିଁ, ବରଂ ଏହାର ନୂତନ ରୂପକୁ – ବିପ୍ଳବୀ ବଳପ୍ରୟୋଗକୁ ଜନ୍ମ ଦେଇଥାଏ ।

ଦ୍ୱିତୀୟତଃ, ବିପ୍ଳବୀ କ୍ରିୟାର ଲକ୍ଷ୍ୟରାଜି ହିସାବରେ ବ୍ୟକ୍ତିଗତ ମାଲିକାନାର ଅର୍ଥନୈତିକ ସଂପର୍କସମୂହ, ଶୋଷଣ ଏବଂ ରାଜନୈତିକ କ୍ଷମତା ନିର୍ଦ୍ଦିଷ୍ଟ ରାଜନୈତିକ ସାଂଗଠନିକ ରୂପରେ ପ୍ରତିଷ୍ଠିତ (ରାଷ୍ଟ୍ର, ଆଇନ୍), ଯିଏକି ଶକ୍ତିଶାଳୀ ଭୌତିକ ଶକ୍ତିରାଜି ଉପରେ (ସୈନ୍ୟବାହିନୀ, ପୁଲିସ୍, ଗୋଇନ୍ଦା ବିଭାଗ, ନ୍ୟାୟାଳୟ, ଅମଲାତାନ୍ତ୍ରିକ ଯନ୍ତ୍ର) ନିର୍ଭରଶୀଳ । ତେଣୁ କରି ବିପ୍ଳବୀ ଶ୍ରେଣୀକୁ ରାଷ୍ଟ୍ର ଦ୍ୱାରା ସଂଗଠିତ ଶୋଷକ ଶ୍ରେଣୀମାନଙ୍କର ପ୍ରତିରୋଧକୁ ଅତିକ୍ରମ କରିବାକୁ ପଡ଼େ ଏବଂ ଶୋଷକ ଶ୍ରେଣୀମାନଙ୍କର ବଳପ୍ରୟୋଗ ବିରୁଦ୍ଧରେ ବଳପ୍ରୟୋଗ କରିବାକୁ ବାଧ୍ୟ ହୁଏ । ଏହା ବିଶେଷ ଭାବେ ପ୍ରକାଶ ପାଇଥାଏ ପ୍ରତ୍ୟକ୍ଷ ସଶସ୍ତ୍ର ଅଭ୍ୟୁତ୍‌ଥାନ ମଧ୍ୟରେ, ପ୍ରତିବିପ୍ଳବୀମାନଙ୍କୁ ଗିରଫ୍ କରିବା, ବ୍ୟକ୍ତିଗତ ସଂପତ୍ତିର ଉଚ୍ଛେଦ ଏବଂ ପ୍ରତିକ୍ରିୟାଶୀଳ ରାଷ୍ଟ୍ରୀୟ ପ୍ରତିଷ୍ଠାନଗୁଡ଼ିକର ଉଚ୍ଛେଦ ମଧ୍ୟରେ ।

ତୃତୀୟତଃ, ବିପ୍ଳବୀ ବଳପ୍ରୟୋଗ ହେଉଛି ଅପରିହାର୍ଯ୍ୟ, କାରଣ ସର୍ବହରାର ରାଜନୈତିକ ପ୍ରଭୁତ୍ୱର ପ୍ରତିଷ୍ଠା ଅର୍ଥ ନୁହେଁ ଶ୍ରେଣୀ ସଂଗ୍ରାମର ଅବସାନ । ଏହା ଅନ୍ୟ ରୂପରେ ଆଗେଇ ଚାଲେ । ଉତ୍‌ଖାତ ଶ୍ରେଣୀମାନେ ଅନେକ ସମୟରେ ଅତ୍ୟନ୍ତ ତୀବ୍ର ରୂପରେ, ଯଥା, ଗୃହଯୁଦ୍ଧ, ପ୍ରତିବିପ୍ଳବୀ ଷଡ଼ଯନ୍ତ୍ର, ଧ୍ୱଂସମୂଳକ ଅନ୍ତର୍ଘାତୀ କାର୍ଯ୍ୟ, ଧ୍ୱଂସାତ୍ମକ କ୍ରିୟା ଆଦି ମାଧ୍ୟମରେ ପ୍ରତିରୋଧ ଚଳାନ୍ତି । ପୁଞ୍ଜିବାଦରୁ ସମାଜବାଦକୁ ଉତ୍ତରଣ କାଳରେ ଶ୍ରମିକ ଶ୍ରେଣୀକୁ ସମାଜର ରାଷ୍ଟ୍ରୀୟ ନେତୃତ୍ୱକୁ ପ୍ରୟୋଗ କରିବାକୁ ପଡ଼େ, ଅର୍ଥାତ୍, ତା'ର ନିଜସ୍ୱ, ସର୍ବହରା ଏକନାୟକତ୍ୱକୁ ପ୍ରତିଷ୍ଠା କରିବାକୁ ହୁଏ । ଏହାର ଅନ୍ୟତମ କାର୍ଯ୍ୟ ହେଉଛି ବିପ୍ଳବୀ ଶ୍ରମିକ ଶ୍ରେଣୀର ବଳକୁ ଉତ୍‌ଖାତ ଶୋଷକ ଶ୍ରେଣୀମାନଙ୍କ ବିରୁଦ୍ଧରେ ପ୍ରୟୋଗ କରିବା । ଯେହେତୁ ବିପ୍ଳବୀ ବଳପ୍ରୟୋଗ ଏକ ନଗଣ୍ୟ ଶୋଷକ ସଂଖ୍ୟାଲଘୁଙ୍କ ବିରୁଦ୍ଧରେ, ବୈଷୟିକ ତଥା ଆତ୍ମିକ ମୂଲ୍ୟବୋଧ ଏବଂ ଜନସାଧାରଣଙ୍କର ବ୍ୟାପକତମ ଅଂଶର ଅଧିକାର ତଥା ସ୍ୱାଧୀନତାର ଅପହରଣକାରୀଙ୍କ ବିରୁଦ୍ଧରେ ପ୍ରଯୁକ୍ତ ହୋଇଥାଏ, ତେଣୁ ଏହା ରାଜନୈତିକ ତଥା ନୈତିକତା ଦିଗରୁ ନ୍ୟାୟସଂଗତ ।

ଏଠାରେ ଗୁରୁତ୍ୱ ଦେବାର କଥା ଯେ, ସାଧାରଣ ଭାବେ ବିପ୍ଳବ ଭଳି, ସର୍ବହରା

ଏକନାୟକତ୍ୱ ବଳପ୍ରୟୋଗ ଦ୍ୱାରା କୌଣସିମତେ ନିଃଶେଷ ହୋଇ ଯାଏ ନାହିଁ ଏବଂ କେବଳ ସେତିକିରେ ପରିଣତ ହୁଏ ନାହିଁ । ଲେନିନ୍ ଲେଖିଥିଲେ, "ସର୍ବହରା ଏକନାୟକତ୍ୱ ଶୋଷକମାନଙ୍କ ବିରୁଦ୍ଧରେ କେବଳ ବଳପ୍ରୟୋଗ ନୁହେଁ, ଏପରିକି ମୁଖ୍ୟତଃ ବଳପ୍ରୟୋଗ ନୁହେଁ ।"* ଏହାର ମୁଖ୍ୟ ଲକ୍ଷ୍ୟରାଜି ହେଉଛି ସୃଜନଶୀଳ: ସମାଜବାଦୀ ଭିତ୍ତି ଉପରେ ସାମାଜିକ ସଂପର୍କର ସମସ୍ତ ବ୍ୟବସ୍ଥାଟାକୁ ମୌଳିକ ଭାବେ ପୁନର୍ଗଠିତ କରିବା, କୃଷକ ଜନସାଧାରଣ ଏବଂ ସମଗ୍ର ଜନତାକୁ ସମାଜବାଦୀ ନିର୍ମାଣ ମଧ୍ୟକୁ ଟାଣି ଆଣିବା ଏବଂ ଅକୃତ୍ରିମ ଗଣତନ୍ତ୍ରର ଭିତ୍ତି ସ୍ଥାପନ କରିବା ।

ଏହି ଭାବେ, ସଂଗତ ଅର୍ଥନୈତିକ ଅବସ୍ଥାରାଜି ମଧ୍ୟରେ ବଳପ୍ରୟୋଗଟା ଯୁକ୍ତିସଙ୍ଗତ ଏବଂ ନ୍ୟାୟପୂର୍ଣ୍ଣ ବୋଲି ପ୍ରମାଣିତ ହୋଇଛି । ବୈପ୍ଳବିକ ବଳପ୍ରୟୋଗର ରୂପରାଶି ଏବଂ ତୀବ୍ରତା, ଅବଶ୍ୟ, ପୃଥକ୍ ପୃଥକ୍ ହୁଏ ଉତ୍ଖାତ ଶୋଷକ ଶ୍ରେଣୀସମୂହ ଦ୍ୱାରା ସୃଷ୍ଟ ପ୍ରତିରୋଧର ପଦ୍ଧତିସମୂହ ଏବଂ ଶ୍ରେଣୀ ସଂଗ୍ରାମର ବିଶେଷ ଅବସ୍ଥାରାଜି ଅନୁଯାୟୀ । କ୍ଷମତା ପାଇଁ ଲଢ଼େଇରେ ସମ୍ଭାବ୍ୟ ସମସ୍ତ ପଦ୍ଧତିର (ଉଭୟ ଶାନ୍ତିପୂର୍ଣ୍ଣ ଏବଂ ଅଶାନ୍ତିପୂର୍ଣ୍ଣ) ଉପଯୋଗକୁ ସମର୍ଥନ ଜଣାଇଲା ବେଳେ ବୈଜ୍ଞାନିକ କମ୍ୟୁନିଜମ୍‌ର ପ୍ରତିଷ୍ଠାତାବୃନ୍ଦ ଶ୍ରମିକ ଶ୍ରେଣୀ ପକ୍ଷରେ ସମାଜବାଦୀ ବିପ୍ଳବକୁ ଶାନ୍ତିପୂର୍ଣ୍ଣ ଉପାୟରେ ସଂପନ୍ନ କରିବାଟା ଶ୍ରେୟସ୍କର ବୋଲି ଗୁରୁତ୍ୱ ଦେଇ କହିଛନ୍ତି । ମାର୍କସ୍ ଲେଖିଛନ୍ତି, "ପ୍ରଗ୍ରର ଯେଉଁଠି ଲକ୍ଷ୍ୟ ଆଡ଼କୁ ଆଉରି ଅଧିକ ଚଞ୍ଚଳ ଏବଂ ଆଉରି ନିଶ୍ଚିତ ଭାବେ ଆଗେଇ ନିଏ, ସେଠାରେ ଅଭ୍ୟୁତ୍ଥାନଟା ହେଉଛି ପାଗଳାମୀ ।"** ଲେନିନ୍ ମଧ୍ୟ ଏତାଦୃଶ ମତ ପ୍ରକାଶ କରି ଲେଖିଛନ୍ତି, "ଶ୍ରମିକ ଶ୍ରେଣୀ, ଅବଶ୍ୟ, ଶାନ୍ତିପୂର୍ଣ୍ଣ ଭାବେ କ୍ଷମତା ଦଖଲ କରିବାକୁ ଶ୍ରେୟ ବିବେଚନା କରିବ ।"***

ଏବେ ଶାନ୍ତିପୂର୍ଣ୍ଣ ଭାବେ ବିପ୍ଳବର ବିକାଶ ପାଇଁ ଅନୁକୂଳ ଅବସ୍ଥାରାଜି ବିରାଜିତ । କିନ୍ତୁ ଏହି ଏକମାତ୍ର ପଥଟି ଉପରେ ନିର୍ଭର କରିଲେ, ହୁଏତ, ଅଦ୍ୱନ୍ଦ୍ୱମୂଳକ ଏବଂ ଭ୍ରାନ୍ତିଜନକ ହେବ । ଏପରିକି ଯେଉଁଠି ସମାଜବାଦକୁ ଶାନ୍ତିପୂର୍ଣ୍ଣ ଉତ୍ତରଣର ସମ୍ଭାବନା ରହିଛି, ସେଠାରେ ଏହାହିଁ ବାଧ୍ୟତାମୂଳକ ବା ଏକମାତ୍ର ପଥ ନୁହେଁ, କାରଣ ଏହା ନିର୍ଭର କରେ ସେ ଦେଶର ବିଶେଷ ଅବସ୍ଥାରାଜି ଉପରେ । ଶାନ୍ତିପୂର୍ଣ୍ଣ ଉତ୍ତରଣ ମଧ୍ୟ ଦ୍ୱନ୍ଦ୍ୱ ଆଉ ସଂଗ୍ରାମରେ ଭରପୂର ଏବଂ ଏକଗୁଚିଆ-ବୁର୍ଜୁଆ ପ୍ରତିକ୍ରିୟା ପକ୍ଷରୁ ତୁମୂଳ ପ୍ରତିରୋଧ ତଥା ବିରୋଧର ସମ୍ମୁଖୀନ ହୁଏ । ଏହା ମଧ୍ୟ ଏକାନ୍ତ ଭାବେ ଏକ ଅହିଂସ

---

* ଭ୍ଲାଦିମିର୍ ଇଲିଚ୍ ଲେନିନ୍, "ମହାରମ୍ଭ", ସଂକଳିତ ରଚନାବଳୀ, ମସ୍କୋ, ୧୯୬୫, ୨୯ଶ ଖଣ୍ଡ, ପୃ: ୪୧୯ ।

** K. Marx and F. Engels, *Collected Works*, Vol. 4, p. 264.

*** V.I. Lenin, "A Retrograde Trend in Russian Social-Democracy", *Collected Works*, Vol. 4, Moscow, 1964, p. 276.

ଉତ୍ତରଣ ନୁହେଁ । ସମାଜବାଦକୁ ଶାନ୍ତିପୂର୍ଣ୍ଣ ଉତ୍ତରଣ ସହିତ ବଳପ୍ରୟୋଗ ଏବଂ ବୁର୍ଜୁଆଜି ଉପରେ ଶ୍ରମିକ ଶ୍ରେଣୀର ନିୟନ୍ତ୍ରଣ ବିଭିନ୍ନ ଧରଣର ଦମନର ରୂପ ଗ୍ରହଣ କରିଥାଏ ।

ବଳପ୍ରୟୋଗ ପ୍ରତି ମାର୍କସ୍‌ବାଦୀ ଦ୍ୱନ୍ଦ୍ୱବାଦ ଏକ ବିଶେଷ ଭାବେ ଐତିହାସିକ ଦୃଷ୍ଟିକୋଣ ଗ୍ରହଣ କରେ ବୋଲି ଆମେ ଦେଖିବାକୁ ପାଇଲେ । ତେଣୁ କରି ମହାତ୍ମା ଗାନ୍ଧୀଙ୍କର ଅହିଂସ ମତବାଦର ଏକପାଖିଆ ଅନୁଶୀଳନ କରିବା ଉଚିତ ନୁହେଁ । ଏହା ଏପରି ଏକ ଅହିଂସା ନୀତି ଉପରେ ପ୍ରତିଷ୍ଠିତ ଯଦ୍ୱାରା କୌଣସି ଜୀବନ୍ତ ପ୍ରାଣୀ ପ୍ରତି ଚିନ୍ତା, ବାକ୍ୟ ବା କାର୍ଯ୍ୟ ଦ୍ୱାରା କୌଣସି ଅନିଷ୍ଟ କରିବାକୁ ମନା । ଏହି ନୀତିଟା ସଂପୂର୍ଣ୍ଣ ବିମୂର୍ତ୍ତ ଏବଂ ଅପ୍ରଯୋଜ୍ୟ, ଉଦାହରଣ ସ୍ୱରୂପ, ଏକ ଶୋଷଣଯୁକ୍ତ ସମାଜର ବାସ୍ତବତା ପ୍ରତି, ବୈରିତାପୂର୍ଣ୍ଣ ଶ୍ରେଣୀମାନଙ୍କ ମଧ୍ୟରେ, ନିର୍ଯ୍ୟାତିତ ଏବଂ ନିର୍ଯ୍ୟାତକ ଜାତିମାନଙ୍କ ମଧ୍ୟରେ ସଂପର୍କ ପ୍ରତି ପ୍ରଯୋଜ୍ୟ ନୁହେଁ । ବୈରିତାସଂପନ୍ନ ସମାଜରେ ଶ୍ରେଣୀ ସଂଗ୍ରାମକୁ କ'ଣ ଏଡ଼େଇ ଦେଇ ହେବ ? ନିଶ୍ଚୟ ନୁହେଁ । ଶ୍ରେଣୀ ସଂଗ୍ରାମ ହେଉଛି ବ୍ୟକ୍ତିଗତ ମାଲିକାନା ଏବଂ ମଣିଷ ଦ୍ୱାରା ମଣିଷର ଶୋଷଣ ଉପରେ ପ୍ରତିଷ୍ଠିତ ସମାଜର ଅସ୍ତିତ୍ୱ ଏବଂ ବିକାଶର ଏକ ବସ୍ତୁଗତ ନିୟମ, ଏବଂ ତା ଅର୍ଥ ହେଉଛି ହିଂସା ବିଭିନ୍ନ ରୂପରେ ପ୍ରକାଶ ପାଇବ ସେଠାରେ । ଏହା ମଧ୍ୟ ଜାତୀୟ ମୁକ୍ତି ଏବଂ ଉପନିବେଶବାଦର ଅବସାନ ପାଇଁ ସାମ୍ରାଜ୍ୟବାଦ ବିରୁଦ୍ଧରେ ଜାତିମାନଙ୍କ ସଂଗ୍ରାମ ପ୍ରତି ପ୍ରଯୋଜ୍ୟ । ବିପ୍ଳବାତ୍ମକ ବଳପ୍ରୟୋଗ ଏଭଳି ସାମାଜିକ କ୍ରିୟାକଳାପର ଏକ ବିରାଟ ଭୂମିକା ପାଳନ କରିଥାଏ ।

ଏହା ଅର୍ଥ କ'ଣ ଏଇଆ ଯେ, ଗାନ୍ଧୀଙ୍କର ଅହିଂସ ଚିନ୍ତାଧାରାରେ ତେବେ କୌଣସି ଯୁକ୍ତିସଂଗତ ଆଧେୟ ନାହିଁ ? ନା, ତା ନୁହେଁ । କାରଣ, ମହାତ୍ମା ଗାନ୍ଧୀ ବିଶ୍ୱାସ କରୁଥିଲେ, "କେବଳ ଅହିଂସା ଦ୍ୱାରା ହିଁ ମାନବ ସମାଜ ହିଂସାକୁ ଦୂର କରି ପାରିବ ।"* ଏବଂ ଆମ ଯୁଗରେ ମଧ୍ୟ ଏହି ଚିନ୍ତାଧାରାଟିର ପ୍ରଗତିଶୀଳ ତାତ୍ପର୍ଯ୍ୟ ରହିଛି, ସର୍ବୋପରି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସଂପର୍କ କ୍ଷେତ୍ରରେ । ଅହିଂସା ବୋଇଲେ, ବାସ୍ତବତା ଦୃଷ୍ଟିରୁ ଯାହା ବୁଝାଯାଏ, ଆନ୍ତର୍ଜାତିକ କ୍ଷେତ୍ରରେ ସଂପର୍କ କ୍ଷେତ୍ରରେ ବଳପ୍ରୟୋଗ ବର୍ଜନ, ଯୁଦ୍ଧର ନିଷିଦ୍ଧକରଣ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଏବଂ ଶାନ୍ତିପୂର୍ଣ୍ଣ ଆନ୍ତଃରାଷ୍ଟ୍ରୀୟ ସଂପର୍କ ନୀତିର ପ୍ରତିଷ୍ଠା । ତେଣୁ ଗାନ୍ଧୀବାଦୀ ଅହିଂସ ଚିନ୍ତାଧାରା ଜାତି ଜାତି ମଧ୍ୟରେ ମୈତ୍ରୀକୁ ଶକ୍ତିଶାଳୀ କରିବା, ପାରସ୍ପରିକ ସମ୍ମାନ ନ୍ୟାୟପୂର୍ଣ୍ଣ ଆନ୍ତଃରାଷ୍ଟ୍ରୀୟ ସଂପର୍କ ଅଣହସ୍ତକ୍ଷେପ ଏବଂ ସମସ୍ତ ପ୍ରକାରର ସଂଘର୍ଷର ଆଲାପ ଆଲୋଚନା ଜରିଆରେ ସମାଧାନର ନୀତିର ସହାୟକ ହୋଇଥାଏ ।

ତେଣୁ, ଇତିହାସରେ ବଳପ୍ରୟୋଗର ଭୂମିକାକୁ ବିମୂର୍ତ୍ତ ବୋଲି ବିଚାର କରାଯାଇ ନପାରେ । ଆମର ଏହି ପାରମାଣବିକ ଏବଂ ନିଉଟ୍ରନ୍ ବମ୍ ଯୁଗରେ ଆନ୍ତଃରାଷ୍ଟ୍ରୀୟ

---

* ଗାନ୍ଧୀ, "ମୋର ଜୀବନ", ମସ୍କୋ, ପ୍ରଗତି ପ୍ରକାଶନ, ୧୯୬୯, ପୃ: ୫୬୮ ।

ସମସ୍ୟାବଳୀକୁ ଅସ୍ତଶସ୍ତର ଶକ୍ତି ଦ୍ୱାରା ସମାଧାନ କରିବାକୁ ଚେଷ୍ଟା କରିବାଟା ମଣିଷ ଜାତି ପକ୍ଷରେ ଅତୀବ ଅନିଷ୍ଟକର । କିନ୍ତୁ ବୈରିତାସଂପନ୍ନ ସାମାଜିକ-ଅର୍ଥନୈତିକ ଗଠନସମୂହରେ ଦ୍ୱନ୍ଦ୍ୱବାଦରେ ବଳପ୍ରୟୋଗ ହେଉଛି ଏକ ଅପରିହାର୍ଯ୍ୟ କାରଣ ।

ସମାଜବାଦ ଅଧୀନରେ ବସ୍ତୁବାଦୀ ସାମାଜିକ ଦ୍ୱନ୍ଦ୍ୱବାଦ ଗୁଣାତ୍ମକ ଭାବେ ଭିନ୍ନ ରୂପ ଧାରଣ କରିଥାଏ ।

## ୭ – ସମାଜବାଦର ବିକାଶମୂଳକ ଦ୍ୱନ୍ଦ୍ୱବାଦ

ସର୍ବହରା ବିପ୍ଳବର ବିଜୟ ଏବଂ ସମାଜବାଦୀ ସାମାଜିକ ସଂପର୍କରାଜିର ଦୃଢ଼ୀକରଣ ଫଳରେ ଦ୍ୱନ୍ଦ୍ୱବାଦର ସାଧାରଣ ନିୟମସମୂହ ନିଜକୁ ପ୍ରକଟିତ କରୁଥିବା ପଦ୍ଧତିରେ ଏକ ମୌଳିକ ପରିବର୍ତ୍ତନ ଆସେ । ବୁର୍ଜୁଆ ସମାଜର ବହୁ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ଏବେ ଇତିହାସ ମଧ୍ୟରେ ଆଶ୍ରୟ ନେଇଣି – ଯଥା, ସାମାଜିକ ବୈରିତା, ଶ୍ରେଣୀ ସଂଗ୍ରାମ ଏବଂ ସଂଘର୍ଷଯୁକ୍ତ ଏବଂ ସ୍ୱତଃସ୍ଫୂର୍ତ୍ତ ବିକାଶ ।

ସମାଜବାଦର ଅଭ୍ୟୁଦୟ ଏବଂ ଦୃଢ଼ୀକରଣ ଐତିହାସିକ କ୍ରିୟାର କର୍ତ୍ତା ହିସାବରେ ବ୍ୟାପକ ଜନସାଧାରଣଙ୍କର ଭୂମିକାକୁ ବିପୁଳ ଭାବେ ବୃଦ୍ଧି କରିଛି । ସାମାଜିକ ଦ୍ୱନ୍ଦ୍ୱବାଦର କାର୍ଯ୍ୟକାରିତାରେ ଗୁଣାତ୍ମକ ଭାବେ ନୂଆ ଏକ ପର୍ଯ୍ୟାୟ ଦେଖା ଦେଇଛି । ଶ୍ରମଜୀବୀ ଜନସାଧାରଣ, କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ଶ୍ରମିକ ଶ୍ରେଣୀ ଦ୍ୱାରା ପରିଚାଳିତ ହୋଇ, ସଚେତନ ଭାବେ ଯୋଜନା ଭିତ୍ତିରେ, ସାମାଜିକ ବାସ୍ତବତାର ନୂଆ ଏକ ରୂପ – କମ୍ୟୁନିଷ୍ଟ ସାମାଜିକ ସଂପର୍କରାଜି ଗଠନ କରୁଛନ୍ତି ବସ୍ତୁଗତ ନିୟମରାଜିକୁ ଉପଯୋଗ କରି । ପୁଞ୍ଜିବାଦରୁ ସମାଜବାଦକୁ ଉତ୍ତରଣ ମୌଳିକ ଭାବେ ଜନସାଧାରଣଙ୍କ ମଧ୍ୟରେ ସଂପର୍କକୁ ରୂପାନ୍ତରିତ କରୁଛି ଏବଂ ସାମାଜିକ ବିକାଶର ନୂତନ ଚାଳିକା ଶକ୍ତି ଏବଂ ଉତ୍ସସମୂହ ସୃଷ୍ଟି କରୁଛି ଏବଂ ସାମାଜିକ ଅଗ୍ରଗତିର ଧରଣକୁ ପରିବର୍ତ୍ତିତ କରି ଦେଉଛି ।

ସମାଜବାଦ ହେଉଛି କମ୍ୟୁନିଷ୍ଟ ଗଢ଼ଣର ପ୍ରଥମ ପର୍ଯ୍ୟାୟ । ସୋଭିଏତ୍ ୟୁନିଅନ୍ ଏକ ବିକଶିତ ସମାଜବାଦୀ ସମାଜ, କମ୍ୟୁନିଜମ୍ ପଥରେ ଏକ ଯୁକ୍ତିସଂଗତ, ନିୟମାନୁଗ ପର୍ଯ୍ୟାୟ ଗଠନ କରିଛି । ଏହି ସମାଜ ସଂପର୍କରେ ସୋଭିଏତ୍ ସମ୍ବିଧାନରେ ନିମ୍ନଲିଖିତ ବର୍ଣ୍ଣନାଟି ରହିଛି : "ଏହି ପର୍ଯ୍ୟାୟରେ, ସମାଜବାଦ ଯେତେବେଳେ ତା'ର ନିଜସ୍ୱ ଭିତ୍ତି ଉପରେ ଗଢ଼ି ଉଠୁଛି, ସେତେବେଳେ ନୂଆ ବ୍ୟବସ୍ଥାର ସୃଜନଶୀଳ ଶକ୍ତିସମୂହ ଏବଂ ସମାଜବାଦୀ ଜୀବନ ପଦ୍ଧତିର ସୁବିଧା ସୁଯୋଗସମୂହ କ୍ରମଶଃ ଅଧିକରୁ ଅଧିକ ସୁସ୍ପଷ୍ଟ ହୋଇ ଉଠୁଛି, ଏବଂ ଶ୍ରମିକ ଶ୍ରେଣୀ ଅଧିକତର ଭାବେ ସେମାନଙ୍କ ବିପ୍ଳବୀ ସାଫଲ୍ୟରାଜିର ଫଳକୁ ବ୍ୟାପକ ଉପଭୋଗ କରୁଛନ୍ତି ।

"ଏହି ସମାଜରେ ଶକ୍ତିଶାଳୀ ଉତ୍ପାଦିକା ଶକ୍ତିସମୂହ, ପ୍ରଗତିଶୀଳ ବିଜ୍ଞାନ ଏବଂ କଳା ସୃଷ୍ଟି ହୋଇଛି, ଜନସାଧାରଣଙ୍କ କଲ୍ୟାଣରେ କ୍ରମଶଃ ଅଭିବୃଦ୍ଧି ଘଟି ଚାଲିଛି,

ବ୍ୟକ୍ତିର ସର୍ବବିଧ ବିକାଶ ପାଇଁ ଅଧିକରୁ ଅଧିକ ଅନୁକୂଳ ଅବସ୍ଥାସବୁ ଯୋଗାଇ ଦିଆଯାଉଛି ।

"ଏ ହେଉଛି ପରିପକ୍ୱ ସମାଜବାଦୀ ସାମାଜିକ ସଂପର୍କଯୁକ୍ତ ଏକ ସମାଜ ଏବଂ ଏଥିରେ ସମସ୍ତ ଶ୍ରେଣୀ ତଥା ସାମାଜିକ ସ୍ତରକୁ ଏକତ୍ର କରିବା ଏବଂ ସମସ୍ତ ଜାତି ତଥା ଅଧିଜାତିମାନଙ୍କର ନ୍ୟାୟସଂଗତ ଏବଂ ବାସ୍ତବ ସାମ୍ୟ ଏବଂ ସେମାନଙ୍କ ଭ୍ରାତୃପ୍ରତିମ ସହଯୋଗର ଭିତ୍ତି ଉପରେ ନୂଆ ଏକ ଐତିହାସିକ ଜନଗୋଷ୍ଠୀ – ସୋଭିଏତ୍ ଜନସାଧାରଣ ସୃଷ୍ଟି ହୋଇଛନ୍ତି ।

"ଏ ସମାଜ ହେଉଛି ଉଚ୍ଚ ସାଂଗଠନିକ ଦକ୍ଷତା, ଭାବାଦର୍ଶଗତ ଅଙ୍ଗୀକାର, ଏବଂ ଦେଶପ୍ରେମୀ ଆନ୍ତର୍ଜାତିକତାବାଦୀ ଶ୍ରମଜୀବୀ ଜନସାଧାରଣଙ୍କ ଚେତନା ସଂପନ୍ନ ।

"ଏ ହେଉଛି ଏଭଳି ଏକ ସମାଜ, ଯେଉଁଠି ଜୀବନର ନିୟମ ହେଉଛି ପ୍ରତ୍ୟେକର ଶୁଭ ପାଇଁ ସମସ୍ତଙ୍କର ଚିନ୍ତା, ସମସ୍ତଙ୍କର ଶୁଭ ପାଇଁ ପ୍ରତ୍ୟେକର ଚିନ୍ତା ।

"ଏ ସମାଜ ହେଉଛି ପ୍ରକୃତ ଗଣତାନ୍ତ୍ରିକ ସମାଜ, ଯେଉଁଥିରେ ରାଜନୈତିକ ବ୍ୟବସ୍ଥା ସମସ୍ତ ସର୍ବସାଧାରଣ ବ୍ୟାପାରର ଫଳପ୍ରଦ ପରିଚାଳନା, ରାଷ୍ଟ୍ର ପରିଚାଳନାରେ ଶ୍ରମଜୀବୀ ଜନସାଧାରଣଙ୍କର ଅଧିକ ସକ୍ରିୟ ଅଂଶଗ୍ରହଣ, ନାଗରିକମାନଙ୍କର ସମାଜ ପ୍ରତି ବାଧ୍ୟବାଧକତା ଏବଂ ଦାୟିତ୍ୱ ସହିତ ସେମାନଙ୍କର ପ୍ରକୃତ ଅଧିକାର ତଥା ସ୍ୱାଧୀନତାକୁ ଏକତ୍ର କରିବାକୁ ସୁନିଶ୍ଚିତ କରିଥାଏ ।"*

ସୋଭିଏତ୍ ୟୁନିଅନ୍ କ୍ରମଶଃ ସେହି ବିରାଟ ଲକ୍ଷ୍ୟ, କମ୍ୟୁନିଷ୍ଟ ସମାଜ ନିର୍ମାଣ ଆଡ଼କୁ ଆତ୍ମବିଶ୍ୱାସର ସହିତ ଆଗେଇ ଚାଲିଛି । ଏ ସମାଜରେ ଶ୍ରମିକ ଶ୍ରେଣୀ କ୍ରମବର୍ଦ୍ଧମାନ ଭୂମିକା ପାଳନ କରୁଛି ଏବଂ ସେମାନଙ୍କ ସଂଖ୍ୟା ମଧ୍ୟ ବଢ଼ିବାରେ ଲାଗିଛି । ବର୍ତ୍ତମାନ ସୋଭିଏତ୍ ୟୁନିଅନ୍‌ର ଅଛନ୍ତି ୮ କୋଟି ଶିଳ୍ପ-ଶ୍ରମିକ । ସେମାନେ ହେଉଛନ୍ତି ଏ ଦେଶର ଲାଭପ୍ରଦ ଭାବେ ନିଯୁକ୍ତ ଜନସଂଖ୍ୟାର ଦୁଇ ତୃତୀୟାଂଶ । ଆଧୁନିକ ଶ୍ରମିକମାନଙ୍କର ଶ୍ରମ ଚରିତ୍ରରେ ପରିବର୍ତ୍ତନ ଘଟି ଚାଲିଛି ଏବଂ ତାହା ଅଧିକତର ଭାବେ ବୌଦ୍ଧିକ ଆଧେୟରେ ପୂର୍ଣ୍ଣ ହେବାକୁ ଲାଗିଛି । ଏବେ ଶତକଡ଼ା ୭୫ ଭାଗ ଶ୍ରମିକ ହେଉଛନ୍ତି ମାଧ୍ୟମିକ (ସଂପୂର୍ଣ୍ଣ ବା ଅସଂପୂର୍ଣ୍ଣ) ଏବଂ ଉଚ୍ଚତର ଶିକ୍ଷାର ଅଧିକାରୀ । କୋଠଖମାରର ଚାଷୀମାନଙ୍କ ଜୀବନରେ ମଧ୍ୟ ଗଭୀର ପରିବର୍ତ୍ତନମାନ ଆସୁଛି ଏବଂ ସେମାନେ କ୍ରମଶଃ ଶିଳ୍ପ ଶ୍ରମିକମାନଙ୍କର ନିକଟବର୍ତ୍ତୀ ହୋଇ ଆସୁଛନ୍ତି । ଚାଷୀମାନଙ୍କର ସାଂସ୍କୃତିକ ସ୍ତର ମଧ୍ୟ ଉନ୍ନତ ହେବାରେ ଲାଗିଛି । ଗତ ଦଶ ବର୍ଷ ମଧ୍ୟରେ ମାଧ୍ୟମିକ ଶିକ୍ଷାଧାରୀ (ସଂପୂର୍ଣ୍ଣ ବା ଅସଂପୂର୍ଣ୍ଣ) ଏବଂ ଉଚ୍ଚ ଶିକ୍ଷାଧାରୀ ଚାଷୀମାନଙ୍କ ସଂଖ୍ୟା

---

**Constitution (Fundamental Law) of the Union of Soviet Socialist Republics*, Novosti Press Agency Publishing House, Moscow, 1977, p.p. 13-14.

ଶତକଡ଼ା ୩୯ରୁ ପ୍ରାୟ ୬୦ ଭାଗକୁ ବୃଦ୍ଧି ପାଇଛି । ବୁଦ୍ଧିଜୀବୀମାନଙ୍କ ସଂଖ୍ୟା ମଧ୍ୟ ଦ୍ରୁତ ଭାବେ ଏ ଦେଶରେ ବୃଦ୍ଧି ପାଇବାରେ ଲଗିଛି । ସଂପ୍ରତି ଏ ଦେଶର ପ୍ରତି ୱରି ଜଣରେ ଜଣେ ଶ୍ରମିକ ମାନସିକ କାର୍ଯ୍ୟ କରେ । ବୈଷୟିକ ଉତ୍ପାଦନ କ୍ଷେତ୍ର ସମେତ, ସାମାଜିକ ଜୀବନରେ ବୁଦ୍ଧିଜୀବୀମାନେ ଅଧିକତର ଭୂମିକା ପାଳନ କରୁଛନ୍ତି ।

ଏଥି ସଙ୍ଗେ ସଙ୍ଗେ ଲକ୍ଷ ଲକ୍ଷ ଶ୍ରମିକ ଓ କୋଠଗୃଷୀମାନଙ୍କ ସୃଜନଶୀଳ କାର୍ଯ୍ୟ ସହିତ ଦୈହିକ ତଥା ମାନସିକ କାର୍ଯ୍ୟ ମିଶି ଯାଇଛି । ସେମାନଙ୍କ ମଧ୍ୟରୁ ଅନେକ ହେଉଛନ୍ତି ନୂଆ ନୂଆ ଭାବନା ପ୍ରଦାନକାରୀ, ଉଦ୍ଭାବକ, ପ୍ରବନ୍ଧ ଏବଂ ପୁସ୍ତକ ରଚୟିତା, ରାଜନୀତିଜ୍ଞ ଏବଂ ଜନନେତା—ପ୍ରକୃତ ଅର୍ଥରେ ସେମାନେ ଉଚ୍ଚ ବୌଦ୍ଧିକତାସଂପନ୍ନ ଏବଂ ସଂସ୍କୃତିବାନ ଲୋକ ।

ପରିପକ୍ୱ ସମାଜବାଦର ଐତିହାସିକ ପରିସର ମଧ୍ୟରେ ସମାଜର ଶ୍ରେଣୀହୀନ ଗଢ଼ଣ ମୁଖ୍ୟତଃ ନିର୍ମିତ ହେବ ।

ସୋଭିଏତ୍ ପ୍ରଜାତନ୍ତ୍ରସମୂହର ସଘନ ଅର୍ଥନୈତିକ ଏବଂ ସାମାଜିକ ବିକାଶ ସେସବୁର ସାର୍ବିକ ତ୍ୱରାନ୍ୱିତ ଏକାଭିମୁଖିତା ପକ୍ଷରେ ସହାୟକ ହେଉଛି । ସୋଭିଏତ୍ ୟୁନିଅନ୍‌ରେ ଏବେ କୌଣସି ପଶ୍ଚାତ୍‌ପଦ ଜାତୀୟ ଅଞ୍ଚଳ ନାହିଁ । ବିରାଟ ସାମାଜିକ ଅର୍ଥନୈତିକ ପରିବର୍ତ୍ତନ, ବିଶେଷ କରି ମଧ୍ୟ ଏସୀୟ ପ୍ରଜାତନ୍ତ୍ରସମୂହରେ, କିପରି ଘଟିଛି ତାହା ଗୋଟିଏ ମାତ୍ର ଉଦାହରଣ ମଧ୍ୟରୁ ଜାଣି ହେବ: ଅକ୍ଟୋବର ବିପ୍ଳବ ପୂର୍ବରୁ ଯେଉଁସବୁ ଅଞ୍ଚଳରେ କୃଷକମାନଙ୍କୁ ହାଡ଼ଭଙ୍ଗା ଖଟିଣି କରିବାକୁ ପଡ଼ୁଥିଲା ସେସବୁ ଜାଗାରେ ଶକ୍ତି ଏବଂ କୃଷକ ମଧ୍ୟରେ ଅନୁପାତଟା ପ୍ରତି ୧୦୦ ହେକ୍ଟର ହଳକରା ଜମିରେ ସମଗ୍ର ସୋଭିଏତ୍ ୟୁନିଅନ୍‌ର ହାରାହାରି ଅନୁପାତର ଦୁଇ ଗୁଣ ହୋଇ ପାରିଛି । ସୋଭିଏତ୍ ୟୁନିଅନ୍‌ରେ ପ୍ରତିଟି ଲୋକର ଜାତୀୟ ମନୋଭାବ ଏବଂ ଜାତୀୟ ସମ୍ମାନକୁ ଶ୍ରଦ୍ଧା କରାଯାଏ । ଜାତୀୟ ସଂସ୍କୃତିସମୂହର ପ୍ରସ୍ଫୁଟନ ଏବଂ ପାରସ୍ପରିକ ବିକାଶ ସୋଭିଏତ୍ ଜନସାଧାରଣ, ନୂଆ ଏକ ସାମାଜିକ ଏବଂ ଆନ୍ତର୍ଜାତିକ ଗୋଷ୍ଠୀଙ୍କର ସାଂସ୍କୃତିକ ବିକାଶ ଘଟାଇଛି । ଏହି ପ୍ରକ୍ରିୟା ୱଲିଛି ସମାନତା, ଭ୍ରାତୃସୁଲଭ ସହଯୋଗିତା ଏବଂ ସ୍ୱାଧୀନ ଅଭିପ୍ରାୟକୁ ଭିତ୍ତି କରି ।

ସମାଜବାଦରେ ସାମାଜିକ ସଂପର୍କରାଜି ଏବଂ ସାମାଜିକ କ୍ରିୟାକଳାପର ଗୁଣଗତ ଭାବେ ନୂତନ ଚରିତ୍ର ମଧ୍ୟ ତା'ର ବିଶେଷ ଦ୍ୱନ୍ଦ୍ୱବାଦକୁ ନିର୍ଦ୍ଧାରିତ କରୁଛି । କେବଳ ବୁର୍ଜୁଆ ସମାଜର ଦ୍ୱନ୍ଦ୍ୱବାଦ କ୍ଷେତ୍ରରେ ଯେମିତି ଘଟିଥାଏ, ଠିକ୍ ସେଇ ଭଳି ଏହା ନିର୍ଦ୍ଦିଷ୍ଟ ଏବଂ କ୍ଷଣସ୍ଥାୟୀ ନୁହଁ । କମ୍ୟୁନିଜମ୍‌ର ପ୍ରଥମ ପର୍ଯ୍ୟାୟ ହିସାବରେ ସମାଜବାଦର କେବଳ ନିଜସ୍ୱ ବିଶେଷ ନିୟମବଦ୍ଧତା ନଥାଏ, ଏହାର ଥାଏ କେତେକ ସାଧାରଣ ବୈଶିଷ୍ଟ୍ୟ, ଯିଏକି ସାମଗ୍ରିକ ଭାବେ କମ୍ୟୁନିଷ୍ଟ ସାମାଜିକ ଗଢ଼ଣ, ମାନବିକ ଯୋଗାଯୋଗର ସର୍ବୋଚ୍ଚ ରୂପ ସହିତ ଅବିଚ୍ଛିନ୍ନ ।

ସାମାଜିକ ସଂପର୍କରାଜିର ସମାଜବାଦୀ ରୂପ ସର୍ବସାଧାରଣ, କୋଠ ସଂପତ୍ତି ଏବଂ

# ପାରସ୍ପରିକ ଅର୍ଥନୈତିକ ସହାୟତା ପରିଷଦର ସଦସ୍ୟବୃନ୍ଦ – ସମାଜବାଦୀ ଦେଶସମୂହର ଅର୍ଥନୈତିକ ବିକାଶ

ପାରସ୍ପରିକ ଅର୍ଥନୈତିକ ସହାୟତା ପରିଷଦ ଅନ୍ତର୍ଗତ
ଦେଶମାନଙ୍କର ବିଶ୍ୱ ଶିଳ୍ପ ଉତ୍ପାଦନରେ ଅଂଶ




# ପୃଥିବୀର ସମଗ୍ରତାରେ ପାରସ୍ପରିକ ଅର୍ଥନୈତିକ ସହାୟତା ପରିଷଦର ସଦସ୍ୟବୃନ୍ଦ – ସମାଜବାଦୀ ଦେଶମାନଙ୍କର ଅଂଶ (୧୯୮୦)




14—1760

ଲୋକଙ୍କର ଶୋଷଣମୁକ୍ତ ଶ୍ରମ ଉପରେ ପ୍ରତିଷ୍ଠିତ ଯୋଜନା ଅନୁଯାୟୀ ସାମାଜିକ ଉତ୍ପାଦନର ଆୟୋଜନ ସମାଜବାଦୀ ଦ୍ୱନ୍ଦ୍ୱବାଦର ବିଶେଷ ଚରିତ୍ରକୁ ପୂର୍ବନିର୍ଦ୍ଧାରିତ କରିଥାଏ ।

ଏହାର ବିଶେଷ ବୈଶିଷ୍ଟ୍ୟରାଜିର ଅନ୍ତର୍ଗତ ହେଉଛି, ସର୍ବୋପରି, ବୈରିତାହୀନ ସାମାଜିକ ଦ୍ୱନ୍ଦ୍ୱସମୂହ, ଯିଏକି ଜନ୍ମ ନେଇଥାଏ ଉତ୍ପାଦନର ଉପାୟ ଉପକରଣ ଉପରେ ସାମାଜିକ ମାଲିକାନାର ଆଧିପତ୍ୟରୁ । ସମାଜବାଦରେ ଜନସାଧାରଣଙ୍କର ସାମାଜିକ କ୍ରିୟାଟା ହେଉଛି ଐକ୍ୟବଦ୍ଧ ଏବଂ ସାମୂହିକ, ଏବଂ ଏକଲକ୍ଷ୍ୟମୁଖୀ । ଏହି ଐକ୍ୟଟା ସାମାଜିକ ଜୀବନର ସମସ୍ତ କ୍ଷେତ୍ରରେ ପ୍ରତିଫଳିତ ସାମାଜିକ ଗତିଶୀଳତାକୁ ପ୍ରକଟିତ କରିଥାଏ । ସମାଜବାଦୀ ଦ୍ୱନ୍ଦ୍ୱବାଦରେ ଆଉରି ମଧ୍ୟ ପ୍ରକାଶ ପାଏ ଯୋଜନାବଦ୍ଧ, କ୍ରମାଗତ ଚରିତ୍ର ଏବଂ ସାମାଜିକ ପ୍ରକ୍ରିୟାସମୂହର କ୍ରମବର୍ଦ୍ଧମାନ ସମନ୍ୱୟତା । ଆଉ ଏକ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ହେଉଛି ମନୋଗତ କାରଣ, ସାମାଜିକ ପ୍ରୟୋଜନୀୟତାକୁ ପୂରଣ କରିବା ଦିଗରେ ଲୋକଙ୍କର ସଚେତନ କ୍ରିୟାକଳାପ, ସମାଜବାଦୀ ସମାଜରେ ଏହା କ୍ରମଶଃ ଅଧିକରୁ ଅଧିକ ଭୂମିକା ପାଳନ କରିଥାଏ । ସମାଜବାଦୀ ଦ୍ୱନ୍ଦ୍ୱବାଦର ଆଉ ଏକ ଚରିତ୍ର ହେଉଛି କମ୍ୟୁନିଷ୍ଟ ଗଢ଼ଣର ବ୍ୟବସ୍ଥା ମଧ୍ୟରେ ସୀମାହୀନ, ଅଫୁରନ୍ତ ସାମାଜିକ ଅଗ୍ରଗତି । ସମାଜବାଦୀ ଅଗ୍ରଗତି ପ୍ରକୃତରେ ଦେଶବ୍ୟାପୀ ହୁଏ, ଏବଂ ସାର୍ବିକ ଆଦର୍ଶରାଜି ଏବଂ ଲକ୍ଷ୍ୟସମୂହ ବାସ୍ତବ ରୂପ ପରିଗ୍ରହ କରେ ।

ସମାଜବାଦୀ ଦେଶମାନେ ବ୍ୟାପକ ସାମାଜିକ କର୍ମସୂଚୀକୁ ରୂପାୟିତ କରିଥାନ୍ତି, ଯେଉଁସବୁର ମୁଖ୍ୟ ଲକ୍ଷ୍ୟ ହେଉଛି ଲୋକଙ୍କର ଆୟର ଲଗାତର ଅଭିବୃଦ୍ଧି, ସାମାଜିକ ନିରାପତ୍ତା ଏବଂ ବାସସ୍ଥାନର ଉନ୍ନତିସାଧନ, ଜନଶିକ୍ଷା ଏବଂ ଜନସ୍ୱାସ୍ଥ୍ୟର ଆଉରି ବିକାଶ, ଜନସାଧାରଣଙ୍କର ବିଶ୍ରାମ ଏବଂ ସର୍ବମୁଖୀ ସାଂସ୍କୃତିକ ବିକାଶର ଆବଶ୍ୟକୀୟ ପରିବେଶ ସୃଷ୍ଟି ଏବଂ ଆବହମଣ୍ଡଳର ସୁରକ୍ଷା । ସମାଜବାଦୀ ଦେଶମାନେ ଏ କ୍ଷେତ୍ରରେ ବିରାଟ ଅଗ୍ରଗତି ହାସଲ କରିଛନ୍ତି ।

ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସର ରିପୋର୍ଟରେ ଲିଓନିଦ୍ ବ୍ରେଜ୍‌ନେଭ୍ ଜୋର ଦେଇ କହିଥିଲେ, ସମାଜବାଦୀ ସମାଜରେ ଶ୍ରମଜୀବୀ ମଣିଷ ହେଉଛି ମୁଖ୍ୟ ଏବଂ ଅମୂଲ୍ୟ ସଂପଦ, ଏବଂ ତେଣୁ କରି "ନିର୍ଦ୍ଦିଷ୍ଟ ଲୋକ ପ୍ରତି, ତା'ର ଆବଶ୍ୟକତା ଏବଂ ପ୍ରୟୋଜନୀୟତା ପାଇଁ ନିର୍ଦ୍ଦିଷ୍ଟ ନିଘା ହେଉଛି ପାର୍ଟିର ଅର୍ଥନୈତିକ ନୀତିର ମୂଳ କଥା" । ଏହି ନୀତିର ବଡ଼ ଲକ୍ଷ୍ୟ ହେଉଛି ସୋଭିଏତ୍ ଲୋକଙ୍କ ଜୀବନରେ ଉନ୍ନତି ସାଧନ କରିବା ଏବଂ ସେମାନଙ୍କ କଲ୍ୟାଣର ଆଉରି ବିକାଶକୁ ସୁନିଶ୍ଚିତ କରିବା । ସମାଜବାଦୀ ଦେଶମାନେ ଅର୍ଥନୈତିକ ବିକାଶ ତଥା ଲୋକଙ୍କ ଜୀବନ ମାନର ଉନ୍ନୟନରେ ଯୁଗାନ୍ତକାରୀ ସାଫଲ୍ୟ ଅର୍ଜନ କରିଛନ୍ତି । ପାରସ୍ପରିକ ଅର୍ଥନୈତିକ ସହାୟତା ପରିଷଦର ସଦସ୍ୟ ଦେଶମାନେ ହେଉଛନ୍ତି ଏକ ଅତୀବ ବିଚକ୍ଷଣ ଦେଶଗୋଷ୍ଠୀ ଏବଂ ସେମାନଙ୍କ ଅର୍ଥନୈତିକ ବିକାଶର ମାତ୍ରା ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କର ବିକାଶ ମାତ୍ରା ଅପେକ୍ଷା ଦ୍ୱିଗୁଣିତ ହୋଇ ଆସିଛି । ଏବେ ପୃଥିବୀରେ

ସୋଭିଏତ୍ ୟୁନିଅନ୍ ହେଉଛି ସର୍ବବୃହତ୍ ତୈଳ ଏବଂ ଇସ୍ପାତ, ସିମେଣ୍ଟ ଏବଂ ଖଣିଜ ସାର, ଗହମ ଏବଂ ତୁଳା, ମେଇନ୍‌ଲାଇନ୍ ବିଦ୍ୟୁତ୍ ଏବଂ ଡିଜେଲ ରେଲ ଇଂଜିନ୍ ଉତ୍ପାଦକ । ଏହାର ଅଛି ପୃଥିବୀରେ ସର୍ବବୃହତ୍ ମେସିନ୍ ଟୁଲ୍ ଫ୍ଲିଟ୍; ଏବଂ ପୃଥିବୀର ଯେକୌଣସି ଦେଶ ଅପେକ୍ଷା ଅଧିକ ଇଂଜିନିୟର ।

ସୋଭିଏତ୍ ୟୁନିଅନ୍‌ର କ୍ରମବର୍ଦ୍ଧମାନ ଅର୍ଥନୈତିକ କ୍ଷମତା ଏହାକୁ ସକ୍ଷମ କରିଥିଲା ସତୁରି ଦଶକରେ ଲୋକଙ୍କ କଲ୍ୟାଣ ପାଇଁ ଏକ ବ୍ୟାପକ କର୍ମସୂଚୀକୁ ରୂପାୟିତ କରିବାରେ । ପ୍ରାୟ ୩୨.୦୦ କୋଟି ରୁବଲ ବରାଦ କରାଯାଇଥିଲା ମଜୁରି, ବେତନ, ପେନସନ୍ ଏବଂ ଭତ୍ତା, ଆଦି ବୃଦ୍ଧି କରିବା ଦିଗରେ । ଅର୍ଥନୀତିର ସମସ୍ତ ଶାଖାରେ ମଧ୍ୟମ-ଆୟକାରୀ ଶିଳ୍ପ ଶ୍ରମିକ ଏବଂ ଅଫିସ୍ କର୍ମଚାରୀମାନଙ୍କର ବେତନ ବୃଦ୍ଧି ପାଇଲା ବେଳେ କୋଠଚାଷୀମାନଙ୍କର ଆୟ ଦ୍ରୁତ ଭାବେ ବୃଦ୍ଧି ପାଇଛି । ଶିଳ୍ପ ଶ୍ରମିକ ଏବଂ ଅଫିସ୍ କର୍ମଚାରୀ ଏବଂ କୋଠଚାଷୀମାନଙ୍କର ପେନସନ୍‌ର ସର୍ବନିମ୍ନ ପରିମାଣରେ ମଧ୍ୟ ଅଭିବୃଦ୍ଧି ଘଟିଛି । ଉଚ୍ଚତର ଶିକ୍ଷାନୁଷ୍ଠାନ, ବିଶେଷୀକୃତ ମାଧ୍ୟମିକ ସ୍କୁଲ, ଏବଂ କାରିଗରୀ ସ୍କୁଲମାନଙ୍କରେ ଛାତ୍ରମାନଙ୍କ ବୃତ୍ତିର ପରିମାଣ ମଧ୍ୟ ବଢ଼ିଛି ଏବଂ ସ୍ୱଳ୍ପ ଆୟକାରୀ ପରିବାରମାନଙ୍କ ପିଲଙ୍କ ପାଇଁ ଭତ୍ତାର ବ୍ୟବସ୍ଥା ଶୁରୁ କରାଯାଇଛି । ଷଷ୍ଠ ଦଶକର ପ୍ରାରମ୍ଭରେ ସହରାଞ୍ଚଳରେ ଥିବା ମୋଟ ବସତିସ୍ଥାନ ଅପେକ୍ଷା ନୂତନ ଭାବେ ନିର୍ମିତ ଗୃହରାଜିର ବସତି ସ୍ଥାନର ପରିମାଣକୁ ଟପି ଯାଇଛି ଇତି ମଧ୍ୟରେ । ବର୍ତ୍ତମାନ ଅଗ୍ରାଧିକାର ଲାଭ କରିଛି ଲୋକଙ୍କ ଖାଦ୍ୟ ଦ୍ରବ୍ୟ ଆଉ ବ୍ୟବହାର୍ଯ୍ୟ ଦ୍ରବ୍ୟ ଯୋଗାଣରେ ଉନ୍ନତି ସାଧନ କରିବା ।

ବ୍ୟକ୍ତିର ବିକାଶ ଏବଂ ତା'ର ପ୍ରାଣମୟ ଜୀବନର ବିକାଶ ପାଇଁ ଅଧିକରୁ ଅଧିକ ସମ୍ଭାବନା ବୃଦ୍ଧି ପାଇବାରେ ଲାଗିଛି । ଦୈହିକ, ଅଦକ୍ଷ ତଥା କଷ୍ଟସାଧ୍ୟ ଶ୍ରମର ଲୋପ ପାଇଁ ପଦକ୍ଷେପମାନ ନିଆଯାଉଛି । ଶ୍ରମ ମଧ୍ୟ ଅଧିକରୁ ଅଧିକ ଉତ୍ପାଦନଶୀଳ, ଅର୍ଥବହ ଏବଂ ସୃଜନଶୀଳ ହେବାରେ ଲାଗିଛି, ଯିଏକି ହେଉଛି ପ୍ରତ୍ୟେକ ଲୋକର ପ୍ରଥମ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ।

ସମାଜବାଦର ବିକାଶର ଏହିସବୁ ସାଧାରଣ ବୈଶିଷ୍ଟ୍ୟ ଗଭୀର ଭାବେ ପ୍ରଭାବିତ କରେ ମୌଳିକ ଦ୍ୱନ୍ଦ୍ୱମୂଳକ ନିୟମ କିପରି ଭାବେ ନିଜକୁ ପ୍ରକଟିତ କରିବ ।

## ୮ – ବୈରିତାହୀନ ବିରୋଧସମୂହ

ଏଥର ଆମେ ଦ୍ୱନ୍ଦ୍ୱସମୂହର ସମସ୍ୟା ଉପରେ ଆଲୋଚନା କରିବା ଆସନ୍ତୁ । ସମାଜବାଦ ଏବଂ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଶତ୍ରୁମାନେ ଅନେକ ସମୟରେ ଦାବୀ କରନ୍ତି ଯେ, ସମାଜବାଦୀ ସମାଜର ସାମାଜିକ-ରାଜନୈତିକ ଐକ୍ୟ ଏବଂ ଶତ୍ରୁ

ଶ୍ରେଣୀମାନଙ୍କର ଅନୁପସ୍ଥିତିକୁ ସ୍ୱୀକାର କରି ନେବା ଅର୍ଥ ହେଉଛି ଦ୍ୱନ୍ଦ୍ୱବାଦକୁ ଅସ୍ୱୀକାର କରିବା । ସେମାନେ କହନ୍ତି, ଶ୍ରେଣୀଗତ ବୈରିତା ହେଉଛି ଦ୍ୱନ୍ଦ୍ୱବାଦ ପକ୍ଷରେ ଅପରିହାର୍ଯ୍ୟ । ତା ସତ୍ତ୍ୱେ ବି ଏହି ଯୁକ୍ତି ଉଦ୍ଦେଶ୍ୟମୂଳକ ଭାବେ ବସ୍ତୁର ସାରମର୍ମକୁ ବିକୃତ କରେ ଏବଂ ସାମାଜିକ ସଂପର୍କରାଜିର ଅଧିଭୌତିକ ବ୍ୟାଖ୍ୟା ଦିଏ । ଦ୍ୱନ୍ଦ୍ୱବାଦର ସାର୍ବିକ ନିୟମ ହିସାବରେ ବୈରିତ୍ୟସମୂହର ଐକ୍ୟ ଏବଂ ସଂଗ୍ରାମର ନିୟମ ମଧ୍ୟ ସମାଜବାଦରେ କାର୍ଯ୍ୟ କରିଥାଏ । କିନ୍ତୁ ବୁର୍ଜୁଆ ସମାଜରେ ଏହା ଯେପରି ପ୍ରକାଶ ପାଇଥାଏ, ସେପରି ଏଠାରେ ପ୍ରକାଶ ପାଏ ନାହିଁ । ତା'ର କାରଣ ହେଉଛି, ଉନ୍ନତ ସମାଜବାଦୀ ସମାଜରେ ସାମାଜିକ ବୈରିତା ନଥାଏ । ପୁଞ୍ଜିବାଦରୁ ସମାଜବାଦକୁ ଉତ୍ତରଣ କାଳରେ ଉତ୍ପାଦନର ସାମାଜିକ ଚରିତ୍ର ଏବଂ ବ୍ୟକ୍ତିଗତ ପୁଞ୍ଜିବାଦୀ ଆତ୍ମସାତ୍‌କରଣ, ଉତ୍ପାଦନର ଉପକରଣ ଉପରେ ବ୍ୟକ୍ତିଗତ ମାଲିକାନା ମଧ୍ୟରେ ଥିବା ଦ୍ୱନ୍ଦ୍ୱସମୂହର ଅବସାନ ଘଟିଥାଏ । ଶ୍ରେଣୀଗତ ବୈରିତା ମଧ୍ୟ ଲୋପ ପାଇଥାଏ । ସମାଜବାଦୀ ସମାଜର ଐତିହାସିକ ବିକାଶରେ ଆଭ୍ୟନ୍ତରୀଣ ଗ୍ଚାଳିକା ଶକ୍ତି ହିସାବରେ ଶ୍ରେଣୀ ସଂଗ୍ରାମ ଆଉ କାର୍ଯ୍ୟ କରେ ନାହିଁ ।

ବୈରିତା ଏବଂ ଦ୍ୱନ୍ଦ୍ୱ, ଅବଶ୍ୟ, ଏକା ଜିନିଷ ନୁହେଁ । ସମାଜବାଦରେ ବୈରିତା ଲୋପ ପାଇଯାଏ, କିନ୍ତୁ ଦ୍ୱନ୍ଦ୍ୱ ରହିଥାଏ । ସମାଜବାଦରେ ଦ୍ୱନ୍ଦ୍ୱସମୂହର ଉପସ୍ଥିତି କୌଣସି ଭୁଲ ଭ୍ରାନ୍ତିର ସୂଚକ ନୁହେଁ । ଦ୍ୱନ୍ଦ୍ୱ ହେଉଛି ସମସ୍ତ ପ୍ରପଞ୍ଚର ବିକାଶର ମୂଳ ଉତ୍ସ, ଏବଂ ଦ୍ରୁତ ବିକାଶମାନ ଏକ ସାମାଜିକ ବ୍ୟବସ୍ଥା ହିସାବରେ ସମାଜବାଦର ଥାଏ ନିଜସ୍ୱ ଆଭ୍ୟନ୍ତରୀଣ ଗ୍ଚାଳିକା ଶକ୍ତି ଏବଂ ବିକାଶର ଉତ୍ସ । ଏକ ପ୍ରାଣବନ୍ତ, ବିଚକ୍ଷଣ ଭାବେ କାର୍ଯ୍ୟ କରୁଥିବା ବିକାଶମାନ ବ୍ୟବସ୍ଥା ହିସାବରେ ପ୍ରତିଷ୍ଠିତ ସମାଜବାଦରେ ପ୍ରକାଶ ପାଇଥାଏ ବହୁବିଧ ଅବୈରିତାସଂପନ୍ନ ଦ୍ୱନ୍ଦ୍ୱ : ଲୋକଙ୍କର କ୍ରମବର୍ଦ୍ଧମାନ ଆବଶ୍ୟକତା ଏବଂ ଉତ୍ପାଦନର ଅର୍ଜିତ ସ୍ତର ମଧ୍ୟରେ; ସହର ଏବଂ ଗ୍ରାମାଞ୍ଚଳ ମଧ୍ୟରେ ଏବଂ ମାନସିକ ତଥା କାୟିକ ଶ୍ରମ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ଅଥଚ ବିଲୟମାନ ପାର୍ଥକ୍ୟ; ବୈଜ୍ଞାନିକ ଏବଂ କାରିଗରୀ ବିପ୍ଳବର ଫଳ ସ୍ୱରୂପ ସୃଷ୍ଟି ହେଉଥିବା କେତେକ ଦ୍ୱନ୍ଦ୍ୱ; ସେପର୍ଯ୍ୟନ୍ତ ରହି ଯାଇଥିବା ଶ୍ରମିକ ଏବଂ କୃଷକ, ଏବଂ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ପାର୍ଥକ୍ୟ; ବ୍ୟକ୍ତି ନାଗରିକମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥ ଏବଂ ସାମଗ୍ରିକ ଭାବେ ସମାଜର ସ୍ୱାର୍ଥ ମଧ୍ୟରେ ସମ୍ଭାବ୍ୟ ଦ୍ୱନ୍ଦ୍ୱସମୂହ ଆଦି । ସମାଜବାଦୀ ସମାଜର ଅସ୍ତିତ୍ୱ ମଧ୍ୟରେ ଦ୍ୱନ୍ଦ୍ୱସମୂହର ପ୍ରତିଫଳନ ମଧ୍ୟ ଘଟିଥାଏ ଚେତନା ମଧ୍ୟରେ – ବୁର୍ଜୁଆ ଭାବାଦର୍ଶ ଏବଂ ନୈତିକତାର ଅବଶେଷାଂଶ ସହିତ ଅଗ୍ରଣୀ ବିଶ୍ୱଦୃଷ୍ଟିକୋଣର ସଂଗ୍ରାମ ।

ସମାଜବାଦରେ ବୈପରିତ୍ୟସମୂହର ଐକ୍ୟ ଏବଂ ସଂଗ୍ରାମର ନିୟମର କାର୍ଯ୍ୟକାରିତାକୁ କେଉଁ ବିଶେଷ ବୈଶିଷ୍ଟ୍ୟରାଜି ଚିହ୍ନିତ କରିଥାଏ ? ପ୍ରଥମତଃ, "ବୈପରିତ୍ୟ", "ବୈପରିତ୍ୟସମୂହର ସଂଗ୍ରାମ"ର ଅବଧାରଣା, ଅନ୍ୟସବୁ ମଧ୍ୟରେ, ନୂଆ ଆଧେୟ ଲାଭ କରେ । ବୁର୍ଜୁଆ ସମାଜରେ ବୈପରିତ୍ୟସମୂହ ମଧ୍ୟରେ ସଂଗ୍ରାମ

ଆପୋଷହୀନ ଶ୍ରେଣୀ ଶକ୍ତି ମଧ୍ୟରେ ସଂଘର୍ଷକୁ ବୁଝାଇଥାଏ । ଅନ୍ୟ ଦିଗରେ, ସମାଜବାଦର ଦ୍ୱନ୍ଦ୍ୱବାଦ ହେଉଛି ଏପରି ଯେ, ଅବୈରିତାସଂପନ୍ନ ଦ୍ୱନ୍ଦ୍ୱରାଜିର ସମାଧାନ ମଧ୍ୟ ଦେଇ ଏହି ବିକାଶ ଗ୍ଲଲିଥାଏ । ସେସବୁର ବାହକ, ଅନୁରୂପ ଭାବେ, ସେସବୁର ପାର୍ଟିସମୂହ ହେଉଛନ୍ତି ବନ୍ଧୁପମ ସାମାଜିକ ଗୋଷ୍ଠୀସମୂହ । ସେସବୁ ଶତ୍ରୁଭାବାପନ୍ନ ଶ୍ରେଣୀ ନୁହନ୍ତି, ମୌଳିକ ସ୍ୱାର୍ଥରାଜି ଦୃଷ୍ଟିରୁ ଯେଉଁମାନେ କି ବିରୋଧୀ । ସମାଜବାଦରେ "ବୈପରିତ୍ୟସମୂହ ମଧ୍ୟରେ ସଂଗ୍ରାମ" ଏହି ଭାବେ ପୃଥକ୍ ପୃଥକ୍ ପ୍ରଶ୍ନରାଜି ଉପରେ ବିଭିନ୍ନ ଲୋକ ଗୋଷ୍ଠୀର ସ୍ୱାର୍ଥରାଜିରେ ପାର୍ଥକ୍ୟସମୂହର ଏବଂ ସାମାଜିକ ଜୀବନର ପୃଥକ୍ ଦିଗରେ ଅସମନ୍ୱୟର ରୂପ ଗ୍ରହଣ କରିଥାଏ । ପୁଞ୍ଜିବାଦରେ, ନିୟମଗତ ଭାବେ, ବୈପରିତ୍ୟସମୂହ ମଧ୍ୟରେ ସଂଗ୍ରାମ ଗୋଟିଏ ପକ୍ଷକୁ ବିଜୟ ମଣ୍ଡିତ କରାଇଲା ବେଳେ ଅନ୍ୟ ପକ୍ଷଟିର ବିନାଶ ଘଟାଇଥାଏ, କିନ୍ତୁ ସମାଜବାଦରେ ଦ୍ୱନ୍ଦ୍ୱରାଜିକୁ ଅତିକ୍ରମ କରିବା ଦ୍ୱାରା ପ୍ରତିଷ୍ଠିତ ସାମାଜିକ ଗଢ଼ଣକୁ ଲୋପ କରିବା ପରିବର୍ତ୍ତେ ସମାଜର ସାମାଜିକ ରାଜନୈତିକ ଐକ୍ୟକୁ ଶକ୍ତିଶାଳୀ କରାଯାଏ । ସମାଜବାଦରେ ଦ୍ୱନ୍ଦ୍ୱସମୂହର ଆଉ ଏକ ମୌଳିକ ବୈଶିଷ୍ଟ୍ୟ ହେଉଛି, ପୃଥକ୍ ପୃଥକ୍ ଶ୍ରେଣୀ ବା ସାମାଜିକ ଗୋଷ୍ଠୀ ପରିବର୍ତ୍ତେ, ସାମଗ୍ରିକ ଭାବେ ସମାଜ ହେଉଛି କର୍ତ୍ତା, ଯା'ର ସ୍ୱାର୍ଥ ଦୃଷ୍ଟିରୁ ବିରୋଧସମୂହର ଅବସାନ ଘଟିଥାଏ ।

ଏଠାରେ ଆଲୋଚିତ ହୋଇଥିବା ସମାଜବାଦରେ ଦ୍ୱନ୍ଦ୍ୱମୂଳକ ନିୟମର ବିଶେଷ ଚରିତ୍ରକୁ ମଧ୍ୟ ଦେଖିବାକୁ ମିଳେ ନିର୍ଦ୍ଦିଷ୍ଟ ସାମାଜିକ ଦ୍ୱନ୍ଦ୍ୱସମୂହର ସମାଧାନ ପାଇଁ ଆବଶ୍ୟକୀୟ ଉପାୟ, ରୂପ ଓ ପଦ୍ଧତି ମଧ୍ୟରେ । ସମାଜବାଦୀ ସମାଜରେ, କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଗୁରୁତ୍ୱପୂର୍ଣ୍ଣ ସାମାଜିକ ସଂସ୍କାର ପ୍ରଣାଳୀବଦ୍ଧ ଭାବେ ରଚନା କରିବା ଏବଂ କାର୍ଯ୍ୟକାରୀ କରିବା ଏବଂ ଦେଖା ଦେଉଥିବା ଦ୍ୱନ୍ଦ୍ୱସମୂହକୁ ସମାଧାନ କରିବାର ବସ୍ତୁନିଷ୍ଠ ସମ୍ଭାବନା ଓ ପ୍ରୟୋଜନୀୟତା ରହିଛି । ସମାଜବାଦରେ ଗଭୀର ଗୁଣାତ୍ମକ ରୂପାନ୍ତରଣସମୂହ ଘଟିଥାଏ ଶ୍ରମଜୀବୀ ଜନସାଧାରଣଙ୍କର ଉଦ୍ଦେଶ୍ୟପୂର୍ଣ୍ଣ କାର୍ଯ୍ୟ ମଧ୍ୟରେ । ନିର୍ଦ୍ଦିଷ୍ଟ ଏକ ଦ୍ୱନ୍ଦ୍ୱର ସମାଧାନ କରିବାର ଆବଶ୍ୟକତାକୁ ନିର୍ଦ୍ଧାରଣ କରିବାକୁ ଯାଇ କମ୍ୟୁନିଷ୍ଟ ପାର୍ଟି ଏବଂ ସମାଜବାଦୀ ରାଷ୍ଟ୍ର ନିର୍ଦ୍ଦିଷ୍ଟ ସାମାଜିକ ପରିବର୍ତ୍ତନଟିର ସମୟ, ପରିମାଣ, ଗଭୀରତା ଏବଂ ବ୍ୟାପକତାକୁ ନିୟନ୍ତ୍ରଣ କରିଥାଏ ।

ବିକାଶର ବିଭିନ୍ନ ପର୍ଯ୍ୟାୟରେ ଦ୍ୱନ୍ଦ୍ୱସମୂହର ସମାଧାନର ଭିନ୍ନ ଭିନ୍ନ ପଦ୍ଧତି ଗ୍ରହଣ କରାଯାଇଥାଏ । ଆମେ ଇତିପୂର୍ବରୁ କହିଛେ ଯେ, ପୁଞ୍ଜିବାଦରୁ ସମାଜବାଦକୁ ଉତ୍ତରଣ କାଳରେ ଉତ୍‌ଖାତ, ଅଥଚ ସେପର୍ଯ୍ୟନ୍ତ ପ୍ରତିରୋଧକାରୀ ବୁର୍ଜୁଆ ବିରୁଦ୍ଧରେ ବଳପ୍ରୟୋଗ କରିବାଟା ସଂପୂର୍ଣ୍ଣ ଯୁକ୍ତିସଙ୍ଗତ । ପରିପକ୍ୱ ସମାଜବାଦୀ ସମାଜରେ ବୈରିତାହୀନ ଦ୍ୱନ୍ଦ୍ୱସମୂହ ଦେଖା ଦେଉଥିବା ହେତୁ ଏହା ବଳପ୍ରୟୋଗର ଆଶ୍ରୟ ନନେଇ ସାମାଜିକ ସଂପର୍କରାଜି ଏବଂ ବିରୋଧସମୂହର ସଂଗ୍ରାମ ନିୟନ୍ତ୍ରଣ ପାଇଁ ଅନ୍ୟ ପଥସମୂହ ଗ୍ରହଣ କରିଥାଏ । ସାମାଜିକ ଐକ୍ୟ, ଯୋଜନାବଦ୍ଧ ଅର୍ଥନୈତିକ ପରିଗ୍ଳନା ଏବଂ ସାମାଜିକ

ପ୍ରକ୍ରିୟାସମୂହର ବିଜ୍ଞାନଭିତ୍ତିକ ନିର୍ଦ୍ଦେଶନା ରାଷ୍ଟ୍ର କ୍ଷମତାର ଏହିସବୁ ପଦକ୍ଷେପର ଗୁରୁତ୍ୱକୁ ବୃଦ୍ଧି କରିଥାଏ । ଏହିସବୁ ପଦକ୍ଷେପ ଅନୁକୂଳ ଅବସ୍ଥାରାଜି ସୃଷ୍ଟି କରେ ସମାଜବାଦୀ ବାସ୍ତବତାର ବିଭିନ୍ନ କ୍ଷେତ୍ରରେ ବସ୍ତୁଗତ ଭାବେ ଆବଶ୍ୟକୀୟ ଗୁଣାତ୍ମକ ପରିବର୍ତ୍ତନସମୂହର ପ୍ରସ୍ତୁତି ତଥା ରୂପାୟନ ପାଇଁ । ଅର୍ଥନୀତି, ସଂସ୍କୃତି, ସାମାଜିକ ପରିଚାଳନା କ୍ଷେତ୍ରରେ ରାଷ୍ଟ୍ରୀୟ ସଂସ୍କାରସମୂହ ହେଉଛି ସମାଜବାଦର ଦ୍ୱନ୍ଦ୍ୱସମୂହକୁ ଅତିକ୍ରମ କରିବା ଦିଗରେ ମୁଖ୍ୟ ଉପାୟସମୂହ । ସାମାଜିକ ସଂପର୍କରାଜିକୁ ଉନ୍ନତ କରିବା ପାଇଁ ରାଷ୍ଟ୍ର ଦ୍ୱାରା କାର୍ଯ୍ୟକାରୀ କରାଯାଉଥିବା ସଂସ୍କାର ଏବଂ ଅନ୍ୟାନ୍ୟ ପଦ୍ଧତି ସମେତ ଆଉରି କେତେକ ବାଟ ଅଛି, ଯିଏକି ସାମାଜିକ ପ୍ରକ୍ରିୟାକୁ ପ୍ରଭାବିତ କରିବାରେ ରାଷ୍ଟ୍ରକୁ ସଂପୃକ୍ତ କରେ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ, ପୁରୁଣା ଏବଂ ଅଚଳ ମତ, ନୈତିକତା, ଅଭ୍ୟାସ, ପରମ୍ପରାକୁ ଅତିକ୍ରମ କରାଯାଇ ପାରେ ଶିକ୍ଷା ଏବଂ ପ୍ରବର୍ତ୍ତନା ଦ୍ୱାରା । ପରିପକ୍ୱ ସମାଜବାଦୀ ସମାଜର ବିକାଶରେ ତେଣୁ ସମାଲୋଚନା ଏବଂ ଆତ୍ମସମାଲୋଚନା ବିରାଟ ଗୁରୁତ୍ୱ ଲାଭ କରିଥାଏ । ସମାଜର ସାଂସ୍କୃତିକ, ଆତ୍ମିକ ଜୀବନ କ୍ଷେତ୍ରରେ ବୈରିତାହୀନ ଦ୍ୱନ୍ଦ୍ୱସମୂହର ସମାଧାନ ପାଇଁ ସେସବୁ ହେଉଛି ଫଳପ୍ରଦ ଉପାୟ ଏବଂ ଉପସ୍ଥିତ ଦ୍ୱନ୍ଦ୍ୱସମୂହକୁ ସମାଧାନ ପାଇଁ ବ୍ୟାବହାରିକ ସାମାଜିକ କ୍ରିୟା ପାଇଁ ଏକ ଆବଶ୍ୟକୀୟ ପୂର୍ବସର୍ତ୍ତ ଏବଂ ଏକ କାରଣ ।

ବୈରିତାହୀନ ଦ୍ୱନ୍ଦ୍ୱସମୂହ ମଧ୍ୟ ସମାଜବାଦୀ ସମାଜର ଦ୍ୱନ୍ଦ୍ୱବାଦର ଅନ୍ୟାନ୍ୟ ବୈଶିଷ୍ଟ୍ୟକୁ ପ୍ରଭାବିତ କରିଥାଏ । ଏହି ଦ୍ୱନ୍ଦ୍ୱବାଦରେ, ଉଦାହରଣ ସ୍ୱରୂପ, ପ୍ରକାଶ ପାଇଥାଏ କ୍ରମଶଃ ବିକାଶର ପ୍ରାଧାନ୍ୟ ଏବଂ ସାମାଜିକ ପ୍ରପଞ୍ଚର ଅଧିକ ପରିପକ୍ୱ ଗୁଣକୁ ରୂପାନ୍ତରଣ । ଏହା ଛଡ଼ା, ଗୁଣାତ୍ମକ ପରିବର୍ତ୍ତନର ମୁଖ୍ୟ ପ୍ରକ୍ରିୟାସମୂହ, ଯଥା, ସର୍ବହରା ଏକନାୟକତ୍ୱ ରାଷ୍ଟ୍ରର ସମଗ୍ର ଜନସାଧାରଣଙ୍କ ରାଷ୍ଟ୍ରକୁ ପରିବର୍ତ୍ତନ, ଉନ୍ନତ ସମାଜବାଦର ଉନ୍ନୟନ ଏବଂ କମ୍ୟୁନିଜମ୍ ପାଇଁ ବୈଷୟିକ ତଥା କାରିଗରୀ ଭିତ୍ତି ନିର୍ମାଣ । ସମାଜବାଦରେ କ୍ରମଶଃ ଗୁଣାତ୍ମକ ପରିବର୍ତ୍ତନର ଅର୍ଥ ନୁହେଁ ସାମାଜିକ ବିକାଶର ଧୀରତା । ବରଂ, ଓଲଟା, ସମାଜବାଦର ଦ୍ୱନ୍ଦ୍ୱବାଦ ସେତେବେଳେ ସାମାଜିକ ଜୀବନର ସମସ୍ତ କ୍ଷେତ୍ରରେ ବିଚକ୍ଷଣ ସାମାଜିକ ପ୍ରକ୍ରିୟାସମୂହ ଦ୍ୱାରା ଚିହ୍ନିତ ହୋଇଥାଏ ।

## ୯ – ସମାଜବାଦରେ ନେତୀକରଣ ଏବଂ ପ୍ରଗତି

ସମାଜବାଦୀ ସମାଜରେ ନେତୀକରଣର ନେତୀକରଣର ଦ୍ୱନ୍ଦ୍ୱବାଦରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଥାଏ । ବୈରିତାସଂପନ୍ନ ଦ୍ୱନ୍ଦ୍ୱଯୁକ୍ତ ଶୋଷକ ସମାଜରେ ନେତୀକରଣ ପ୍ରକାଶ ପାଇଥାଏ ତୀବ୍ର ଶ୍ରେଣୀ ସଂଗ୍ରାମ ମଧ୍ୟରେ ଏବଂ ଆଉରି ଗଭୀର ଭାବେ ପ୍ରକଟିତ ହୋଇଥାଏ ସାମାଜିକ ବିପ୍ଳବରେ, ଯାହାକୁ ମାର୍କସ୍ ବର୍ଣ୍ଣନା କରିଥିଲେ,

"ଖଣ୍ଡ, ଝୋଲ୍ବାନ୍ୱିତ ନୈତୀକରଣ, ବର୍ଜନର ସମୟ"।* ଇତିହାସରେ ଗଭୀରତମ ସାମାଜିକ ପରିବର୍ତ୍ତନ ହେଉଛି ସମାଜବାଦୀ ବିପ୍ଳବ, ଯା'ର ବିପ୍ଳବୀ ଚରିତ୍ର ହେଉଛି ଅନ୍ୟ ଲୋକର ଶ୍ରମକୁ ଶୋଷଣ କରିବା ଉପରେ ପ୍ରତିଷ୍ଠିତ ବ୍ୟକ୍ତିଗତ ସଂପତ୍ତିର, ଶେଷକୁ, ନୈତୀକରଣ, ଯା ଫଳରେ, ଶୋଷକ ଶ୍ରେଣୀମାନଙ୍କର ସ୍ୱାର୍ଥରାଜିକୁ ପ୍ରକାଶ କରୁଥିବା ଏବଂ ରକ୍ଷା କରୁଥିବା ଉପରି ଗଢ଼ଣଗତ ଏବଂ ଭାବାଦର୍ଶଗତ ସମଗ୍ର ବ୍ୟବସ୍ଥାର ନୈତୀକରଣ ।

ସମାଜବାଦୀ ସମାଜରେ ସାମାଜିକ ବୈରିତା ଏବଂ ଶ୍ରେଣୀ ସଂଗ୍ରାମର ଅବସାନ ମଧ୍ୟ ଶୋଷକ ବ୍ୟବସ୍ଥାର ସହଜାତ ନୈତୀକରଣର ବହୁ ଦିଗକୁ ବିଲୋପ କରି ଦିଏ । ବଳପ୍ରୟୋଗର ତୀବ୍ର ପ୍ରକାଶ ଘଟେ ନାହିଁ, ନୈତୀକରଣ ଦିଗ ପରିବର୍ତ୍ତନ କରେ, ସ୍ୱତଃସ୍ଫୂର୍ତ୍ତତା ସ୍ଥାନରେ ଦେଖାଦିଏ ଚେତନା ଏବଂ ଶୃଙ୍ଖଳାବଦ୍ଧତା, ଆଦି । ସମାଜବାଦୀ ସମାଜର ଦ୍ୱନ୍ଦ୍ୱସମୂହର ବୈରିତାହୀନ ଚରିତ୍ର ମଧ୍ୟ ସମାଜବାଦରେ ନୈତୀକରଣର ଆଧେୟ ଏବଂ ରୂପକୁ ଏବଂ ଦ୍ୱନ୍ଦ୍ୱସମୂହର ସମାଧାନ ପଦ୍ଧତିକୁ ପ୍ରଭାବିତ କରିଥାଏ । ଏଥି ସଙ୍ଗେ ସଙ୍ଗେ ସମାଜବାଦରେ ନୈତୀକରଣର ଆବଶ୍ୟକତାରେ ମଧ୍ୟ ଅବସାନ ଘଟେ ନାହିଁ । ଅନ୍ୟ କ୍ଷେତ୍ର ପରି ଏ କ୍ଷେତ୍ରରେ ନୈତୀକରଣ ମଧ୍ୟ ଆଗକୁ ବିକାଶ ପାଇଁ ଏକ ପୂର୍ବସର୍ତ୍ତ । ସମାଜବାଦରେ ସାମାନ୍ୟ କେତେକ ସାମାଜିକ ଉପାଦାନ ଥାଏ, ଯା'ର ନିଶ୍ଚିତ ଭାବେ ନୈତୀକରଣ ଘଟିବା ଦରକାର । ସେସବୁ ହେଉଛି ନୈତୀକରଣର ଲକ୍ଷ୍ୟବସ୍ତୁ । ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକଳାପର ବିଭିନ୍ନ କ୍ଷେତ୍ରରେ ସେସବୁ ହେଉଛି ଅତି ପୁରୁଣା ଆଧାର, ଯିଏକି ଅଧିକ ବିକାଶ କ୍ଷେତ୍ରରେ ବାଧା ସୃଷ୍ଟି କରେ, ଅତୀତର ରକ୍ଷଣଶୀଳ ଅବଶେଷାଂଶ, ଜନସାଧାରଣଙ୍କ ଦୈନନ୍ଦିନ ଜୀବନ, ଚେତନା ଏବଂ ଆଚରଣରେ ପୁରୁଣା ଅଭ୍ୟାସ ଏବଂ ପ୍ରଥାସମୂହ; ବୁର୍ଜୁଆ ଭାବାଦର୍ଶ ଏବଂ ଅନ୍ୟାନ୍ୟ । ଭବିଷ୍ୟତ କମ୍ୟୁନିଷ୍ଟ ସମାଜର ମଧ୍ୟ ନିଜସ୍ୱ ଦ୍ୱନ୍ଦ୍ୱସମୂହ ରହିବ ଏବଂ ସେସବୁକୁ ସେ ସମାଧାନ କରିବ । ବିକାଶର ପ୍ରକ୍ରିୟାରେ କେତେକ ଜିନିଷ ପୁରୁଣାକାଳିଆ ହୋଇ ପଡ଼ିବ ଏବଂ ତେଣୁ ସମାଜ ପକ୍ଷରେ ନୈତୀକରଣର ଲକ୍ଷ୍ୟବସ୍ତୁ ହେବ ।

ସମାଜବାଦରେ ନୈତୀକରଣର ବିଶେଷ ବୈଶିଷ୍ଟ୍ୟସମୂହ ମଧ୍ୟ ନୈତୀକରଣର ନୈତୀକରଣ ନିୟମର ଅନ୍ୟାନ୍ୟ ଦିଗକୁ ନିୟନ୍ତ୍ରଣ କରିବ । ତେଣୁ କମ୍ୟୁନିଜମ୍‌ରେ ଐତିହାସିକ ବିକାଶର ବହୁ ବିରାଟ ଚକ୍ରସବୁ ସଂପୂର୍ଣ୍ଣ ହେବ । ଆଦିମ ସମାଜରେ ଥିଲା ଉପଜାତିକ (କୌମ) ସଂପତ୍ତି ଏବଂ ଜନସାଧାରଣଙ୍କ ମଧ୍ୟରେ ସମାନତା । ପରବର୍ତ୍ତୀ ସମୟରେ ବ୍ୟକ୍ତିଗତ ସଂପତ୍ତିର ଆବିର୍ଭାବ ଘଟିଲା, ବୈରିତାସଂପନ୍ନ ଶ୍ରେଣୀସମୂହ,

---

*K. Marx, "Moralizing Criticism and Critical Morality". In: Karl Marx and Frederick Engels, *Collected Works*, Vol. 6, Moscow, 1976, p. 317.

ସାମାଜିକ ଅସାମ୍ୟ ସମେତ, ଅର୍ଥାତ୍, ଉପଜାତିକ ବ୍ୟବସ୍ଥାର ନେତୀକରଣ ଘଟିଲ । ସମାଜବାଦୀ ବିପ୍ଳବର ବିଜୟ ଏବଂ କମ୍ୟୁନିଷ୍ଟ ସମାଜ ନିର୍ମାଣ, ଅବଶ୍ୟ, ପୁଣି ସାମାଜିକ ସଂପତ୍ତି ଏବଂ ସାମାଜିକ ସାମ୍ୟତା ପ୍ରତିଷ୍ଠା କରେ, ଅର୍ଥାତ୍, ନେତୀକରଣର ନେତୀକରଣ ଘଟେ । କହିବା ବାହୁଲ୍ୟ ଯେ, ଏହା ହେଉଛି ପ୍ରାଥମିକ ବିନ୍ଦୁଟିକୁ ପୁଣି "ଅର୍ଦ୍ଧ-ପରିବର୍ତ୍ତନ" : ଏପରିକି ଏ ପ୍ରକ୍ରିୟାରେ ତ୍ରୟୀ ହେଉଛି ଉତ୍ପାଦିକା ଶକ୍ତିସମୂହ ଏବଂ ସାମାଜିକ ସଂସ୍କୃତିର ବିପୁଳ ଅଗ୍ରଗତି ସମେତ ପ୍ରକୃତ ବିକାଶର ଏକ ସଂପୂର୍ଣ୍ଣ ଉପର ଠାଉରିଆ ଏବଂ ବାହ୍ୟ ଦିଗ । ସମାଜବାଦର ବିଜୟ ହେଉଛି ମଣିଷ ଜାତିର ପ୍ରକୃତ ଇତିହାସର ପ୍ରାରମ୍ଭ । ଦ୍ୱନ୍ଦ୍ୱାତ୍ମକ ଏବଂ ଐତିହାସିକ ବସ୍ତୁବାଦର ବିରୋଧୀମାନେ ଅନେକ ସମୟରେ ଏହି ବୈଧ ବିଜ୍ଞାନସିଦ୍ଧ ସିଦ୍ଧାନ୍ତଟିକୁ ଉପସ୍ଥାପିତ କରିଥାନ୍ତି କମ୍ୟୁନିଜମ୍‌ରେ ସାମାଜିକ ପ୍ରକ୍ରିୟାକୁ ବ୍ୟାଖ୍ୟା କରିବାରେ ମାର୍କସ୍‌ବାଦୀମାନଙ୍କ ପକ୍ଷରେ ଦ୍ୱନ୍ଦ୍ୱବାଦର "ବର୍ଜନ" ବୋଲି । ଏସବୁ ସତ୍ତ୍ୱେ ତ୍ରୟୀ ପରିକଳ୍ପନା ପ୍ରତି ସେମାନଙ୍କ ଦୃଷ୍ଟିପାତ କରି ସେମାନେ ଅନେକ ସମୟରେ କହନ୍ତି : "ପୁଞ୍ଜିବାଦର ନେତୀକରଣ ଘଟାଏ କମ୍ୟୁନିଜମ୍, କିନ୍ତୁ କମ୍ୟୁନିଜମ୍‌ର କ'ଣ ନିଜସ୍ୱ ନେତୀକରଣ ଘଟିବ ନାହିଁ ଭବିଷ୍ୟତରେ, ପୁଣି ଶ୍ରେଣୀଯୁକ୍ତ ସମାଜକୁ ପ୍ରତ୍ୟାବର୍ତ୍ତନ ଦ୍ୱାରା ?"

ଆମେ ଇତିପୂର୍ବରୁ ଦର୍ଶାଇଛେ ଯେ, ବିମୂର୍ତ୍ତ ତ୍ରୟୀ ସୂତ୍ରକୁ ନେଇ ଯୁକ୍ତି କରିବାଟା ଭୁଲ । ଏହି ପ୍ରଶ୍ନଟିର ଉତ୍ତର ଦେବା ପୂର୍ବରୁ ବିଷୟଟିର ନିର୍ଯ୍ୟାସକୁ ବିଚାର କରିବା ଦରକାର । ସମାଜବାଦ ପୂର୍ବରୁ କାହିଁକି ଗୋଟିଏ ଗଢ଼ଣ ଅନ୍ୟ ଏକ ଗଢ଼ଣକୁ ସ୍ଥାନାନ୍ତରିତ କରିଛି ? କାରଣ, ପ୍ରଥମତଃ ତା'ର ଏକ ଅର୍ଥନୈତିକ କାରଣ ଥିଲା, ଅର୍ଥାତ୍, ସେଇ ଉତ୍ପାଦନ ପଦ୍ଧତିରେ ରହିଥିଲା ସଂଘର୍ଷ, ଉତ୍ପାଦିକା ଶକ୍ତିସମୂହ ଏବଂ ଉତ୍ପାଦନ ସଂପର୍କରାଜି ମଧ୍ୟରେ । ଦ୍ୱିତୀୟତଃ, ପୁରୁଣା ଉତ୍ପାଦନ ସଂପର୍କରାଜିର ଉଚ୍ଛେଦ ଥିଲା ସର୍ବଦା କେତେକ ସାମାଜିକ ଶକ୍ତିଙ୍କ ସ୍ୱାର୍ଥରେ, ଯଥା ଅଗ୍ରଣୀ ଶ୍ରେଣୀ, ନେତୀକରଣର କର୍ତ୍ତାର ସ୍ୱାର୍ଥରେ । କମ୍ୟୁନିଜମ୍‌ରେ ପ୍ରଗତିର ଦ୍ୱନ୍ଦ୍ୱବାଦର ବୈଶିଷ୍ଟ୍ୟଟିକୁ ଧାରଣା କରାଯାଇଥାଏ ଏହା ଦ୍ୱାରା ଯେ, କମ୍ୟୁନିଷ୍ଟ ଉତ୍ପାଦନ ପଦ୍ଧତିରେ ବୈରିତାପୂର୍ଣ୍ଣ ଦ୍ୱନ୍ଦ୍ୱ ଦେଖା ଦିଏ ନାହିଁ କି ଦେଖା ଦେବ ନାହିଁ, କାରଣ ଉତ୍ପାଦନର ଉପାୟ ଉପକରଣର ସାମାଜିକ ମାଲିକାନା ଉତ୍ପାଦିକା ଶକ୍ତିସମୂହର ସାମାଜିକ ଚରିତ୍ର ସହିତ ସଂଗତିଶୀଳ ଏବଂ ସେସବୁର ବିକାଶ ପାଇଁ ସମସ୍ତ ଆବଶ୍ୟକୀୟ ସୁଯୋଗ ଯୋଗାଇ ଦେଇଥାଏ । ତେଣୁ ସମାଜବାଦର ବିଜୟ ସାମାଜିକ ବିପ୍ଳବର ଅର୍ଥନୈତିକ ଭିତ୍ତିକୁ ନିର୍ମୂଳ କରି ଦେଇଥାଏ । ଫଳତଃ, ଇତିହାସରେ ପ୍ରଥମ କରି ସାମାଜିକ ନେତୀକରଣର ଲକ୍ଷ୍ୟ ହିସାବରେ ପ୍ରତିଷ୍ଠିତ ଉତ୍ପାଦନର ସଂପର୍କରାଜିର ଧରଣଟାର ଅବସାନ ଘଟେ (ପୃଥକ୍ ପୃଥକ୍ ପୁରୁଣାକାଳିଆ ଉପାଦାନର, ଅଥଚ, ସ୍ୱାଭାବିକ ଭାବେ ନେତୀକରଣ ଘଟେ) । ଅଧିକନ୍ତୁ, କମ୍ୟୁନିଷ୍ଟ ସମାଜର ଚରିତ୍ର ଶ୍ରେଣୀହୀନ ହୋଇଥିବାରୁ ସେଥିରେ ଏପରି କୌଣସି ସାମାଜିକ କର୍ତ୍ତା ନାହିଁ, ଯିଏକି ଉପସ୍ଥିତ ଉତ୍ପାଦନ ପଦ୍ଧତିର ପରିବର୍ତ୍ତନ

ଘଟାଇବାରେ ଆଗ୍ରହୀ ହେବ । ତେଣୁ କରି କମ୍ୟୁନିଜମ୍ ହେଉଛି ସର୍ବୋଚ୍ଚ ସାମାଜିକ ପର୍ଯ୍ୟାୟ, ଯିଏକି ଅନ୍ୟ କୌଣସି ନୂଆ ଗଢ଼ଣ ଦ୍ୱାରା ନେତୀକୃତ ହୋଇ ପାରିବ ନାହିଁ । ଏଇଥି ପାଇଁ ଏହା ଏକ ଉପରଠାଉରିଆ ତ୍ରୟୀ ପରିକଳ୍ପନା ନୁହେଁ, ଏହା ହେଉଛି ସମାଜବାଦରେ ନେତୀକରଣର ନେତୀକରଣର ବୈଶିଷ୍ଟ୍ୟସମୂହର ବିଶ୍ଳେଷଣ, ଯିଏକି ଐତିହାସିକ ପ୍ରଗତିର ବସ୍ତୁଗତ ପ୍ରବଣତାସମୂହକୁ ପ୍ରକାଶ କରିବାକୁ ସମର୍ଥ ହୁଏ । ଏ କଥା କହିବା ଅନାବଶ୍ୟକ ଯେ, କମ୍ୟୁନିଜମ୍ ହେଉଛି କୌଣସି ଅନପେକ୍ଷ ଅବସ୍ଥା ବା ମାନବ ଇତିହାସର ପରିସମାପ୍ତି ବୋଲି । କମ୍ୟୁନିଜମ୍‌ରେ ମଧ୍ୟ ଦ୍ୱନ୍ଦ୍ୱବାଦର ନିୟମରାଜି ଅନୁସାରେ ସମାଜର ବିକାଶ ଘଟିବ । ଏଥି ସଙ୍ଗେ ସଙ୍ଗେ କମ୍ୟୁନିଷ୍ଟ ସମାଜ ମଧ୍ୟ ତା'ର ସୀମାହୀନ ପରିପୂର୍ଣ୍ଣତା ପଥରେ କୌଣସି ପ୍ରତିବନ୍ଧକ ତିଆରି କରେ ନାହିଁ । କମ୍ୟୁନିଷ୍ଟ ରୂପାୟନ ହିଁ ସାମାଜିକ ବିକାଶକୁ ତ୍ୱରାନ୍ୱିତ କରେ, ଯା ଅଧୀନରେ ବ୍ୟକ୍ତିର ସର୍ବାତ୍ମକ, ଅବାଧ ବିକାଶ ଏବଂ ତା'ର ସୃଜନାତ୍ମକ ଶକ୍ତିସମୂହର ପ୍ରାଣପ୍ରାଚୁର୍ଯ୍ୟଭରା ଅଭିବ୍ୟକ୍ତି ହେବ ସାମାଜିକ ଜୀବନର ମୁଖ୍ୟ ବୈଶିଷ୍ଟ୍ୟ । ଏହି ଅର୍ଥରେ ସମାଜବାଦର ଅଭ୍ୟୁଦୟ ଏବଂ ବିକାଶ ମଣିଷର ପୂର୍ବ ଇତିହାସର ଅବସାନ ଘଟାଇ ପ୍ରକୃତ ଇତିହାସର ଅଭ୍ୟୁଦୟ ଘଟାଏ ।

# ଦଶମ ପରିଚ୍ଛେଦ

# ପ୍ରୟୋଗ ଏବଂ ସତ୍ୟ

ସମାଜର ଜୀବନ ଏବଂ ପ୍ରଗତିଶୀଳ ବିକାଶ ସଂପର୍କରେ, ପୂର୍ବବର୍ତ୍ତୀ ପରିଚ୍ଛେଦରେ ଯେଉଁ ଆଲୋଚନା କରାଗଲା, ତାହା କେବଳ ସମ୍ଭବ ପ୍ରକୃତି ଉପରେ ଲୋକମାନଙ୍କର କ୍ରମବର୍ଦ୍ଧମାନ ନିୟନ୍ତ୍ରଣ ଏବଂ ତା'ର ଗୋପନତା ମଧ୍ୟକୁ ଅନୁପ୍ରବେଶ ଦ୍ୱାରା । ଏକ ବିଜ୍ଞ ଲୋକକଥା ଅଛି : ଜ୍ଞାନ ହେଉଛି ସବୁଠାରୁ ବଡ଼ ବନ୍ଧୁ । ଲୋକମାନଙ୍କର ଜ୍ଞାନ ସ୍ୱତଃସ୍ଫୂର୍ତ୍ତ ଶକ୍ତିମାନଙ୍କ ଉପରେ ସେମାନଙ୍କ ପ୍ରଭୁତ୍ୱକୁ ସୁନିଶ୍ଚିତ କରିଥାଏ । ଜ୍ଞାନ ଆହରଣ ଏବଂ ଜ୍ଞାନର ବିକାଶ ହେଉଛି ଏକ ପ୍ରକ୍ରିୟା, ଯଦ୍ୱାରା ମଣିଷ ତା'ର ଚତୁର୍ପାର୍ଶ୍ୱସ୍ଥ ବାସ୍ତବତାକୁ ବୁଝି ପାରେ । ଜ୍ଞାନର ସାରମର୍ମର ମତବାଦ, ଅବଗତି ପ୍ରକ୍ରିୟାର ଗଢ଼ଣ ତଥା ନିୟମାବଳୀକୁ କୁହାଯାଏ ଜ୍ଞାନତତ୍ତ୍ୱ ବୋଲି ।

## ୧ – ଦର୍ଶନର ମୌଳିକ ପ୍ରଶ୍ନର ଦ୍ୱିତୀୟ ଦିଗ

ଦର୍ଶନର ମୂଳ ପ୍ରଶ୍ନ, ଅର୍ଥାତ୍, ଚିନ୍ତନ ସହିତ ସତ୍ତାର, ବସ୍ତୁ ସହିତ ଚେତନାର ସଂପର୍କ ଉପରେ ଯେପରି ଆଲୋଚନା କଲେ, ପ୍ରଥମ ଦିଗଟି (କିଏ ପ୍ରଥମ : ବସ୍ତୁ ନା ଚେତନା ?) ସହିତ ଦ୍ୱିତୀୟ ଦିଗଟିଏ ମଧ୍ୟ ରହିଛି । ବାସ୍ତବ ଜଗତକୁ ଆମର ଚିନ୍ତନ ଜାଣି ପାରିବ କି ନାହିଁ ଏବଂ ଆମର ଚିନ୍ତାରାଜି ତଥା ଧାରଣାରେ ବାହ୍ୟିକ ବାସ୍ତବତାକୁ ସଠିକ ଭାବେ ପ୍ରକାଶ କରି ପାରିବା କି ନାହିଁ – ଏହି ସମସ୍ୟାଟି ସହିତ ଦ୍ୱିତୀୟ ଦିଗଟି ସଂପୃକ୍ତ । ଦାର୍ଶନିକମାନେ ଏହାକୁ କହନ୍ତି ଚିନ୍ତନ ଏବଂ ସତ୍ତା ମଧ୍ୟରେ ସାଦୃଶ୍ୟର ସମସ୍ୟା ।

ଅଧିକାଂଶ ଦାର୍ଶନିକ ଉପରୋକ୍ତ ପ୍ରଶ୍ନର ଅସ୍ତିବାଚକ ଉତ୍ତର ପ୍ରଦାନ କରିଥାନ୍ତି । ସେମାନଙ୍କ ମଧ୍ୟରୁ କେତେକ, ଅବଶ୍ୟ, ଜଗତକୁ ଜାଣିବାର ସମ୍ଭାବନା ବିରୁଦ୍ଧରେ ଯୁକ୍ତି ବାଢ଼ିଛନ୍ତି । ସେମାନଙ୍କୁ ଅଜ୍ଞେୟବାଦୀ ବୋଲି କୁହାଯାଏ । ଦୃଷ୍ଟାନ୍ତ ସ୍ୱରୂପ, ଜର୍ମାନ୍ ଦାର୍ଶନିକ କାଣ୍ଟ୍ ମଣିଷର ବାହାରେ ବାସ୍ତବ ଜଗତ ଅବସ୍ଥାନ କରୁଛି ବୋଲି ସ୍ୱୀକାର କଲାବେଳେ ନୀତିଗତ ଭାବେ ତାକୁ ଜାଣି ହେବ ନାହିଁ ବୋଲି କହିଛନ୍ତି । କାରଣ, ତାଙ୍କ ଭାଷାରେ, ପ୍ରପଞ୍ଚ ("ଆମମାନଙ୍କ ପାଇଁ ବସ୍ତୁ", *Ding-für-uns*) ଏବଂ ସାରମର୍ମ ("ବସ୍ତୁ

ପାଇଁ ବସ୍ତୁ", *Ding-an-sich*) ମଧ୍ୟରେ ରହିଛି ଅଭେଦ୍ୟ ପ୍ରତିବନ୍ଧକସମୂହ ଏବଂ ଫାଙ୍କ । କାଣ୍ଟ୍‌ଙ୍କ ମତରେ, ମଣିଷ "ବସ୍ତୁ ପାଇଁ ବସ୍ତୁ"ର କୌଣସି ବିଷୟର କଲା କ୍ଷଣି ତା'ର ମନ ଅସମାହିତ ଦ୍ୱନ୍ଦ୍ୱରାଜି ବା ବିପରୀତବୋଧର ସମ୍ମୁଖୀନ ହୋଇଥିଲା, ଫଳରେ ତା'ର ଶକ୍ତିହୀନତାକୁ ପ୍ରକାଶ କରୁଥିଲା । କାଣ୍ଟ୍ ଭାବୁଥିଲେ, ପ୍ରପଞ୍ଚରୁ "ବସ୍ତୁ ପାଇଁ ବସ୍ତୁ"କୁ ଉତ୍ତରଣ କେବଳ ବିଶ୍ୱାସ ମଧ୍ୟ ଦେଇ ସମ୍ଭବ ।

ଦାର୍ଶନିକ ସଂଶୟବାଦର ପ୍ରତିନିଧିବୃନ୍ଦ, ନିର୍ଦ୍ଦିଷ୍ଟ ଭାବେ ୧୮ଶ ଶତାବ୍ଦୀର ଇଂରେଜ ଦାର୍ଶନିକ ଡ୍ୟାଭିଡ୍ ହ୍ୟୁମ୍, ଥିଲେ ଅଜ୍ଞେୟବାଦୀ । ସେମାନେ ବାସ୍ତବତାକୁ ଜାଣିବାର ସମ୍ଭାବନାକୁ ଅସ୍ୱୀକାର କରୁଥିଲେ ଏବଂ କହୁଥିଲେ, ଆମ ବାହାରେ, ଆମ ଅନୁଭୂତିରାଜିର ବାହାରେ କିଛି ଅବସ୍ଥାନ କରେ କି ନାହିଁ – ତାହା ସଂପୂର୍ଣ୍ଣ ସନ୍ଦେହଜନକ । ସଂଶୟବାଦୀମାନେ ସେମାନଙ୍କ ଯୁକ୍ତିର ସପକ୍ଷରେ କହୁଥିଲେ, ଏକ ଏବଂ ଅଭିନ୍ନ ପଦାର୍ଥ ସଂପର୍କରେ ପରସ୍ପରବିରୋଧୀ ରାୟ ଦେଇ ହେବ, ମଣିଷ କେବଳ ତା'ର ନିଜସ୍ୱ ଇନ୍ଦ୍ରିୟାନୁଭୂତି ସଂପର୍କରେ ଚର୍ଚ୍ଚା କରି ପାରେ ଏବଂ ସେ ଜାଣେ ନାହିଁ, କେଉଁଠୁ ତା'ର ଇନ୍ଦ୍ରିୟାନୁଭୂତି ଜ୍ଞାନ ଆସିଥାଏ, ଆଦି ।

ଅଯୁକ୍ତିବାଦର ପ୍ରବକ୍ତାମାନେ – ନିଏଟ୍‌ଚେ, ବେର୍ଗସନ୍ (୧୮୫୯-୧୯୪୧) ଏବଂ ଅନ୍ୟମାନେ – ପ୍ରକାଶ୍ୟରେ ଅଜ୍ଞେୟବାଦୀ ଆସ୍ଥାନ ଗ୍ରହଣ କରିଥିଲେ । ସେମାନଙ୍କ ମତରେ, ଏ ଜଗତ ହେଉଛି ଅଜ୍ଞେୟ, କାରଣ, ସେଥିରେ କୌଣସି ନିୟମବଦ୍ଧତା ନାହିଁ । ସତ୍ତା ହେଉଛି ଆକସ୍ମିକତାରାଜିର ଏକ ବିଶୃଙ୍ଖଳ ସ୍ରୋତ, ଏକ ଯୁକ୍ତିହୀନ ସୃଜନଶୀଳ ବିବର୍ତ୍ତନ । ଚିନ୍ତନ କିନ୍ତୁ ଯୁକ୍ତିକୁ ପ୍ରକାଶ କରିଥାଏ । ଯୁକ୍ତିବିଦ୍ୟା ନିୟମବଦ୍ଧତା, କାରଣ ଏବଂ ଫଳାଫଳ ନେଇ ଚର୍ଚ୍ଚା କଲାବେଳେ, ସେସବୁ ପ୍ରକୃତ ସତ୍ତାରେ ନଥାଏ ବୋଲି ଅଯୁକ୍ତିବାଦୀମାନେ କହିଥାନ୍ତି । ତେଣୁ କରି, ଜଗତ ସଂପର୍କରେ ଏକ ଯୁକ୍ତିସଙ୍ଗତ ଜ୍ଞାନରେ ଉପନୀତ ହେବାଟା ଅସମ୍ଭବ । ଅଜ୍ଞେୟବାଦୀମାନେ, ନୀତିଗତ ଭାବେ ଏହି ସିଦ୍ଧାନ୍ତରେ ପହଞ୍ଚିଥାନ୍ତି ଯେ, ସତ୍ତା ସହିତ ଚିନ୍ତନର ସାଦୃଶ୍ୟ ନଥାଏ ।

ଆଧୁନିକ ବୁର୍ଜୁଆ ଭାବବାଦୀ ଦର୍ଶନର ଅଜ୍ଞେୟବାଦ ବ୍ୟାପକତା ଲାଭ କରିଛି । ଏହା ସ୍ୱାଭାବିକ ଭାବେ ପ୍ରକାଶ ପାଇଥିଲା ଦର୍ଶନର ୧୬ଶ ବିଶ୍ୱ ଦାର୍ଶନିକ କଂଗ୍ରେସରେ । ଏଥିରେ ପଠିତ ଅନେକ ରିପୋର୍ଟରେ ପ୍ରମାଣ କରାଯାଇଥିଲା ଯେ, ଯୁକ୍ତିହୀନ କାରଣଟି ହେଉଛି ମଣିଷର ସହଜାତ, "ବିଜ୍ଞାନ ଚିନ୍ତା କରିବାକୁ ଅକ୍ଷମ" ଏବଂ ସତ୍ତାର ଧର୍ମୀୟ ମତବାଦ ଦ୍ୱାରା ତାହା ପରିପୂରିତ ହେବା ଦରକାର, ଆଦି । ଅବଧାରଣାଗତ ଦୃଷ୍ଟିରୁ ଅଜ୍ଞେୟବାଦ ହେଉଛି ଏକ ପ୍ରତିକ୍ରିୟାଶୀଳ ଦାର୍ଶନିକ ମତବାଦ । ସାମାଜିକ ଭାବେ ଏହା ପ୍ରକାଶ କରେ ଶୋଷକ ଶ୍ରେଣୀର ଭାବାଦର୍ଶକୁ, ଯେଉଁମାନେ ଚେଷ୍ଟା କରନ୍ତି ବିଦ୍ୟମାନ ବାସ୍ତବତାକୁ ଅବଗତ ହେବାରୁ ଶ୍ରମିକ ଶ୍ରେଣୀର ଦୃଷ୍ଟିକୁ ବିଭ୍ରମ କରିବା ପାଇଁ । ଅଜ୍ଞେୟବାଦ ଜନସାଧାରଣଙ୍କ ସୃଜନଶୀଳ କ୍ରିୟାକଳାପ ଏବଂ କର୍ମୋଦ୍ୟମକୁ ଶିକୁଳିରେ ଆବଦ୍ଧ କରିଥାଏ । କାରଣ, ଜଗତ ଯଦି ଅଜ୍ଞେୟ ଏବଂ ସମାଜର ବିକାଶକୁ ନିୟନ୍ତ୍ରିତ

କରୁଥିବା ନିୟମରାଜିକୁ ଆବିଷ୍କାର କରିବାରେ ବିଜ୍ଞାନ ଯଦି ଅକ୍ଷମ, ତେବେ ଲୋକେ ସଚେତନ ଭାବେ ବାସ୍ତବତାକୁ ପରିବର୍ତ୍ତିତ ଏବଂ ରୂପାନ୍ତରିତ କରି ପାରିବେ ନାହିଁ ।

ଅଜ୍ଞେୟବାଦର ବିରୋଧିତା ମାର୍କସ୍‌ଙ୍କ ପୂର୍ବରୁ ବହୁ ବିଖ୍ୟାତ ଦାର୍ଶନିକ, ଉଭୟ ଭାବବାଦୀ ଏବଂ ବସ୍ତୁବାଦୀ, କରିଥିଲେ । ଜଗତକୁ ଜାଣି ହେବ ବୋଲି ସେମାନେ ଯୁକ୍ତି ବାଢ଼ିଥିଲେ । କିନ୍ତୁ ଭାବବାଦୀ ଏବଂ ବସ୍ତୁବାଦୀମାନେ ଏହା ଉପରେ ମୌଳିକ ଭାବେ ଭିନ୍ନ ଭିନ୍ନ ମତ ପୋଷଣ କରିଛନ୍ତି । ଭାବବାଦୀମାନେ କହନ୍ତି, ପ୍ରକୃତ ସତ୍ତାର ଚରିତ୍ର ହେଉଛି ଭାବବାଦୀ, କାରଣ, ଏହା ଚିନ୍ତନକୁ ଜାଣି ପାରେ । ତେଣୁ ସେମାନେ ସତ୍ତା ଏବଂ ଚିନ୍ତନର ସାଦୃଶ୍ୟକୁ ଚିହ୍ନିତ କରିଥାନ୍ତି ଅବଗତିକୁ ପ୍ରକାଶର ଏକ ପ୍ରକ୍ରିୟା ହିସାବରେ, ଯଦ୍ୱାରା ଆତ୍ମା ନିଜକୁ ଅବଗତ ହୋଇଥାଏ । ପ୍ଲେଟୋଙ୍କ ଭଳି ବସ୍ତୁଗତ ଭାବବାଦୀମାନେ କହିଛନ୍ତି ଯେ, ମଣିଷ "ସ୍ମୃତିସ୍ମରଣ" ଦ୍ୱାରା ସତ୍ୟକୁ ବୁଝିଥାଏ । ଏ ଉଦ୍ଦେଶ୍ୟରେ, ପ୍ଲେଟୋ ବିଶ୍ୱାସ କରୁଥିଲେ, ଯାହା କିଛି ଭୌତିକ, ଇନ୍ଦ୍ରିୟସୁଖକର ସେସବୁକୁ ମଣିଷ ବର୍ଜନ କରିବା ଦରକାର ଏବଂ ଆଖି ଏବଂ କାନ ବନ୍ଦ କରି ନିଜକୁ ଆତ୍ମ ପର୍ଯ୍ୟବେକ୍ଷଣ ଭିତରକୁ ଟାଣି ଆଣି ଚିନ୍ତାରାଜିର ପ୍ରକୃତ ଜଗତରେ ତା'ର ଅମର ଆତ୍ମା କ'ଣ କ'ଣ ଅନୁଭବ କରିଛି, ସେସବୁକୁ "ସ୍ମରଣ କରିବାକୁ" ଚେଷ୍ଟା କରିବା ଦରକାର ।

ଅବଗତି ସଂପର୍କରେ ସମଧରଣର ମତ ମଧ୍ୟ ବେଦାନ୍ତବାଦୀମାନଙ୍କ ଭାବବାଦୀ ମତବାଦରେ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ଦେଖିବାକୁ ମିଳେ । ସେମାନଙ୍କ ମତାନୁଯାୟୀ, ବ୍ରହ୍ମହିଁ ହେଉଛି ଏକମାତ୍ର ଅକୃତ୍ରିମ ପଦାର୍ଥ ଏବଂ ଏହାକୁ କେବଳ ନିରବଚ୍ଛିନ୍ନ ଯୋଗାଭ୍ୟାସ ଦ୍ୱାରା ଜାଣି ହୁଏ । ଯାହା କିଛି ପାର୍ଥିବ ଏବଂ ସ୍ୱର୍ଗୀୟ, ସେସବୁକୁ ତ୍ୟାଗ କରି ନିରବଚ୍ଛିନ୍ନ ଭାବେ ଆତ୍ମାକୁ ଶାନ୍ତ କରିବାର ଶକ୍ତିକୁ ଉନ୍ନତ କରିବା ଦ୍ୱାରା, ଆବେଗକୁ ଦମନ, କାମନାକୁ ଖର୍ବ କରିବା ଦ୍ୱାରା ଏବଂ ଧୈର୍ଯ୍ୟକୁ ସୁସଂଯତ, ମନୋନିବେଶ ଏବଂ ଅନ୍ୟାନ୍ୟ ସୂକ୍ଷ୍ମ ଗୁଣରାଶି ଦ୍ୱାରା, ଯୋଗୀମାନେ ନିଜର ମନକୁ ମୁକ୍ତ କରିବା ପାଇଁ ନିଜ ମଧ୍ୟରେ ଏକ ଅଦମ୍ୟ ଅଭିଳାଷକୁ ଜାଗ୍ରତ କରିଥାନ୍ତି । ଭାରତୀୟ ଭାବବାଦୀମାନଙ୍କ ମତରେ, ଏହା ଫଳରେ ପୂର୍ଣ୍ଣ ଜ୍ଞାନର ଅଭ୍ୟୁଦୟ ଘଟିଥାଏ । ବ୍ରହ୍ମର ଅବଗତି ଦ୍ୱାରା ସମସ୍ତ ପାପର ବିନାଶ ଘଟେ ।

ହେଗେଲ୍‌ଙ୍କ କ୍ଷେତ୍ରରେ ଚିନ୍ତନ ଏବଂ ସତ୍ତାର ସାଦୃଶ୍ୟ ସଂପୃକ୍ତ ପ୍ରଶ୍ନର ଏକ ଅସ୍ତିବାଚକ ଉତ୍ତର ମଧ୍ୟ ଦେଖିବାକୁ ମିଳିଥାଏ : ଆମେ ଯେଉଁ ପ୍ରକୃତ ଜଗତକୁ ଅବଗତ ହୋଇଥାଏ, ତାହା ହେଉଛି ତା'ର ବୋଧଗମ୍ୟ ଆଧେୟ – ଯେତେ ଦୂର ପର୍ଯ୍ୟନ୍ତ ବାସ୍ତବତା ନିଜେ ହେଉଛି ଯୁକ୍ତିସଂଗତ । ଶେଷ ବ୍ୟାଖ୍ୟାରେ ଅବଗତି ହେଉଛି ଅନପେକ୍ଷ ଆଇଡିଆର ଆତ୍ମଚେତନାର ଏକ ପ୍ରକ୍ରିୟା ।

ଭାବବାଦୀମାନେ ଦର୍ଶନର ମୌଳିକ ପ୍ରଶ୍ନର ଦ୍ୱିତୀୟ ଦିଗଟିର ଏକ ସଦର୍ଥକ ଉତ୍ତର ଦେଲେ ମଧ୍ୟ ସେମାନଙ୍କ ପକ୍ଷରେ "ପ୍ରକୃତ ଜ୍ଞାନ" ହେଉଛି ଅନପେକ୍ଷ; ଆଇଡିଆ,

# ଦ୍ୱିତୀୟ ଦିଗ

**ଜଗତ କ'ଣ ଜ୍ଞେୟ ?**

- **ଜଗତ ଜ୍ଞେୟ**
  - ବସ୍ତୁବାଦ
  - ଭାବବାଦ
- **ଜଗତ ଅଜ୍ଞେୟ**
  - ଅଜ୍ଞେୟବାଦ (ଭାବବାଦକୁ ଘେନି ଯାଏ)
    - **ହ୍ୟୁମ୍** — ଜଗତ ଦେଖିବାକୁ କିଭଳି ସେ କଥା ଆମେ କେବଳ ଜାଣୁ ନା, ଆମର ବାହାରେ ଏହାର ଅସ୍ତିତ୍ୱ ଅଛି କି ନାହିଁ, ତାହା ବି ଜାଣୁ ନା
    - **କାଣ୍ଟ୍** — "ପଦାର୍ଥରାଜିକୁ ନେଇ ଗଠିତ" ଏ ଜଗତ ଅଜ୍ଞେୟ
    - ବହୁ ଆଧୁନିକ ବୁର୍ଜୁଆ ଦାର୍ଶନିକ ଅଜ୍ଞେୟବାଦ ପ୍ରଚାର କରିଛନ୍ତି

**ଚିନ୍ତନ କ'ଣ ସତାର ଅନୁରୂପ ? ଚେତନା କ'ଣ ବାସ୍ତବତାକୁ ସଠିକ ଭାବେ ପ୍ରତିଫଳିତ କରେ ?**

- **ବସ୍ତୁବାଦ** — ମନ ପ୍ରକୃତ ଜଗତକୁ ସଠିକ ଭାବେ ପ୍ରତିଫଳିତ କରେ
- **ବସ୍ତୁଗତ ଭାବବାଦ** — ମନ ଚିନ୍ତାଜଗତକୁ ଜାଣି ପାରେ
- **ମନୋଗତ ଭାବବାଦ** — ଅବଗତି ପରିଣତ ହୁଏ ଚିନ୍ତନଶୀଳ ଏକ ପଦାର୍ଥର ଇନ୍ଦ୍ରିୟାନୁଭୂତି ଏବଂ ଚେତନାରେ

ବ୍ରହ୍ମ, ଆଦିର ଅବଗତି ଏବଂ ଅଜ୍ଞେୟବାଦ ପ୍ରତି ସେମାନଙ୍କ ସମାଲୋଚନା ସଂଗତିପୂର୍ଣ୍ଣ ନୁହେଁ । ଭାବବାଦ ଏବଂ ଅଜ୍ଞେୟବାଦ, ଉଭୟ ପ୍ରକାଶ୍ୟ ଭାବେ ପରସ୍ପର ସହିତ ସଂପୃକ୍ତ । ଅଜ୍ଞେୟବାଦକୁ କେବଳ ସଂପୂର୍ଣ୍ଣ ଚୂଡ଼ାନ୍ତ ଭାବେ ଖଣ୍ଡନ କରି ହେବ ବସ୍ତୁବାଦୀ ଦର୍ଶନର ଅବସ୍ଥାନରୁ ।

ଭାବବାଦ ପାଇଁ ଚିନ୍ତନ ଏବଂ ସତ୍ତା ହେଉଛି ସାଦୃଶ୍ୟପୂର୍ଣ୍ଣ, କାରଣ, ସତ୍ତାକୁ ଆଦର୍ଶ ଭଳି ବ୍ୟାଖ୍ୟା କରାଯାଇଛି । ବସ୍ତୁବାଦ ପକ୍ଷରେ ଦର୍ଶନର ମୌଳିକ ପ୍ରଶ୍ନର ଦ୍ୱିତୀୟ ଦିଗଟିର ଉତ୍ତରଟି ଆସିଥାଏ ପ୍ରତିଫଳନର ନୀତିରାଜି ମଧ୍ୟରୁ । ସତ୍ତା ସହିତ ଚିନ୍ତନର ସାଦୃଶ୍ୟ କେବଳ ଏହି ଅର୍ଥରେ ଯେ, ଏହା ତାକୁ ପ୍ରତିଫଳିତ କରିଥାଏ । ସତ୍ତାର ପ୍ରତିଫଳନ ହିସାବରେ ଚିନ୍ତନ ହେଉଛି ତା ପକ୍ଷରେ, ବସ୍ତୁ ପକ୍ଷରେ ଗୌଣ । ତେଣୁ କରି ଚିନ୍ତନ ଏବଂ ସତ୍ତା ମଧ୍ୟରେ ସାଦୃଶ୍ୟଟାକୁ କେବଳ ଜ୍ଞାନତତ୍ତ୍ୱ ଅର୍ଥରେ କୁହାଯାଇ ପାରେ, ଅର୍ଥାତ୍, ଜଗତର ଅବଗତି ଦୃଷ୍ଟିରୁ କୁହାଯାଇ ପାରେ । ୧୮ଶ ଶତାବ୍ଦୀର ଫରାସୀ ବସ୍ତୁବାଦୀଗଣ, ଫଏରବାଖ୍ ଏବଂ ଅନ୍ୟାନ୍ୟ ଦାର୍ଶନିକମାନେ ମଣିଷର ପ୍ରଜ୍ଞା ଏବଂ ଆବେଗ ଉପରେ ସେମାନଙ୍କର ବିଶ୍ୱାସକୁ ପ୍ରକାଶ କରିଥିଲେ । କିନ୍ତୁ ମାର୍କସ୍‌ଙ୍କ ପୂର୍ବ ବସ୍ତୁବାଦୀମାନଙ୍କ ଜ୍ଞାନତତ୍ତ୍ୱ ତା'ର ଚିନ୍ତନମୂଳକ ଚରିତ୍ର ଦ୍ୱାରା ଘେରିହୋଇ ରହିଥିଲା । ମାର୍କସ୍‌ଙ୍କ ପୂର୍ବ ବସ୍ତୁବାଦୀମାନେ ମଣିଷ ମନର ସକ୍ରିୟ ଚରିତ୍ରକୁ ବୁଝିବା ପାଇଁ ସଂପୂର୍ଣ୍ଣ ଅକ୍ଷମ ଥିଲେ । ସେମାନେ ଭାବୁଥିଲେ ମଣିଷ କେବଳ ବାହ୍ୟିକ ପ୍ରଭାବର ଏକ ନିଷ୍କ୍ରିୟ ଇନ୍ଦ୍ରିୟାନୁଭୂତି ଲାଭ କରିବାକୁ ସକ୍ଷମ । ଏତଦ୍‌ବ୍ୟତୀତ, ସେମାନେ ଅବଗତିର କର୍ତ୍ତା ହିସାବରେ ଏକ ବିଚ୍ଛିନ୍ନ ବ୍ୟକ୍ତିବିଶେଷକୁ କେବଳ ଗ୍ରହଣ କରିଥିଲେ ଏବଂ ମଣିଷ ଚେତନାର ସାମାଜିକ ଐତିହାସିକ ଚରିତ୍ରକୁ ଅବଜ୍ଞା କରିଥିଲେ । ବାସ୍ତବତାକୁ ପ୍ରତିଫଳନ କରିବାର ପ୍ରକ୍ରିୟାଟିକୁ ସେମାନେ ଏକପାଖିଆ ଭାବେ ବ୍ୟାଖ୍ୟା କରିଥିଲେ, ମଣିଷ ଚେତନାରେ ପଦାର୍ଥର ନିର୍ଯ୍ୟାସ ଆଶୁ, ପ୍ରତ୍ୟକ୍ଷ ଏବଂ ଦର୍ପଣରେ ପ୍ରତିଫଳିତ ପ୍ରତିରୂପ ଭଳି । ଏହି ସମସ୍ତ ତ୍ରୁଟି ଆସିଥାଏ ମୁଖ୍ୟ ତ୍ରୁଟିଟିରୁ—ଅନ୍ୟ ସମସ୍ତ ଭାବବାଦୀଙ୍କ ଭଳି ମାର୍କସ୍‌ଙ୍କ ପୂର୍ବ ବସ୍ତୁବାଦୀମାନେ ଅବଗତି ପ୍ରକ୍ରିୟାରେ ସାମାଜିକ-ଐତିହାସିକ ପ୍ରୟୋଗର ନିଷ୍ପତ୍ତିମୂଳକ ଭୂମିକାକୁ ବୁଝିବାରେ ଅକ୍ଷମ ହୋଇଥିଲେ ।

## ୨—ଅବଗତି କ୍ଷେତ୍ରରେ ପ୍ରୟୋଗର ନିଷ୍ପତ୍ତିମୂଳକ ଭୂମିକା

ମାର୍କସ୍‌ଙ୍କ ପୂର୍ବ ଦାର୍ଶନିକମାନେ ସାଧାରଣତଃ ଜନସାଧାରଣଙ୍କ ବୈଷୟିକ କାର୍ଯ୍ୟକଳାପ ଏବଂ ସାମାଜିକ କ୍ରିୟାର ବିପରୀତରେ ଅବଗତିକୁ ଉପସ୍ଥାପିତ କରୁଥିଲେ । ସେମାନେ ଅବଗତିକୁ ସତ୍ୟ ପାଇଁ ସଂପୂର୍ଣ୍ଣ ଏକ ଭାବଗତ ଅନ୍ୱେଷଣ, ଅନୁସନ୍ଧିତ୍ସାର

କେବଳ ଫଳ ବୋଲି ବିଗ୍ଭର କରୁଥିଲେ, ଯିଏକି କୌଣସି ପ୍ରକୃତ ଆବଶ୍ୟକତାରାଜି ଦ୍ୱାରା ନିର୍ଦ୍ଧାରିତ ହୁଏ ନାହିଁ । ସ୍ୱଭାବତଃ, ଜଗତର ଅବଗତିର ସମସ୍ୟାଟାକୁ ତତ୍ତ୍ୱଗତ ଭାବେ ମୁଖ୍ୟତଃ ମୀମାଂସା କରାଯାଇଥିଲା । ତାତ୍ତ୍ୱିକମାନେ ଯଦିଓ ଅଜ୍ଞେୟବାଦ ବିରୁଦ୍ଧରେ ହୃଦ୍‌ବୋଧଜନକ ଯୁକ୍ତି ଉପସ୍ଥାପିତ କରିଥିଲେ, ତେବେ ସଂପୂର୍ଣ୍ଣ ରୂପେ ତାକୁ ଖଣ୍ଡନ କରି ନଥିଲେ । ବାସ୍ତବ କଥାଟା ହେଉଛି ଯେ, ଅବଗତି ସଂପୂର୍ଣ୍ଣ ରୂପେ ଜନସାଧାରଣଙ୍କ ଆତ୍ମିକ ଏବଂ ବୌଦ୍ଧିକ ପ୍ରୟୋଜନୀୟତା ନୁହେଁ । ମଣିଷର ବସ୍ତୁନିଷ୍ଠ ବୈଷୟିକ କ୍ରିୟାକଳାପ, ପ୍ରୟୋଗ ସହିତ ଏହା ଅଚ୍ଛେଦ୍ୟ ଭାବେ ସଂଯୁକ୍ତ । ପ୍ରୟୋଗ କ୍ଷେତ୍ରରେ ହିଁ ଅଜ୍ଞେୟବାଦ ଅତି ଦୃଢ଼ ଭାବେ ଖଣ୍ଡିତ ହୋଇଥାଏ । ନିମ୍ନଲିଖିତ ପଂକ୍ତିଗୁଡ଼ିକ ଅଜ୍ଞେୟବାଦୀମାନଙ୍କ ପ୍ରତି ପ୍ରଯୋଜ୍ୟ । ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବେ କବିର ଏ କଥା କହିଥିଲେ :

"ତୁମେ, ଯେଉଁମାନେ
ପୁରାଣ ପଢ଼, ତୁମ ପାଇଁ ସେ ସରା
ଅନ୍ଧକାରମୟ । ମୁଁ ଜଣେ ତନ୍ତୀ, ମୋ
ଆଗରେ ସମସ୍ତ ଜଗତ ପରିଷ୍କାର, ଚକ୍ ଚକ୍ ।"*

ଲୋକେ ପ୍ରଥମେ ଜଗତକୁ ବାସ୍ତବ ଅର୍ଥରେ ସଂଯୁକ୍ତ କରିଥିଲେ ସେମାନଙ୍କ ଆବଶ୍ୟକତାରାଜିକୁ ପୂରଣ କରିବା ପାଇଁ ତାକୁ ସକ୍ରିୟ ଭାବେ ରୂପାୟିତ କରିବା ଦ୍ୱାରା । ପ୍ରକୃତି ସହିତ ବୈଷୟିକ ଆନ୍ତଃପ୍ରକ୍ରିୟା ମାଧ୍ୟମରେ ହିଁ କେବଳ ସେମାନେ ଏଥି ପ୍ରତି ତାତ୍ତ୍ୱିକ ଆଭିମୁଖ୍ୟ ଗଠନ କରୁଥିଲେ । ମୂଳ ଉପାଦାନକୁ ପରିବର୍ତ୍ତନ କରି ନିର୍ଦ୍ଦିଷ୍ଟ ପଦାର୍ଥ ବା ହତିଆରସମୂହ ଉତ୍ପାଦନ କରି ଇତିହାସର ପ୍ରଥମ ପର୍ବଗୁଡ଼ିକରେ ମଣିଷ ପ୍ରସ୍ତର, କାଷ୍ଠ, ଧାତୁ, ଆଦିର ବିଶେଷ ଧର୍ମରାଶି ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଧାରଣ କରିଥିଲା । ଏହି ଭାବେ ପ୍ରତ୍ୟକ୍ଷ ଶ୍ରମ ପ୍ରକ୍ରିୟା ମଧ୍ୟ ଦେଇ ବାସ୍ତବତାକୁ ଜାଣି ହୋଇଥିଲା ଏବଂ ସେ ସଂପର୍କରେ ଜ୍ଞାନ ଲାଭ କରାଯାଇଥିଲା । ଫଳତଃ, ପ୍ରୟୋଗ ମଧ୍ୟସ୍ଥ ଜ୍ଞାନର ଉଦ୍‌ଭବ ହୋଇଥାଏ ଏବଂ ବାସ୍ତବର ଭିତ୍ତିରେ ବିକାଶ ଲାଭ କରେ । ଲେନିନ୍ ଲେଖିଛନ୍ତି, "ଜ୍ଞାନ ତତ୍ତ୍ୱ କ୍ଷେତ୍ରରେ ପ୍ରଥମ ଏବଂ ମୌଳିକ ଦିଗଟି ହେଉଛି ଜୀବନ ଏବଂ ପ୍ରୟୋଗ ।"** ସାମାଜିକ ପ୍ରୟୋଗର ଆବଶ୍ୟକତାରାଜି ସଦା ସର୍ବଦା ଜ୍ଞାନର ବିକାଶର ଭିତ୍ତି, ଗ୍ଭଳିକା ଶକ୍ତି ଏବଂ ମୂଳ ଉତ୍ସ ହୋଇ ଆସିଛି । ଭୂମିର ପରିମାଣ ନିର୍ଣ୍ଣୟ କରିବା, ଆଧାରସମୂହର ଧାରଣ ଶକ୍ତି ନିର୍ଦ୍ଧାରଣ କରିବା, ସମୟ, ବାଣିଜ୍ୟଗତ ହିସାବ କରିବା

---

* ଆଇ. ଏସ୍. ରାବିନୋଭିଚ୍, "*Forty Ages of Indian Literature*", Moscow, 1969, p. 148.

** V. I. Lenin, "Materialism and Empirio-Criticism", *Collected Works*, Vol. 14, p. 142.

ପ୍ରରୋଚିତ କରିଥିଲା ଗାଣିତିକ ଜ୍ଞାନର ବିକାଶକୁ । ଗୃହ, ପୟଃପ୍ରଣାଳୀ, ନଦୀବନ୍ଧ, ଜାହାଜ ଏବଂ ଅନ୍ୟାନ୍ୟ ପରିବହନର ଉପାୟ ନିର୍ମାଣ କରିବା, ବିଭିନ୍ନ ଜିନିଷ ଉତ୍ତୋଳନକାରୀ ଯନ୍ତ୍ର, ଅସ୍ତ୍ରଶସ୍ତ୍ର, ଆଦି ଉତ୍ପାଦନ କରିବା ଯନ୍ତ୍ରବିଦ୍ୟାର ବିକାଶକୁ ପ୍ରେରଣା ଯୋଗାଇଥିଲା ।

ଆମ ଯୁଗରେ ମଧ୍ୟ, ସାମାଜିକ ବ୍ୟାବହାରିକ ଆବଶ୍ୟକତାସମୂହ ବିଜ୍ଞାନସିଦ୍ଧ ଜ୍ଞାନର ବିକାଶକୁ ନିର୍ଦ୍ଧାରଣ କରିଥାଏ । ଗଣିତ କ୍ଷେତ୍ରରେ ଏହା ଖୁବ୍ ପରିଷ୍କାର ଜଣା ପଡ଼ିଥାଏ, ଯିଏକି ଏକ ବିଜ୍ଞାନ ହିସାବରେ ତା'ର ଆନ୍ତଃ ଯୁକ୍ତିବିଦ୍ୟା ଦ୍ୱାରା ତା'ର ଚିନ୍ତାସମୂହକୁ ବିକଶିତ କରିବା ଦିଗରେ ପରିଷ୍କାର ପ୍ରବଣତା ପ୍ରକାଶ କରିଥାଏ । ଯୋଗାଯୋଗ ମାଧ୍ୟମ ଜରିଆରେ ତଥ୍ୟ ପ୍ରେରଣର ଆବଶ୍ୟକତା ମଧ୍ୟରୁ, ଉଦାହରଣ ସ୍ୱରୂପ, ନୂଆ ଏକ ବିଜ୍ଞାନ, ତଥ୍ୟ ତତ୍ତ୍ୱ ସୃଷ୍ଟି ହୋଇଛି । ବ୍ୟାବହାରିକତା ଭିତ୍ତି ଉପରେ ଗର୍ଢ଼ ଉଠିଥିବା ଏହି ତତ୍ତ୍ୱଟି ଗଣିତର ବହୁ ପ୍ରମାଣସିଦ୍ଧ କ୍ଷେତ୍ରକୁ, ଯଥା, କାର୍ଯ୍ୟ ତତ୍ତ୍ୱ, ସମ୍ଭାବ୍ୟତା ତତ୍ତ୍ୱ, ଆଦିକୁ ପ୍ରଭାବିତ କରିଛି । ଆଧୁନିକ ଶିଳ୍ପୋତ୍ପାଦନ, ନୂଆ ନୂଆ ଗଢ଼ଣର ନକ୍ସା, ଭୂବିଦ୍ୟା ସଂପର୍କିତ କାର୍ଯ୍ୟ, ଅର୍ଥନୈତିକ ପରିଚାଳନା, ଆଦି ବିପୁଳ ପରିମାଣର ହିସାବ କିତାବ ଆବଶ୍ୟକ କରେ ଏବଂ ଇଲେକଟ୍ରନିକ କମ୍ପ୍ୟୁଟରସବୁ ଉଦ୍‌ଭାବିତ ହୋଇଛି ଏହିସବୁ ବ୍ୟାବହାରିକ ଆବଶ୍ୟକତାକୁ ପୂରଣ କରିବା ପାଇଁ । କମ୍ପ୍ୟୁଟରର ବ୍ୟବହାର ମଧ୍ୟ ଗାଣିତିକ ଗବେଷଣା ପ୍ରବଣତାକୁ, ଯଥା କମ୍ପ୍ୟୁଟର ବ୍ୟବହାର କର୍ମସୂଚୀ ରଚନା, କମ୍ପ୍ୟୁଟରର ଯୁକ୍ତିସଂଗତ ସମସ୍ୟାସମୂହ, ସ୍ୱୟଂକରଣର ତତ୍ତ୍ୱ, ଆଇଗୋରିଥ୍‌ମସ୍ ତତ୍ତ୍ୱ, ଆଦି ସୃଷ୍ଟି କରିଛି ।

ପ୍ରୟୋଗ କେବଳ ଯାତ୍ରାବିନ୍ଦୁ ଏବଂ ଅବଗତିର ଭିତ୍ତି ନୁହେଁ, ଏହା ହେଉଛି ତା'ର ଲକ୍ଷ୍ୟ । ମଣିଷ ପ୍ରକୃତିର ନିୟମାବଳୀକୁ ବୁଝେ ତାକୁ ଆୟତ୍ତ କରି ମଣିଷର ସେବାରେ ଲଗାଇବା ପାଇଁ । ସାମାଜିକ ନିୟମ ସଂକ୍ରାନ୍ତ ଜ୍ଞାନର ଆବଶ୍ୟକତା ପଡ଼େ ଶ୍ରମଜୀବୀ ଜନସାଧାରଣଙ୍କ ସ୍ୱାର୍ଥରେ ଐତିହାସିକ ଘଟଣାବଳୀକୁ ପ୍ରଭାବିତ କରିବା ପାଇଁ ।

ପ୍ରୟୋଗ ବୋଇଲେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଦୃଷ୍ଟିରୁ କ'ଣ ବୁଝାଏ ? ଏହି ପ୍ରଶ୍ନଟି ଗୁରୁତ୍ୱପୂର୍ଣ୍ଣ, କାରଣ ବହୁ ଭାବବାଦୀ ଦାର୍ଶନିକ "ପ୍ରୟୋଗ" ବା "ଅଭିଜ୍ଞତା" ଶବ୍ଦକୁ ବ୍ୟବହାର କରିଥାନ୍ତି ସେମାନଙ୍କ ମତବାଦର ସାରମର୍ମକୁ ଢାଙ୍କିବା ପାଇଁ । ଭାବଗତ ଭାବବାଦୀମାନେ ପ୍ରୟୋଗକୁ ବ୍ୟାଖ୍ୟା କରିଥାନ୍ତି ମଣିଷର ଇନ୍ଦ୍ରିୟାନୁଭୂତ ଅଭିଜ୍ଞତା ହିସାବରେ । ସେମାନଙ୍କ ମତରେ ବସ୍ତୁରାଜି କେବଳ କର୍ତ୍ତାର ଅଭିଜ୍ଞତା ମଧ୍ୟରେ ରହିଥାଏ, ଏବଂ ଅଭିଜ୍ଞତା ହେଉଛି ଇନ୍ଦ୍ରିୟାନୁଭୂତିର ମୋଟ ଯୋଗଫଳ, ମଣିଷର ଆତ୍ମଚେତନାରେ ଉପାଦାନସମୂହର ସମାହାର । ଆଧୁନିକ ବୁର୍ଜୁଆ ବାସ୍ତବତାବାଦୀମାନଙ୍କର ମତାବଳୀ ଏ କ୍ଷେତ୍ରରେ ବୈଶିଷ୍ଟ୍ୟପୂର୍ଣ୍ଣ । ବାସ୍ତବତାବାଦ ଅନୁଯାୟୀ, ପ୍ରୟୋଗ ହେଉଛି ଇଚ୍ଛା ଏବଂ ଦୃଷ୍ଟି ଜରିଆରେ ପ୍ରଚେଷ୍ଟା, ଚେତନାର

ବିଶୃଙ୍ଖଳ ସ୍ରୋତ ଏବଂ ଲୋକଙ୍କର ଭାବ ଏବଂ ଆବେଗର ଏକ ସଂଗଠନ । ସେସବୁ "ପ୍ରୟୋଗରେ" ପ୍ରକୃତ ପକ୍ଷେ ବାସ୍ତବ ଭୌତିକ ଜଗତର ପରିବର୍ତ୍ତନ ଦେଖାଦିଏ ନାହିଁ, ପରିବର୍ତ୍ତନ ଦେଖାଦିଏ କର୍ତ୍ତାର ଆଭ୍ୟନ୍ତରୀଣ ଜଗତରେ । ଭାବଗତ ଭାବବାଦର ଏକ ନିର୍ଦ୍ଦିଷ୍ଟ ନମୁନା ହିସାବରେ ବାସ୍ତବତାବାଦ ମଣିଷର ଚିନ୍ତନର ସକ୍ରିୟ ଦିଗଟିକୁ ବ୍ୟାଖ୍ୟା କରିଥାଏ ଏକ ଅନପେକ୍ଷ ହିସାବରେ, ଯିଏକି ହେଉଛି, ଭାବବାଦ ପକ୍ଷରେ ସାଧାରଣ ଭାବେ ବୈଶିଷ୍ଟ୍ୟସୂଚକ ।

ପ୍ରୟୋଗର ଏକ ବୈଜ୍ଞାନିକ ଅବଧାରଣା ହେଉଛି ଦର୍ଶନର ମୌଳିକ ପ୍ରଶ୍ନର ବସ୍ତୁବାଦୀ ସମାଧାନର ଫଳ ସ୍ୱରୂପ । ମଣିଷର ଅଭିଜ୍ଞତା ମଧ୍ୟରୁ ପଦାର୍ଥରାଜି ସୃଷ୍ଟି ହୁଏ ନାହିଁ, ପ୍ରୟୋଗ ମଧ୍ୟରେ ବାସ୍ତବତାର ପ୍ରତିଫଳନ ଘଟିଥାଏ ସେସବୁ ଅବଗତ ହୋଇଥାନ୍ତି । ପ୍ରୟୋଗର ଅଛି ଏକ ନିର୍ଦ୍ଦିଷ୍ଟ, ଐତିହାସିକ ଚରିତ୍ର, ଏହା ହେଉଛି ମଣିଷର ଉଦ୍ଦେଶ୍ୟଯୁକ୍ତ, ଲକ୍ଷ୍ୟ-ବୈଷୟିକ କ୍ରିୟାକଳାପ, ଯିଏକି ତା'ର ଚେତନାଠାରୁ ସ୍ୱାଧୀନ ଭାବେ ଅବସ୍ଥିତ ବସ୍ତୁମୟ ଜଗତର ପରିବର୍ତ୍ତନରେ ନିଯୁକ୍ତ । ଆତ୍ମିକ, ମାନସିକ କ୍ରିୟା (ଯୁକ୍ତି ବିଦ୍ୟାଗତ କ୍ରିୟା, କଳ୍ପନା, ପ୍ରାର୍ଥନା, ଆଦି ଠାରୁ) ପ୍ରୟୋଗାତ୍ମକ କ୍ରିୟାକଳାପ ହେଉଛି ପୃଥକ୍ । ସେସବୁଥିରେ ପୂର୍ବସର୍ତ୍ତ ହେଉଛି (କ) ପ୍ରାକୃତିକ ବସ୍ତୁସମୂହ, ସମାଜ ବା ଲୋକଙ୍କ ସଂପର୍କର ଲକ୍ଷ୍ୟଯୁକ୍ତ ରୂପରାଜି ସହିତ ମଣିଷର ଭୌତିକ ସଂପର୍କ; (ଖ) ମାନସିକ ଶକ୍ତି ସହିତ ଦୈହିକ ଶକ୍ତିର କେତେକ ବ୍ୟୟ; (ଗ) ଜଗତର, ସାରମର୍ମ ଏବଂ ଧର୍ମସମୂହ ସହିତ, ପ୍ରକୃତି ଏବଂ ସମାଜ ସହିତ କ୍ରିୟାକଳାପର କର୍ମସୂଚୀର ସମନ୍ୱୟ, ଯିଏକି ଏହି କାର୍ଯ୍ୟକଳାପ ମଧ୍ୟ ଦେଇ ପରିବର୍ତ୍ତିତ ହୋଇଥାଏ ।

ମୋଟ ଉପରେ, ଏହି ଭାବେ ପ୍ରୟୋଗ ମଣିଷର ବୈଷୟିକ ଉତ୍ପାଦନୀ କ୍ରିୟାକଳାପ ସହିତ ସଂଯୁକ୍ତ, ଯିଏକି ହେଉଛି ସାଧାରଣ ଭାବେ ଲୋକଙ୍କ କ୍ରିୟାକଳାପର ମୁଖ୍ୟ ଏବଂ ନିର୍ଦ୍ଧାରଣକାରୀ ଦିଗ । ସେସବୁ ହେଉଛି ଶିଳ୍ପ, କୃଷି, ପରିବହନ, ଯୋଗାଯୋଗ ବ୍ୟବସ୍ଥା ଏବଂ ବୈଷୟିକ ଉତ୍ପାଦନର ଅନ୍ୟାନ୍ୟ କ୍ଷେତ୍ରରେ ସେମାନଙ୍କ କ୍ରିୟାକର୍ମ । ପ୍ରୟୋଗର ଏହିସବୁ ମୌଳିକ ଧରଣଗୁଡ଼ିକରେ ଯାଏ ସାମାଜିକ ପ୍ରୟୋଗସମୂହ, ଯଥା, ପ୍ରତିଷ୍ଠିତ ସାମାଜିକ ସଂପର୍କରାଜିକୁ ପରିବର୍ତ୍ତନ ଏବଂ ସଂରକ୍ଷଣ କରିବାରେ ଲୋକଙ୍କ କ୍ରିୟାକଳାପ : ଶ୍ରେଣୀ ସଂଗ୍ରାମ, ଜନସାଧାରଣଙ୍କର ବୈପ୍ଳବିକ କାର୍ଯ୍ୟ, ଜାତୀୟ ମୁକ୍ତି ଆନ୍ଦୋଳନ, ସମାଜର ସମାଜବାଦୀ ରୂପାନ୍ତରଣ ଏବଂ କମ୍ୟୁନିଜମ୍ ନିର୍ମାଣ, ଶାନ୍ତି ପାଇଁ ଏବଂ ବିଭିନ୍ନ ସାମାଜିକ ବ୍ୟବସ୍ଥାସଂପନ୍ନ ରାଷ୍ଟ୍ରମାନଙ୍କ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ସଂଗ୍ରାମ । ପ୍ରୟୋଗର ଏହିସବୁ ମୌଳିକ ଧରଣଗୁଡ଼ିକ ବ୍ୟତୀତ, ଲୋକଙ୍କର ବାସ୍ତବ କ୍ରିୟାକଳାପ ପ୍ରକାଶ ପାଇଥାଏ କ୍ରିୟାକଳାପର ବହୁବିଧ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ରୂପଗୁଡ଼ିକରେ । ଦୃଷ୍ଟାନ୍ତ ସ୍ୱରୂପ, ତାତ୍ତ୍ୱିକ ଜ୍ଞାନର ବିପରୀତ ହିସାବରେ ବିଜ୍ଞାନ କ୍ଷେତ୍ରରେ ବ୍ୟାବହାରିକ କ୍ରିୟାର ଅନ୍ତର୍ଗତ ହେଉଛି ଗବେଷଣାସମୂହ,

# ଅବଗତି ପ୍ରକ୍ରିୟାରେ ପ୍ରୟୋଗର ଭୂମିକା

"ଜୀବନ , ପ୍ରୟୋଗର ଦିଗଟି ଅବଗତି ତତ୍ତ୍ୱରେ ପ୍ରଥମ ଏବଂ ମୌଳିକ ହେବା ଦରକାର ।"

— ଲେନିନ୍



ଗ୍ରହନକ୍ଷତ୍ର, ଆଦିର ପର୍ଯ୍ୟବେକ୍ଷଣ, ଏବଂ ଭୌଗୋଳିକ ତଥା ଭୂତାତ୍ତ୍ୱିକ ଆବିଷ୍କାରରାଜି। ଔଷଧ, ଶିଳ୍ପକଳା ଏବଂ ଦୈନନ୍ଦିନର ବୈଶିଷ୍ଟ୍ୟରାଜି ମଧ୍ୟ ହେଉଛି ବ୍ୟାବହାରିକ କ୍ରିୟା ।

ଏହି ସମସ୍ତ କ୍ରିୟାର ମୋଟ ଯୋଗଫଳର ଭିତ୍ତି ହେଉଛି ବୈଷୟିକ ଉତ୍ପାଦନରେ ଲୋକଙ୍କର କ୍ରିୟାକଳାପ ଏବଂ ଏହା ଇତିହାସର ଗତି ପଥରେ ପରିବର୍ତ୍ତିତ ହୋଇଥାଏ । ଏହାକୁ କହନ୍ତି ସାମାଜିକ-ଐତିହାସିକ ପ୍ରୟୋଗ । "ଜୀବନ ଏବଂ ପ୍ରୟୋଗର ମୂଳ କଥାଟିକୁ" ଗ୍ରହଣ କଲାବେଳେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଅବଗତି ପ୍ରକ୍ରିୟାର ସାରମର୍ମର ମୌଳିକ ଭାବେ ଏକ ନୂଆ ଜ୍ଞାନ ପ୍ରଦାନ କରିଥାଏ ।

## ୩ – ମାର୍କସ୍‌ବାଦୀ ଜ୍ଞାନତତ୍ତ୍ୱର ସାରମର୍ମ

ମାର୍କସ୍‌ଙ୍କ ପୂର୍ବ ବସ୍ତୁବାଦ ହେଉଛି, ଆମେ ଯେପରି ଲକ୍ଷ୍ୟ କଲେ, ଚିନ୍ତାମୂଳକ । ଏହା ମଣିଷର ଜ୍ଞାନକୁ ପଦାର୍ଥ ତଥା ଚତୁର୍ପାର୍ଶ୍ୱସ୍ଥ ଜଗତରେ ଘଟୁଥିବା ପ୍ରକ୍ରିୟାସକଳର ନିଷ୍କ୍ରିୟ ପ୍ରତିଫଳନ ବୋଲି ବିଚାର କରେ । ଅନ୍ୟ ଦିଗରେ, ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଜ୍ଞାନକୁ ବିଚାର କରେ ପ୍ରକୃତିକୁ ଆୟତ୍ତ କରିବାର ଏବଂ ଲୋକଙ୍କ ମଧ୍ୟରେ ସଂପର୍କକୁ ଉନ୍ନତ କରିବାର ସାମାଜିକ-ଐତିହାସିକ ପ୍ରକ୍ରିୟାର ଏକ ଆବଶ୍ୟକୀୟ ଉପାଦାନ । ଆମ ଜ୍ଞାନର ବିଷୟବସ୍ତୁ ପ୍ରକୃତି, "କଞ୍ଚା" ପ୍ରକୃତି ଯେତେ ନୁହଁ, ତା'ଠାରୁ ବେଶି ପରିମାଣରେ ମାନବିକ କ୍ରିୟାକଳାପ ଦ୍ୱାରା ରୂପାନ୍ତରିତ ପ୍ରକୃତି । ପ୍ରୟୋଗ ଦ୍ୱାରା ପରିବର୍ତ୍ତିତ ପ୍ରକୃତିକୁ ଅବଗତି ଦ୍ୱାରା ହିଁ କେବଳ ମଣିଷ ତା'ର ପ୍ରତ୍ୟକ୍ଷ କ୍ରିୟାକଳାପର ବାହାରେ ଥିବା ପ୍ରପଞ୍ଚକୁ ଜାଣି ପାରେ । ଅବଗତିକୁ ଏଠାରେ ପ୍ରଭୁତ୍ୱକାରୀ ଭାବେ ସକ୍ରିୟ ଏବଂ ଗତିଶୀଳ ପ୍ରକ୍ରିୟା ହିସାବରେ ବୁଝିବାକୁ ହେବ । କଥାଟା ଏଇୟା ନୁହଁ ଯେ, ପ୍ରକୃତି ମଣିଷକୁ କେବଳ ପ୍ରଭାବିତ କରେ, ଯିଏକି ନିଷ୍କ୍ରିୟ ଭାବେ ଚିନ୍ତା କରିଥାଏ, କିନ୍ତୁ ମଣିଷ, କର୍ତ୍ତା ହିସାବରେ ବ୍ୟାବହାରିକ ଭାବେ କାର୍ଯ୍ୟ କରିଥାଏ ଏବଂ ପ୍ରକୃତିର ସ୍ୱତଃସ୍ଫୂର୍ତ୍ତ ଶକ୍ତିସମୂହକୁ ସଚେତନ ଭାବେ ଏବଂ ଉଦ୍ଦେଶ୍ୟପୂର୍ଣ୍ଣ ଭାବେ ଉପଯୋଗ କରିଥାଏ ଏବଂ ତା'ର ଏହି ଲକ୍ଷ୍ୟାଭିମୁଖୀ, ବୈଷୟିକ ପ୍ରକ୍ରିୟା ମଧ୍ୟରେ ପ୍ରାକୃତିକ ଗଢ଼ଣ ତଥା ନିୟମାବଳୀକୁ ଅବଗତ ହୋଇଥାଏ । ଏତଦ୍‌ବ୍ୟତୀତ, ଏ କଥା ଉଲ୍ଲେଖ କରିବା ଆବଶ୍ୟକ ଯେ, ଅବଗତି କେବଳ ନିଜକୁ ବ୍ୟକ୍ତିବିଶେଷଙ୍କର ଅବଗତିମୂଳକ କ୍ରିୟା ମଧ୍ୟରେ ସୀମିତ ରଖେ ନାହିଁ, ଏହା ଜାତ ହୋଇଥାଏ ସମଗ୍ର ମାନବଜାତିର ସମ୍ମିଳିତ ପ୍ରଚେଷ୍ଟା ମଧ୍ୟରୁ । ଐତିହାସିକ ପ୍ରୟୋଗ, ନିରବଚ୍ଛିନ୍ନ ଭାବେ ସମୃଦ୍ଧ ହୋଇ, ପ୍ରକୃତି ଏବଂ ସମାଜର ବସ୍ତୁମୟ ଜଗତ ସଂପର୍କରେ ଆମ ଜ୍ଞାନର ଅଭିବୃଦ୍ଧି ଏବଂ ପ୍ରସାରଣର ଭିତ୍ତି ରୂପେ କାର୍ଯ୍ୟ କରିଥାଏ ଏବଂ ସେ ଜ୍ଞାନର ଅଭିବୃଦ୍ଧି ଏବଂ ସଂପ୍ରସାରଣ ପାଇଁ

ତାହା ସେତିକି ପରିମାଣରେ ଭିତ୍ତି ସ୍ୱରୂପ ହୋଇଥାଏ, ଯେତିକି ପରିମାଣରେ ଜଗତର ପ୍ରକୃତ ସାରମର୍ମ ସହିତ ଆମ ଜ୍ଞାନ ସଂଗତିଶୀଳ ।

ବିଜ୍ଞାନର ଇତିହାସ ଏବଂ ମଣିଷ ଜାତିର ସମଗ୍ର ବ୍ୟାବହାରିକ ଅଭିଜ୍ଞତା ଅକାଟ୍ୟ ଭାବେ ପ୍ରମାଣ କରିଛି ଯେ, ଏ ଜଗତରେ ଅନେକ କିଛି ଅଜ୍ଞାତ ରହି ଯାଇଛି ସତ, କିନ୍ତୁ କୌଣସି କଥା ଅଜ୍ଞେୟ ନୁହେଁ । ଆଧୁନିକ ପଦାର୍ଥ ବିଜ୍ଞାନ ବସ୍ତୁର ସୂକ୍ଷ୍ମ ଗଢ଼ଣସମୂହକୁ କ୍ରମାଧିକ ଭାବେ ପ୍ରକାଶ କରୁଛି ଏବଂ ତଦ୍ୱାରା ଆବିଷ୍କୃତ ପାରମାଣବିକ ଶକ୍ତି ଲାଗୁଛି ମଣିଷର ସେବାରେ । ରେଡିଓ ଜ୍ୟୋତିର୍ବିଜ୍ଞାନ ଏବଂ ମହାକାଶ ଗବେଷଣାର ବିକାଶ ମାଧ୍ୟମରେ ବିଶ୍ୱ ବ୍ରହ୍ମାଣ୍ଡ ସଂପର୍କରେ ଆମ ଜ୍ଞାନର ସୀମା ବିପୁଳ ପରିମାଣରେ ସଂପ୍ରସାରିତ ହୋଇଛି । ଜୀବ ବିଜ୍ଞାନ ମଧ୍ୟ ବଂଶ ପରମ୍ପରା ପ୍ରକ୍ରିୟାର ଗଭୀର ଦେଶକୁ ପ୍ରବେଶ କରିଛି ଏବଂ ଜେନିଟିକ୍ ପ୍ରକ୍ରିୟା ସଂପର୍କରେ ଜ୍ଞାନଟା ବ୍ୟାବହାରିକ ସୁଫଳ ଦେଉଛି ଅଧିକତର ଶସ୍ୟ ଫଳନ ଏବଂ ରୋଗ ନିବାରଣରେ ସାଫଲ୍ୟ ଅର୍ଜନ କରିବାରେ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ତତ୍ତ୍ୱ ଦ୍ୱାରା ଆବିଷ୍କୃତ ଆଧୁନିକ ଯୁଗ, ଦୁନିଆର ବୈପ୍ଳବିକ ପ୍ରକ୍ରିୟାର ସାଧାରଣ ନିୟମରାଜି ପୃଥିବୀରେ ପ୍ରଗତିଶୀଳ ପରିବର୍ତ୍ତନକୁ ତ୍ୱରାନ୍ୱିତ କରିବାରେ ସହାୟକ ହେଉଛି ।

ମଣିଷ ଜାତିର ଅବଗତିମୂଳକ କ୍ରିୟାକଳାପ ବ୍ୟାବହାରିକ ଅଭିଜ୍ଞତା ଉପରେ ନିର୍ଭର କରି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଏହି ଭାବେ ଦର୍ଶନର ମୌଳିକ ପ୍ରଶ୍ନର ଦ୍ୱିତୀୟ ଦିଗଟିର ଅସ୍ତିବାଚକ ଉତ୍ତର ଦେଇଥାଏ । ଲେନିନ୍ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଜ୍ଞାନତତ୍ତ୍ୱର ସାରମର୍ମକୁ ନିମ୍ନଲିଖିତ ଭାଷାରେ ବ୍ୟକ୍ତ କରିଥିଲେ: "୧) ଆମର ଚେତନା, ଆମର ଇନ୍ଦ୍ରିୟାନୁଭୂତିଠାରୁ ସ୍ୱାଧୀନ ଭାବେ, ଆମର ବାହାରେ... ବସ୍ତୁସକଳ ଅବସ୍ଥାନ କରନ୍ତି... । ୨) ପ୍ରପଞ୍ଚରାଜି ଏବଂ ବସ୍ତୁ ପାଇଁ ବସ୍ତୁ ମଧ୍ୟରେ ନୀତିଗତ ଦୃଷ୍ଟିରୁ ନିର୍ଦ୍ଦିଷ୍ଟ ଭାବେ କୌଣସି ପାର୍ଥକ୍ୟ ନାହିଁ, ଏବଂ ସେଭଳି ପାର୍ଥକ୍ୟ ବି ରହି ନପାରେ । ପାର୍ଥକ୍ୟଟା କେବଳ ଯାହା ଜ୍ଞାତ ଏବଂ ଯାହା ଜ୍ଞାତ ହେବାକୁ ଅଛି... । ୩) ଜ୍ଞାନ ତତ୍ତ୍ୱରେ, ଅନ୍ୟାନ୍ୟ ବିଜ୍ଞାନ କ୍ଷେତ୍ର ଭଳି, ଆମକୁ ଦ୍ୱନ୍ଦ୍ୱମୂଳକ ଭାବେ ଚିନ୍ତା କରିବାକୁ ହେବ, ଅର୍ଥାତ୍, ଆମ ଜ୍ଞାନକୁ ଆମେ ପୂର୍ବପ୍ରସ୍ତୁତ, ଅପରିବର୍ତ୍ତନୀୟ ବୋଲି ନିଶ୍ଚୟ ବିଗ୍ଭର ନକରିବା ଉଚିତ, ଆମକୁ ନିର୍ଦ୍ଧାରଣ କରିବାକୁ ହେବ ଅଜ୍ଞାନ ମଧ୍ୟରୁ ଜ୍ଞାନର କିପରି ଅଭ୍ୟୁଦୟ ଘଟେ, ଅସଂପୂର୍ଣ୍ଣ, ଅସିଦ୍ଧ ଜ୍ଞାନ କିପରି ଆଉରି ଅଧିକ ସଂପୂର୍ଣ୍ଣ, ଅଧିକ ସିଦ୍ଧ ହୁଏ ।"*

ମଣିଷର ଜ୍ଞାନର ସୀମା ସର୍ବଦା ସଂପ୍ରସାରିତ ଏବଂ ଗଭୀର ହେବାରେ ଲାଗିଛି ଅବଗତିମୂଳକ ପ୍ରକ୍ରିୟା ମଧ୍ୟ ଦେଇ । ମଣିଷର ଭାବାବେଗ ଏବଂ ବାସ୍ତବତା ପ୍ରତି ତା'ର ଆଭିମୁଖ୍ୟ ସହିତ ତା'ର ଚେତନାର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଉପାଦାନ ହେଉଛି ଜ୍ଞାନ ।

---

* V. I. Lenin, "Materialism and Empirio-Criticism", *Collected Works*, Vol. 14, p. 103.

ମଣିଷ ମଣିଷ ମଧ୍ୟରେ ଯୋଗାଯୋଗ ହିସାବରେ ଭାଷା ସହିତ ଏହା ଆବଶ୍ୟକୀୟ ଏବଂ ଅବିଚ୍ଛିନ୍ନ ଭାବେ ସଂଯୁକ୍ତ । ଜ୍ଞାନ ହେଉଛି ପଦାର୍ଥସକଳର ପ୍ରୟୋଜନୀୟ ଧର୍ମରାଶି ତଥା ଯୋଗସୂତ୍ରର ଏବଂ ସେସବୁର ପ୍ରାକୃତିକ ନିୟମରାଶିର ପ୍ରତିଫଳନ । ଜ୍ଞାନ ତା'ର ଆଧେୟ ଦୃଷ୍ଟିରୁ ଭିନ୍ନ ହୋଇ ପାରେ : ଏହା ମିଥ୍ୟା (ମାୟା, ଭୁଲ, ମିଥ୍ୟାକରଣ), ଅପ୍ରମାଣସିଦ୍ଧ (ଅନୁମାନ, ହାଇପୋଥେସିସ୍) ଏବଂ ଅଭ୍ରାନ୍ତ ହୋଇ ପାରେ । ଲୋକେ ସର୍ବଦା ଚେଷ୍ଟା କରି ଆସିଛନ୍ତି ପ୍ରକୃତ ଜ୍ଞାନ ଆହରଣ କରିବା ପାଇଁ । ପ୍ରାଚୀନ ସେହି ପ୍ରଜ୍ଞାପୂର୍ଣ୍ଣ କଥାଟି : "ଜ୍ଞାନ ହେଉଛି ସବୁଠାରୁ ବଡ଼ ସଂପଦଭଣ୍ଡାର, ଏହାକୁ କେଇ ଘେରେଇ ନେଇ ପାରେ ନାହିଁ, ଏହାର ଶେଷ ନାହିଁ, ଏହା ଅମୂଲ୍ୟ", ଏବେ ବି ସତ ।

## ୪ – ସତ୍ୟ ବୋଇଲେ କ'ଣ ?

ସ୍ମରଣାତୀତ କାଳରୁ ମଣିଷ ଏହି ପ୍ରଶ୍ନଟିକୁ ନେଇ ଚିନ୍ତା କରି ଆସିଛି । ଏହାକୁ କେନ୍ଦ୍ର କରି ଦାର୍ଶନିକ ଯୁକ୍ତିତର୍କ ଗ୍ଲଳି ଆସିଛି । ସତ୍ୟ ବୋଇଲେ କ'ଣ ଏହି ଧାରଣାଟି ଦର୍ଶନର ମୌଳିକ ପ୍ରଶ୍ନର ସମାଧାନଠାରୁ ଅବିଚ୍ଛିନ୍ନ । ସତ୍ୟର ସମସ୍ୟାର ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ସମାଧାନଟି ପ୍ରତିଫଳନ ତତ୍ତ୍ୱ ଉପରେ ପ୍ରତିଷ୍ଠିତ ଏବଂ ଏହା ବିଭିନ୍ନ ଭାବବାଦୀ ଅବଧାରଣାଠାରୁ ପୃଥକ୍ । ଏହା ମଧ୍ୟ ଅଧିଭୌତିକ, ଚିନ୍ତାମୂଳକ ବସ୍ତୁବାଦ ଦ୍ୱାରା ପ୍ରଦତ୍ତ ସତ୍ୟର ବ୍ୟାଖ୍ୟାଠାରୁ ପୃଥକ୍ ।

ବସ୍ତୁଗତ ଭାବବାଦର ପ୍ରବକ୍ତାମାନେ ସତ୍ୟର ବ୍ୟାଖ୍ୟା କରିଥାନ୍ତି ଆଦର୍ଶ ସତ୍ତାର– ଆତ୍ମା, ଆଇଡିଆ ବା ଈଶ୍ୱରଙ୍କ ଗୁଣ ହିସାବରେ । ଦୃଷ୍ଟାନ୍ତ ସ୍ୱରୂପ, ଚିନ୍ତାସମୂହର ଜଗତର ଆତ୍ମାର ସ୍ମୃତି ହିସାବରେ ପ୍ଲେଟୋଙ୍କ ଅବଗତିର ତତ୍ତ୍ୱ ଅନୁଯାୟୀ, ସତ୍ୟ ହେଉଛି ଅଲୌକିକ, ପ୍ରତିଷ୍ଠିତ ଆଦର୍ଶମୂଳକ ସାରସତ୍ତାଠାରୁ ସ୍ୱାଧୀନ; "ସତ୍ୟ-ନିଜକୁ-ନିଜେ" ହେଉଛି ଚିନ୍ତାରାଜିର ଏକ ଜଗତ, ଏବଂ ମଣିଷର ଜ୍ଞାନ କେବଳ ସେତିକି ପରିମାଣରେ ସତ୍ୟ ହୋଇ ପାରେ, ଯେତିକି ପରିମାଣରେ ଆତ୍ମା ଚିନ୍ତାରାଜିର ଅନ୍ୟ "ଜଗତ" ସହିତ ଘନିଷ୍ଠ ସଂପୃକ୍ତ ହୋଇ ପାରେ । ପ୍ରାଚୀନ ଭାରତୀୟ ବେଦାନ୍ତ ଦର୍ଶନ ଅନୁଯାୟୀ ଏକମାତ୍ର ପ୍ରକୃତ ବାସ୍ତବତା ହେଉଛି ଅନପେକ୍ଷ ଆତ୍ମା, ପରମାତ୍ମା (ବ୍ରହ୍ମ) । ପ୍ରପଞ୍ଚସମୂହକୁ (ମାୟା) ନେଇ ରଚିତ ଏ ଅନିତ୍ୟ ଜଗତ ସଂପର୍କରେ ଜ୍ଞାନ ତେଣୁ ସତ୍ୟ ହୋଇ ପାରେ ନାହିଁ । ବ୍ରହ୍ମ ସଂପର୍କରେ ଚିନ୍ତାହିଁ ହେଉଛି ଏକମାତ୍ର ପ୍ରକୃତ ସତ୍ୟ । ହେଗେଲ୍‌ଙ୍କ ଭଳି ବସ୍ତୁବାଦୀ ଭାବବାଦୀଙ୍କ ପକ୍ଷରେ ସତ୍ୟ ହେଉଛି ଦି ଆଇଡିଆ, ତା'ର ସଂପୂର୍ଣ୍ଣ ସଂଜ୍ଞା ଏବଂ ଅବଧାରଣା ସମେତ; ଏହା ହେଉଛି ନିର୍ମଳ ଚିନ୍ତା ଜଗତରେ ଜ୍ଞାନର ରୂପ ଗ୍ରହଣ (*reine Denken*) ।

ବସ୍ତୁଗତ ଭାବବାଦ ଏହି ଭାବେ ସତ୍ୟକୁ ଜଗତର ପ୍ରତିଫଳନର ଭେଦାଭେଦ ନଭାବି ବିଗ୍ଭର କରେ, ଯିଏକି ମଣିଷର ଚେତନାରେ ଘଟି ଥାଏ । ଏହା ସତ୍ୟକୁ ବିଗ୍ଭର କରେ ନାହିଁ କୌଣସି ପଦାର୍ଥ ସଂପର୍କରେ ମଣିଷ ଜ୍ଞାନର ଧର୍ମ ହିସାବରେ, ଏହା ବିଗ୍ଭର କରେ କେତେକ ଅପାର୍ଥିବ, ଶାଶ୍ୱତ ଚିନ୍ତାର ଏକ ସହଜାତ ଗୁଣ ହିସାବରେ । ଏହି ଧରଣର ଭାବବାଦୀ ମତାମତର ବିପରୀତରେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ମନେ କରେ, ଜଗତ ଏବଂ ପ୍ରକୃତି ନିଜକୁ ନିଜେ ସତ୍ୟ ନୁହନ୍ତି କି ମିଥ୍ୟା ବି ନୁହନ୍ତି । ସତ୍ୟର ଏକ ବୈଶିଷ୍ଟ୍ୟ ହେଉଛି ଏହା କେବଳ ପଦାର୍ଥସମୂହ ସଂପର୍କରେ ଆମର ଜ୍ଞାନକୁ ବୁଝାଇ ଥାଏ, ସେସବୁ ପଦାର୍ଥସମୂହକୁ ବୁଝାଏ ନାହିଁ ।

ଭାବଗତ ଭାବବାଦୀମାନେ ମଧ୍ୟ ସତ୍ୟର ସମସ୍ୟାଟିକୁ ଭୁଲ ଭାବେ ବ୍ୟାଖ୍ୟା କରିଥାନ୍ତି । ବାହ୍ୟ ଜଗତ ମଣିଷଠାରୁ ସ୍ୱାଧୀନ ଭାବେ ପ୍ରତିଷ୍ଠିତ—ଏହି କଥାଟିକୁ ଅସ୍ୱୀକାର କରି ସେମାନେ ଆମ ଜ୍ଞାନ ମଧ୍ୟରେ ବସ୍ତୁଗତ ଆଧେୟ ଅଛି ବୋଲି ସ୍ୱୀକାର କରନ୍ତି ନି ଏବଂ ବାସ୍ତବତା କେଉଁ ପ୍ରକ୍ରିୟାରେ ପ୍ରତିଫଳିତ ହେଉଛି ତାକୁ ବିଗ୍ଭର ନକରି ସେମାନେ ଚେତନାର ଧର୍ମସମୂହ ସହିତ ସତ୍ୟକୁ ଏକାନ୍ତ ଭାବେ ଯୋଡ଼ି ଦେଇଥାନ୍ତି । ସତ୍ୟର ବହୁବିଧ ଭାବଗତ ଅବଧାରଣା ରହିଛି । କେତେକ ଭାବନ୍ତି ଯାହା ସାଧାରଣ ଭାବେ ଅର୍ଥବହ, ଅର୍ଥାତ୍, ଯାହା ସଂଖ୍ୟାଗରିଷ୍ଠଙ୍କ ମତ ସହିତ ସଙ୍ଗତିଶୀଳ, ତାହା ହେଉଛି ସତ୍ୟ । ଆଉ କେତେକ ସତ୍ୟକୁ ଦେଖନ୍ତି ସେଇସବୁ ମଧ୍ୟରେ, ଯାହାକୁ ସରଳ ବା ଅର୍ଥନୈତିକ ଢଙ୍ଗରେ ଚିନ୍ତା କରାଯାଏ । ଆଉ କେତେକ ସେଇସବୁକୁ ସତ୍ୟ ବୋଲି ବିଗ୍ଭର କରନ୍ତି, ଯାହା ଉକ୍ତିସମୂହର ନିର୍ଦ୍ଦିଷ୍ଟ ଏକ ବ୍ୟବସ୍ଥାରେ ଅନ୍ୟ ବିଗ୍ଭରଗୁଡ଼ିକ ସହିତ ଏକମତ । ସତ୍ୟର ଆଉ ଏକ ବ୍ୟାଖ୍ୟା ଅଛି, ଯିଏକି ହେଉଛି ଦରକାରୀ । ଏହି ସମସ୍ତ ବ୍ୟାଖ୍ୟା, ଚରିତ୍ରଗତ ଦିଗରୁ, ଏକ ବସ୍ତୁଗତ ସତ୍ୟର ଅବସ୍ଥିତିକୁ ଅସ୍ୱୀକାର କରେ ।

ଏଠାରେ ବିଗ୍ଭରସମୂହର ସତ୍ୟତା ସଂପୂର୍ଣ୍ଣ ରୂପେ କର୍ତ୍ତା ଦ୍ୱାରା ନିର୍ଦ୍ଧାରିତ ଏବଂ ତା ଉପରେ ନିର୍ଭରଶୀଳ । ଦୃଷ୍ଟାନ୍ତ ସ୍ୱରୂପ, ସଂଖ୍ୟାଗରିଷ୍ଠ ଲୋକଙ୍କର ଧର୍ମୀୟ ବିଶ୍ୱାସ ଥାଇ ପାରେ, କିନ୍ତୁ ଏଇଥି ପାଇଁ ଧର୍ମ ବିଶ୍ୱାସ ସତ୍ୟ ହୋଇ ପାରେ ନା । ଠିକ୍ ଏହିଭଳି, ସରଳତାକୁ ମଧ୍ୟ ସତ୍ୟର ମାପଦଣ୍ଡକୁ ଉନ୍ନୀତ କରାଯାଇ ପାରେ ନାହିଁ । ଏକ ପରମାଣୁକୁ ଏକ ଜଟିଳ ଗଢ଼ଣଯୁକ୍ତ ଏବଂ ବିଭାଜ୍ୟ ଅପେକ୍ଷା ଅବିଭାଜ୍ୟ ବୋଲି ଚିନ୍ତା କରିବାଟା ସହଜତର, କିନ୍ତୁ ଶେଷ ମତଟି ଆଧୁନିକ ବିଜ୍ଞାନ ଦୃଷ୍ଟିରୁ ସତ୍ୟ ନୁହେଁ । ଏହା ଛଡ଼ା, ପ୍ରତିଜ୍ଞାସମୂହର ଏକ ବ୍ୟବସ୍ଥାକୁ ଚିନ୍ତା କରାଯାଇ ପାରେ, ଯେଉଁସବୁ ପ୍ରତିଜ୍ଞା ମଧ୍ୟରୁ ପ୍ରତ୍ୟେକ ପ୍ରତ୍ୟେକଟି ସହିତ ଏକମତ ଏବଂ ବିରୋଧ କରେ ନାହିଁ, କିନ୍ତୁ ସେଥିରେ ସତ୍ୟ ନଥାଏ ଏବଂ ତାହା ହେଉଛି ଏକ ଜୋରଜବରଦସ୍ତ ଯୁକ୍ତିବିଦ୍ୟାଗତ ଗଢ଼ଣ । ଯାହା କିଛି ବ୍ୟବହାରଯୋଗ୍ୟ, ତାହା ହେଉଛି ସତ୍ୟ—ଏହି କଥା କହୁଥିବା ଥିସିସ୍‌ଟିର (ବୁର୍ଜୁଆ ବାସ୍ତବ ଦର୍ଶନ ଦ୍ୱାରା ପ୍ରଗ୍ଭରିତ ଏକ ଅବଧାରଣା) ମନୋଗତତା

ସ୍ୱତଃପରିସ୍ଫୁଟ, କାରଣ ଏହା ସଙ୍ଗେ ସଙ୍ଗେ ପ୍ରଶ୍ନ ଉଠାଏ ଯେ, କିଏ ଏଭଳି ଏକ ବିଶ୍ୱରରୁ ଲାଭ ଉଠାଇବ ଏବଂ ଉପକାର ଲାଭ କରିବ । ଦୃଷ୍ଟାନ୍ତ ସ୍ୱରୂପ, ବାସ୍ତବତାବାଦୀ ଅବସ୍ଥାନରୁ ଏ କଥା ପ୍ରମାଣ କରିବା ସହଜ ଯେ, କୁସଂସ୍କାର ବା ରହସ୍ୟବାଦ ହେଉଛି ପ୍ରତିକ୍ରିୟାଶୀଳ ଶ୍ରେଣୀଗୁଡ଼ିକ ପକ୍ଷରେ ଉପକାରୀ ।

## ୫ – ବସ୍ତୁଗତ ସତ୍ୟ

ଉଭୟ ମନୋଗତ ଏବଂ ବସ୍ତୁଗତ ଭାବବାଦୀମାନେ ସତ୍ୟକୁ ଚେତନାର ଆଭ୍ୟନ୍ତରୀଣ ଧର୍ମ ରୂପେ ବିଶ୍ୱର କରିଥାନ୍ତି । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଅନୁଯାୟୀ, ଅବଶ୍ୟ, ଅବଗତି ହେଉଛି ମଣିଷ ଦ୍ୱାରା ବାସ୍ତବତାର ବ୍ୟାବହାରିକ ରୂପାନ୍ତରଣ ପ୍ରକ୍ରିୟାରେ ବାସ୍ତବତାର ପ୍ରତିଫଳନ । ଯେଉଁ ଜ୍ଞାନ ଏହି ବାସ୍ତବତାକୁ ସଠିକ ଭାବେ ପ୍ରତିଫଳିତ କରେ, ତାହା ହିଁ ହେଉଛି ସତ୍ୟ । ଅନ୍ୟ ଦିଗରେ, ବାସ୍ତବତାର ବିକୃତ ପ୍ରତିଫଳନ ଭ୍ରାନ୍ତି ସୃଷ୍ଟି କରେ, ଅର୍ଥାତ୍, ଅସତ୍ୟମୂଳକ ଜ୍ଞାନକୁ ଜନ୍ମ ଦିଏ । ସତ୍ୟ ହେଉଛି ସେଇ ଚିନ୍ତା, ଯିଏକି ବାସ୍ତବତା ସହିତ ସଙ୍ଗତିଶୀଳ । ତା ଅର୍ଥ ଆମ ଜ୍ଞାନରେ ଏଭଳି ଏକ ଉପାଦାନ ଥାଏ, ଯିଏକି କର୍ତ୍ତା ଉପରେ, ବ୍ୟକ୍ତିବିଶେଷ ବା ମାନବଜାତି ଉପରେ ନିର୍ଭର କରେ ନାହିଁ । ତେଣୁ ସତ୍ୟ ହେଉଛି ସବୁବେଳେ ବସ୍ତୁନିଷ୍ଠ ।

ସତ୍ୟର ବସ୍ତୁନିଷ୍ଠ ଗୁଣକୁ ସ୍ୱୀକାର କରିବା ଅର୍ଥ ଦର୍ଶନର ମୌଳିକ ପ୍ରଶ୍ନର ଦ୍ୱିତୀୟ ଦିଗଟିର ବସ୍ତୁବାଦୀ ସମାଧାନଟିକୁ ସ୍ୱୀକାର କରିବା : ଆମର ଧାରଣା, ଅବଧାରଣାସମୂହ, ତତ୍ତ୍ୱରାଜି ସେତିକି ପରିମାଣରେ କେବଳ ସତ୍ୟ, ଯେତିକି ପରିମାଣରେ ସେସବୁଥିରେ ବସ୍ତୁଗତ ଆଧେୟ ଥାଏ, ତାହା ଚେତନା ଉପରେ ନିର୍ଭର କରେ ନାହିଁ । ନିର୍ଦ୍ଦିଷ୍ଟ ମତରାଜିର ସତ୍ୟତା ନିର୍ଦ୍ଧାରିତ ହୋଇଥାଏ ପ୍ରତିଫଳିତ ବସ୍ତୁଗତ ବାସ୍ତବତାର ଧର୍ମରାଶି ତଥା ପ୍ରାକୃତିକ ନିୟମାବଳୀ ଦ୍ୱାରା, ମଣିଷର ଇଚ୍ଛା ବା ମନୋଗତ ମତାମତ ଦ୍ୱାରା ନୁହେଁ । ଦୃଷ୍ଟାନ୍ତ ସ୍ୱରୂପ, ବୁର୍ଜୁଆ ଭାବାଦର୍ଶବାଦୀମାନେ ଶ୍ରେଣୀ ସଂଗ୍ରାମର ମାର୍କସ୍‌ବାଦୀ ଶିକ୍ଷା ପୁରୁଣା ହୋଇ ଗଲଣି ବୋଲି ଯେତେ ଥର କହନ୍ତୁ ନା କାହିଁକି, ଏହା କେବେହେଲେ ବସ୍ତୁଗତ ସତ୍ୟ ହେବାରୁ କ୍ଷାନ୍ତ ହୋଇ ନି । କାରଣ, ଆଧୁନିକ ପୁଞ୍ଜିବାଦୀ ସମାଜ ମଧ୍ୟ ବ୍ୟକ୍ତିଗତ ସଂପତ୍ତି ଆଉ ମଣିଷ ଦ୍ୱାରା ମଣିଷର ଶୋଷଣର ପ୍ରଭୁତ୍ୱ ଏବଂ ଶ୍ରେଣୀ ସ୍ୱାର୍ଥସମୂହର ବୈରିତା ଦ୍ୱାରା ଚିହ୍ନିତ ।

ମାର୍କସ୍‌ଙ୍କ ପୂର୍ବ ବସ୍ତୁବାଦୀମାନେ ମଧ୍ୟ ସତ୍ୟର ବସ୍ତୁଗତତାକୁ ସ୍ୱୀକାର କରିଥିଲେ । ଏଥି ସଙ୍ଗେ ସଙ୍ଗେ, ସେମାନେ ଏହି ଯୁକ୍ତି ଦ୍ୱାରା ସତ୍ୟକୁ ଅଧିଭୌତିକ ଭାବେ ବିଶ୍ୱର କରୁଥିଲେ ଯେ, ଏହାର ଆଧେୟ ସଂପୂର୍ଣ୍ଣ ରୂପେ ପ୍ରତିଫଳିତ ବାସ୍ତବତାକୁ ଢାଙ୍କି ରଖେ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ ସତ୍ୟକୁ ପୁରୁଣା ବସ୍ତୁବାଦ ଭଳି ବିଶ୍ୱର କରେ ନାହିଁ ।

ଏହା ସତ୍ୟକୁ ବସ୍ତୁଗତ ବାସ୍ତବତା ସହିତ ଚିନ୍ତନର ସଂପୂର୍ଣ୍ଣ ସଂଗତିଶୀଳତାର ଏକ ସମୟର କାର୍ଯ୍ୟ ବୋଲି ବିଗ୍ଭର ନକରି, ସାମାଜିକ-ଐତିହାସିକ ପ୍ରୟୋଗ ଦ୍ୱାରା ଅନୁଚିନ୍ତିତ କ୍ରମବର୍ଦ୍ଧମାନ ଗଭୀର ପ୍ରତିଫଳନ ପ୍ରକ୍ରିୟା ରୂପେ ବିଗ୍ଭର କରେ । ଏହାର ଅର୍ଥ, ପ୍ରଥମତଃ, ଜ୍ଞାନର ପ୍ରକୃତ ଲକ୍ଷ୍ୟ ବସ୍ତୁଗତ "ନିଜ ପାଇଁ ଏବଂ ନିଜର" ଜଗତ ନୁହଁ, ତା'ର ଲକ୍ଷ୍ୟ ହେଉଛି ପ୍ରୟୋଗ ଦ୍ୱାରା, ମଣିଷର ବୈଷୟିକ କ୍ରିୟାକଳାପ ଦ୍ୱାରା ଅନୁଚିନ୍ତିତ ବାସ୍ତବତା । ଦ୍ୱିତୀୟତଃ, ମଣିଷର ପ୍ରୟୋଗରେ ମଧ୍ୟ ପରିବର୍ତ୍ତନ ଘଟି ଗ୍ଭଲିବା ସଙ୍ଗେ ସଙ୍ଗେ ଏବଂ କର୍ତ୍ତାର ଅବଗତିମୂଳକ ଅନ୍ତର୍ନିହିତ ଶକ୍ତିରେ ବି ଉନ୍ନତି ଘଟିବା ସଙ୍ଗେ ସଙ୍ଗେ ବସ୍ତୁଗତ ସତ୍ୟ ଏକ ସ୍ୱୟଂ ସଂପୂର୍ଣ୍ଣ ଚିନ୍ତା ରୂପେ (ବିବୃତି, ତତ୍ତ୍ୱ, ଆଦି) ଦେଖା ଦେଇ ନି, ଏହା ଦେଖା ଦେଇଛି ପରିବର୍ତ୍ତନରାଜିର ଏକ ଦ୍ୱନ୍ଦ୍ୱମୂଳକ ପ୍ରକ୍ରିୟା ଏବଂ ବସ୍ତୁଗତ ଜଗତକୁ ପ୍ରତିଫଳିତ କରୁଥିବା ଜ୍ଞାନର ବିକାଶ ରୂପେ ।

## ୬ – ସତ୍ୟରେ ଆପେକ୍ଷିକ ଏବଂ ଅନାପେକ୍ଷିକ

ପୂର୍ବବର୍ତ୍ତୀ ଆଲୋଚନା ଆମକୁ ପ୍ରୋତ୍ସାହିତ କରୁଛି ଅନାପେକ୍ଷିକ ଏବଂ ଆପେକ୍ଷିକ ସତ୍ୟ ମଧ୍ୟରେ ସମସ୍ୟାଟିକୁ ଆଲୋଚନା କରିବା ପାଇଁ । ବସ୍ତୁନିଷ୍ଠ ସତ୍ୟ ବୋଲି ଯଦି କିଛି ଅଛି, ତେବେ ତାକୁ କିପରି ଜାଣିବାକୁ ହେବ ? ମଣିଷର ଚିନ୍ତାରାଜି କ'ଣ ବସ୍ତୁନିଷ୍ଠ ସତ୍ୟକୁ ତତ୍କ୍ଷଣାତ୍, ସଂପୂର୍ଣ୍ଣ ରୂପେ, ବିନା ସର୍ତ୍ତରେ ଏବଂ ଅନପେକ୍ଷ ଭାବେ ପ୍ରକାଶ କରେ ନା କେବଳ ଆନୁମାନିକ ଏବଂ ଆପେକ୍ଷିକ ଭାବେ ପ୍ରକାଶ କରେ ? ଏ କଥାଟି ଉପରେ ଗୁରୁତ୍ୱ ଦେବା ଦରକାର ଯେ, ବୈଜ୍ଞାନିକ ଜ୍ଞାନ ତତ୍ତ୍ୱରେ ପ୍ରଶ୍ନଟି ତିନି ଧରଣର ସତ୍ୟର ଅବସ୍ଥିତି ନାହିଁ (ବସ୍ତୁନିଷ୍ଠ, ଆପେକ୍ଷିକ, ଏବଂ ଅନାପେକ୍ଷିକ), ପ୍ରଶ୍ନଟି ହେଉଛି ଏକ ଏବଂ ଅଭିନ୍ନ ବସ୍ତୁନିଷ୍ଠ ସତ୍ୟରେ ଅନାପେକ୍ଷିକ ଏବଂ ଆପେକ୍ଷିକ ମଧ୍ୟରେ ସଂପର୍କ । ଅନାପେକ୍ଷିକ ଏବଂ ଆପେକ୍ଷିକ ସତ୍ୟ ମଧ୍ୟରେ ଯୋଗସୂତ୍ର ସଂପର୍କିତ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ମତବାଦ ଜ୍ଞାନର ସତ୍ୟତା ଏବଂ ପରିବର୍ତ୍ତନୀୟତା ଭଳି ଦିଗଗୁଡ଼ିକୁ ସଂଯୁକ୍ତ କରିଥାଏ । ଅଧିଭୌତିକତାବାଦୀମାନଙ୍କ ପକ୍ଷରେ ଏହିସବୁ ଗୁଣ ହେଉଛି ଅସଂଗତିପୂର୍ଣ୍ଣ ।

ମାର୍କସ୍‌ଙ୍କ ପୂର୍ବ ଦର୍ଶନ ସତ୍ୟକୁ ବିଗ୍ଭର କରୁଥିଲା ମୁଖ୍ୟତଃ ମତାନ୍ଧ ଅବସ୍ଥାନରୁ । ଦାର୍ଶନିକ ମତାନ୍ଧତା ହେଉଛି ସତ୍ୟରେ ଆପେକ୍ଷିକତାର କୌଣସି ଉପାଦାନକୁ ଅସ୍ୱୀକାର କରିବା । ମତାନ୍ଧମାନଙ୍କ ପକ୍ଷରେ ପ୍ରକୃତ ସତ୍ୟ ହିଁ କେବଳ ଅନାପେକ୍ଷିକ, ସର୍ତ୍ତହୀନ, ସଂପୂର୍ଣ୍ଣ ଏବଂ ଅପରିବର୍ତ୍ତନୀୟ ହୋଇ ପାରେ । ସତ୍ୟ ଏକଦା ପ୍ରତିଷ୍ଠିତ ହେଲେ ପରେ ଆଉ ପରିବର୍ତ୍ତିତ ହୋଇ ପାରେ ନାହିଁ । ସତ୍ୟ ଏବଂ ଭ୍ରାନ୍ତିକୁ ସଂପୂର୍ଣ୍ଣ ବିପରୀତ ଏବଂ ପରସ୍ପରଠାରୁ ସଂପୂର୍ଣ୍ଣ ଅଲଗା ବୋଲି ବିଗ୍ଭର କରାଯାଏ । ଜ୍ଞାନର ବିକାଶ ପ୍ରକ୍ରିୟାରେ

ଯଦି ସେଥିରେ ଅସଠିକତା ବା ଏପରିକି ଭୁଲ ଦେଖାଯାଏ, ତେବେ ଅଧିଭୌତିକବାଦୀମାନେ ସେ ଜ୍ଞାନକୁ ଭୁଲପୂର୍ଣ୍ଣ ଏବଂ ଅସତ୍ୟ ବୋଲି ଘୋଷଣା କରିଥାନ୍ତି । ମତାନ୍ଧତା ବିଜ୍ଞାନର ଅଚଳାବସ୍ଥା କଥା କହିଥାଏ ଏବଂ ବସ୍ତୁନିଷ୍ଠ ଜଗତର ଅଧିକ ଅବଗତିକୁ ପ୍ରକୃତରେ ଅସ୍ୱୀକାର କରେ । ଆମ ଯୁଗରେ ସତ୍ୟର ମତାନ୍ଧବାଦୀ ବିଗ୍ରହଟା ଏକ ବିଶେଷ ରକମର, ଦୃଷ୍ଟାନ୍ତ ସ୍ୱରୂପ, ବିଭିନ୍ନ ଧର୍ମୀୟ-ଭାବବାଦୀ ମତବାଦ, ଯିଏକି ବୈଜ୍ଞାନିକ ଜ୍ଞାନ ଅପେକ୍ଷା ଧର୍ମୀୟ ଘୋଷଣାବଳୀକୁ ଉଚ୍ଚତର ଧରଣର ତର୍କାତୀତ ଜ୍ଞାନକୁ ଟେକି ଦେଇଥାଏ ।

ଜ୍ଞାନତାତ୍ତ୍ୱିକ ଆପେକ୍ଷିକତା ହେଉଛି ଅଧିଭୌତିକ ଭାବେ ଏକଦର୍ଶୀ । ଇତିପୂର୍ବରୁ ଆମେ କହିଛେ, ଆପେକ୍ଷିକବାଦୀମାନେ ଗତିରେ ସ୍ଥିରତାର ମୁହୂର୍ତ୍ତଗୁଡ଼ିକୁ ଖାତିର କରନ୍ତି ନାହିଁ । ଜ୍ଞାନତତ୍ତ୍ୱରେ, ଏହାର ଅର୍ଥ ହେଉଛି, ସେମାନେ ସତ୍ୟରେ ଅନାପେକ୍ଷିକ ଉପାଦାନଟିକୁ ଅସ୍ୱୀକାର କରନ୍ତି ଏବଂ କେବଳ ତା'ର ଆପେକ୍ଷିକ ଗୁଣକୁ ସ୍ୱୀକାର କରନ୍ତି । ଏହା ଛଡ଼ା, ଜ୍ଞାନର ଆପେକ୍ଷିକ ଏବଂ ପରିବର୍ତ୍ତନଶୀଳ ଚରିତ୍ରକୁ ତା'ର ଭାବଗତତା ରୂପେ ବ୍ୟାଖ୍ୟା କରନ୍ତି, ଯା'ର ଅର୍ଥ ହେଉଛି ଉଭୟ ଅନାପେକ୍ଷିକ ଏବଂ ବସ୍ତୁଗତ ସତ୍ୟକୁ ଅସ୍ୱୀକାର କରିବା । ଏହା ସିଧାସଳଖ ଭାବେ ଅଜ୍ଞେୟବାଦ ଆଡ଼କୁ ଘେନି ଯାଏ । ଏକ ଆପେକ୍ଷିକତାବାଦୀ ଆଭିମୁଖ୍ୟ ଆଧୁନିକ ପ୍ରତ୍ୟକ୍ଷବାଦୀ ଏବଂ ବିଶେଷ କରି ପରମ୍ପରାବାଦୀଙ୍କ ଦ୍ୱାରା ଗୃହୀତ ସତ୍ୟର ସମସ୍ୟାର ମତର ଭିତ୍ତି ରଚନା କରିଥାଏ । ଶେଷୋକ୍ତଟି ନିୟମର ଯେକୌଣସି ବୈଜ୍ଞାନିକ ଅନୁଜ୍ଞା ବୈଜ୍ଞାନିକମାନଙ୍କ ମଧ୍ୟରେ ସ୍ୱେଚ୍ଛାଚାରୀ ପରମ୍ପରାର ଫଳ ବୋଲି ବିଚାର କରେ, ଯା'ଫଳରେ ବିଜ୍ଞାନକୁ ବସ୍ତୁଗତ ତାତ୍ପର୍ଯ୍ୟରୁ ବଞ୍ଚିତ କରେ ଏବଂ ତା'ର ସିଦ୍ଧାନ୍ତରାଜିର ସତ୍ୟତା ପ୍ରତି ସନ୍ଦେହ ସୃଷ୍ଟି କରେ ।

ଉପରୋକ୍ତ ବହୁବିଧବାଦର ଅନୁବର୍ତ୍ତୀମାନେ ମଧ୍ୟ ଦାର୍ଶନିକ ଆପେକ୍ଷିକତାବାଦର ଆସ୍ଥାନ ଗ୍ରହଣ କରିଥାନ୍ତି । ଜ୍ଞାନତତ୍ତ୍ୱ କ୍ଷେତ୍ରରେ ବହୁବିଧବାଦ "ସତ୍ୟର ବହୁଗୁଣିତତାର" ଭାବଗତ ପ୍ରଚାର କରେ । ବହୁବିଧବାଦୀମାନେ ଘୋଷଣା କରନ୍ତି, ବସ୍ତୁବାଦ ଏବଂ ଭାବବାଦ, ବିଜ୍ଞାନ ଏବଂ ଧର୍ମ, ସମାଜବାଦୀ ଏବଂ ବୁର୍ଜୁଆ ଚିନ୍ତାରାଜି, ଆଦି ସମାନ ଭାବେ ସତ୍ୟ । କିନ୍ତୁ ବିଜ୍ଞାନ ନିଶ୍ଚିତ ରୂପେ ତଦ୍ୱାରା ସମାହିତ ଏକ ଏବଂ ଅଭିନ୍ନ ପ୍ରଶ୍ନର ମୌଳିକ ଭାବେ ଭିନ୍ନ ଭିନ୍ନ ଉତ୍ତର ଦେଇ ନଥାଏ । ବୈଜ୍ଞାନିକ ସତ୍ୟ ବୋଇଲେ ଗୋଟିଏ ସତ୍ୟ । ତତ୍ ସଙ୍ଗେ ସଙ୍ଗେ ନିର୍ଦ୍ଦିଷ୍ଟ ଏକ ପ୍ରଶ୍ନର ମିଥ୍ୟା ଏବଂ ଭୁଲ ମତାବଳୀ ବିରାଟ ଭାବେ ପୃଥକ୍ ହୋଇଥାଏ ।

ମତାନ୍ଧତାବାଦ ଏବଂ ଆପେକ୍ଷିକତାବାଦର ବିପରୀତରେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ପ୍ରକୃତ ଜ୍ଞାନରେ ଅନପେକ୍ଷ ଏବଂ ଆପେକ୍ଷିକ ଉପାଦାନଗୁଡ଼ିକର ଐକ୍ୟ ଏବଂ ବିରୋଧକୁ ସ୍ୱୀକାର କରେ । ତାହେଲେ, ଆପେକ୍ଷିକ ସତ୍ୟ ବୋଇଲେ କ'ଣ ? ଏହା ହେଉଛି ସେଇ ଜ୍ଞାନ, ଯିଏକି ଆନୁମାନିକ ଏବଂ ଅସଂପୂର୍ଣ୍ଣ ଭାବେ ବସ୍ତୁଗତ ଜଗତକୁ ପ୍ରତିଫଳିତ କରେ ।

ସାମାଜିକ-ଐତିହାସିକ ପ୍ରୟୋଗର ଯେକୌଣସି ପର୍ଯ୍ୟାୟରେ ମାନବିକ ଜ୍ଞାନ ତା'ର ସୀମାବଦ୍ଧତା ଏବଂ ଅସଂପୂର୍ଣ୍ଣତା ଦୃଷ୍ଟିରୁ ଆପେକ୍ଷିକ । କିନ୍ତୁ ସତ୍ୟର ଆପେକ୍ଷିକତା ସମାଜ ବିକାଶର ନିର୍ଦ୍ଦିଷ୍ଟ ଏକ ପର୍ଯ୍ୟାୟରେ ମଣିଷର ସଞ୍ଚିତ ଜ୍ଞାନ ପ୍ରତି କେବଳ ପ୍ରଯୋଜ୍ୟ ନୁହେଁ , ଏହା ହେଉଛି ଯେକୌଣସି ବସ୍ତୁଗତ ସତ୍ୟର ଏକ ଗୁଣ , ଯିଏକି ପୃଥକ୍ ଭାବେ ବୈଜ୍ଞାନିକ ତତ୍ତ୍ୱ , ପ୍ରକୃତ ଅନୁଜ୍ଞାସମୂହ , ଆଦି ରୂପେ ବିବେଚିତ ହୋଇଥାଏ । ଏ କ୍ଷେତ୍ରରେ ସତ୍ୟର ଆପେକ୍ଷିକତା ତା'ର ଅନିର୍ଭୁଲତା ଏବଂ ବିଶେଷ ପ୍ରପଞ୍ଚରାଜି ସଂପର୍କରେ , ସେସବୁର ଧର୍ମରାଶି ଏବଂ ସେସବୁ ମଧ୍ୟରେ ସଂପର୍କରାଜି ସଂପର୍କରେ ଆମର ଜ୍ଞାନର ଐତିହାସିକ ସୀମାବଦ୍ଧତାକୁ ନେଇ ଗଠିତ । ଯେକୌଣସି ସତ୍ୟ (ଅର୍ଥାତ୍ , ନିର୍ଦ୍ଦିଷ୍ଟ ଏକ ବୈଜ୍ଞାନିକ ତତ୍ତ୍ୱ) ହେଉଛି ଆପେକ୍ଷିକ ଏଇ ଅର୍ଥରେ ଯେ , ପ୍ରଥମତଃ , ଏହି ତତ୍ତ୍ୱଟି ଦ୍ୱାରା ଅନୁଧ୍ୟାତ କ୍ଷେତ୍ରଟି ସଂପର୍କରେ ଏହା ପୂର୍ଣ୍ଣ ଏବଂ ସଂପୂର୍ଣ୍ଣ ଜ୍ଞାନ ପ୍ରଦାନ କରେ ନାହିଁ । ଦ୍ୱିତୀୟତଃ , ସତ୍ୟ (ଆମ ଦୃଷ୍ଟାନ୍ତ କ୍ଷେତ୍ରରେ , ବୈଜ୍ଞାନିକ ତତ୍ତ୍ୱ) ଜ୍ଞାନର ସେଇସବୁ ଉପାଦାନକୁ (ଅର୍ଥାତ୍ , ଅବଧାରଣା , ଅନୁଜ୍ଞା ଏବଂ ହାଇପୋଥେସିସ୍) ନିଜର ଅନ୍ତର୍ଭୁକ୍ତ କରିଥାଏ , ଯିଏକି ପରିବର୍ତ୍ତିତ ଏବଂ ପରିବର୍ଦ୍ଧିତ ହେବା ସଙ୍ଗେ ସଙ୍ଗେ ନୂତନ ଦ୍ୱାରା ସ୍ଥାନାନ୍ତରିତ ହୁଏ । ଏଥି ସଙ୍ଗେ ସଙ୍ଗେ , ଆପେକ୍ଷିକ ସତ୍ୟଟା ଭ୍ରାନ୍ତି ଭଳି ନୁହେଁ , ଏଥିରେ ଥାଏ ବସ୍ତୁଗତ ଉପାଦାନ , ଏବଂ କେତେକ ପରିମାଣରେ ଏହା ଚିନ୍ତନ ଏବଂ ବାସ୍ତବତା ମଧ୍ୟରେ ସଂପର୍କକୁ ପ୍ରକାଶ କରିଥାଏ । ତେଣୁ , ଏଥିରେ କିଛି ଅନପେକ୍ଷ ରହିଥାଏ ।

ଅନାପେକ୍ଷିକ ସତ୍ୟ ବୋଇଲେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ କ'ଣ ବୁଝାଇଥାଏ ? ଅନେକ ସମୟରେ ଅନାପେକ୍ଷିକ ସତ୍ୟକୁ ସଂପୂର୍ଣ୍ଣ , ପରିପୂର୍ଣ୍ଣ ଜ୍ଞାନ ରୂପେ , ନିର୍ଦ୍ଦିଷ୍ଟ ବସ୍ତୁଟିର ସମପତନ ରୂପେ ଧରାଯାଇଥାଏ । କିନ୍ତୁ ବସ୍ତୁଗତ ଜଗତ ଯେହେତୁ ସ୍ଥାନ ଏବଂ କାଳ ଦୃଷ୍ଟିରୁ ସୀମାହୀନ ଏବଂ ନିରବଚ୍ଛିନ୍ନ ଭାବେ ଯେହେତୁ ବିକଶିତ ଏବଂ ପରିବର୍ତ୍ତିତ ହେଉଛି , ତେଣୁ ତା ସଂପର୍କରେ ଅବଗତି କେବେହେଲେ ସଂପୂର୍ଣ୍ଣ ହୋଇ ପାରେ ନାହିଁ । ମାନବିକ ଜ୍ଞାନର ଏଭଳି ଏକ ଅନପେକ୍ଷ ଚରିତ୍ରର ଅବଧାରଣାକୁ ନିଶ୍ଚିତ ରୂପେ ବର୍ଜନ କରିବାକୁ ହେବ ଏବଂ ତେଣୁ ଅନପେକ୍ଷ ସତ୍ୟକୁ ଅନ୍ୟ ଏକ ଅର୍ଥରେ ବିଗ୍ରହ କରିବାକୁ ପଡ଼ିବ , ପଦାର୍ଥଟିର କେତେକ ସୀମିତ ଅଂଶ ସହିତ ଜ୍ଞାନର ସର୍ବୋଚ୍ଚ ସମପତନ ରୂପେ , ତା'ର ପୃଥକ୍ ପୃଥକ୍ ଦିଗ ଏବଂ ଧର୍ମରାଶିର ପୂର୍ଣ୍ଣ ଜ୍ଞାନ ହିସାବରେ । ଅନପେକ୍ଷ ସତ୍ୟ ଜନ୍ମ ନେଇଥାଏ କେବଳ ପ୍ରୟୋଗ ମଧ୍ୟରୁ , ତେଣୁ ଭବିଷ୍ୟତରେ ତାକୁ ଖଣ୍ଡନ କରାଯାଇ ପାରେ ନା । ପୁରାତନ ଜ୍ଞାନକୁ ତା'ର ବିକାଶ କାଳରେ ଅବଗତି ପ୍ରକ୍ରିୟାରେ ସଂପୂର୍ଣ୍ଣ ରୂପେ ବର୍ଜିତ ହୁଏ ନାହିଁ , ନୂତନ ଜ୍ଞାନର ବ୍ୟବସ୍ଥା ମଧ୍ୟରେ ଏହା କୌଣସି ଏକ ରୂପ ନେଇ ଅଙ୍ଗୀଭୂତ ହୋଇଥାଏ । ବସ୍ତୁଗତ ଜ୍ଞାନର ଏହି ନିରବଚ୍ଛିନ୍ନ ପୁଞ୍ଜୀକରଣକୁ ହିଁ ଅନପେକ୍ଷ ସତ୍ୟର ଅବଧାରଣା ବୁଝାଇ ଥାଏ । ପ୍ରତିଟି ଆପେକ୍ଷିକ ସତ୍ୟରେ ନିହିତ ଥାଏ ଅନପେକ୍ଷ ସତ୍ୟର ଏକ ଉପାଦାନ , ଏକ "ବୀଜକଣା" । ଜ୍ଞାନର ଅଭିବୃଦ୍ଧି ବିଶେଷ

ଭାବେ ପ୍ରକାଶ କରିଥାଏ ଅନପେକ୍ଷ ସତ୍ୟ ଆଡ଼କୁ ଅଗ୍ରଗତି । "ମାନବିକ ଚିନ୍ତା..." ଲେନିନ୍ ଲେଖିଛନ୍ତି, "ତା'ର ଚରିତ୍ର ଦୃଷ୍ଟିରୁ ଅନପେକ୍ଷ ସତ୍ୟକୁ ପ୍ରଦାନ କରିବାକୁ ସକ୍ଷମ ଏବଂ ତାହା ପ୍ରଦାନ କରିଥାଏ, ଯିଏକି ହେଉଛି ଆପେକ୍ଷିକ ସତ୍ୟର ମୋଟ ଯୋଗ ଫଳକୁ ନେଇ ଗଠିତ । ବିଜ୍ଞାନର ବିକାଶ କ୍ଷେତ୍ରରେ ପ୍ରତିଟି ପଦକ୍ଷେପ ଅନପେକ୍ଷ ସତ୍ୟର ଯୋଗ ଫଳରେ ନୂଆ ଏକ ଦାନା ଯୋଗ କରିଥାଏ, କିନ୍ତୁ ପ୍ରତିଟି ବୈଜ୍ଞାନିକ ଅନୁଜ୍ଞାର ସତ୍ୟର ସୀମାବଦ୍ଧତା ହେଉଛି ଆପେକ୍ଷିକ, ଏବେ ପ୍ରସାରମାନ ତ ପୁଣି ଜ୍ଞାନର ଅଭିବୃଦ୍ଧି ହେତୁ ପୁଣି ସୀମିତମାନ ।"*

ଏହି ଭାବେ, ଦୃଷ୍ଟାନ୍ତ ସ୍ୱରୂପ, ରାସାୟନିକ ଉପାଦାନସମୂହ ଏବଂ ସେସବୁର ଧର୍ମରାଶି ସଂପର୍କରେ ଆମର ଜ୍ଞାନ ପରିପୂର୍ଣ୍ଣ ହୋଇଥାଏ । ପରମାଣୁ ଏବଂ ଅଣୁପିଣ୍ଡ ସଂପର୍କରେ ରସାୟନବିଜ୍ଞାନରେ ଅବଧାରଣାଟା ପ୍ରତିଷ୍ଠିତ ହୋଇଥିଲା ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ । ପରମାଣୁ ସଂପର୍କରେ ଅବଧାରଣା ମୂଳ ଉପାଦାନସମୂହରୁ ଜଟିଳ ରାସାୟନିକ ଉପାଦାନ ଗଠନ କରିବା ସହିତ ଯୁକ୍ତ ନିୟମସମୂହକୁ ଆବିଷ୍କାର କରିବାର ଭିତ୍ତି ଗଠନ କରିଥିଲା । ଷାଠିଏଟିରୁ ଅଧିକ ରାସାୟନିକ ଉପାଦାନ ସଂପର୍କରେ ଅନୁଧ୍ୟାନ କରାଯାଇଛି, ସେସବୁର ଧର୍ମରାଶିର ବର୍ଣ୍ଣନା କରାଯାଇଛି ଏବଂ ସେସବୁର ପାରମାଣବିକ ଓଜନକୁ ଅତ୍ତ ବହୁତ ସଠିକ ଭାବେ ମପା ଯାଇଛି । ରାସାୟନିକ ଉପାଦାନଗୁଡ଼ିକ ଆମର ପ୍ରକୃତ ଜ୍ଞାନର ପରିଧି ବିପୁଳ ଭାବେ ପ୍ରସାରିତ ହୋଇଥିଲା, ଯେତେବେଳେ ରୁଷ୍ ବୈଜ୍ଞାନିକ ଦ୍‌ମିତ୍ରି ମେନ୍‌ଦେଲେୟେଭ୍ ଉପାଦାନ ସଂପର୍କରେ ତାଙ୍କର ସାମୟିକ ନିୟମ ଆବିଷ୍କାର କଲେ । ତାଙ୍କ ଦ୍ୱାରା ରାସାୟନିକ ଉପାଦାନସମୂହ ମଧ୍ୟରେ ନିୟମିତ ଯୋଗସୂତ୍ରଗୁଡ଼ିକର ଆବିଷ୍କାର ଫଳରେ ସେ ସକ୍ଷମ ହୋଇଥିଲେ ବହୁ ଅଜ୍ଞାତ ଉପାଦାନସମୂହର ଅବସ୍ଥିତି ସଂପର୍କରେ ଭବିଷ୍ୟତବାଣୀ କରିବାକୁ ଏବଂ ଅଦ୍‌ଭୁତ ଭାବେ ସଠିକ ରୂପେ ସେସବୁର ଧର୍ମରାଶିର ବର୍ଣ୍ଣନା ଦେବାକୁ । ତାଙ୍କ ଦ୍ୱାରା ପୂର୍ବଘୋଷିତ ଉପାଦାନସମୂହକୁ ଚିହ୍ନିତ କରିବା ପାଇଁ ସେ ସଂସ୍କୃତ ଭାଷା ବ୍ୟବହାର କରିଥିଲେ । ସେ ତାଙ୍କ ବ୍ୟବସ୍ଥାରେ ଏକ ଅଜ୍ଞାତ ଉପାଦାନକୁ ଚିହ୍ନିତ କରିବା ପାଇଁ ବ୍ୟବହାର କରିଥିଲେ "ଏକ" ଏବଂ "ଦ୍ୱି" ଉପସର୍ଗଗୁଡ଼ିକୁ । ତାଙ୍କର ଏହି "ଉପାଦାନସମୂହର ପ୍ରାକୃତିକ ବ୍ୟବସ୍ଥା"ରେ (୧୮୭୦) ସେ ବଡ଼ ଗାର ଦେଇ ତାଙ୍କର ଭବିଷ୍ୟତବାଣୀକରା ଉପାଦାନଗୁଡ଼ିକୁ ଦର୍ଶାଇ ଥିଲେ । ଇକୁଆବୋରନ ବୋରନ ସହିତ, ଇକୁଆଲ୍ୟୁମିନିଅମ୍ ଆଲ୍ୟୁମିନିଅମ୍ ସହିତ, ଇକୁଆସିଲିକନ୍ ସିଲିକନ୍ ସହିତ ଏବଂ ଦ୍ୱିମାଙ୍ଗାନିଜ୍ ମାଙ୍ଗାନିଜ୍ ସହିତ ସାଦୃଶ୍ୟପୂର୍ଣ୍ଣ । ଆଧୁନିକ ଶବ୍ଦଗୁଡ଼ିକ ହେଉଛି ସାଣ୍ଡିଅମ୍, ଗାଲିଅମ୍, ଜେର୍ମାନିଅମ୍ ଏବଂ ରେନିଅମ୍ ପ୍ରଭୃତି ।

---

*V. I. Lenin, "Materialism and Empirio-Criticism", *Collected Works*, Vol. 14, p. 135.

# ସତ୍ୟ

"ବସ୍ତୁଗତ ସତ୍ୟ ବୋଲି କିଛି ଅଛିକି ? ଅର୍ଥାତ୍ ମାନବିକ ଚିନ୍ତାରାଜିରେ କ'ଣ ଏପରି ଆଧେୟ ରହିଛି, ଯିଏକି ଏକ ବିଷୟ ଉପରେ ନିର୍ଭର କରେ ନାହିଁ, ଏକ ମଣିଷଜାତି ଉପରେ ନିର୍ଭର କରେ ନାହିଁ ?... ତା ଯଦି ହୋଇଥାଏ, ତେବେ ମାନବିକ ଚିନ୍ତାରାଜି, ଯିଏକି ବସ୍ତୁଗତ ସତ୍ୟକୁ ପ୍ରକାଶ କରେ, ସେସବୁକୁ ପ୍ରକାଶ କରେ, ଏକ ସମୟରେ ସାମଗ୍ରିକ ରୂପେ, ସର୍ତ୍ତହୀନ ଭାବେ, ଅନାପେକ୍ଷ ଭାବେ, ବା କେବଳ ଆନୁମାନିକ ଭାବେ, ଆପେକ୍ଷିକ ଭାବେ ? ଏହି ପ୍ରଶ୍ନଟି ହେଉଛି : ଆପେକ୍ଷିକ ସତ୍ୟ ସହିତ ଅନାପେକ୍ଷିକ ସତ୍ୟର ସଂପର୍କିତ ପ୍ରଶ୍ନ ।"

— ଲେନିନ୍

**ଆପେକ୍ଷିକ ସତ୍ୟ**

ବାସ୍ତବତା ସହିତ ଜ୍ଞାନର ଅସଂପୂର୍ଣ୍ଣ ସାମଞ୍ଜସ୍ୟ : ଯେଉଁ ଜ୍ଞାନ ଅଧିକ ଅବଗତି ମଧ୍ୟ ଦେଇ ସୁନିର୍ଦ୍ଦିଷ୍ଟ ଏବଂ ଖାପଖୁଆଇ ନିଏ

**ଅନାପେକ୍ଷିକ ସତ୍ୟ**

ଶବ୍ଦଟି ବ୍ୟାପକ ଅର୍ଥରେ — ବାସ୍ତବତା ସହିତ ଜ୍ଞାନର ସଂପୂର୍ଣ୍ଣ ସଂଗତିଶୀଳତା ହେଉଛି, ଜଗତର ପୂର୍ଣ୍ଣ ଅବଗତି । ବିଜ୍ଞାନ ଉଦ୍ୟମ କରୁଛି ସେ ଜ୍ଞାନ ପାଇଁ ।

ସଂକୀର୍ଣ୍ଣ ଅର୍ଥରେ — ତଥ୍ୟପୂର୍ଣ୍ଣ ବିବୃତି : ବ୍ୟକ୍ତିଗତ ପ୍ରବଣତାର ଜ୍ଞାନ, ଯୋଗସୂତ୍ର ଏବଂ ନିୟମ : ଆପେକ୍ଷିକ ସତ୍ୟର ଆଧେୟତା ଅଧିକ ଅବଗତିର ପ୍ରକ୍ରିୟାରେ ପରିବର୍ତ୍ତିତ ହୁଏ ନାହିଁ ।




**ସତ୍ୟ**

ବାସ୍ତବତା ସହିତ ସଙ୍ଗତିଶୀଳ ଜ୍ଞାନ

**ଭ୍ରାନ୍ତି**

ବାସ୍ତବତା ସହିତ ସଂଗତିହୀନ ଜ୍ଞାନ (ବାସ୍ତବତା ସହିତ ଜ୍ଞାନର ସଂଗତିକୁ ଅତିରଞ୍ଜିତ ବା ଅନଇଞ୍ଜିତ)

ଅନ୍ୟ ଯେକୌଣସି ବୈଜ୍ଞାନିକ ସତ୍ୟ ଭଳି ମେଣ୍ଡେଲେୟେଭଙ୍କ ଆବିଷ୍କାର ଥିଲା ଜ୍ଞାନ କ୍ଷେତ୍ରରେ ଆପେକ୍ଷିକ ଏବଂ ଅନାପେକ୍ଷିକ ମଧ୍ୟରେ ଐକ୍ୟ । ଅନାପେକ୍ଷିକ ସତ୍ୟରେ ସେହି "ବୀଜକଣାଟି" ଥିଲା ତାଙ୍କ ଦ୍ୱାରା ସୂଚିତ ଉପାଦାନସମୂହର ଧର୍ମରାଶି ମଧ୍ୟରେ ଯୋଗସୂତ୍ର ଏବଂ ସେସବୁର ପାରମାଣବିକ ଓଜନ, ଧର୍ମରାଶିର ସାମୟିକତା, ଅଜ୍ଞାତ ବହୁ ରାସାୟନିକ ଉପାଦାନର ଅବସ୍ଥିତି । ଏଥି ସଙ୍ଗେ, ଏହା ଥିଲା ଆପେକ୍ଷିକ ସତ୍ୟ, କାରଣ କେତେକ ରାସାୟନିକ ଉପାଦାନ ଏବଂ ସେସବୁର ଆଇସୋଟୋପ୍‌ଗୁଡ଼ିକ ସଂପର୍କରେ ଅନୁଧ୍ୟାନ ହୋଇ ନଥିଲା ବେଳେ ଉପାଦାନସମୂହର ଧର୍ମରାଶି ସେସବୁର ପାରମାଣବିକ ଓଜନ ଉପରେ କାହିଁକି ନିର୍ଭରଶୀଳ ଏବଂ ସେସବୁ ଧର୍ମର ସାମୟିକତାର କାରଣ ସଂପର୍କରେ ଅଯଥେଷ୍ଟ ଜ୍ଞାନ ଅର୍ଜିତ ହୋଇଥିଲା ।

ଆଧୁନିକ ପଦାର୍ଥବିଜ୍ଞାନ ଏବଂ ରସାୟନବିଦ୍ୟା ମୌଳିକ ଭାବେ ରାସାୟନିକ ଉପାଦାନଗୁଡ଼ିକ ସଂପର୍କରେ ଆମର ଜ୍ଞାନକୁ ଗଭୀରତର କରିଛି । ରାସାୟନିକ ସାମୟିକତା କାରଣ ଆବିଷ୍କୃତ ହୋଇଛି । ପରମାଣୁର ପାରାମିଟର ପାରମାଣିକ ଓଜନ ନୁହେଁ । ପାରମାଣବିକ ଶକ୍ତିସଞ୍ଚାର ହେଉଛି ତା'ର ପାରାମିଟର । ଉପାଦାନଗୁଡ଼ିକର ଧର୍ମସମୂହରେ ସମାନ ରକମର ବୈଶିଷ୍ଟ୍ୟରାଜିର ସାମୟିକ ପୁନରାବୃତ୍ତି ଘଟିଥାଏ ଇଲେକ୍‌ଟ୍ରନିକ ଖୋସାଗୁଡ଼ିକର ଗଢ଼ଣରେ ସାମୟିକତା ହେତୁ । ମେଣ୍ଡେଲେୟେଭଙ୍କ ତାଲିକାରେ ନଥିବା ଏବଂ ପ୍ରାକୃତିକ ଭାବେ ପୃଥିବୀ ପୃଷ୍ଠରେ ଅନବସ୍ଥିତ ଟ୍ରାନ୍‌ସୁରାନିକ ଉପାଦାନଗୁଡ଼ିକୁ ଗବେଷଣାଗାର ମଧ୍ୟସ୍ଥ ମିଳିଥାଏ । ମୋଟ ୧୦୫ଟି ମୂଳ ଉପାଦାନ ଏବେ ଆମକୁ ଜଣା । ଆଣବିକ ଜଗତ ସଂପର୍କରେ ଆମର ଜ୍ଞାନ ବଢ଼ି ଚାଲିବା ସଙ୍ଗେ ସଙ୍ଗେ ଅନାପେକ୍ଷିକ ଜ୍ଞାନର ମୋଟ ବୀଜକଣାର ମୋଟ ସଂଖ୍ୟା ମଧ୍ୟ ବଢ଼ି ଚାଲିଛି । ଏବଂ ଅନାପେକ୍ଷିକ ଜ୍ଞାନ ଆଡ଼କୁ ଏହି ଅଗ୍ରଗତି ପଥର ଅନ୍ତ ନାହିଁ, କାରଣ ବସ୍ତୁ ହେଉଛି ଅଫୁରନ୍ତ, ଏବଂ ସାମାଜିକ-ଐତିହାସିକ ପ୍ରୟୋଗର ପ୍ରତ୍ୟେକ ପର୍ଯ୍ୟାୟ ହେଉଛି ସୀମିତ ।

## ୭ – ବିମୂର୍ତ୍ତ ସତ୍ୟ ବୋଲି କିଛି ନାହିଁ, ସତ୍ୟ ହେଉଛି ସର୍ବଦା ନିର୍ଦ୍ଦିଷ୍ଟ

ବସ୍ତୁଗତ ସତ୍ୟ, ତା'ର ଅନପେକ୍ଷ ଏବଂ ଆପେକ୍ଷିକ ଦିଗଗୁଡ଼ିକର ଐକ୍ୟ ସମେତ ଏକ ପ୍ରକ୍ରିୟା ହେଲେ ମଧ୍ୟ, ଏହା ହେଉଛି ଅବଗତିର ଏକ ନିର୍ଦ୍ଦିଷ୍ଟ, ନିଶ୍ଚିତ ଐତିହାସିକ ଫଳ । ବିମୂର୍ତ୍ତ ସତ୍ୟ ବୋଲି କିଛି ନାହିଁ, ସତ୍ୟ ହେଉଛି ନିର୍ଦ୍ଦିଷ୍ଟ । ମାର୍କ୍ସ୍‌ବାଦ-ଲେନିନ୍‌ବାଦର ଏହା ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସନ୍ଦର୍ଭ । ଏହାର ଅର୍ଥ କ'ଣ ?

ସର୍ବୋପରି ଏହାର ଅର୍ଥ ହେଉଛି, ଯେକୌଣସି ପ୍ରକୃତ ଘୋଷଣା ଐତିହାସିକ ଭାବେ ନିର୍ଦ୍ଧାରିତ ହୋଇଥାଏ । ଏହାର ଥାଏ ଏକ ସହଜାତ, ବାସ୍ତବ ଏବଂ ନିର୍ଦ୍ଦିଷ୍ଟ ଆଧେୟ । ସତ୍ୟ ତା'ର ଗୁଣାରାଶିକୁ ସଂରକ୍ଷିତ କରି ପାରେ ବ୍ୟାଖ୍ୟାକୃତ ଅବସ୍ଥାରାଜି ମଧ୍ୟରେ, ଯେଉଁଥିରେ ଚିନ୍ତନ ଏବଂ ବାସ୍ତବତା ମଧ୍ୟରେ ଥାଏ ଏକ ସଂଗତିଶୀଳତା । ଯେକୌଣସି ସତ୍ୟକୁ ବିଶେଷ ଅବସ୍ଥାରାଜି ପକ୍ଷରେ ଆପେକ୍ଷିକ ବୋଲି ବିଗ୍ଭର କରାଯିବା ଉଚିତ । ଅନ୍ୟ ପରିସ୍ଥିତିସମୂହରେ ଏହା ଭ୍ରାନ୍ତ ହୋଇ ପାରେ ।

ସତ୍ୟର ନିର୍ଦ୍ଦିଷ୍ଟ ଚରିତ୍ର ଅର୍ଥ ହେଉଛି ବାହ୍ୟ ଜଗତର ପଦାର୍ଥ ଏବଂ ପ୍ରପଞ୍ଚସମୂହ ସଂପର୍କରେ ଆମର ଜ୍ଞାନକୁ ବହୁବିଧରୂପକତାର ଏକ ଐକ୍ୟ ହେବାକୁ ହୋଇଥାଏ, ସେସବୁର କୌଣସି ଏକ ଦିଗର ପ୍ରତିଫଳନ ହୁଏ ନାହିଁ । ବସ୍ତୁମୟ ବାସ୍ତବତାର ଯେକୌଣସି ପଦାର୍ଥର ଥାଏ ଧର୍ମରାଶିର ଏକ ସଂପଦ ଏବଂ ଅନ୍ୟାନ୍ୟ ପଦାର୍ଥରାଜି ସହିତ ଯୋଗସୂତ୍ରସମୂହ; ଏହା ଛଡ଼ା, ଅନ୍ୟାନ୍ୟ ବହୁ ପଦାର୍ଥ ସହିତ ଏହାର ଅଭିନ୍ନ ଗୁଣରାଶି କେବଳ ନଥାଏ, ଏହା ଅପୂର୍ବ ଗୁଣରାଶି ଦ୍ୱାରା ମଧ୍ୟ ବିଶେଷ ଚରିତ୍ର ଧାରଣ କରିଥାଏ । ପ୍ରକୃତ ଚିନ୍ତନ ପ୍ରତିଫଳିତ ବାସ୍ତବତାରେ ଗୁଣରାଶି ତଥା ପରିବର୍ତ୍ତନରାଜିର ବହୁବିଧରୂପକତାକୁ ହିସାବକୁ ନେବାକୁ ଗ୍ଭହେଁ ଏବଂ ଉକ୍ତ ପ୍ରକ୍ରିୟା ବିଶେଷତାସମୂହକୁ ପ୍ରକାଶ କରିବା ଦରକାର । ଏହି କ୍ଷେତ୍ରରେ ହିଁ ସତ୍ୟ କେବଳ ନିର୍ଦ୍ଦିଷ୍ଟ ହୋଇ ପାରେ ।

ବିପ୍ଲବୀ ସଂଗ୍ରାମର ପ୍ରୟୋଗ କ୍ଷେତ୍ରରେ ସତ୍ୟର ନିର୍ଦ୍ଦିଷ୍ଟ ଗୁଣ ହେଉଛି ବିପୁଳ ଗୁରୁତ୍ୱପୂର୍ଣ୍ଣ । ସମାଜବାଦକୁ ଉତ୍ତରଣକୁ ନିୟନ୍ତ୍ରଣ କରୁଥିବା ନିୟମରାଜି ବୁଝିବା ପାଇଁ ପ୍ରଯୁକ୍ତ ହେଉଥିବା ଏହି ନିର୍ଦ୍ଦିଷ୍ଟ ଗୁଣ ହେଉଛି, କିପରି ନିର୍ଦ୍ଦିଷ୍ଟ ମଧ୍ୟରେ ସାଧାରଣ ପ୍ରକାଶ ପାଉଛି ଏବଂ ନିର୍ଦ୍ଦିଷ୍ଟ କିପରି ଗଭୀର ହୋଇ ଗ୍ଭଲିଛି ଏବଂ ଜୀବନର ପ୍ରକୃତ ଦ୍ୱନ୍ଦ୍ୱବାଦକୁ କିପରି ସମୃଦ୍ଧ କରି ଗ୍ଭଲିଛି – ଏସବୁ ସଂପର୍କରେ ଜ୍ଞାନ । ବୈପ୍ଳବିକ କ୍ରିୟା ପ୍ରତି ସୃଜନଶୀଳ ଆଭିମୁଖ୍ୟରେ ସତ୍ୟର ନିର୍ଦ୍ଦିଷ୍ଟତା ହେଉଛି ଏକ ଆବଶ୍ୟକୀୟ ସର୍ତ୍ତ (*sine qua non*) । ଆନ୍ତର୍ଜାତିକ କମ୍ୟୁନିଷ୍ଟ ଏବଂ ଶ୍ରମିକ ପାର୍ଟିମାନଙ୍କର ମୁଖ୍ୟ ଦଲିଲଟିରେ ଏହା ଉପରେ ପୁନଶ୍ଚ ଜୋର ଦିଆ ଯାଇଛି : "ପ୍ରତ୍ୟେକଟି ପାର୍ଟି ମାର୍କସ୍‌ବାଦ-ଲେନିନ୍‌ବାଦର ନୀତିରାଜି ଦ୍ୱାରା ପରିଗ୍ଭଳିତ ହୋଇ ଏବଂ ନିର୍ଦ୍ଦିଷ୍ଟ ଜାତୀୟ ଅବସ୍ଥାରାଜି ସହିତ ସମତାଳ ରଖି, ତା'ର ନିଜସ୍ୱ କର୍ମନୀତିକୁ ସଂପୂର୍ଣ୍ଣ ସ୍ୱାଧୀନ ଭାବେ ବ୍ୟାଖ୍ୟା କରେ, ସଂଗ୍ରାମର ଦିଗମୁଖ, ରୂପ ଏବଂ ପଦ୍ଧତିକୁ ନିର୍ଦ୍ଧାରଣ କରେ ଏବଂ ପାରିପାର୍ଶ୍ୱିକ ଅବସ୍ଥାରାଜି ଉପରେ ନିର୍ଭର କରି ସମାଜବାଦକୁ ଶାନ୍ତିପୂର୍ଣ୍ଣ ବା ଅଶାନ୍ତିପୂର୍ଣ୍ଣ ପଥ, ଏବଂ ତା'ର ନିଜ ଦେଶରେ ସମାଜବାଦ ନିର୍ମାଣର ପଦ୍ଧତି ଏବଂ ରୂପ ନିରୂପଣ କରେ ।"*

---

*"*International Meeting of Communist and Workers' Parties*". Moscow, 1969, p. 37.

# ୮ – ପ୍ରୟୋଗ ହେଉଛି ସତ୍ୟର ମାନଦଣ୍ଡ

ସତ୍ୟର ନିର୍ଦ୍ଦିଷ୍ଟ ଚରିତ୍ର ସାମାଜିକ-ଐତିହାସିକ ପ୍ରୟୋଗର ନିର୍ଦ୍ଧାରଣକାରୀ ଭୂମିକାର ଆଉରି ଅଧିକ ପ୍ରମାଣ ପ୍ରଦାନ କରିଥାଏ । ପ୍ରୟୋଗ କେବଳ ଅବଗତି ପ୍ରକ୍ରିୟାର ଭିତ୍ତି ନୁହଁ, ଏହା ହେଉଛି ପ୍ରକୃତ ଜ୍ଞାନର ନିଷ୍କରିମୂଳକ ମାନଦଣ୍ଡ । ଆମ ଜ୍ଞାନ କ୍ଷେତ୍ରରେ ସତ୍ୟକୁ ଭ୍ରାନ୍ତିଠାରୁ କିପରି ପୃଥକ୍ କରିବା ? ସବୁ ସତ୍ତ୍ୱେ, "ଜ୍ଞାନ ସ୍ରୋତ ତା'ର ଭୁଲଭ୍ରାନ୍ତି ପଥ ଦେଇ ବହି ଚାଲେ ।"* ଭାବବାଦୀ ଦାର୍ଶନିକମାନେ ସତ୍ୟର ମାପକାଠିକୁ ଖୋଜିଥାନ୍ତି ଏକମାତ୍ର ଆଦର୍ଶ କ୍ଷେତ୍ରରେ, ଆମର ଚେତନା ମଧ୍ୟରେ : ଚିନ୍ତନର ଆନୁମାନିକ ସ୍ୱଚ୍ଛତାରେ, ତା'ର ଅଦ୍ୱାନ୍ଦ୍ୱିକତାରେ, ଦ୍ୱନ୍ଦ୍ୱରାଜି ମଧ୍ୟରେ ଏବଂ ଅନୁଜ୍ଞାସମୂହର ସାଧାରଣ ଅର୍ଥ, ଆଦିରେ । ଏସବୁ ସତ୍ତ୍ୱେ ବି ସତ୍ୟର ନିର୍ଦ୍ଦିଷ୍ଟ ମାପକାଠିକୁ (ମାପ) ଚିନ୍ତା ଏବଂ ଭାବ ମଧ୍ୟରେ କେବଳ ଖୋଜି କି ବାହାର କରିବା ଅସମ୍ଭବ । ଏହା "ଆନୁମାନିକ ଭାବେ ସ୍ୱଚ୍ଛ" ଏବଂ ପ୍ରମାଣଯୋଗ୍ୟ, ଦୃଷ୍ଟାନ୍ତ ସ୍ୱରୂପ, ପୃଥିବୀର ଚତୁର୍ପାର୍ଶ୍ୱରେ ସୂର୍ଯ୍ୟ ଘୂର୍ଣ୍ଣ୍ୟମାନ । କୋପେର୍ଣୀୟ ମତବାଦ ଅନୁଯାୟୀ, ବୈଜ୍ଞାନିକ ସତ୍ୟ, ହୁଏତ, ଭିନ୍ନ, ଅର୍ଥାତ୍, ପୃଥିବୀ ଏବଂ ଅନ୍ୟାନ୍ୟ ଗ୍ରହମାନେ ସୂର୍ଯ୍ୟର ଚତୁର୍ପାର୍ଶ୍ୱରେ ଘୂରୁଛନ୍ତି । ଏହା ଜ୍ୟୋତିର୍ବିଜ୍ଞାନଗତ ପର୍ଯ୍ୟବେକ୍ଷଣ, ପଦାର୍ଥ ବିଜ୍ଞାନରେ ଗବେଷଣା ଦ୍ୱାରା ପ୍ରମାଣିତ ହୋଇଛି ।

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଆମର ଉପଲବ୍ଧି, ଚିନ୍ତାରାଜି, ମତାବଳୀ, ତତ୍ତ୍ୱ ଆଦିକୁ ବସ୍ତୁଗତ ଜଗତର ପ୍ରପଞ୍ଚରାଜିର ପ୍ରତିଫଳନ ଏବଂ ପ୍ରତିରୂପ ବୋଲି ବିଚାର କରେ । ଭାବବାଦ କିନ୍ତୁ ସେପରି ବିଚାର କରେ ନାହିଁ । ଏହିସବୁ ପ୍ରତିରୂପ ପ୍ରୟୋଗ ଦ୍ୱାରା ପ୍ରମାଣିତ ହୁଏ ଏବଂ ପ୍ରକୃତ ପ୍ରତିରୂପସମୂହକୁ ମିଥ୍ୟା ପ୍ରତିରୂପଗୁଡ଼ିକଠାରୁ ପୃଥକ୍ କରାଯାଏ । ମାର୍କସ୍ ଲେଖିଛନ୍ତି, "ମଣିଷକୁ ବ୍ୟାବହାରିକ କ୍ଷେତ୍ରରେ ତା'ର ଚିନ୍ତନର ସତ୍ୟତାକୁ, ଅର୍ଥାତ୍, ବାସ୍ତବତା ଓ ଶକ୍ତିକୁ, ଇହମୁଖିତାକୁ (Diesseitigkeit) ପ୍ରମାଣ କରିବାକୁ ହେବ । ବ୍ୟବହାରଠାରୁ ବିଚ୍ଛିନ୍ନ, ଚିନ୍ତନର ବାସ୍ତବତା ଓ ଅବାସ୍ତବତା ସଂକ୍ରାନ୍ତ ପ୍ରଶ୍ନଟି ହେଉଛି ସଂପୂର୍ଣ୍ଣ ପଣ୍ଡିତସୁଲଭ ତର୍କ ।"** ପ୍ରୟୋଗ ହେଉଛି ସତ୍ୟର ମାପକାଠି, କାରଣ ଏହା ବାସ୍ତବତାର ଅବଗତି ପାଇଁ ଭିତ୍ତି ସୃଷ୍ଟି କରେ ଏବଂ ଅବଗତି ପ୍ରକ୍ରିୟାର ଫଳ ମିଳିଥାଏ ମଣିଷର ବସ୍ତୁଗତ ଏବଂ ବୈଷୟିକ କ୍ରିୟାକଳାପ ମଧ୍ୟରେ । ପ୍ରୟୋଗ ହେଉଛି ସତ୍ୟର ଏକମାତ୍ର ବସ୍ତୁଗତ ମାପକାଠି, ଯଦିଓ ଏହା ମଣିଷର ଚତୁର୍ପାର୍ଶ୍ୱସ୍ଥ

---

* ରବୀନ୍ଦ୍ରନାଥ ଠାକୁର, "*Stray Birds*", London, 1926, p. 63.

** ମାର୍କସ୍, "ଫଏରବାଖ୍‌ଙ୍କ ସଂପର୍କରେ ସନ୍ଦର୍ଭ", ପ୍ରଗତି ପ୍ରକାଶନ, ମସ୍କୋ, ୧୯୮୨, ପୃ: ୬୩ ।

ପ୍ରାକୃତିକ ତଥା ସାମାଜିକ ଜଗତ ସହିତ ପ୍ରତିଷ୍ଠିତ ଯୋଗସୂତ୍ରକୁ ଯେତେ ପରିମାଣରେ ପ୍ରକାଶ କରେ ନାହିଁ, ଯେତେ ତାହା ତା'ର ବସ୍ତୁଗତ ଭାବେ ପ୍ରତିଷ୍ଠିତ ଯୋଗସୂତ୍ରକୁ ପ୍ରକାଶ କରେ ।

ମଣିଷ ତା'ର ବାସ୍ତବ କ୍ରିୟାକଳାପସମୂହ ମଧ୍ୟରେ ନିଜ ପାଇଁ ନିର୍ଦ୍ଦିଷ୍ଟ ଲକ୍ଷ୍ୟସମୂହ ନିର୍ଦ୍ଧାରଣ କରିଥାଏ, ଯିଏକି ବାସ୍ତବତା ସହିତ ତା'ର ସଂପର୍କ ଏବଂ ତା'ର ଜ୍ଞାନକୁ ପ୍ରକାଶ କରିଥାଏ । ସେହିସବୁ ଲକ୍ଷ୍ୟରାଜିକୁ ପୂରଣ କରିବାରେ ସଫଳତା ପ୍ରମାଣ କରେ ତା ଜ୍ଞାନର ସତ୍ୟତାକୁ । ଉଦାହରଣ ସ୍ୱରୂପ, ବାଷ୍ପଚାଳିତ ଇଂଜିନ୍‌ର ଉଦ୍‌ଭାବନ ଏବଂ ଶିଳ୍ପ କ୍ଷେତ୍ରରେ ତା'ର ବ୍ୟବହାର ହେଉଛି ତାପଜାତ ଗତିକୁ ଯାନ୍ତ୍ରିକ ଗତିକୁ ପରିବର୍ତ୍ତନ କରିବାକୁ ନିୟନ୍ତ୍ରଣ କରୁଥିବା ନିୟମରାଜିର ବୈଜ୍ଞାନିକ ଜ୍ଞାନର ବସ୍ତୁଗତ ସତ୍ୟତାର ପ୍ରୟୋଗାତ୍ମକ ପ୍ରମାଣ । ଖାଦ୍ୟ ଶସ୍ୟର ଉଚ୍ଚ ଫଳନ ଏବଂ ନୂଆ ନୂଆ ପ୍ରକାର, ଜେନିଟିକ୍ ଇଂଜିନିୟରିଂରେ ନୂଆ ନୂଆ ସାଫଲ୍ୟ, ବଂଶାନୁଗତ ରୋଗସମୂହର ନିରାକରଣ କ୍ଷେତ୍ରରେ ଚିକିତ୍ସା ବିଜ୍ଞାନର ସାଫଲ୍ୟ – ଏସବୁ ବଂଶାନୁଗତତା ନିୟମ ସଂପର୍କରେ ଆଧୁନିକ ଜୈବିକ ଜ୍ଞାନର ସଠିକତାକୁ ପ୍ରମାଣ କରି ଦିଏ । ସୋଭିଏତ୍ ୟୁନିଅନ୍‌ରେ ସମାଜବାଦର ବିଜୟ ବାସ୍ତବ କ୍ଷେତ୍ରରେ ପ୍ରମାଣ କରି ଦେଇଛି ଯେ, ଏକଚେଟିଆ ପର୍ଯ୍ୟାୟ ପୁଞ୍ଜିବାଦର କ୍ରମବର୍ଦ୍ଧମାନ ଅସମ ଅର୍ଥନୈତିକ ଏବଂ ରାଜନୈତିକ ବିକାଶର ଅବସ୍ଥାରାଜି ମଧ୍ୟରେ ଗୋଟିଏ ଦେଶରେ ସମାଜବାଦକୁ ଉତ୍ତରଣ ସମ୍ଭବ – ଲେନିନ୍‌ଙ୍କର ଏହି ସିଦ୍ଧାନ୍ତ ଠିକ୍ ବୋଲି ।

ସତ୍ୟର ମାପକାଠି ହିସାବରେ ପ୍ରୟୋଗର ବିପୁଳ ଗୁରୁତ୍ୱକୁ ଲକ୍ଷ୍ୟ କଲା ବେଳେ ଆମକୁ ତା'ର ଦ୍ୱନ୍ଦ୍ୱମୂଳକ ଚରିତ୍ରକୁ ଦର୍ଶାଇବାକୁ ହେବ : ଏହି ମାପକାଠିଟି ଉଭୟ ଅନାପେକ୍ଷିକ ଏବଂ ଆପେକ୍ଷିକ । ଏହା ଅନାପେକ୍ଷିକ ସେଇ ହେତୁ ଯେ ଏହା ଭଳି ଅନ୍ୟ କୌଣସି ମାପକାଠି ନାହିଁ, ଯିଏକି ମଣିଷର ଚିନ୍ତନର ଫଳାଫଳକୁ ସତ୍ୟ ବା ମିଥ୍ୟା ବୋଲି ପ୍ରମାଣିତ କରି ପାରେ । ଏହା ମଧ୍ୟ ଅନାପେକ୍ଷିକ ଏଇଥି ପାଇଁ ଯେ ପ୍ରୟୋଗ ଅନପେକ୍ଷ ସତ୍ୟକୁ ପ୍ରମାଣ କରି ପାରେ । ପ୍ରୟୋଗ ଦ୍ୱାରା ଜ୍ଞାନ ପ୍ରମାଣିତ ହୁଏ – ଏହା କେବଳ ବସ୍ତୁନିଷ୍ଠ ଭାବେ ସତ୍ୟ ନୁହେଁ, କେତେକ ସୀମାବଦ୍ଧତା ମଧ୍ୟରେ, ମଧ୍ୟ ଅନପେକ୍ଷ ଭାବେ ସତ୍ୟ ଏବଂ ଏହି ସୀମାବଦ୍ଧତା ମଧ୍ୟରେ ତାହା ପରିବର୍ତ୍ତନ ପ୍ରତି ନମନୀୟ ନୁହେଁ । ଏଥି ସଙ୍ଗେ ସଙ୍ଗେ ଏହି ମାପକାଠିଟି ମଧ୍ୟ ଆପେକ୍ଷିକ । ଏହା ପ୍ରକାଶ ପାଇଛି, ପ୍ରଥମତଃ, ସେଥିରେ ବିଶେଷ ଏକ ଜ୍ଞାନର ସତ୍ୟତା ଏବଂ ଅସତ୍ୟତାକୁ ଏକାନ୍ତ ଭାବେ ପ୍ରମାଣ କରିବା ପାଇଁ ପ୍ରୟୋଗର ଏକ ନିର୍ଦ୍ଦିଷ୍ଟ ଏବଂ ବିଚ୍ଛିନ୍ନ କାର୍ଯ୍ୟ ସଂପୂର୍ଣ୍ଣ ଅପର୍ଯ୍ୟାପ୍ତ । ଦ୍ୱିତୀୟତଃ, ସମୟର ପ୍ରତିଟି ମୁହୂର୍ତ୍ତରେ ବସ୍ତୁକୁ ପ୍ରଭାବିତ କରିବାର ଶିଳ୍ପ-କାରିଗରୀ ଏବଂ ଗବେଷଣାଗତ ଉପାୟସମୂହର ବିକାଶର ନିର୍ଦ୍ଦିଷ୍ଟ ଐତିହାସିକ ପର୍ଯ୍ୟାୟ ଦ୍ୱାରା ପ୍ରୟୋଗ ହେଉଛି ସୀମିତ । ମାନବିକ କ୍ରିୟାକଳାପ ନିରବଚ୍ଛିନ୍ନ ଭାବେ ତା'ର ସମସ୍ତ ରୂପ ନେଇ ବିକଶିତ ହେବାରେ ଲାଗିଛି । ତେଣୁ, ସତ୍ୟର ମାପକାଠି ହିସାବରେ

ପ୍ରୟୋଗକୁ ବିଗ୍ଭର କରିବାକୁ ହେବ, ସାମଗ୍ରିକ ଭାବେ ଅବଗତି ପ୍ରକ୍ରିୟାକୁ ଏକ ନିର୍ଦ୍ଦିଷ୍ଟ-ଐତିହାସିକ କାଳରେ – ଉତ୍ପାଦନ, କାରିଗରି ଏବଂ ବୈଜ୍ଞାନିକ ଗବେଷଣାର ନିର୍ଦ୍ଦିଷ୍ଟ ସ୍ତର ଦୃଷ୍ଟିରୁ, ଏବଂ ସଂପୃକ୍ତ ସାମାଜିକ ସଂପର୍କରାଜି ଏବଂ ଲୋକଙ୍କ ସାମାଜିକ କ୍ରିୟାକଳାପରାଜି ଦୃଷ୍ଟିରୁ ।

ପ୍ରୟୋଗର ନିରବଚ୍ଛିନ୍ନ ବିକାଶ ଆମର ଜ୍ଞାନକୁ ବାଧା ଦିଏ ପରିପୂର୍ଣ୍ଣ ଏବଂ ଅପରିବର୍ତ୍ତନୀୟ ବେଦବାକ୍ୟ ହେବାକୁ । ଏଥି ସଙ୍ଗେ ସଙ୍ଗେ ସତ୍ୟର ମାପକାଠି ହିସାବରେ ପ୍ରୟୋଗର ଅନପେକ୍ଷ ଚରିତ୍ର ବସ୍ତୁନିଷ୍ଠ ଭାବେ ପ୍ରକୃତ ଜ୍ଞାନକୁ ଭ୍ରାନ୍ତି, ଭୁଲ ଏବଂ ଭିତ୍ତିହୀନ କଳ୍ପନାଠାରୁ ପୃଥକ୍ କରିବାକୁ ସମ୍ଭବ କରିଥାଏ ।

ଏବେ ଆମେ ଅବଗତି ପ୍ରକ୍ରିୟାର ଦ୍ୱନ୍ଦ୍ୱବାଦ ସଂପର୍କରେ ଆମେ ଆଲୋଚନା କରିବା ।

# ଏକାଦଶ ପରିଚ୍ଛେଦ

# ଅବଗତି ପ୍ରକ୍ରିୟାର ଦ୍ୱନ୍ଦ୍ୱବାଦ

ମଣିଷର ଚେତନାରେ ବାସ୍ତବତାର ପ୍ରତିଫଳନ ହେଉଛି ଏକ ପ୍ରକ୍ରିୟା, ଯେଉଁ ପ୍ରକ୍ରିୟା ମଧ୍ୟରେ ପ୍ରକୃତ ଜ୍ଞାନ ଜନ୍ମ ନିଏ ଏବଂ ଗଭୀର ହୁଏ । ଏହି ପ୍ରକ୍ରିୟାଟା ହେଉଛି ଜଟିଳ ଏବଂ ବିରୋଧାତ୍ମକ । ଏହା ଘଟିଥାଏ ବୌଦ୍ଧିକ ଏବଂ ବ୍ୟାବହାରିକ, ଭାବଗତ ଏବଂ ବସ୍ତୁଗତ, ଇନ୍ଦ୍ରିୟାନୁଭୂତ ଏବଂ ଯୁକ୍ତିସଂଗତର ଆନ୍ତଃକ୍ରିୟା ଦେଇ ।

## ୧ — ସତ୍ୟକୁ କିପରି ଜାଣିବାକୁ ହୁଏ

ଏକ ଦୃଷ୍ଟାନ୍ତ ଦେଇ ଆମେ ଆରମ୍ଭ କରିବା । ୧୯୩୪ ମସିହାରେ ପି. ଏ. ଚେରେଙ୍କୋଭ୍ ନାମକ ଜଣେ ତରୁଣ ସୋଭିଏତ୍ ବିଜ୍ଞାନୀ ରେଡ଼ିଅମ୍ ଗାମାରଶ୍ମି ପ୍ରଭାବରେ ବିଶୁଦ୍ଧ ତରଳ ପଦାର୍ଥର ତେଜ ଆବିଷ୍କାର କରିଥିଲେ । ଏହି ପ୍ରପଞ୍ଚଟିକୁ ଚେରେଙ୍କୋଭ୍‌ଙ୍କ ଫଳ ବୋଲି ନାମିତ କରାଯାଇଥିଲା । ଗବେଷଣା ବଳରେ ଏହି ଫଳ ଆବିଷ୍କୃତ ହୋଇଥିଲା ଏବଂ ପର୍ଯ୍ୟବେକ୍ଷଣ ଜରିଆରେ ତା'ର ଅନେକଗୁଡ଼ିଏ ଧର୍ମକୁ ନିରୂପଣ କରାଯାଇଥିଲା । ସେସବୁ ମଧ୍ୟରେ ଏହାର ପରିଷ୍କାର ଭାବେ ପ୍ରକାଶ ପାଉଥିବା ଗତିମୁଖ, ବର୍ଣ୍ଣଛଟାଗତ ଗଠନ ଏବଂ ମେରୁକରଣର ଚରିତ୍ର । ଅଭିଜ୍ଞତାଗତ ଉପାୟସମୂହକୁ ବ୍ୟବହାର କରି ନୂତନ ପ୍ରପଞ୍ଚର ସାରମର୍ମକୁ ବିଶ୍ଳେଷଣ କରିବା ଅସମ୍ଭବ । ଏଥି ପାଇଁ ଆବଶ୍ୟକ ଗବେଷଣାଲବ୍ଧ ତଥ୍ୟର ଗଭୀର ତାତ୍ତ୍ୱିକ ଅଧ୍ୟୟନ । ଚେରେଙ୍କୋଭ୍‌ଙ୍କ ଫଳ ତତ୍ତ୍ୱକୁ ବିକଶିତ କରିଥିଲେ ୧୯୩୭ ମସିହାରେ ସୋଭିଏତ୍ ଆକାଡେମିସିଆନ ଆଇ. ଯେ. ତାମ୍ମ ଏବଂ ଆଇ. ଏମ୍. ଫ୍ରାଙ୍କ୍ । ଏହି ତିନିହେଁ ୧୯୫୮ ମସିହାରେ ନୋବେଲ ପୁରସ୍କାର ଲାଭ କରିଥିଲେ । ଏହି ତତ୍ତ୍ୱ ଦର୍ଶାଇଲା ଯେ, ବର୍ଣ୍ଣଛଟା ଇଲେକ୍‌ଟ୍ରନ୍ ଦ୍ୱାରା ସୃଷ୍ଟ ହୋଇଥିଲା । ବିଦ୍ୟୁତ୍‌ସଞ୍ଚାରିତ ଏକ ଅଣୁ ଯେତେବେଳେ ଏକ ମାଧ୍ୟମ ଦେଇ ଗତି କରେ (ଶୂନ୍ୟରେ ନୁହେଁ), ଆଲୋକର ଗତିଠାରୁ ଅଧିକ ବେଗରେ, ସେତେବେଳେ ଏହି ଅଣୁ ଆଲୋକ ବିକିରଣ କରେ, ଯିଏକି ଶଙ୍କୁ ଭଳି ବିଚ୍ଛୁରିତ ହୁଏ ଏବଂ ତା'ର ଅକ୍ଷରେଖା ସେ ଅଣୁର ଗତିବେଗର ଗତିମୁଖ ସହିତ ସମାଭିମୁଖୀ ରହେ । ଶଙ୍କୁଟିର କୋଣ ନିର୍ଭର

କରେ ଅଣୁଟିର ଗତିବେଗ ଏବଂ ବିଚ୍ଛୁରିତ ରଶ୍ମିର ନିର୍ଦ୍ଦିଷ୍ଟ ଢେଉର ଦୈର୍ଘ୍ୟ ପାଇଁ ମାଧ୍ୟମର ଗତି ଦିଗର ଗୁଣକ ଉପରେ ନିର୍ଭର କରେ ।

ବହୁ ଗବେଷଣା ଦ୍ୱାରା ଚେରେଙ୍କୋଭ୍‌ଙ୍କ ଫଳସମୂହ ଏବଂ ତାମ୍ମ ଏବଂ ଫ୍ରାଙ୍କ୍‌ଙ୍କ ତତ୍ତ୍ୱ ସଂପୂର୍ଣ୍ଣ ରୂପେ ପ୍ରମାଣିତ ହୋଇଛି । ଯେହେତୁ ବିଭିନ୍ନ ମାଧ୍ୟମ ପାଇଁ ଆଲୋକ ଦିଗ ପରିବର୍ତ୍ତନର ଗୁଣକ ଭଲ ଭାବେ ଜଣା ବା ସହଜରେ ତାକୁ ମାପି ହୁଏ, ତେଣୁ ଚେରେଙ୍କୋଭ୍‌ଙ୍କ ବିଚ୍ଛୁରିତ ରଶ୍ମିର ଫଳ ଦ୍ୱାରା ଗତିବେଗକୁ ମାପିବା ସହଜ ହେଲା ଏବଂ ଦ୍ରୁତ ବେଗରେ ଗତି କରୁଥିବା ଅଣୁସମୂହର ଦିଗ ମଧ୍ୟ । ଅନେକଗୁଡ଼ିଏ ପଦ୍ଧତିର ବିକାଶ ଘଟାଯାଇଛି ଏବଂ ବିଦ୍ୟୁତ୍‌ସଞ୍ଚାରିତ ଅଣୁସମୂହକୁ ନିର୍ଣ୍ଣୟ କରିବା ପାଇଁ ବ୍ୟବହୃତ ହୋଇଛି ଚେରେଙ୍କୋଭ୍‌ଙ୍କ ଫଳ ସାହାଯ୍ୟରେ । ଏହି ଫଳକୁ ଯେଉଁ ଯନ୍ତ୍ରସବୁ ବ୍ୟବହାର କରେ, ତାକୁ କୁହାଯାଏ ଚେରେଙ୍କୋଭ୍ ଗଣକ । ବହୁବିଧ ନୂତନ ପ୍ରାଥମିକ ଅଣୁସମୂହର (ଆଣ୍ଟିପ୍ରୋଟନ୍ ଏବଂ ଅନ୍ୟାନ୍ୟ) ଆବିଷ୍କାର ଏବଂ ଅନୁଧ୍ୟାନ ଏକ ବିରାଟ ଭୂମିକା ପାଳନ କରିଥିଲା । ଚେରେଙ୍କୋଭ୍‌ଙ୍କ ବର୍ଣ୍ଣଛଟା ହେଉଛି ମହାକାଶ ରଶ୍ମିରାଶିକୁ ଅନୁଧ୍ୟାନ କରିବାରେ ଏବଂ ଉଚ୍ଚ ଶକ୍ତିସଂପନ୍ନ ଅଣୁସମୂହ ସୃଷ୍ଟି କରୁଥିବା ତ୍ୱରାନ୍ୱିତକାରକ ସଂପର୍କିତ ଗବେଷଣାରେ ଏକ ଶକ୍ତିଶାଳୀ ଯନ୍ତ୍ର । ଚେରେଙ୍କୋଭ୍‌ଙ୍କ ଗଣକଗୁଡ଼ିକୁ ପୃଥିବୀର କୃତ୍ରିମ ଉପଗ୍ରହମାନଙ୍କରେ ଏବଂ ମହାକାଶଯାନମାନଙ୍କରେ ସ୍ଥାପନ କରାଯାଇଛି ମହାକାଶର ବିକିରିତ ବିଦ୍ୟୁତ୍‌ସଞ୍ଚାରିତ ଅଣୁସମୂହ ସ୍ରୋତକୁ ଅନୁଧ୍ୟାନ କରିବାରେ ।

ମଣିଷ କିପରି ଜଗତ ସଂପର୍କରେ ଅବହିତ ହୁଏ, ସେ ସାଧାରଣ ପ୍ରକ୍ରିୟାଟିକୁ ଏହି ଉଦାହରଣଟି ଭଲ ଭାବେ ପ୍ରକାଶ କରୁଛି : "ଜୀବନ୍ତ ପ୍ରତ୍ୟକ୍ଷ ଅନୁଭୂତିରୁ ବିମୂର୍ତ୍ତ ଚିନ୍ତାକୁ ଏବଂ ଏଇଥିରୁ ପ୍ରୟୋଗକୁ—ଏହି ଭଳି ହେଉଛି ସତ୍ୟକୁ ଜାଣିବାର ଦ୍ୱନ୍ଦ୍ୱମୂଳକ ପଥ, ବସ୍ତୁଗତ ବାସ୍ତବତାକୁ ଜାଣିବାର ପଥ"* ବୋଲି ଲେନିନ୍ କହିଥିଲେ । ବ୍ୟାବହାରିକ କ୍ରିୟା ଉପରେ ପ୍ରତିଷ୍ଠିତ ମଣିଷର ଜୀବନ୍ତ ଚିନ୍ତା ମନେ ହୁଏ ଇନ୍ଦ୍ରିୟାନୁଭୂତିଜାତ ଏବଂ ଅଭିଜ୍ଞତାଜାତ ଜ୍ଞାନ ଭଳି, ପ୍ରଥମୋକ୍ତଟି ରୂପାୟିତ ହୋଇଥାଏ ବିଶେଷ ଏକ ଅବଗତ କାର୍ଯ୍ୟ ମଧ୍ୟରେ ଏବଂ ଶେଷୋକ୍ତଟି ବୈଜ୍ଞାନିକ ଗବେଷଣା ମଧ୍ୟରେ । ଜୀବନ୍ତ ଚିନ୍ତା ହେଉଛି ଜ୍ଞାନର ପ୍ରତ୍ୟକ୍ଷ ଉତ୍ସ । ଇନ୍ଦ୍ରିୟାନୁଭୂତ ତଥ୍ୟ ବିମୂର୍ତ୍ତ ଚିନ୍ତା ପର୍ଯ୍ୟାୟରେ ଅର୍ଥଲାଭ କରିଥାଏ (ବିଜ୍ଞାନ କ୍ଷେତ୍ରରେ—ତାତ୍ତ୍ୱିକ ଗବେଷଣା ପର୍ଯ୍ୟାୟରେ), ଯେଉଁଥିରେ କି ପ୍ରକୃତ ପ୍ରପଞ୍ଚର ମୌଳିକ ଦିଗଗୁଡ଼ିକ ପ୍ରତିଫଳିତ ହୋଇଥାଏ । ଅବଗତିର ଲକ୍ଷ୍ୟ ହେଉଛି ବ୍ୟାବହାରିକ କ୍ରିୟାରେ ମିଳୁଥିବା ଜ୍ଞାନକୁ ଉପଯୋଗ କରିବା ।

---

*V. I. Lenin, "Conspectus of Hegel's Book *The Science of Logic*", *Collected Works*, Vol. 38, Moscow, 1977, p. 171.

# ୨ – ଇନ୍ଦ୍ରିୟାନୁଭୂତ ଜ୍ଞାନ

ଇନ୍ଦ୍ରିୟାନୁଭୂତ ଜ୍ଞାନ ହେଉଛି ଇନ୍ଦ୍ରିୟସମୂହ ମାଧ୍ୟମରେ ବାସ୍ତବତାର ପ୍ରତିଫଳନ : ଦର୍ଶନୀୟ, ଶ୍ରବଣୀୟ, ସ୍ପର୍ଶନୀୟ, ଘ୍ରାଣ, ରସନୀୟ । ଇନ୍ଦ୍ରିୟମାନେ ହେଉଛନ୍ତି ଏକମାତ୍ର ମାଧ୍ୟମ, ଯେଉଁସବୁ ମଧ୍ୟ ଦେଇ ବାହ୍ୟ ଜଗତ ସଂପର୍କରେ ତଥ୍ୟରାଜି ଆମର ଚେତନା ମଧ୍ୟକୁ ପ୍ରବେଶ କରିଥାଏ । ଅବଗତିର ଯେକୌଣସି ପ୍ରକ୍ରିୟା ତେଣୁ ଆରମ୍ଭ ହୋଇଥାଏ ଇନ୍ଦ୍ରିୟମାନଙ୍କ ଉପରେ ଭୌତିକ ପଦାର୍ଥର କ୍ରିୟାରୁ ଜାତ ଅନୁଭବ ଦ୍ୱାରା । ଇନ୍ଦ୍ରିୟାନୁଭୂତ ଅବଗତି ତିନୋଟି ମୁଖ୍ୟ ରୂପରେ ଘଟିଥାଏ, ଇନ୍ଦ୍ରିୟାନୁଭୂତି, ପ୍ରତ୍ୟକ୍ଷ ଅନୁଭୂତି ଏବଂ ଧାରଣା କରିଆରେ । ଇନ୍ଦ୍ରିୟାନୁଭୂତ ଜ୍ଞାନ ଗୁରୁତ୍ୱପୂର୍ଣ୍ଣ, କାରଣ ଏହା ବାସ୍ତବତା ସଂପର୍କରେ ପ୍ରତ୍ୟକ୍ଷ ଜ୍ଞାନ ପ୍ରଦାନ କରେ । ସମସ୍ତ ବିଜ୍ଞାନରେ ଜ୍ଞାନର ବିକାଶ (ପ୍ରାଣୀବିଜ୍ଞାନ, ବସ୍ତୁବିଜ୍ଞାନ, ରସାୟନବିଜ୍ଞାନ, ଉଦ୍‌ଭିଦବିଜ୍ଞାନ, ଇତିହାସ, ଆଦି) ଆରମ୍ଭ ହୋଇଥାଏ ପଦାର୍ଥସମୂହର ପ୍ରତ୍ୟକ୍ଷ ଅନୁଭୂତି, ପର୍ଯ୍ୟବେକ୍ଷଣ ଓ ବର୍ଣ୍ଣନା ସହିତ । କେବଳ ପ୍ରତ୍ୟକ୍ଷ ଇନ୍ଦ୍ରିୟାନୁଭୂତିର ଭିତ୍ତିରେ ତଥ୍ୟଗତ ଜିନିଷ ସଂଗୃହୀତ ହୋଇଥାଏ, ଯିଏକି ତାତ୍ତ୍ୱିକ ସାଧାରଣୀକରଣର ମୂଳଦୁଆ ସ୍ଥାପନ କରେ, ଯିଏକି ପ୍ରକୃତି ଏବଂ ସମାଜର ନିୟମାବଳୀକୁ ଆବିଷ୍କାର କରିବାରେ ସହାୟକ ହୁଏ । ଠିକ୍ ଏହି ଭଳି ପ୍ରତ୍ୟକ୍ଷ ଇନ୍ଦ୍ରିୟାନୁଭୂତିସକଳ ହେଉଛନ୍ତି ବାଲ୍ୟାବସ୍ଥାରୁ ଆରମ୍ଭ କରି ମଣିଷର ବ୍ୟକ୍ତିକ ବିକାଶରେ ବାହ୍ୟଜଗତ ସଂପର୍କରେ ତଥ୍ୟର ପ୍ରାଥମିକ ଉତ୍ସ ।

ଇନ୍ଦ୍ରିୟାନୁଭୂତ ଜ୍ଞାନ ନେଇ ଚର୍ଚ୍ଚା କରିବାକୁ ଗଲବେଳେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଏହି ବିଶ୍ୱାସରୁ ଗତି କରେ ଯେ, ଇନ୍ଦ୍ରିୟାନୁଭୂତି ଏବଂ ଭାବ ପ୍ରକାଶ ହେଉଛି ବସ୍ତୁଗତ ଜଗତର ଭାବଗତ ପ୍ରତିଛବି । ଅର୍ଥାତ୍, ଇନ୍ଦ୍ରିୟାନୁଭୂତିସମୂହର ମୂଳ ଉତ୍ସଟା କର୍ତ୍ତାର ବାହାରେ ଅବସ୍ଥିତ । ପ୍ରତ୍ୟକ୍ଷ ଅନୁଭୂତି ଚତୁର୍ପାର୍ଶ୍ୱସ୍ଥ ଜଗତରେ ଥିବା ପଦାର୍ଥରାଜିର ଧର୍ମସମୂହକୁ ପ୍ରତିଫଳିତ କରିଥାଏ ଏବଂ ଯେହେତୁ ଅବଗତି ହେଉଛି ବାସ୍ତବତାକୁ ପ୍ରତିଫଳିତ କରିବାରେ କର୍ତ୍ତାର କ୍ରିୟାକଳାପ, ଏଥିରେ ଭାବଗତତାର ଏକ ଉପାଦାନ ରହିଥାଏ । ଇନ୍ଦ୍ରିୟାନୁଭୂତିସମୂହର ଭାବଗତ ଚରିତ୍ର ପ୍ରକାଶିତ ହୋଇଥାଏ ଏଇ ଜିନିଷଟିରେ ଯେ ଏକ ପ୍ରତିବିମ୍ବ, ଯେହେତୁ ଏହା ଏକ ପ୍ରତିଫଳନ, ତା'ର ନିର୍ଦ୍ଦିଷ୍ଟ ଶାରୀରିକ ଏବଂ ଭୌତିକ ଗଢ଼ଣ, ଜୀବନର ଅଭିଜ୍ଞତା, ମାନସିକ ଗଠନ ଯୁକ୍ତବିଶେଷ ଏକ ଐତିହାସିକ ବ୍ୟକ୍ତିର ବାହାରେ ତିଷ୍ଠି ପାରେ ନାହିଁ । ସାମଗ୍ରିକ ଭାବେ ଜୀବାଙ୍ଗର ଅବସ୍ଥା ଉପରେ ଇନ୍ଦ୍ରିୟାନୁଭୂତି ବିଶ୍ଳେଷିତ ଭାବେ ନିର୍ଭର କରେ । ଏକ ଅସୁସ୍ଥ ଲୋକକୁ ମହୁ ପିତା ଲଗେ । ଲୋକେ ରଙ୍ଗକୁ ଭିନ୍ନ ଭିନ୍ନ ଭାବେ ଦେଖିଥାନ୍ତି । ପୃଥିବୀରେ ୧୩ କୋଟି ଲୋକ ରଙ୍ଗ କ'ଣ ବାରି ପାରନ୍ତି ନାହିଁ । ଇନ୍ଦ୍ରିୟ ଦ୍ୱାରା ଅନୁଭବତାର ଭାବଗତତା କେବଳ ରୋଗ ନିର୍ଣ୍ଣୟ ବିଦ୍ୟା ସହିତ ସଂପୃକ୍ତ ନୁହେଁ । ଆମର ଅନୁଭୂତିଜାତ ପ୍ରତିବିମ୍ବସମୂହ ଭାବଗତ,

କାରଣ ସେସବୁ ପଦାର୍ଥସମୂହ ସହିତ, ସେସବୁର ଧର୍ମରାଶି ଏବଂ ସଂପର୍କାବଳୀ ସହିତ ସଂପୂର୍ଣ୍ଣ ସାଦୃଶ୍ୟ ନୁହନ୍ତି । କାରଣ ସେସବୁ ହେଉଛନ୍ତି ଆମ ମନରେ ସୃଷ୍ଟ ବାସ୍ତବତାର ଆଦର୍ଶଗତ ରୂପ ।

ମଣିଷର ଇନ୍ଦ୍ରିୟାନୁଭୂତ ପ୍ରତ୍ୟକ୍ଷ ଜ୍ଞାନ ବିକାଶ ଲାଭ କରେ ଜଗତ ଉପରେ ତା'ର ବ୍ୟାବହାରିକ ପ୍ରଭାବ ଦ୍ୱାରା । ତା'ର ଏହି ପ୍ରଭାବ ବିସ୍ତାର କରିବାକୁ ଯାଇ ସେ ଯେଉଁସବୁ ଯନ୍ତ୍ରପାତି ହତିଆର ବ୍ୟବହାର କଲା ବେଳେ ମଣିଷ ମଧ୍ୟ ଏଭଳି ପ୍ରପଞ୍ଚସମୂହକୁ ଦେଖି ପାରେ, ଯାହାକୁ ମଣିଷ ତା'ର ଇନ୍ଦ୍ରିୟମାନଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବେ ଦେଖି ପାରେ ନାହିଁ (ଇନଫ୍ରା-ଲାଲ ଏବଂ ରୋଏଣ୍ଟଗେନ୍ ରଶ୍ମି, ଅଲଟ୍ରା ଶବ୍ଦ, ଚୁମ୍ବକୀୟ ପ୍ରପଞ୍ଚ, ଆଦି) ।

ଅଜ୍ଞେୟବାଦୀମାନେ ଇନ୍ଦ୍ରିୟାନୁଭୂତିକୁ ମନୋଗତ ବୋଲି ବିଚାରିଥାନ୍ତି ଏଇ କାରଣରୁ ଯେ, ସେମାନେ ମନେ କରନ୍ତି, ଏହି ଇନ୍ଦ୍ରିୟାନୁଭୂତି ବଳରେ ଜଗତକୁ ଅବଗତ ହେବାଟା ଅସମ୍ଭବ । ସେମାନେ କହନ୍ତି, ଇନ୍ଦ୍ରିୟାନୁଭୂତି ହେଉଛି ପଦାର୍ଥସମୂହର କେବଳ ପ୍ରତୀକ ବା ସଂକେତ ମାତ୍ର, ସେସବୁର ପ୍ରତିଛବି ନୁହଁ । ବେଳେ ବେଳେ, ଅବଶ୍ୟ, ଇନ୍ଦ୍ରିୟାନୁଭୂତ ଜ୍ଞାନ ଭ୍ରାନ୍ତ ହୋଇଥାଏ ପ୍ରତ୍ୟକ୍ଷାନୁଭୂତିର ମନୋଗତ ଚରିତ୍ର ହେତୁ । ଦୃଷ୍ଟାନ୍ତ ସ୍ୱରୂପ, ଦେଖିବାରେ ଭୁଲ ହେତୁ ଦୌଡ଼ିକୁ ଆମେ ସାପ ବୋଲି ବା ଶାମୁକାକୁ ରୂପା ପଇସା ବୋଲି ଭାବି ନେଇଥାଏ । ଏହା ଅର୍ଥ କ'ଣ, ତେବେ, ଆମେ ଆମ ଇନ୍ଦ୍ରିୟାନୁଭୂତିକୁ ସର୍ବଦା ଅବିଶ୍ୱାସ କରିବା ଏବଂ ସେସବୁକୁ ଏକ ପ୍ରକାରର ଚିତ୍ରାକ୍ଷର ବା ସଂକେତ ବୋଲି ନିର୍ଦ୍ଧାରଣ କରିବା, ଯେଉଁଥି ପାଇଁ ବିଶେଷ ଧରଣର ପାଠୋଦ୍ଧାର କୌଶଳ ଦରକାର ପଡ଼ିବ ।

ସଂକେତ ଏବଂ ପ୍ରତିବିମ୍ବ ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ଜ୍ଞାନତତ୍ତ୍ୱଗତ ପାର୍ଥକ୍ୟ ରହିଛି । ଯେକୌଣସି ପଦାର୍ଥ ଏକ ସଂକେତ ବା ଇଙ୍ଗିତ ହୋଇ ପାରେ, ଯଦି ତାହା କୌଣସି ଅର୍ଥବହ ହୁଏ । ସଂକେତସକଳ ହେଉଛନ୍ତି ପରମ୍ପରା ଏବଂ ରାଜିନାମାର ଫଳ ସ୍ୱରୂପ । ସଂକେତକୁ ଭାଗ ଭାଗ କରାଯାଇ ପାରେ ନିର୍ଦ୍ଦେଶକ (ବୈଶିଷ୍ଟ୍ୟସମୂହ, ଯନ୍ତ୍ରାଧ୍ୟୟନ) ଆଇକୋନିକ୍ ଚିହ୍ନସମୂହ (ନକସା, ଅଙ୍କନ), ପ୍ରତୀକ (ରାଷ୍ଟ୍ରପ୍ରତୀକ, କୌଳିକ ଚିହ୍ନ), ଭାଷାଗତ ସଂକେତ (ପ୍ରାକୃତିକ ଏବଂ କୃତ୍ରିମ ଭାଷାସମୂହ) । ତେଣୁ ସଂକେତ ପାରମ୍ପରିକ ଚରିତ୍ର ସଂପନ୍ନ ହେଲା ବେଳେ ପ୍ରତିବିମ୍ବ ସୃଷ୍ଟି ହୋଇଥାଏ ପ୍ରତିଫଳନ ଦ୍ୱାରା । ପ୍ରତିବିମ୍ବ ତେଣୁ ସର୍ବଦା କେତେକ ପରିମାଣରେ ପ୍ରତିଫଳିତ ବସ୍ତୁ ସହିତ ସାଦୃଶ୍ୟପୂର୍ଣ୍ଣ । ସଂକେତରେ ସାଧାରଣତଃ ଏହିଭଳି ଏକ ସାଦୃଶ୍ୟ ରହି ନଥାଏ । ପ୍ରତିବିମ୍ବ କଥା କହିବାକୁ ଗଲାବେଳେ ଧରି ନେବାକୁ ହୁଏ ଯେ, ଏହା ଯେଉଁ ପଦାର୍ଥଟିକୁ ପ୍ରତିଫଳିତ କରୁଛି, ତା'ର ଅବସ୍ଥିତି ଅଛି, ସଂକେତ କିନ୍ତୁ ଏଭଳି କିଛିକୁ ପ୍ରକାଶ କରେ ଯାର ଅବସ୍ଥିତି ନଥାଇ ପାରେ । ଶେଷତଃ, ପ୍ରତିବିମ୍ବ ବସ୍ତୁ ସଂପର୍କରେ ତଥ୍ୟ ବହନ କଲାବେଳେ, ସଂକେତ କିନ୍ତୁ ତା ସଂପର୍କରେ ପ୍ରତ୍ୟକ୍ଷ ତଥ୍ୟ ପ୍ରଦାନ କରେ ନାହିଁ । ତେଣୁ

କରି ପ୍ରାଚୀନ ଲୋକମାନଙ୍କ ଦ୍ୱାରା ବ୍ୟବହୃତ ଲିଖିତ ଚରିତ୍ରଗୁଡ଼ିକୁ ଭାଷାରେ ପ୍ରକାଶ କରିବା ଏତେ କଷ୍ଟକର ହୁଏ, ଯେଉଁମାନଙ୍କ ଭାଷା ସଂପର୍କରେ ବିଜ୍ଞାନ ଜାଣେ ନାହିଁ ।

ଏଥିରୁ ଏଇ କଥାରେ ଉପନୀତ ହେବାକୁ ପଡ଼େ ଯେ, ଇନ୍ଦ୍ରିୟାନୁଭୂତ ପ୍ରତ୍ୟକ୍ଷ ଜ୍ଞାନକୁ ସଂକେତ ବୋଲି ବିଚାର କରିବା – ଯିଏକି ତଥାକଥିତ "ଚିତ୍ରାକ୍ଷର ତତ୍ତ୍ୱର" ପ୍ରବର୍ତ୍ତକମାନଙ୍କ ପକ୍ଷରେ ବୈଶିଷ୍ଟ୍ୟମୂଳକ (ଅଥବା ଇନ୍ଦ୍ରିୟାନୁଭୂତିସକଳର ପ୍ରତୀକ ତତ୍ତ୍ୱ) – ଏହାର ଅର୍ଥ ହେଉଛି ଅଜ୍ଞେୟବାଦୀମାନଙ୍କ ଆସ୍ଥାକୁ ଗ୍ରହଣ କରିବା ଇନ୍ଦ୍ରିୟାନୁଭୂତିର ଭାବଗତତା ଏ କଥାକୁ ଅସ୍ୱୀକାର କରେ ନାହିଁ ଯେ, ସେସବୁ ଉତ୍ପତ୍ତି ଏବଂ ଆଧେୟ, ଉଭୟ ଦୃଷ୍ଟିରୁ ବସ୍ତୁଗତ ଏବଂ ଅଳ୍ପ ବହୁତ ସଠିକ ଭାବେ ସେସବୁ ପଦାର୍ଥରାଜି ଏବଂ ସେସବୁର ଧର୍ମରାଶିକୁ ପ୍ରତିଫଳିତ କରେ । ମଣିଷର ଇନ୍ଦ୍ରିୟାନୁଭୂତିରେ ସେଇସବୁ କଥା ଥାଏ, ଯିଏକି ତା'ର ଅବଗତିର ବାହାରେ ଚତୁର୍ପାର୍ଶ୍ୱସ୍ଥ ଜଗତରେ ବାସ୍ତବରେ ରହିଥାଏ । ଇନ୍ଦ୍ରିୟାନୁଭୂତ ପ୍ରତିଫଳନସବୁ ବସ୍ତୁଗତ ବାସ୍ତବତାଠାରୁ ଅଳ୍ପ ଭାବଗତ ଏବଂ ଅଧିକ ଉପଯୁକ୍ତ ହୁଏ ବିଭିନ୍ନ ଧରଣର ଇନ୍ଦ୍ରିୟାନୁଭୂତି, ପ୍ରତ୍ୟକ୍ଷ ଜ୍ଞାନ ଏବଂ ଚିନ୍ତନର ଆନ୍ତଃପ୍ରକ୍ରିୟା ଏବଂ ମଣିଷର ବ୍ୟାବହାରିକ କ୍ରିୟାକଳାପ ସହିତ ।

ଇନ୍ଦ୍ରିୟାନୁଭୂତି ତେଣୁ ପଦାର୍ଥର ସ୍ୱେଚ୍ଛାଚାରୀ ସଂକେତ ନହୋଇ ତା'ର ପ୍ରତିବିମ୍ବ ହୋଇଥାଏ । ଅଜ୍ଞେୟବାଦ ପ୍ରତି ଇନ୍ଦ୍ରିୟାନୁଭୂତିର ସଂକେତ ତତ୍ତ୍ୱର ଆଭିମୁଖ୍ୟକୁ ସମାଲୋଚନା କଲାବେଳେ ଅବଗତି ପ୍ରକ୍ରିୟାରେ ସଂକେତର ଭୂମିକାକୁ ଅବଜ୍ଞା କରିବା ମଧ୍ୟ ଭୁଲ । ଆଜିକାଲି ବୈଜ୍ଞାନିକ ବିମୂର୍ତ୍ତ ଚିନ୍ତାର କାର୍ଯ୍ୟକାରଣୀ ପାଇଁ ସଂକେତସବୁ ଅପରିହାର୍ଯ୍ୟ । ଦୃଷ୍ଟାନ୍ତ ସ୍ୱରୂପ, ଚେରେଙ୍କୋଭ୍ ଫଳାଫଳର ସାରମର୍ମକୁ ବ୍ୟାଖ୍ୟା କରି ହେବ କେବଳ ପଦାର୍ଥବିଦ୍ୟାର ଗବେଷଣା କ୍ଷେତ୍ରରେ ଗାଣିତିକ ଗଣନାକୁ ପ୍ରୟୋଗ କଲେ ।

## ୩ – ବିମୂର୍ତ୍ତ କଳ୍ପନାର ଭୂମିକା

ବିମୂର୍ତ୍ତ ଚିନ୍ତନ ପର୍ଯ୍ୟାୟରେ ଅବଗତିର ବୈଶିଷ୍ଟ୍ୟସକଳ ତେବେ କ'ଣ ? ପୃଥକ୍ ପୃଥକ୍ ପଦାର୍ଥ ତଥା ସେସବୁର ଧର୍ମ ସଂପର୍କରେ ଇନ୍ଦ୍ରିୟାନୁଭୂତ ପ୍ରତ୍ୟକ୍ଷ ଜ୍ଞାନ ପ୍ରକାଶକରଣରେ ସେସବୁର ପୁନଃସୃଷ୍ଟି, ଏ ବସ୍ତୁଗତ ଜଗତକୁ ଜାଣିବା ପାଇଁ ତଥାପି ବି ଯଥେଷ୍ଟ ନୁହେଁ । ଇନ୍ଦ୍ରିୟାନୁଭୂତ ଜ୍ଞାନ ଗୋଟିଏ ଅର୍ଥରେ ସୀମିତ : ଏହା ଏକ ସମାହାର ଅନ୍ତର୍ଗତ ପଦାର୍ଥରାଜିର ଗୁରୁତ୍ୱପୂର୍ଣ୍ଣ ଏବଂ ଅଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟଗୁଡ଼ିକୁ ପ୍ରତିଫଳିତ କରିଥାଏ ; ଏହା ସେହିସବୁ ଜିନିଷକୁ ପରିବେଷ୍ଟିତ କରିଥାଏ, ଯେଉଁସବୁ ଲୋକେ ପ୍ରତ୍ୟକ୍ଷ ଭାବେ ଦେଖିଥାନ୍ତି ଏବଂ ଏହା ସାଧାରଣକୁ ପ୍ରତିଫଳିତ ନକରି ନିର୍ଦ୍ଦିଷ୍ଟକୁ ପ୍ରତିଫଳିତ

କରିଥାଏ । ସାଧାରଣ ଯୋଗସୂତ୍ରଗୁଡ଼ିକୁ ଏବଂ ସାଦୃଶ୍ୟତାସକଳକୁ ଆବିଷ୍କାର କରିବା ପାଇଁ ଚିନ୍ତନର କ୍ରିୟାକଳାପ ଆବଶ୍ୟକ । ଚିନ୍ତନ ଜରିଆରେ ହିଁ ପଦାର୍ଥରାଜିର ବାହ୍ୟିକ ଧର୍ମସମୂହର ପ୍ରତିଫଳନରୁ ପ୍ରପଞ୍ଚରାଜି, ସେସବୁର ସାରମର୍ମ ଏବଂ ସାଦୃଶ୍ୟତା ମଧ୍ୟରେ ଆଭ୍ୟନ୍ତରୀଣ ଏବଂ ସାଧାରଣ ଯୋଗସୂତ୍ରଗୁଡ଼ିକର ଅବଗତିକୁ ଉତ୍ତରଣ ଘଟିଥାଏ । ଇନ୍ଦ୍ରିୟାନୁଭୂତ ଅବଗତି ହେଉଛି ପ୍ରତ୍ୟକ୍ଷ ପ୍ରତିଫଳନ ଏବଂ ଚିନ୍ତନ ହେଉଛି ଅପ୍ରତ୍ୟକ୍ଷ, ମଧ୍ୟସ୍ଥ ଅବଗତି । ଅନ୍ୟ କଥାରେ, ଇନ୍ଦ୍ରିୟାନୁଭୂତ ପ୍ରତ୍ୟକ୍ଷ ଜ୍ଞାନସମୂହ ହେଉଛି ଚିନ୍ତନ ଏବଂ ବସ୍ତୁଗତ ବାସ୍ତବତା ମଧ୍ୟରେ ଅନ୍ତର୍ବର୍ତ୍ତୀ ଯୋଗସୂତ୍ର । ଏହା ଛଡ଼ା, ମଣିଷ ବହୁ ପ୍ରପଞ୍ଚକୁ ଜାଣି ପାରେ ଅନ୍ୟ ଲୋକଙ୍କ ସହିତ ଭାବ ବିନିମୟ କରି, ସେମାନଙ୍କ ଜ୍ଞାନ ଏବଂ ଅଭିଜ୍ଞତାକୁ ଭାଷା ଜରିଆରେ ଆତ୍ମସ୍ଥ କରି । ବିମୂର୍ତ୍ତ ଚିନ୍ତନ ନିବିଡ଼ ଭାବେ ଭାଷା ଏବଂ କଥା ସହିତ ସଂଯୁକ୍ତ ଏବଂ ସେସବୁ ବିନା ତିଷ୍ଠି ପାରେ ନାହିଁ । ଚିନ୍ତନ ହେଉଛି ଅପ୍ରତ୍ୟକ୍ଷ ଅବଗତି ଏବଂ ଅବଗତି ମଧ୍ୟ ଏଠାରେ ଗୋଟିଏ ଅର୍ଥରେ ଯୁକ୍ତିସଂଗତ ସିଦ୍ଧାନ୍ତ ଦ୍ୱାରା ସମ୍ଭବ ହୋଇଥାଏ ।

ମଣିଷର ଚିନ୍ତନ କେବଳ ଅପ୍ରତ୍ୟକ୍ଷ ନୁହେଁ; ଏହା ମଧ୍ୟ ବାସ୍ତବତାର ବିମୂର୍ତ୍ତ ଏବଂ ସାଧାରଣୀକୃତ ପ୍ରତିଫଳନ । ଯେଉଁ ପ୍ରକ୍ରିୟା ଦ୍ୱାରା କୌଣସି ଏକ ପଦାର୍ଥର କେତେକ ଧର୍ମ ଏବଂ ସେସବୁ ମଧ୍ୟରେ ଯୋଗସୂତ୍ର ବର୍ଜିତ ହୁଏ ଏବଂ ଆମେ ଯେଉଁ ଧର୍ମ ଆଉ ଯୋଗସୂତ୍ର ସହିତ ସଂପୃକ୍ତ, ସେଗୁଡ଼ିକୁ ଅନ୍ୟସବୁଠାରୁ ପୃଥକ୍ କରି ଦେଖାଯାଏ, ବା ଚିହ୍ନିତ କରାଯାଏ, ତାକୁ କୁହାଯାଏ ବିମୂର୍ତ୍ତକରଣ । ମଣିଷର ଚିନ୍ତନ ହେଉଛି ବିମୂର୍ତ୍ତ, କାରଣ ବିମୂର୍ତ୍ତକରଣ ଦ୍ୱାରା ବିକଶିତ ଅବଧାରଣା ସାହାଯ୍ୟରେ ଏହା କାର୍ଯ୍ୟ କରେ । ଯେକୌଣସି ବିମୂର୍ତ୍ତକରଣରେ ମଧ୍ୟ କେତେକ ସାଧାରଣୀକରଣ ଥାଏ । ଚିହ୍ନିତକରଣର ବିମୂର୍ତ୍ତକରଣ, ଦୃଷ୍ଟାନ୍ତ ସ୍ୱରୂପ, ସାହାଯ୍ୟ କରିଥାଏ କେତେକ ଅବଧାରଣାର ଗଠନ ପାଇଁ, ଯଥା, 'ମଣିଷ', 'ପଶୁ', 'ପଣ୍ୟ', 'ବିପ୍ଳବ', 'ସମାଜବାଦ' ଏବଂ 'ପୁଞ୍ଜିବାଦ', ଆଦି । ବିଚ୍ଛିନ୍ନକରଣର ବିମୂର୍ତ୍ତକରଣ କେତେକ ଅବଧାରଣାର ଭିତ୍ତି ଗଠନ କରିଥାଏ, ଯଥା 'କଠିନତା', 'ସଫେଦତା', 'ଦୟା', 'ନିଷ୍ଠୁରତା', 'ଗଣତନ୍ତ୍ର' ଏବଂ ଅନ୍ୟାନ୍ୟ । ଯେତେବେଳେ କୌଣସି ଏକ ପଦାର୍ଥକୁ ତା'ର 'ବିଶୁଦ୍ଧ ରୂପ': 'ଏକ ବିନ୍ଦୁ' (ଯଥା, କୌଣସି ପ୍ରସାରଣ ବ୍ୟତୀତ ଏକ ପଦାର୍ଥ), 'ରେଖା', 'ଆଦର୍ଶ ଗ୍ୟାସ', 'ଆଦର୍ଶଜନକ ନମନୀୟ ପଦାର୍ଥ', ଆଦି ହିସାବରେ ଗ୍ରହଣ କରାଯାଏ ବିଜ୍ଞାନସିଦ୍ଧ ଜ୍ଞାନରେ ତଥାକଥିତ ଆଦର୍ଶକରଣ କଥାଟି ଅନେକ ସମୟ ବ୍ୟବହୃତ ହୋଇଥାଏ । ଆଉରି କେତେକ ଧରଣର ବିମୂର୍ତ୍ତକରଣ ମଧ୍ୟ ରହିଛି । ବିମୂର୍ତ୍ତକରଣ ଏବଂ ସାଧାରଣୀକରଣର ପ୍ରକ୍ରିୟାଟି ବିଶ୍ଳେଷଣ ଏବଂ ସମନ୍ୱୟର ମାନସିକ କ୍ରିୟା ଉପରେ ପ୍ରତିଷ୍ଠିତ । ବିଶ୍ଳେଷଣଟି ହେଉଛି ଏକ ଅଖଣ୍ଡ ବସ୍ତୁକୁ ବିଭିନ୍ନ ଅଂଶରେ – ଧର୍ମ ଏବଂ ଦିଗସମୂହର ବି ଯୁକ୍ତିକରଣ ଏବଂ ମନରେ ତା'ର ବିଭିନ୍ନ ବୈଶିଷ୍ଟ୍ୟରାଜିର ପୃଥକ୍‌କରଣ । ସମନ୍ୱୟଟି ହେଉଛି ନିର୍ଦ୍ଦିଷ୍ଟ ପଦାର୍ଥଟିର ଉପାଦାନ ଏବଂ ଧର୍ମସମୂହର ମାନସିକ ଭାବେ ଏକତ୍ରୀକରଣ ।

# ୪ – ଯୁକ୍ତିମୂଳକ ଜ୍ଞାନର ବିଭିନ୍ନ ରୂପ

ବିମୂର୍ତ୍ତ ବା ଯୁକ୍ତିସଂଗତ ଚିନ୍ତାର ମୁଖ୍ୟ ରୂପଗୁଡ଼ିକ ହେଉଛି ଅବଧାରଣା, ବିଗ୍ରହ ଏବଂ ସିଦ୍ଧାନ୍ତ । ଅବଧାରଣାସମୂହ ବସ୍ତୁରାଜି ଏବଂ ପ୍ରପଞ୍ଚସମୂହର ସାରମର୍ମ ଏବଂ ସାଧାରଣକୁ ପ୍ରତିଫଳିତ କରିଥାଏ । ସାମାଜିକ ଏବଂ ଐତିହାସିକ ବାସ୍ତବତାର ଭିତ୍ତି ଉପରେ ଅବଧାରଣାସମୂହ ସୃଷ୍ଟି ହୋଇଥାଏ । ବସ୍ତୁସମୂହ ମୌଳିକ ବୈଶିଷ୍ଟ୍ୟ ତଥା ଧର୍ମରାଶି ଏବଂ ମଣିଷର ବାସ୍ତବ କ୍ରିୟାକଳାପର ବାରମ୍ବାର ଅନୁବର୍ତ୍ତନ ଫଳରେ ସେସବୁ ମଣିଷର ଚେତନାରେ ଦୃଢ଼ୀଭୂତ ହୁଏ ଏବଂ ଅବଧାରଣା ରୂପେ ସ୍ଥିର ହୋଇ ଯାଏ । ଜନସାଧାରଣଙ୍କର ନିର୍ଦ୍ଦିଷ୍ଟ ଐତିହାସିକ ପ୍ରୟୋଗର ଚରିତ୍ର ଏହିସବୁ ଅବଧାରଣାର ଆଧେୟକୁ ନିର୍ଦ୍ଧାରଣ କରିଥାଏ । ଦୃଷ୍ଟାନ୍ତ ସ୍ୱରୂପ, ଉତ୍ତରାଞ୍ଚଳର ଲୋକଙ୍କ ଭାଷାରେ ବିଭିନ୍ନ ପ୍ରକାରର ବରଫକୁ ଚିହ୍ନାଇବା ପାଇଁ ୪୦ଟି ଶବ୍ଦ ଥିଲା ବେଳେ ଦକ୍ଷିଣାଞ୍ଚଳ ଲୋକଙ୍କର ଥିବା ସେଇ ସମାନ ଅବଧାରଣାଟିର ଏତେ ଶବ୍ଦ ନାହିଁ । ସାମାଜିକ ପ୍ରୟୋଗରେ ପରିବର୍ତ୍ତନ ଏବଂ ଅବଗତି ପ୍ରକ୍ରିୟାର ଗଭୀରତା ବଢ଼ିବା ସଙ୍ଗେ ସଙ୍ଗେ ଅବଧାରଣାସମୂହର ଆଧେୟ ଆଉରି ସମୃଦ୍ଧ ହୁଏ । ଏହା ଘଟିଥାଏ ବସ୍ତୁ, ପରମାଣୁ, ଆଦି କ୍ଷେତ୍ରରେ । ଯେଉଁସବୁ ନୂତନ ଅବଧାରଣା ମଣିଷ ଜାତିର ବ୍ୟାବହାରିକ ଏବଂ ଅବଗତିମୂଳକ ଫଳରାଶିକୁ ପ୍ରକାଶ କରିଥାଏ, ସେସବୁ ସମାଜରେ ଦିବାଲୋକକୁ ଦେଖି ପାରିଥାଏ । ଆଧୁନିକ ମଣିଷ ଆତ୍ମସ୍ଥ କରିଥିବା ଅବଧାରଣାଗୁଡ଼ିକ ମଧ୍ୟରେ ଅଛି, 'ଉପଗ୍ରହ', 'ତ୍ୱରାନ୍ୱିତକରଣ', 'ନବଉପନିବେଶବାଦ', 'ସାମରିକଶିଳ୍ପଗତ ସମାହାର', 'ପରମାଣବିକ ଯୁଦ୍ଧ', 'ମୁଦ୍ରାସ୍ଫୀତି', 'ଦେତାଁତ', 'ପ୍ରତିଷ୍ଠିତ ସମାଜବାଦ', 'ସମାଜବାଦୀ ଆଭିମୁଖୀତା', 'ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ', 'ବିରୋଧୀ ଅଣୁରାଶି', 'ଜେନେ', 'କ୍ୱାସାରସ୍', 'ସବୁଜ ବିପ୍ଳବ', 'ଆବହମଣ୍ଡଳୀୟ ସଂକଟ', ଆଦି । ବାସ୍ତବତାର ଏକ ଅକୃତ୍ରିମ ଏବଂ ଫଳପ୍ରଦ ପ୍ରତିଫଳନ ଆବଶ୍ୟକ କରେ, ପ୍ରତିଟି ଲୋକ ବୈଜ୍ଞାନିକ ଅବଧାରଣାକୁ ଆୟତ୍ତ କରୁ ଏବଂ ସେସବୁ ମଧ୍ୟରେ ଥିବା ଯୋଗସୂତ୍ରଗୁଡ଼ିକୁ ଆବିଷ୍କାର କରୁ, ଯିଏ ସାମାଜିକ-ଐତିହାସିକ ପ୍ରୟୋଗରେ ପରିବର୍ତ୍ତନ ଆଣିଥାଏ ।

ଅବଧାରଣାଗୁଡ଼ିକ ଯଦିଓ ବିମୂର୍ତ୍ତ ଚିନ୍ତାର ଅତୀବ ଗୁରୁତ୍ୱପୂର୍ଣ୍ଣ ଉପାଦାନ, ତେବେ ଯୁକ୍ତିସଂଗତ ଅବଗତି ପୃଥକ୍ ଏବଂ ବିଚ୍ଛିନ୍ନ ଅବଧାରଣା ଦେଇ ଗତି କରେ ନାହିଁ । ପଦାର୍ଥସମୂହର ବସ୍ତୁଗତ ଯୋଗସୂତ୍ର ଏବଂ ଧର୍ମସମୂହକୁ ପ୍ରତିଫଳିତ କରୁଥିବା ମାନସିକ ଏବଂ ବୌଦ୍ଧିକ ପ୍ରକ୍ରିୟା କେବଳ ବିଭିନ୍ନ ଅବଧାରଣା ମଧ୍ୟରେ ଯୋଗସୂତ୍ରଗୁଡ଼ିକ ମଧ୍ୟ ଦେଇ ଗତି କରିଥାଏ । ଚିନ୍ତା କରିବା ଅର୍ଥ ହେଉଛି ସର୍ବୋପରି ପଦାର୍ଥସମୂହ ସଂପର୍କରେ, ପ୍ରପଞ୍ଚ ଏବଂ ସେସବୁର ଧର୍ମରାଶି ସଂପର୍କରେ ଏବଂ ବସ୍ତୁ ବସ୍ତୁ ମଧ୍ୟରେ ଯୋଗସୂତ୍ର ସଂପର୍କରେ ମୌଖିକ ଭାବେ, ଲିଖିତ ଭାବେ ବା ଭାଷାହୀନ ଚିନ୍ତା କରିଆରେ ବିଗ୍ରହ

ବିବେଚନାକୁ ପ୍ରକାଶ କରିବାକୁ ବୁଝାଏ । ବିଗ୍ରର ବିବେଚନା ହେଉଛି ଏକ ଚିନ୍ତା, ଯିଏକି କୌଣସି ଏକ ବସ୍ତୁ ସଂପର୍କରେ କେତେକ ଜିନିଷକୁ ସ୍ୱୀକାର କରେ ବା ଅସ୍ୱୀକାର କରେ । ବିଗ୍ରରସମୂହ ହେଉଛି ଚିନ୍ତନର ଏକ ଗୁରୁତ୍ୱପୂର୍ଣ୍ଣ ରୂପ, ସେସବୁ ବସ୍ତୁଗତ ଜଗତର, ସମସ୍ତ ବୈଜ୍ଞାନିକ ଅବସ୍ଥାନର ନିୟମରାଶିକୁ ପ୍ରକାଶ କରେ । ବିଗ୍ରର ମଧ୍ୟରେ ଅବଧାରଣାଗୁଡ଼ିକ ମଧ୍ୟ ପ୍ରକାଶ ପାଇଥାଏ । ଅବଧାରଣା ସମେତ ବିଗ୍ରର ପଦାର୍ଥସମୂହର ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ଏବଂ ସେସବୁ ମଧ୍ୟରେ ଥିବା ଯୋଗସୂତ୍ରକୁ ପ୍ରତିଫଳିତ କରିଥାଏ । ଏହା କିନ୍ତୁ ସେସବୁ ଯୋଗସୂତ୍ରକୁ ପ୍ରକାଶ କରିଥାଏ ଏକ ବିଶ୍ଳେଷଣାତ୍ମକ ଏବଂ ସଂପ୍ରସାରିତ ରୂପରେ । "ପରମାଣୁ ହେଉଛି ଅଫୁରନ୍ତ", "ଗାଈ ହେଉଛି ଏକ ପବିତ୍ର ପଶୁ" ହେଉଛି ବିଗ୍ରରରାଜି, ଯିଏକି ଅନ୍ୟ ଅବଧାରଣା ଜରିଆରେ କେତେକ ଅବଧାରଣାର କେତେକ ଜିନିଷକୁ ଗ୍ରହଣ କରେ ବା ଅସ୍ୱୀକାର କରେ । ପ୍ରଥମ ବିଗ୍ରରଟି ପରମାଣୁର ଦ୍ୱନ୍ଦ୍ୱମୂଳକ-ବସ୍ତୁବାଦୀ ଅବଧାରଣାକୁ ପ୍ରକାଶ କରେ ଏବଂ ବସ୍ତୁର ଏକ ଅବିଭାଜ୍ୟ ଅଣୁ ହିସାବରେ ପରମାଣୁର ଅବଧାରଣାକୁ ଅସ୍ୱୀକାର କରେ । ଦ୍ୱିତୀୟ ବିଗ୍ରରଟି ହିନ୍ଦୁ ଧର୍ମର ଅନୁଗାମୀମାନଙ୍କ ଦ୍ୱାରା ଗାଈ ସଂପର୍କରେ ମତାମତକୁ ପ୍ରକାଶ କରିଥାଏ ।

ଅବଧାରଣାସମୂହ ମଧ୍ୟରେ ଯୋଗସୂତ୍ରରାଜି ଉପରେ ବିଗ୍ରର ପ୍ରତିଷ୍ଠିତ ହେଲାବେଳେ ବିଗ୍ରରସମୂହର ଆନ୍ତଃସଂପର୍କରାଜି ସିଦ୍ଧାନ୍ତସମୂହ, ବିମୂର୍ତ୍ତ ଚିନ୍ତାର ତୃତୀୟ ମୁଖ୍ୟ ରୂପର ଭଳି ରୂପେ କାର୍ଯ୍ୟ କରିଥାଏ । ସିଦ୍ଧାନ୍ତ ହେଉଛି ଏକ ଯୁକ୍ତିସଂଗତ ପ୍ରକ୍ରିୟା, ଯାହାକୁ ଉପଯୋଗ କରି ନିର୍ଦ୍ଦିଷ୍ଟ ପ୍ରକୃତ ବିଗ୍ରରସମୂହ ନୂତନ ବିଗ୍ରର ଗ୍ରହଣ କରାଯାଇଥାଏ । ଏହି ଭାବେ ଦୁଇଟି ବିଗ୍ରର – "ଶାନ୍ତି ପାଇଁ ସାମ୍ରାଜ୍ୟବାଦ, ଉପନିବେଶବାଦ, ନବଉପନିବେଶବାଦ ଏବଂ ବର୍ଣ୍ଣବୈଷମ୍ୟବାଦ ବିରୋଧୀ ସଂଗ୍ରାମ ପାଇଁ ପ୍ରଗତିଶୀଳ ମାନବ ସମାଜର ସଂଗ୍ରାମକୁ ଆଗେଇ ନେବାରେ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ହେଉଛି ଉପାୟ ସ୍ୱରୂପ" ଏବଂ "ଭାରତୀୟ ପ୍ରଜାତନ୍ତ୍ର ଅନୁସରଣ କରେ ଗୋଷ୍ଠୀ ନିରପେକ୍ଷ ନୀତି" ସେଇ ଯୁକ୍ତିଯୁକ୍ତ ସିଦ୍ଧାନ୍ତଟି ଆଡ଼କୁ ନେଇଯାଏ : "ଭାରତୀୟ ପ୍ରଜାତନ୍ତ୍ର ଦ୍ୱାରା ଅନୁସୃତ ନୀତି ଶାନ୍ତି ପାଇଁ, ସାମ୍ରାଜ୍ୟବାଦ, ଉପନିବେଶବାଦ, ନବଉପନିବେଶବାଦ ଏବଂ ବର୍ଣ୍ଣବୈଷମ୍ୟବାଦ ବିରୁଦ୍ଧରେ ପ୍ରଗତିଶୀଳ ମାନବଜାତିର ସଂଗ୍ରାମକୁ ଶକ୍ତିଶାଳୀ କରୁଛି ।"

ସିଦ୍ଧାନ୍ତସମୂହ ଚିନ୍ତନଶୀଳ ମଣିଷ ପକ୍ଷରେ ବ୍ୟକ୍ତିଗତ ଇନ୍ଦ୍ରିୟାନୁଭୂତି ଉପରେ ପ୍ରତ୍ୟେକଟି ବିଗ୍ରରକୁ ପ୍ରତ୍ୟକ୍ଷ ଭାବେ ପ୍ରତିଷ୍ଠିତ କରିବାର ଆବଶ୍ୟକତା ନଥାଏ । ବସ୍ତୁଗତ ଜଗତରେ ପ୍ରପଞ୍ଚରାଜି ମଧ୍ୟରେ ଏକ ଯୁକ୍ତିସଂଗତ ଯୋଗସୂତ୍ର, ବୈକ୍ତିକ, ନିର୍ଦ୍ଦିଷ୍ଟ ଏବଂ ସାଧାରଣ ମଧ୍ୟରେ ଏକ ଆବଶ୍ୟକୀୟ ସଂପର୍କ ରହିଛି । ପଦାର୍ଥସକଳ ମଧ୍ୟରେ ନିୟମିତ ସଂପର୍କରାଜି ପ୍ରତିଫଳିତ ହୋଇଥାଏ ମୌଳିକ ନିୟମାବଳୀ ଚିନ୍ତାରେ ଏବଂ ମାନସିକ କ୍ରିୟାକଳାପର ନିୟମ ମଣିଷର ଚିନ୍ତାଜଗତରେ, ଯିଏକି ଶହଶହ ବର୍ଷ ଧରି ବହୁବିଧ ସାମାଜିକ ଐତିହାସିକ ପ୍ରୟୋଗର ବହୁବିଧ ରୂପରେ । ବିଗ୍ରର କଲାବେଳେ ଏବଂ

ସିଦ୍ଧାନ୍ତସମୂହ ଟାଣିଲା ବେଳେ ଏହିସବୁ ନିୟମର ଅନୁସରଣ ଫଳରେ ମଣିଷ ସକ୍ଷମ ହୁଏ ପଦାର୍ଥସମୂହ ସଂପର୍କରେ, ଯେଉଁସବୁକୁ ସେ ପ୍ରତ୍ୟକ୍ଷ ଭାବେ ଦେଖି ନାହିଁ, ସିଦ୍ଧାନ୍ତ ଗ୍ରହଣ କରିବାକୁ ।

ଆମର ବିଗ୍ରର ଏବଂ ସିଦ୍ଧାନ୍ତସମୂହକୁ, ଏବଂ ଯେଉଁ ନିୟମାବଳୀ ଜରିଆରେ ଆମେ ସେସବୁକୁ ରୂପ ଦେଇଥାଏଁ ଏବଂ ସଠିକ ଚିନ୍ତାର ନିୟମାବଳୀକୁ ଯୁକ୍ତିବିଦ୍ୟା ଅନୁଧ୍ୟାନ କରିଥାଏ । ଆମେ ଏହି ସମସ୍ୟାଟିର ଗଭୀରକୁ ଯାଉ ନେ, କିନ୍ତୁ ଏତିକି କେବଳ ଲକ୍ଷ୍ୟ କରୁଛେ ଯେ, ବିଗ୍ରର ଅସ୍ତିବାଚକ ଏବଂ ନେତିବାଚକ ହୋଇ ପାରେ (ସେସବୁର ଆଧେୟ ବା ଗୁଣ ଦ୍ୱାରା); ବ୍ୟକ୍ତିଗତ, ନିର୍ଦ୍ଦିଷ୍ଟ ବା ସାଧାରଣ (ପ୍ରତିଫଳିତ ବସ୍ତୁରାଜିର ପରିମାଣ ଏବଂ ସଂଖ୍ୟା ଦ୍ୱାରା); ସର୍ତ୍ତମୂଳକ, ବୈକଳ୍ପିକ ବା ସୁନିର୍ଦ୍ଦିଷ୍ଟ (ପ୍ରତିଫଳିତ ବସ୍ତୁରାଜିର ଏବଂ ସେସବୁର ଧର୍ମସମୂହ ମଧ୍ୟରେ ସଂପର୍କ ଅନୁଯାୟୀ); ଏବଂ ସମ୍ଭାବ୍ୟତା, ବାସ୍ତବତା ବା ପ୍ରୟୋଜନୀୟତା ଦ୍ୱାରା (ବସ୍ତୁର ପ୍ରତିଫଳିତ ଧର୍ମର ଗୁରୁତ୍ୱର ମାତ୍ରା ଅନୁଯାୟୀ) । ବିଭିନ୍ନ ପ୍ରକାରର ସିଦ୍ଧାନ୍ତରାଜି, ଯଥା ଅବରହମୂଳକ, ଆରୋହମୂଳକ, ତୁଳନା ଦ୍ୱାରା, ଆନୁମାନିକ, ଆଦି ।

ବହୁବିଧ ଚିନ୍ତା ବଳରେ ମଣିଷର ଜ୍ଞାନ ଇନ୍ଦ୍ରିୟାନୁଭୂତ ଜ୍ଞାନର ସୀମାକୁ ଅତିକ୍ରମ କରିବାକୁ ସକ୍ଷମ ହୋଇଥାଏ । ବସ୍ତୁରାଜି, ପ୍ରକ୍ରିୟାସମୂହ ଏବଂ ପ୍ରପଞ୍ଚରାଜି ମଧ୍ୟରେ ଯୋଗସୂତ୍ର ସଂପର୍କରେ ଚିନ୍ତନ ଜ୍ଞାନକୁ ସାଧାରଣ ଉପାଦାନସମୂହ ଯୋଗାଇ ଦେଉଥିବାରୁ, ବସ୍ତୁନିଷ୍ଠ ଜଗତକୁ ଇନ୍ଦ୍ରିୟାନୁଭୂତ ପ୍ରତ୍ୟକ୍ଷ ଜ୍ଞାନ ଦ୍ୱାରା ଯେତିକି ଜାଣି ହୁଏ, ତାଠାରୁ ଆଉରି ଗଭୀର ଭାବେ ଜାଣିବା ପାଇଁ ଏହା ତାକୁ ସକ୍ଷମ କରିଥାଏ । ଲେନିନ୍ ଲେଖିଛନ୍ତି, "ଚିନ୍ତନ ନିର୍ଦ୍ଦିଷ୍ଟରୁ ବିମୂର୍ତ୍ତ ଆଡ଼କୁ ଆଗେଇଥାଏ, ଯଦି ତାହା ସଠିକ ହୋଇଥାଏ (NB) ... ସତ୍ୟଠାରୁ ଦୂରେଇ ନଯାଇ, ତା'ର ନିକଟବର୍ତ୍ତୀ ହୋଇଥାଏ । ବସ୍ତୁର, ପ୍ରକୃତିର ନିୟମର ବିମୂର୍ତ୍ତିକରଣ, ମୂଲ୍ୟର ବିମୂର୍ତ୍ତିକରଣ, ଆଦି, ସଂକ୍ଷେପରେ କହିବାକୁ ଗଲେ ସମସ୍ତ ବୈଜ୍ଞାନିକ (ସଠିକ, ଗୁରୁତ୍ୱପୂର୍ଣ୍ଣ, ଉଦ୍‌ଭଟ ନୁହଁ) ବିମୂର୍ତ୍ତିକରଣ ପ୍ରକୃତିକୁ ଆଉରି ଗଭୀର ଭାବେ, ସଠିକ ଭାବେ ଏବଂ ସଂପୂର୍ଣ୍ଣ ଭାବେ ପ୍ରତିଫଳିତ କରିଥାଏ ।"* ଅବଗତି, ଉଭୟ ବିମୂର୍ତ୍ତ ଚିନ୍ତନ ଏବଂ ଇନ୍ଦ୍ରିୟାନୁଭୂତ ଜ୍ଞାନ ରୂପରେ ହେଉଛି ବସ୍ତୁଗତ ଜଗତର ଭାବଗତ ପ୍ରତିବିମ୍ବ ।

ଏକ ଦିଗରେ ଚିନ୍ତନ ଆଦର୍ଶ ପ୍ରତିବିମ୍ବରେ ଭାବଗତ ଉପାଦାନସମୂହକୁ ତ୍ୱରାନ୍ୱିତ କରିଥାଏ ଏବଂ ଅନ୍ୟ ଦିଗରେ ପରିମାଣଟାକୁ ସେତିକି ବୃଦ୍ଧି କରେ, ଯଦ୍ୱାରା ପ୍ରତିଫଳିତ ପଦାର୍ଥ ସହିତ ପ୍ରତିବିମ୍ବଟା ମେଳଖାଏ, ତା'ର ସାରମର୍ମକୁ ଜାଣି ହୁଏ ଏବଂ ତା'ର ପ୍ରତିଫଳନର ବସ୍ତୁନିଷ୍ଠ ଆଧେୟ ଗଭୀର ହେବାକୁ ଲଗେ । ଏହା ବିଶେଷ ଭାବେ ବିମୂର୍ତ୍ତ

---

*V. I. Lenin, "Conspectus of Hegel's Book *The Science of Logic*", *Collected Works*, Vol. 38, p. 171.

# ଅବଗତି ପ୍ରକ୍ରିୟା

"ମଣିଷର ଅବଗତି ଏକ... ସରଳ ରେଖା ନୁହଁ, ଏହା ହେଉଛି ବକ୍ର, ଯିଏକି ସୀମାହୀନ ଭାବେ ଅନେକଗୁଡ଼ିଏ ବୃତ୍ତ ଏବଂ କୁଣ୍ଡଳୀର ପାଖାପାଖି ଯାଇଥାଏ ।"

— ଲେନିନ୍

"ଜୀବନ୍ତ ଅବଲୋକନରୁ ବିମୂର୍ତ୍ତ ଚିନ୍ତନ ପର୍ଯ୍ୟନ୍ତ, ଏବଂ ଏଥିରୁ ପ୍ରୟୋଗ ପର୍ଯ୍ୟନ୍ତ ହେଉଛି ସତ୍ୟର ଅବଗତିର, ବସ୍ତୁଗତ ବାସ୍ତବତାର ଅବଗତିର ଦ୍ୱନ୍ଦ୍ୱମୂଳକ ପଥ ।"

— ଲେନିନ୍






ଚିନ୍ତନର ଉପାୟ ହିସାବରେ ସଂକେତ ଏବଂ ସଂକେତ ବ୍ୟବସ୍ଥା ସହିତ ସଂଯୁକ୍ତ । ଆମେ ଉପରେ ଯେଉଁଳି ଦେଖିଲେ, ଯଦିଓ ସଂକେତ ନିଜେ ଏକ ପ୍ରତିବିମ୍ବ ନୁହେଁ ଏବଂ ଏହା ପରମ୍ପରା ମଧ୍ୟରୁ ସୃଷ୍ଟି ହୁଏ (ଏହାରି ମଧ୍ୟରେ ଚିନ୍ତନର ଭାବଗତତା ପ୍ରକାଶ ପାଏ), ତା ସତ୍ତ୍ୱେ ଏକ ବିଶ୍ଳେଷିତ ବ୍ୟବସ୍ଥାରେ ସଂକେତର ପ୍ରୟୋଗ ବାସ୍ତବତାର ଆଉରି ଅଧିକ ସଠିକ ପ୍ରତିଫଳନ ଘଟାଇଥାଏ । ଅବଗତିର ପ୍ରକ୍ରିୟାରେ ସଂକେତକୁ ପ୍ରତ୍ୟାବର୍ତ୍ତନ (ଯଥା, ଗାଣିତିକ ପ୍ରତୀକସମୂହ) ବିମୂର୍ତ୍ତାୟନର ସ୍ତରକୁ ଉନ୍ନତ କରେ, ଅଧିକତର ଗତିବେଗ ଏବଂ ଅବଧାରଣାଗତ ଚିନ୍ତନରେ ନମନୀୟତା ଲାଭ କରେ । ସଂକେତରାଜି ଉପରେ ବିଭିନ୍ନ ଚର୍ଚ୍ଚା ପାଇଁ, ଆଧେୟ ଏବଂ ଆଧାର ମଧ୍ୟରେ ସର୍ବାଧିକ ସଂପର୍କ ଲାଭ ପାଇଁ ଏବଂ ଚିନ୍ତନକୁ ଆଉରି ଅଧିକ ନିର୍ଦ୍ଦିଷ୍ଟ ତଥା ଯୁକ୍ତିଯୁକ୍ତ କରିବାକୁ ଏହା ସମ୍ଭବ କରିଥାଏ ।

## ୪ — ସନ୍ଦେହ, ବିଶ୍ୱାସ ଏବଂ ଅନୁମାନ

ପ୍ରତିଫଳନର ଇନ୍ଦ୍ରିୟାନୁଭୂତ ଏବଂ ଯୁକ୍ତିସଂଗତ, ବା ସଂଗତ ରୂପଗୁଡ଼ିକ ଅବଗତିମୂଳକ ପ୍ରକ୍ରିୟାରେ ନିବିଡ଼ ଭାବେ ପରସ୍ପର ସହିତ ସଂପୃକ୍ତ । ବାସ୍ତବତା ଏ କଥା ପ୍ରକାଶ କରେ ନାହିଁ ଯେ, ଚିନ୍ତନ କେବଳ ଇନ୍ଦ୍ରିୟାନୁଭୂତ ବିଷୟ ଉପରେ ସମ୍ଭବ ଏବଂ ଇନ୍ଦ୍ରିୟାନୁଭୂତ ପ୍ରତ୍ୟକ୍ଷ ଜ୍ଞାନସମୂହକୁ ବ୍ୟାଖ୍ୟା କରିବା ଉଚିତ । ବାସ୍ତବତା ଏ କଥା ମଧ୍ୟ କହେ ଯେ, ଯୁକ୍ତିକାରୀ କ୍ରିୟାକଳାପ, ନିର୍ଦ୍ଦିଷ୍ଟ ଏକ ପ୍ରପଞ୍ଚ ଉପରେ ଆଲୋଚନା, ତଥ୍ୟ ଏବଂ ଅନୁମାନ, ଆଦି ଲୋକଙ୍କ ଉପରେ ଯେଉଁ ଆବେଗ ସୃଷ୍ଟି କରେ, ତାକୁ ବୌଦ୍ଧିକ ଭାବରାଶି ବୋଲି କହନ୍ତି । ସେସବୁ ମଧ୍ୟରୁ ସନ୍ଦେହାନୁଭବତା, ଯିଏକି ଅବଗତି ପ୍ରକ୍ରିୟାରେ ଏକ ସାଙ୍କେତିକ ଭୂମିକା ପାଳନ କରିଥାଏ । ସନ୍ଦେହ ହେଉଛି ଜୀବନର ଏକ ସ୍ୱପ୍ରମାଣିତ ତଥ୍ୟ । ପ୍ରତ୍ୟେକ ଲୋକ ଯେକୌଣସି ପରିସ୍ଥିତିରେ କେତେକ ପରିମାଣରେ, କୌଣସି ଏକ ରୂପରେ, ସନ୍ଦେହ ପ୍ରକାଶ କରିଥାଏ ।

ସନ୍ଦେହର ସାରମର୍ମ କ'ଣ ? ଏହା ହେଉଛି ଏକ ମାନସିକ ଅବସ୍ଥା, ଯେଉଁଥିରେ ମଣିଷ କୌଣସି କିଛିର ସତ୍ୟତା ଉପରେ ଆତ୍ମବିଶ୍ୱାସ ହରାଇ ବସେ, ବିଭିନ୍ନ ମତାମତ ମଧ୍ୟରେ ଦୋଦୁଲ୍ୟମାନ ହୁଏ ଏବଂ ବିଶେଷ ଏକ ସମସ୍ୟାକୁ ସମାଧାନ କରିବା ତା ପକ୍ଷରେ କଷ୍ଟକର ହୋଇ ଉଠେ । ଜ୍ଞାନତତ୍ତ୍ୱ ଦୃଷ୍ଟିରୁ ସନ୍ଦେହ ହେଉଛି, ସାରମର୍ମ ଦୃଷ୍ଟିରୁ, ଅବଗତିର ଆଭ୍ୟନ୍ତରୀଣ 'ଅସ୍ଥିରତା', ଚିନ୍ତନର ଆତ୍ମସମାଲୋଚନା । ମଣିଷର ଅବଗତି ପକ୍ଷରେ ବିଶେଷ ବୈଶିଷ୍ଟ୍ୟପୂର୍ଣ୍ଣ ଭ୍ରାନ୍ତିକୁ ପ୍ରକାଶ କରିବାରେ ସନ୍ଦେହ ସହାୟକ ହୁଏ ଏବଂ ସତ୍ୟର 'ସୀମାକୁ' ଅନ୍ୱେଷଣ ଦିଗରେ ମନକୁ ପରିଚାଳିତ କରେ । ନୂତନ ସମସ୍ୟାବଳୀର ଅଭ୍ୟୁଦୟ ପାଇଁ ଗବେଷଣାମୂଳକ ପ୍ରକ୍ରିୟାରେ ସନ୍ଦେହ ହେଉଛି ଏକ ଆବଶ୍ୟକୀୟ ଅବସ୍ଥା,

ଯାହାକୁ ସ୍ଥାପନ କରିବାକୁ ଏବଂ ସମାଧାନ କରିବାକୁ ହେବ ଯଦି ବିଜ୍ଞାନକୁ ବିକାଶ ଲାଭ କରିବାକୁ ହୁଏ । ସନ୍ଦେହ ମଣିଷକୁ ସାହାଯ୍ୟ କରେ ମତାନ୍ଧବଦ୍ଧ ସଂସ୍କାର ଏବଂ ଯୁକ୍ତିହୀନ ଧାରଣାକୁ ଦୂର କରିବାରେ, ଯିଏକି ବିଭିନ୍ନ କୁସଂସ୍କାର ଏବଂ କଳ୍ପନାର ରୂପ ଗ୍ରହଣ କରିଥାଏ ।

ବିଶ୍ୱାସ ହେଉଛି ଅବଗତିମୂଳକ ପ୍ରକ୍ରିୟାର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନ । ଯୁକ୍ତିସମ୍ମତ ବିଶ୍ୱାସ, ଯିଏକି ଯୁକ୍ତି ବା ତଥ୍ୟର ବିରୋଧିତା କରେ ନାହିଁ ଏବଂ ବିଜ୍ଞାନକୁ ଅସ୍ୱୀକାର କରେ ନାହିଁ, (ଦୃଷ୍ଟାନ୍ତ ସ୍ୱରୂପ, ଜଗତକୁ ଜାଣିବାର ଅକଳନୀୟ ସମ୍ଭାବନା ଉପରେ ବିଶ୍ୱାସ, ଜାତୀୟ ତଥା ସାମାଜିକ ମୁକ୍ତି ଉପରେ ବୈପ୍ଳବିକ ବିଶ୍ୱାସ ଏବଂ ମଣିଷର ନିଜସ୍ୱ ଶକ୍ତି ଉପରେ ବିଶ୍ୱାସ) ଲୋକଙ୍କର ସାମାଜିକ କ୍ରିୟାକଳାପକୁ ପ୍ରୋତ୍ସାହିତ କରିବାରେ ଅସ୍ତିବାଚକ ଭୂମିକା ପାଳନ କରିଥାଏ । ଆତ୍ମବିଶ୍ୱାସର ବୌଦ୍ଧିକ ଭାବରାଜି ହେଉଛି ବ୍ୟାବହାରିକ କ୍ରିୟାର ନୀତି, ପ୍ରୋତ୍ସାହକ ଏବଂ ପଥପ୍ରଦର୍ଶକ । ଏହା ଦୃଢ଼ ପ୍ରତ୍ୟୟରେ ପରିଣତ ହୋଇ ମଣିଷର ଜ୍ଞାନର ପ୍ରତିନିଧିତ୍ୱ କରେ, ଏବଂ ସମ୍ବଦ୍ଧ ହୁଏ ତା'ର ଇଚ୍ଛା, ଭାବନା ଏବଂ ଆକାଂକ୍ଷା ସହିତ ।

ତଥାକଥିତ ବୌଦ୍ଧିକ ଆତ୍ମଅନୁଭୂତି ମଧ୍ୟ ଅବଗତିରେ ଏକ ଉଲ୍ଲେଖନୀୟ ଭୂମିକା ପାଳନ କରିଥାଏ । ଆତ୍ମଅନୁଭୂତି ସଂପର୍କରେ ପ୍ରଥମ ମତବାଦଗୁଡ଼ିକ ଦେଖା ଦେଇଥିଲା ଅନେକ ଦିନ ପୂର୍ବେ ପ୍ରାଚୀନ ଭାରତ ଏବଂ ପ୍ରାଚୀନ ଗ୍ରୀକ୍ ଦର୍ଶନରେ । ପରବର୍ତ୍ତୀ କାଳରେ ଅନେକ ଚିନ୍ତାବିଦ୍ ଅବଗତି ପ୍ରକ୍ରିୟାର ଏହି ବୈଶିଷ୍ଟ୍ୟଟି ପ୍ରତି ସେମାନଙ୍କ ଦୃଷ୍ଟି ପ୍ରଦାନ କରିଥିଲେ । ଭାବବାଦୀ ଦାର୍ଶନିକମାନେ ଆତ୍ମଅନୁଭୂତିକୁ ମନେ କରୁଥିଲେ ସତ୍ୟର ପ୍ରତ୍ୟକ୍ଷ ବୌଦ୍ଧିକ ହୃଦୟଙ୍ଗମତା, ଅଭିଜ୍ଞତା ଏବଂ ଯୁକ୍ତିସଂଗତ ଚିନ୍ତନଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ରୂପେ । ପ୍ରଥମ ଦୃଷ୍ଟିରେ ବହୁ ସ୍ୱୀକୃତି ସ୍ୱତଃସିଦ୍ଧ ବୋଲି ଆମକୁ ମନେ ହୁଏ ଏବଂ ଆମେ ସେସବୁର ଅନାପେକ୍ଷିକ ସତ୍ୟକୁ ସନ୍ଦେହ କରୁ ନା । ଦୃଷ୍ଟାନ୍ତ ସ୍ୱରୂପ, ସେଭଳି ବିଷୟଗୁଡ଼ିକ ମଧ୍ୟରେ ଯାଏ, "ସମଗ୍ର ହେଉଛି ତା'ର ଅଂଶଠାରୁ ବୃହତ୍ତର" ଏବଂ "ରେଖା ମଧ୍ୟରେ ଯେକୌଣସି ଦୁଇଟି ବିନ୍ଦୁକୁ ଯୁକ୍ତ କରାଯାଇ ପାରେ" । ଦୈନନ୍ଦିନ ଜୀବନରେ ମଧ୍ୟ "ସ୍ୱତଃପ୍ରମାଣିତ" ଭିତ୍ତି ଉପରେ ଆମେ ନିଷ୍ପତ୍ତି ନେଇଥାଏ – ଯେତେବେଳେ ଅଜ୍ଞାତ ଏକ ଅବସ୍ଥା ଆମକୁ "ପରିଷ୍କାର" ଦେଖାଯାଏ – ଲଗାତର ଏବଂ ଦୃଢ଼ ଯୁକ୍ତିର ଭିତ୍ତି ଉପରେ ନନେଇ । ଆତ୍ମଅନୁଭୂତି ପ୍ରତ୍ୟକ୍ଷ ଭାବେ ପ୍ରଭାବିତ କରିଥାଏ କୌଣସି କିଛି ଉଦ୍‌ଭାବନ କରୁଥିବା ବୈଜ୍ଞାନିକର କାର୍ଯ୍ୟ ଏବଂ ଭାବକଳ୍ପ ରଚନା କରୁଥିବା ଶିଳ୍ପୀ ଉପରେ । ବୌଦ୍ଧିକ ଆତ୍ମଅନୁଭୂତି ମନେ ହୁଏ ବ୍ୟାବହାରିକ, ତାତ୍ତ୍ୱିକ, ଶୈଳ୍ପିକ ଏବଂ ରାଜନୈତିକ ସମସ୍ୟାର ତତ୍‌କ୍ଷଣାତ୍ ସମାଧାନ ଭଳି, ମନେ ହୁଏ ଇନ୍ଦ୍ରିୟାନୁଭୂତ ଜ୍ଞାନ ଏବଂ ଯୁକ୍ତିବିଦ୍ୟାର ବିନା ସାହାଯ୍ୟରେ ସତ୍ୟକୁ ପ୍ରତ୍ୟକ୍ଷ ଭାବେ ଲାଭ କରାଯାଇ ପାରେ । କିନ୍ତୁ ବ୍ୟାପାରଟା ସେଇଆ ନୁହଁ ।

ଆତ୍ମଅନୁଭୂତି ନିଜେ ଦୀର୍ଘ, ନିରବଚ୍ଛିନ୍ନ ଚିନ୍ତାମୂଳକ କାର୍ଯ୍ୟ ମଧ୍ୟରୁ ଏବଂ ଜଟିଳ

ବ୍ୟାବହାରିକ କ୍ରିୟାରୁ ଜନ୍ମ ନେଇଥାଏ । ଆତ୍‌ମଅନୁଭୂତିମୂଳକ ଅବଗତି ଏବଂ ଯୁକ୍ତିଯୁକ୍ତ ଚିନ୍ତନ ମଧ୍ୟରେ ସିଧାସଳଖ ଏକ ପାର୍ଥକ୍ୟର ରେଖା ଟାଣି ଦେବା ମଧ୍ୟ ଭୁଲ । ଆତ୍‌ମଅନୁଭୂତିମୂଳକ ଚିନ୍ତାରେ ମଧ୍ୟ ଘନିଭୂତ ଯୁକ୍ତି ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଯୋଗସୂତ୍ରଟିକୁ ନିର୍ଣ୍ଣୟ କରିବାଟା ଥାଏ, ତା'ର ସମଗ୍ର ପ୍ରକ୍ରିୟାଟିକୁ ନବୁଝି, ବିଶେଷ କରି ଶେଷ ଅନୁମାନଟିକୁ ଧରିନେଇ । ଆତ୍‌ମଅନୁଭୂତି ଯୁକ୍ତିସମ୍ମତ ବିଗ୍ରହର କେତେକ ପର୍ଯ୍ୟାୟକୁ ଡେଇଁ ଯିବାର କ୍ଷମତା ପ୍ରଦାନ କରିଥାଏ । ଯୁକ୍ତିର ପ୍ରକ୍ରିୟାରେ ଏହି ବିରତିଗୁଡ଼ିକ ପୂର୍ବବର୍ତ୍ତୀ ଯୁକ୍ତିସଂଗତ ବିଶ୍ଳେଷଣ ଦ୍ୱାରା ସୃଷ୍ଟି ହୋଇଥାଏ । ଆତ୍‌ମଅନୁଭୂତିମୂଳକ ଚିନ୍ତାରେ ଏକ ସିଦ୍ଧାନ୍ତରେ ପହଞ୍ଚିବାର ପ୍ରକ୍ରିୟାଟା ଚେତନାହୀନ ହୋଇ ରହିଲେ ମଧ୍ୟ ସିଦ୍ଧାନ୍ତଟି, ଜ୍ଞାନର ଗୁଣାତ୍‌ମକ ଭାବେ ନୂଆ ଏକ ରୂପ ହିସାବରେ, ଏକକ ଅବଗତିମୂଳକ ପ୍ରକ୍ରିୟାରେ ବହୁବିଧ ଉପାଦାନର ଆନ୍ତଃପ୍ରକ୍ରିୟାର ଫଳ ସ୍ୱରୂପ । ଦୃଷ୍ଟାନ୍ତ ସ୍ୱରୂପ, ରାସାୟନିକ ଉପାଦାନସମୂହର ସାମୟିକ ନିୟମର ଭାବନାଟି ମେଣ୍ଡେଲେୟେଭ୍ ତାଙ୍କ ସ୍ୱପ୍ନରେ ଲାଭ କରିଥିଲେ ମଧ୍ୟ, ଏହା ଥିଲା ତାଙ୍କର ସମସ୍ତ ବୈଜ୍ଞାନିକ କାର୍ଯ୍ୟକଳାପ ଏବଂ ରାସାୟନିକ ଉପାଦାନର ଧର୍ମରାଶିକୁ ନିୟନ୍ତ୍ରଣ କରୁଥିବା ନିୟମରାଜି ପାଇଁ ତାଙ୍କର ଅବିଶ୍ରାନ୍ତ ଅନ୍ୱେଷଣର ଫଳ ।

ସମସ୍ତ କ୍ଷେତ୍ରରେ ଆତ୍‌ମଅନୁଭୂତି ସକ୍ରିୟ ଥିଲା ବେଳେ ଏହା ହେଉଛି ଜ୍ଞାନ ଏବଂ ଅଭିଜ୍ଞତା ଉପରେ ପ୍ରତିଷ୍ଠିତ ଏକ ସଚେତନ କ୍ରିୟା, ଯିଏକି ସହାୟକ ହୋଇଥାଏ ନୂତନ ଚିନ୍ତାରାଜି ତଥା ଆବିଷ୍କାରଗୁଡ଼ିକୁ ସୃଷ୍ଟି କରିବାରେ, ସେସବୁର ଅଭ୍ୟୁଦୟ ପାଇଁ ଆବଶ୍ୟକୀୟ ଅବସ୍ଥାରାଜିକୁ ବିଗ୍ରହକୁ ନନେଇ । ଏହା ଛଡ଼ା, ଆଉ ଗୋଟିଏ କଥା ମନେ ରଖିବା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଯେ, ଆତ୍‌ମଅନୁଭୂତି ଦୃଷ୍ଟିରୁ ଯାହା କିଛି ପରିଷ୍କାର ଏବଂ ପ୍ରମାଣଜନକ, ସେସବୁ ସତ୍ୟରେ ପରିଣତ ହୁଏ ନାହିଁ । ଆତ୍‌ମଅନୁଭୂତିର ଫଳସମୂହ ଆବଶ୍ୟକ କରେ ଯୁକ୍ତିସଂଗତ ପ୍ରମାଣସିଦ୍ଧତା ଏବଂ ପରୀକ୍ଷା, କାରଣ ଆତ୍‌ମଅନୁଭୂତିମୂଳକ ଜ୍ଞାନ ସର୍ବଦା ପ୍ରୟୋଗ ଏବଂ ତାତ୍ତ୍ୱିକ ବିଶ୍ଳେଷଣ ଦ୍ୱାରା ସମର୍ଥିତ ହୋଇ ପାରେ ନାହିଁ । ସାଧାରଣ ଭାବେ, ଆତ୍‌ମଅନୁଭୂତି ମାନବିକ ଅବଗତିର ଅନ୍ତଃଶକ୍ତିକୁ ସଂପ୍ରସାରିତ କରିଥାଏ ଯୁକ୍ତିସଂଗତ ଚିନ୍ତା ଦ୍ୱାରା ପରିପୂରିତ କରି, ବିଶେଷ କରି ମୌଳିକ ଭାବେ ନୂତନ ଜ୍ଞାନରେ ମଣିଷ ଯେଉଁ ପ୍ରକ୍ରିୟା ଦ୍ୱାରା ପହଞ୍ଚେ ।

## ୬ – ଭାବବାଦ ଏବଂ ଅଜ୍ଞେୟବାଦ ଜ୍ଞାନତାତ୍ତ୍ୱିକ କାରଣ

ଆମେ ଦେଖିବାକୁ ପାଇଲେ ଯେ, ସତ୍ୟ ଲାଭ କରିବାର ପ୍ରକ୍ରିୟାର ବହୁତ ଦିଗ ରହିଛି । ଅବଗତି ପ୍ରକ୍ରିୟାର ସମସ୍ତ ଅବଦାନ ମଧ୍ୟରେ ଜଟିଳ ଏବଂ ବିରୋଧାତ୍‌ମକ ଆନ୍ତଃପ୍ରକ୍ରିୟା କରିଥାରେ ମଣିଷ ଚେତନାରେ ବାସ୍ତବତା ଅଧିକରୁ ଅଧିକ ସଠିକ ଭାବେ

ପ୍ରତିଫଳିତ ହୋଇ ପାରେ । ଏହିସବୁ ଉପାଦାନ ମଧ୍ୟରୁ କୌଣସି ଗୋଟିକ ପ୍ରତି ଅବହେଳା ବା ଅନ୍ୟ ଭାବେ କହିବାକୁ ଗଲେ, କୌଣସି ଏକ ଉପାଦାନକୁ ଅତିରଞ୍ଜିତ କଲେ ଏବଂ ତାକୁ ଅବଗତି ପ୍ରକ୍ରିୟାର ଅନ୍ୟାନ୍ୟ ବୈଶିଷ୍ଟ୍ୟର ବିରୋଧରେ ଉପସ୍ଥାପିତ କଲେ ଅନିବାର୍ଯ୍ୟ ଭାବେ ତାହା ଭୁଲ ଏବଂ ପ୍ରବଞ୍ଚନା ଆଡ଼କୁ ନେଇଯାଏ । ଭାବବାଦୀ ମତରାଜିର ଅବସ୍ଥିତି ପଛରେ ଥିବା କାରଣଗୁଡ଼ିକୁ ବିଗ୍ୱର କରିବାଟା ଏଠାରେ ଯୁକ୍ତିସଂଗତ ହେବ । ଏ କଥା ଇତିପୂର୍ବରୁ ଦର୍ଶାଯାଇଛି ଯେ, ବିଭିନ୍ନ ପ୍ରତିକ୍ରିୟାଶୀଳ ଶକ୍ତିଙ୍କ ପକ୍ଷରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ମତବାଦ ହେଉଛି ଭାବବାଦ । କିନ୍ତୁ ଭାବବାଦ ଏଇଥି ପାଇଁ ତିଷ୍ଠି ରହି ନାହିଁ ଯେ, ଏହା ଶୋଷକ ଶ୍ରେଣୀ ଏବଂ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କୁ ସମର୍ଥନ କରୁଛି ବୋଲି । ସାମାଜିକ କାରଣସମୂହକୁ ବାଦ୍ ଦେଲେ ମଧ୍ୟ ଭାବବାଦର ଜ୍ଞାନତାତ୍ତ୍ୱିକ ଚେର ଅବଗତି ପ୍ରକ୍ରିୟାର ବିଶେଷତାସମୂହ ମଧ୍ୟରେ ଆଣ୍ଡିକି ରହିଛି । ଲେନିନ୍ ଲେଖିଛନ୍ତି, "ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଅବସ୍ଥାନରୁ ଦାର୍ଶନିକ ଭାବବାଦ ହେଉଛି ଏକପାଖିଆ ଏବଂ ଅତିରଞ୍ଜିତ ଜ୍ଞାନର କୌଣସି ଏକ ବୈଶିଷ୍ଟ୍ୟ ଦିଗ ବା ଧାରର ଅନାପେକ୍ଷିକତାକୁ ବିକାଶ ଲାଭ... । ସରଳ ରୈଖିକତା ଏବଂ ଏକଦର୍ଶିତା, ନିର୍ବୋଧତା ଏବଂ ଶୀଳୀଭବନ, ଭାବଗତତା ଏବଂ ଭାବଗତ ଅନ୍ଧତା—ହେଉଛି ଭାବବାଦର ଜ୍ଞାନତାତ୍ତ୍ୱିକ ଚେରସମୂହ ।"*

ଭାବବାଦୀ ସମସ୍ତ ମତ ଜନ୍ମ ନେଇଥାଏ ଅବଗତିମୂଳକ ଉପାଦାନସମୂହର କୌଣସି ଗୋଟିକର ଅନାପେକ୍ଷିକକରଣ ମଧ୍ୟରୁ । ଇନ୍ଦ୍ରିୟାନୁଭୂତି ହେଉଛି ଆମ ଜ୍ଞାନର ମୂଳଉତ୍ସ । କିନ୍ତୁ ସେଥିରେ ଅନେକ କିଛି ଥାଏ, ଯିଏକି ହେଉଛି ଭାବଗତ । ଏହି ପରିସ୍ଥିତିର ଅତିରଞ୍ଜିତକରଣ ଭାବବାଦୀ ସିଦ୍ଧାନ୍ତ ଆଡ଼କୁ ଆଗେଇ ନେଇ ଯାଇ ପାରେ ଯେ, ଆମର ଇନ୍ଦ୍ରିୟାନୁଭୂତି ମଧ୍ୟରେ ବସ୍ତୁସକଳ କେବଳ ଅବସ୍ଥାନ କରନ୍ତି—ଭାବଗତ ଭାବବାଦୀମାନେ ଯେମିତି ଚିନ୍ତା କରିଥାନ୍ତି । ବସ୍ତୁଗତ ଭାବବାଦୀମାନେ ଅନ୍ୟ ଦିଗରେ ଚିନ୍ତନର ସହଜାତ ଶକ୍ତିକୁ ଏକ ଅନାପେକ୍ଷିକରେ ପରିଣତ କରିଥାନ୍ତି ଏକ ସାଧାରଣୀକରଣ କରିବାକୁ ଏବଂ ବାସ୍ତବତାରୁ ଅବଧାରଣାକୁ ବିଚ୍ଛିନ୍ନ କରନ୍ତି, ସ୍ୱସମ୍ବଳିତ ସତ୍ତାରେ ସେସବୁକୁ ରୂପାନ୍ତରିତ କରି ଦିଅନ୍ତି, ଯିଏକି ବସ୍ତୁଗତ ଜଗତଠାରୁ ସ୍ୱାଧୀନ ।

ଅଜ୍ଞେୟବାଦ ପାଇଁ ଜ୍ଞାନଗତ ତାତ୍ତ୍ୱିକ କାରଣସମୂହ ମଧ୍ୟ ରହିଛି । ତା'ର ଅନ୍ୟତମ ରୂପ, ନିରାଶାବାଦର ସୃଷ୍ଟି ହୋଇଥାଏ ସନ୍ଦେହ ମୁହୂର୍ତ୍ତର ଅତିରଞ୍ଜିତକରଣ ଏବଂ ସ୍ଫୀତୀକରଣ ଦ୍ୱାରା । ଜ୍ଞାନର ବିରୋଧିତା କରୁଥିବା ଏବଂ ବସ୍ତୁଗତ ସତ୍ୟକୁ ଅସ୍ୱୀକାର କରୁଥିବା, ଅନାପେକ୍ଷିକିତ ସନ୍ଦେହ ହେଉଛି ଏପରି ଏକ ଅବସ୍ଥାନ, ଯାହାକୁ ଉଗ୍ର ଅଜ୍ଞେୟବାଦ ଗ୍ରହଣ କରିଥାଏ । ଆତ୍ମଅନୁଭୂତିର ଅନାପେକ୍ଷିକୀକରଣଠାରୁ ଏତେ ବଡ଼ ଭୁଲ

---

*V. I. Lenin, "On the Question of Dialectics", *Collected Works*, Vol. 38, p. 361.

# ଭାବବାଦର ଜ୍ଞାନତତ୍ତ୍ୱଗତ ଏବଂ ସାମାଜିକ-ଶ୍ରେଣୀଗତ ଚେର

ଚେତନାର ଆପେକ୍ଷିକ ସ୍ୱାଧୀନତା
ଏବଂ ସୃଜନାତ୍ମକ କ୍ରିୟାକଳାପ

ଅବଗତିର ଭିନ୍ନ ଦିଗଗୁଡ଼ିକର ଅନପେକ୍ଷକରଣ

ଯୁକ୍ତିଗ୍ରସ୍ତ ଅବଗତିର (ଅବଧାରଣାସମୂହ) ଅତିରଞ୍ଜିତକରଣ ଏବଂ ଇନ୍ଦ୍ରିୟାନୁଭୂତି ଅବଗତି ଏବଂ ପ୍ରୟୋଗଠାରୁ ଏହାର ବିଚ୍ଛିନ୍ନକରଣ ଏହାକୁ ନେଇ ଯାଏ ବସ୍ତୁଗତ ଭାବବାଦ ଆଡ଼କୁ

ଇନ୍ଦ୍ରିୟାନୁଭୂତ ଅବଗତିର (ଇନ୍ଦ୍ରିୟାନୁଭୂତିସମୂହ) ଭୂମିକାର ଅତିରଞ୍ଜିତକରଣ ଏବଂ ଯୁକ୍ତିଗ୍ରସ୍ତ ଅବଗତି ତଥା ପ୍ରୟୋଗଠାରୁ ଏହାର ବିଚ୍ଛିନ୍ନକରଣ ନେଇ ଯାଏ ମନୋଗତ ଭାବବାଦ ଆଡ଼କୁ

ଦୈହିକ ଶ୍ରମଠାରୁ ମାନସିକ ଶ୍ରମର ପୃଥକୀକରଣ
ଏବଂ ସେସବୁ ମଧ୍ୟରେ ପାର୍ଥକ୍ୟ

ଭାବବାଦୀ ବିଶ୍ୱଦୃଷ୍ଟିକୋଣରେ ଶୋଷକ
ଶ୍ରେଣୀସମୂହର ସ୍ୱାର୍ଥ

"କାର୍ଯ୍ୟ ଆଉରି ବହୁବିଧ ହେଲ...। ଏଥି ସଙ୍ଗେ ସଙ୍ଗେ ଶେଷକୁ ଦେଖା ଦେଲ ବାଣିଜ୍ୟ, ଶିଳ୍ପ, କଳା ଏବଂ ବିଜ୍ଞାନ...। ଏହିସବୁ ପ୍ରତିବିମ୍ବ ସମ୍ମୁଖରେ, ଯେଉଁ ପ୍ରତିବିମ୍ବଗୁଡ଼ିକ ମନରୁ ଜାତ ବୋଲି ପ୍ରତୀତ ହୁଏ ଏବଂ ମାନବ ସମାଜ ଉପରେ ପ୍ରଭୁତ୍ୱ କଲ ଭଳି ଲଗେ, ଶ୍ରମଶୀଳ ହାତରୁ ଜାତ ଅଧିକ ସରଳ ଉତ୍ପାଦନ ସକଳ ଅନ୍ତରାଳକୁ ଗ୍ଲଲିଗଲ। ଏହା ଅଧିକ ହେବାର କାରଣ ହେଉଛି, ସମାଜ ବିକାଶର ପ୍ରଥମ ଅବସ୍ଥାରେ ଶ୍ରମର ପରିକଳ୍ପନା କରୁଥିବା ମନ ସକ୍ଷମ ହୋଇ ଥିଲ... ଯିଏ ଶ୍ରମର ପରିକଳ୍ପନା କରୁଥିଲ ସେ ନିଜ ହାତରେ ଶ୍ରମ ନକରି ଅନ୍ୟ ହାତରେ କରେଇବା ହେତୁ। ସଭ୍ୟତାର ଦ୍ରୁତ ବିକାଶ ପାଇଁ ସମସ୍ତ ପ୍ରଶଂସା ଆରୋପ କରାଗଲ ମନ ଉପରେ, ମସ୍ତିଷ୍କର ବିକାଶ ତଥା କ୍ରିୟାକଳାପ ଉପରେ। ମଣିଷ ଅଭ୍ୟସ୍ତ ହୋଇ ପଡ଼ିଲ, ତା'ର କାର୍ଯ୍ୟକଳାପ ସେମାନଙ୍କ ଆବଶ୍ୟକତା ଦ୍ୱାରା ପରିଗ୍ଲଳିତ ନହୋଇ ଚିନ୍ତାରୁ ଜାତ ହେଉଛି ବୋଲି, ବ୍ୟାଖ୍ୟା କରିବାକୁ (ଯିଏକି ଯେକୌଣସି କ୍ଷେତ୍ରରେ ମନରେ ପ୍ରତିଫଳିତ ହୁଏ ଏବଂ ପରିଦର୍ଶିତ ହୁଏ); ଏବଂ ତେଣୁ ସମୟାନୁକ୍ରମେ ସେହି ଭାବବାଦୀ ବିଶ୍ୱଦୃଷ୍ଟିକୋଣଟିର ଅଭ୍ୟୁଦୟ ଘଟିଲ।"

— ଏଙ୍ଗେଲସ୍

ଆଉ କିଛି ନଥାଇ ପାରେ । ଅଯୁକ୍ତିବାଦୀ ଦର୍ଶନର ଅନୁଗାମୀମାନେ ଯୁକ୍ତିସଂଗତ ଚିନ୍ତାର ବିରୁଦ୍ଧରେ ଏହାକୁ ଉପସ୍ଥାପିତ କରିଥାନ୍ତି ।

ମତାନ୍ଧତାବାଦର ଜ୍ଞାନତାତ୍ତ୍ୱିକ ଅବସ୍ଥାନ ସୃଷ୍ଟି ହୋଇଥାଏ ସେତିକିବେଳେ, ଯେତେବେଳେ ଚେତନାରୁ ସମସ୍ତ ସନ୍ଦେହ ଦୂରେଇ ଯାଏ, ଏବଂ ଆପେକ୍ଷିକ ସତ୍ୟର ସ୍ଥିତିକୁ ଅସ୍ୱୀକାର କରି ବିଶ୍ୱାସର ମୂହୂର୍ତ୍ତ ପରିଣତ ହୁଏ ଅନାପେକ୍ଷରେ । ମତାନ୍ଧ, ଅଯୌକ୍ତିକ ବିଶ୍ୱାସ ଚିନ୍ତନକୁ ତା'ର ସୃଜନଶୀଳ ଏବଂ ସକ୍ରିୟ ଭିତ୍ତିରୁ ବଞ୍ଚିତ କରେ ଏବଂ ଭୁଲ ଏବଂ ଭ୍ରାନ୍ତିର ସୃଷ୍ଟି ଏବଂ ସେସବୁର ପରିପ୍ରକାଶକୁ ଠିକ୍ ସମୟରେ ରୋକି ଦିଏ, ଲୋକଙ୍କୁ ନିଷ୍କ୍ରିୟ କରେ ଏବଂ ପୁରୁଣାକାଳିଆ ପରମ୍ପରା ଏବଂ ଆଗର ବ୍ୟବହାର ଅନୁରକ୍ତ କରି ରଖେ ।

ଦର୍ଶନର ଇତିହାସରେ ଉଭୟ ଇନ୍ଦ୍ରିୟାନୁଭୂତିବାଦୀ ଏବଂ ଯୁକ୍ତିବାଦୀମାନେ ସର୍ବଦା ଅବଗତି ପ୍ରକ୍ରିୟାର ଇନ୍ଦ୍ରିୟାନୁଭୂତ ଏବଂ ଯୁକ୍ତିଗତ ଦିଗ ମଧ୍ୟରେ ପାର୍ଥକ୍ୟର ରେଖା ଟାଣିଥାନ୍ତି । ଇନ୍ଦ୍ରିୟାନୁଭୂତିବାଦୀମାନେ ଚିନ୍ତନର ଭୂମିକାକୁ ନ୍ୟୂନ କରି ଦେଖନ୍ତି ଏବଂ ଭାବନ୍ତି ଚିନ୍ତନରେ କେବଳ ଇନ୍ଦ୍ରିୟାନୁଭୂତି ବ୍ୟତୀତ ଆଉ କିଛି ନଥାଏ । ଏହି ଭଳି ମତାମତ ପୋଷଣ କରୁଥିଲେ, ଦୃଷ୍ଟାନ୍ତ ସ୍ୱରୂପ, ଇଂରେଜ ବସ୍ତୁବାଦୀ ଦାର୍ଶନିକ ଜୋହନ୍ ଲକ୍ (୧୬୩୨-୧୭୦୪) । ଯୁକ୍ତିମତବାଦୀମାନେ, ଅନ୍ୟ ଦିଗରେ ଇନ୍ଦ୍ରିୟାନୁଭୂତ ଜ୍ଞାନର ତଥ୍ୟକୁ ଗ୍ରହଣ କରନ୍ତି ନାହିଁ । ଯୁକ୍ତିଗତବାଦ, ଜ୍ଞାନତାତ୍ତ୍ୱିକ ଦିଗରୁ, ବୃଦ୍ଧି ପାଇଥିଲା ସିଦ୍ଧାନ୍ତ କରିଥାରେ ନୂତନ ଜ୍ଞାନରେ ପହଞ୍ଚିବାରେ ମଣିଷ କ୍ଷମତାର ଅନାପେକ୍ଷକରଣ ମଧ୍ୟରୁ । ଏହାର ଅନ୍ୟତମ ବିଖ୍ୟାତ ପ୍ରତିନିଧି ହେଉଛନ୍ତି ହେଗେଲ ।

## ୭ – ତତ୍ତ୍ୱ ଏବଂ ପ୍ରୟୋଗ

ମଣିଷର ଶକ୍ତି ନିହିତ ଥାଏ ତା'ର ପ୍ରମାଣସିଦ୍ଧ ଜ୍ଞାନ ମଧ୍ୟରେ । କିନ୍ତୁ ଖାଲି ଜାଣିବାଟା ଯଥେଷ୍ଟ ନୁହେଁ, ଏହି ଜ୍ଞାନକୁ ପ୍ରୟୋଗରେ ରୂପାନ୍ତରିତ କରିବା ଦରକାର । ଏ କଥା ବହୁ ଦିନରୁ ଲକ୍ଷ୍ୟ କରାଯାଇଛି ଯେ, ଯେଉଁ ଲୋକ କାମ କରିବାକୁ ଭୟ କରେ ତା ପକ୍ଷରେ ପ୍ରଜ୍ଞାଯୁକ୍ତ ଶବ୍ଦରାଜି ଅଦରକାରୀ । ଆଲୋକ୍ ଧରିଥିବା ଅନ୍ଧ ମଣିଷ ଭଳି ସେ ଦେଖାଯାଏ । ଅବଗତିପ୍ରବଣ ମନର ଏକମାତ୍ର ଲକ୍ଷ୍ୟ ହେଉଛି ଚିନ୍ତା କରି ଯିବା – ଏହି ଉକ୍ତିଟି ସହିତ ଆମେ କିପରି ଏକମତ ହେବା ? ଭାବବାଦୀ ଧର୍ମୀୟ ଦର୍ଶନରେ ଏ କଥାଟି ପ୍ରାଧାନ୍ୟ ଲଭ କରିଛି ଯେ, ଦାର୍ଶନିକକୁ ଜୀବନର ଊର୍ଦ୍ଧ୍ୱରେ ରହି କେବଳ ଚିନ୍ତା କରିବାକୁ ହେବ । ମାର୍କସ୍‌ଙ୍କ ପୂର୍ବ ଦର୍ଶନରେ ତତ୍ତ୍ୱ ଏବଂ ପ୍ରୟୋଗ ମଧ୍ୟରେ ଏକ ପାର୍ଥକ୍ୟର ରେଖା ଟଣା ଯାଉଥିଲା ।

ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଜ୍ଞାନତତ୍ତ୍ୱ ଅବଗତିମୂଳକ ପ୍ରକ୍ରିୟାକୁ ଅନୁଧ୍ୟାନ କରିବାରେ

ପୂର୍ବବର୍ତ୍ତୀ ମତବାଦସମୂହର ଏକଦିଗଦର୍ଶିତାକୁ ଅତିକ୍ରମ କରିଛି । ବାସ୍ତବତାର ପ୍ରତିଫଳନ ହେଉଛି ଏକ ଜଟିଳ ଦ୍ୱନ୍ଦ୍ୱମୂଳକ ପ୍ରକ୍ରିୟା, ଯିଏକି ଯୁକ୍ତି ଏବଂ ଆତ୍ମଅନୁଭୂତି, ସନ୍ଦେହ ଏବଂ ବିଶ୍ୱାସ, ଯୁକ୍ତିଯୁକ୍ତତା ଏବଂ ପ୍ରଜ୍ଞା, ଅଭିଜ୍ଞତାଗତ ଏବଂ ତାତ୍ତ୍ୱିକ, ଭାବଗତ ଏବଂ ବସ୍ତୁଗତ, ଆପେକ୍ଷିକ ଏବଂ ଅନାପେକ୍ଷିକ ସହିତ ଯୁକ୍ତ । ଅବଗତିର ଏହି ପ୍ରକ୍ରିୟାରେ ବସ୍ତୁର ରୂପାନ୍ତରଣ ପ୍ରୟୋଗ ହେଉଛି ମୌଳିକ ନୀତି ଏବଂ ମୂଳ ଭିତ୍ତି । ଏବଂ ଏହାହିଁ ହେଉଛି ତା'ର ଚୂଡ଼ାନ୍ତ ଲକ୍ଷ୍ୟ ।

ଅବଗତି ପ୍ରକ୍ରିୟାରେ ପ୍ରୟୋଗର ନିଷ୍ପତ୍ତିମୂଳକ ଭୂମିକା ବୋଇଲେ ତତ୍ତ୍ୱ ପତି କୌଣସି ଅବଜ୍ଞାକୁ ବୁଝାଏ ନାହିଁ । ବୈଜ୍ଞାନିକ ତତ୍ତ୍ୱ ସକ୍ରିୟ ଭାବେ ପ୍ରୟୋଗକୁ ପ୍ରଭାବିତ କରିଥାଏ, ଅତୀତର ପ୍ରୟୋଗକୁ ବ୍ୟାଖ୍ୟା ଏବଂ ସାଧାରଣୀକରଣ କରି, ଚଳନ୍ତି ପ୍ରୟୋଗକୁ ନିର୍ଦ୍ଦେଶିତ ଏବଂ ଭବିଷ୍ୟତ କାର୍ଯ୍ୟର ଭବିଷ୍ୟତ ବାଣୀ କରି ।

ଉନ୍ନତ ବିପ୍ଳବୀ ତତ୍ତ୍ୱ ହେଉଛି ଅତୀବ ଗୁରୁତ୍ୱସଂପନ୍ନ । ବ୍ୟାପକ ଜନସାଧାରଣଙ୍କ ଦ୍ୱାରା ଆତ୍ମସ୍ଥ ହୋଇ ଏହା ସେମାନଙ୍କ ବ୍ୟାବହାରିକ କ୍ରିୟାସମୂହ ଜରିଆରେ ସାମାଜିକ ବାସ୍ତବତାର ପ୍ରଗତିଶୀଳ ରୂପାନ୍ତରଣର ଶକ୍ତିଶାଳୀ ଭୌତିକ ବଳରେ ପରିଣତ ହୋଇଥାଏ । ଏଥି ସଙ୍ଗେ ସଙ୍ଗେ ପ୍ରୟୋଗ ତତ୍ତ୍ୱକୁ ଜୀବନ୍ତ କରେ, ପ୍ରୟୋଗ ଦ୍ୱାରା ତାହା ସଠିକ ହୁଏ ଏବଂ ପ୍ରମାଣିତ ହୁଏ । ପ୍ରୟୋଗ ହେଉଛି ଯେକୌଣସି ତତ୍ତ୍ୱର ମାନଦଣ୍ଡ । ଶ୍ରମିକ ଶ୍ରେଣୀର ଏବଂ ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କର ବିପ୍ଳବୀ ଆନ୍ଦୋଳନ ଏବଂ କମ୍ୟୁନିଷ୍ଟମାନଙ୍କର ବ୍ୟାବହାରିକ କ୍ରିୟାକଳାପ ହୃଦ୍‌ବୋଧ ଭାବେ ଦର୍ଶାଇଛି ମାର୍କସ୍‌ବାଦ-ଲେନିନ୍‌ବାଦର ତାତ୍ତ୍ୱିକ ଅବସ୍ଥାନ ଏବଂ ନୀତିରାଜିର ଅପରାଜେୟତାକୁ ।

# ଦ୍ୱାଦଶ ପରିଚ୍ଛେଦ

# ବିଜ୍ଞାନ ଏବଂ ସାମାଜିକ କ୍ରିୟାକଳାପର ସାର୍ବିକ ପଦ୍ଧତି

ଯୁକ୍ତିସମ୍ମତ ଚିନ୍ତନ ପର୍ଯ୍ୟାୟରେ ଅବଗତିମୂଳକ ପ୍ରକ୍ରିୟାର ଫଳାଫଳସମୂହ ସ୍ଥିର ହୋଇଥାଏ ବସ୍ତୁଗତ ଜଗତର ପ୍ରପଞ୍ଚସମୂହର ଧର୍ମରାଶି ତଥା ବୈଶିଷ୍ଟ୍ୟରାଜିକୁ ପ୍ରତିଫଳିତ କରୁଥିବା ଅବଧାରଣା ରୂପରେ । ଜନସାଧାରଣ ସେମାନଙ୍କର ବ୍ୟାବହାରିକ କ୍ରିୟାକଳାପ ଏବଂ ଦୈନନ୍ଦିନ ଜୀବନରେ ଜନସାଧାରଣ ବିଭିନ୍ନ ଅବଧାରଣାକୁ ବ୍ୟବହାର କରିଥାନ୍ତି, ସର୍ବୋପରି ଦୈନନ୍ଦିନ ଭାଷାର ସେହିସବୁ ଅବଧାରଣାଗୁଡ଼ିକୁ, ଯଥା, ପିତା, ମାତା, ଭ୍ରାତ, ଘର, ନଦୀ, ପଶୁ, ବୃକ୍ଷ, ଆଦି । ବିଭିନ୍ନ ବିଜ୍ଞାନରେ ବିଶେଷ ଅବଧାରଣାସମୂହର ମଧ୍ୟ ବ୍ୟବହାର ହୋଇଥାଏ, ଯଥା, ବସ୍ତୁବିଜ୍ଞାନରେ ମାସ, ଶକ୍ତି, ଅଣୁକଣା, ପ୍ରାଣୀବିଜ୍ଞାନରେ ପ୍ରାଣୀମାନଙ୍କର ଜାତି, ଜେନେ, ରାଜନୈତିକ ଅର୍ଥଶାସ୍ତ୍ରରେ ମୂଲ୍ୟ, ପୁଞ୍ଜି, ଆଦି । ପ୍ରବର୍ଗସମୂହ ବିନା ବାସ୍ତବତାର କୌଣସି ଆଲୋଚନା ବି ହୋଇ ପାରେ ନାହିଁ ।

## ୧ — ଦ୍ୱନ୍ଦ୍ୱମୂଳକ ଚିନ୍ତାର ପ୍ରବର୍ଗସମୂହ

ପ୍ରବର୍ଗସମୂହ ହେଉଛନ୍ତି ଦାର୍ଶନିକ ଅବଧାରଣାସମୂହ ଏବଂ ବସ୍ତୁଗତ ଜଗତର ପଦାର୍ଥସମୂହର ଧର୍ମରାଜି ଏବଂ ସେସବୁ ପଦାର୍ଥସକଳ ମଧ୍ୟରେ ସାଧାରଣ ଯୋଗସୂତ୍ରକୁ ଏବଂ ଯୁକ୍ତିସଙ୍ଗତ ସଂପର୍କରାଜିକୁ ସେସବୁ ପ୍ରକାଶ କରିଥାଏ । ସେସବୁ ସେସବୁର ସାର୍ବିକ ପ୍ରୟୋଗ ଏବଂ ସର୍ବାଧିକ ଅବଧାରଣାଗତ ସାଧାରଣୀକରଣରେ ଅନ୍ୟ ସମସ୍ତ ଅବଧାରଣାଠାରୁ ଭିନ୍ନ । ପ୍ରବର୍ଗସମୂହ ମନେ ହୁଅନ୍ତି ଲୋକଙ୍କ ଚିନ୍ତାମୁଖୀ କ୍ରିୟାକଳାପର ସାଧାରଣ ରୂପରାଶି ପରି । ବିଭିନ୍ନ ଦାର୍ଶନିକ ମତବାଦରେ ପ୍ରବର୍ଗସମୂହ ନିର୍ଦ୍ଧାରକ ହିସାବରେ ପ୍ରକାଶ ପାଇଥାନ୍ତି । ଭାବବାଦୀ ବେଦାନ୍ତ ଦର୍ଶନର ମୁଖ୍ୟ ପ୍ରବର୍ଗସମୂହ ମଧ୍ୟରେ ଯାଏ ମୋକ୍ଷ, କର୍ମ, ଆତ୍ମା, ପୁରୁଷ, ସଂସାର ଏବଂ ଧର୍ମ । ଆଧୁନିକ ଅସ୍ତିତ୍ୱବାଦ ମନେ କରେ "ଅସ୍ତିତ୍ୱ", "ଶୂନ୍ୟତା", "ସୀମାବସ୍ଥା", ଆଦିକୁ ପ୍ରବର୍ଗ ବୋଲି । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପ୍ରବର୍ଗସମୂହ ମଧ୍ୟରେ ଯାଏ, "ବସ୍ତୁ", "ଗତି", "ଦ୍ୱନ୍ଦ୍ୱ", "ଗୁଣ",

"ପରିମାଣ", "ନେତୀକରଣ", "କାରଣ", "ସମ୍ଭାବନା", "ରୂପ", "ଆଧେୟ", "ନିୟମ", "ଆକସ୍ମିକତା" ଏବଂ "ସାରମର୍ମ", ଆଦି ।

ବସ୍ତୁବାଦୀ ଏବଂ ଭାବବାଦୀମାନେ, ଦ୍ୱନ୍ଦ୍ୱବାଦ ଏବଂ ଅଧିଭୌତିକବାଦ ପ୍ରବର୍ଗର ଚରିତ୍ର ଏବଂ ଅନ୍ୟାନ୍ୟ ଦାର୍ଶନିକ ପ୍ରଶ୍ନରାଜି ସଂପର୍କରେ ସଂପୂର୍ଣ୍ଣ ବିପରୀତ ମତ ପୋଷଣ କରନ୍ତି । ବସ୍ତୁଗତ ଭାବବାଦୀମାନେ ବିଶ୍ୱାସ କରନ୍ତି ଯେ, ଦୃଷ୍ଟାନ୍ତ ସ୍ୱରୂପ, ପ୍ରବର୍ଗସମୂହ ମାନବିକ ଚେତନାର ବାହାରେ ଏବଂ ସ୍ୱାଧୀନ ଭାବେ ଅବସ୍ଥାନ କରନ୍ତି ବିଶେଷ "ଆଦର୍ଶ ସାରସତ୍ତା" ରୂପରେ । ଭାବଗତ ଭାବବାଦୀମାନେ ପ୍ରବର୍ଗସମୂହକୁ ହୁଏତ ଫମ୍ପା କଳ୍ପନା, ଶବ୍ଦ ହିସାବରେ ନିନ୍ଦା କରିଥାନ୍ତି, ଯିଏକି କୌଣସି କିଛିକୁ ପ୍ରକାଶ କରେ ନାହିଁ କି ସୂଚିତ କରେ ନାହିଁ, ବା ସେସବୁକୁ ମାନବିକ ଚେତନାର ସହଜାତ ଜନ୍ମଗତ ରୂପ ହିସାବରେ ପ୍ରକାଶ କରେ, ସେସବୁକୁ ବସ୍ତୁଗତ ଆଧେୟରୁ ବଞ୍ଚିତ କରି ।

ଦର୍ଶନର ଇତିହାସରେ ପ୍ରବର୍ଗସମୂହ ପ୍ରତି ଅଧିଭୌତିକ ଆଭିମୁଖ୍ୟ ପ୍ରକାଶ ପାଇଥାଏ କେତେକ ପ୍ରବର୍ଗସମୂହ ସହିତ ଅନ୍ୟ କେତେକର ବିପରୀତତା ମଧ୍ୟରେ, ସେସବୁ ମଧ୍ୟରେ ଆଭ୍ୟନ୍ତରୀଣ ଯୋଗସୂତ୍ରଗୁଡ଼ିକୁ (ପ୍ରୟୋଜନୀୟତା ଏବଂ ଆକସ୍ମିକତା ମଧ୍ୟରେ) ଅବଜ୍ଞା କରିବାରେ ଏବଂ ପ୍ରବର୍ଗସମୂହର ବିକାଶକୁ ଅସ୍ୱୀକାର କରିବାରେ ।

ପ୍ରବର୍ଗସମୂହର ସମସ୍ୟାକୁ ସଠିକ ଭାବେ କେବଳ ବୁଝି ହୁଏ ପ୍ରତିଫଳନର ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ତତ୍ତ୍ୱର ଅବସ୍ଥାନରୁ । ରବୀନ୍ଦ୍ରନାଥ ଠାକୁର ଲେଖିଛନ୍ତି, "ଜଗତ ହେଉଛି ରୂପ ଏବଂ ଅରୂପର ସଂଗ୍ରନ୍ଥନ, ଚିନ୍ତନ ତା ମଧ୍ୟରେ ଶବ୍ଦ ସୃଷ୍ଟି କରେ ଏବଂ ସତ୍ୟ ସୃଷ୍ଟି କରେ ଅର୍ଥ ।"* ଏହି ଭାବକଳ୍ପଟିକୁ ଏହି ଭାବେ ବ୍ୟାଖ୍ୟା କରାଯାଇ ପାରେ : ପ୍ରବର୍ଗସମୂହ ହେଉଛି, ପ୍ରଥମ ଦୃଷ୍ଟିପାତରେ, ପ୍ରକୃତିର ପ୍ରପଞ୍ଚସମୂହର ବିଶୃଙ୍ଖଳ ଜାଲର ଗ୍ରନ୍ଥି ଭଳି । ସେସବୁ ମଣିଷକୁ ସାହାଯ୍ୟ କରନ୍ତି ଜଗତକୁ ଜାଣିବାରେ ଏବଂ ଆୟତ୍ତ କରିବାରେ । ପ୍ରବର୍ଗସମୂହ ହେଉଛନ୍ତି ବାସ୍ତବତାର ପ୍ରତିଫଳନର ସାର୍ବିକ ରୂପରାଜି ଏବଂ ସାମାଜିକ ଅବଗତି ଏବଂ ପ୍ରୟୋଗର ବିକାଶରେ ପର୍ଯ୍ୟାୟସମୂହ । ସେସବୁ ହେଉଛନ୍ତି ଆଧେୟ ଏବଂ ସୃଷ୍ଟିରେ ବସ୍ତୁଗତ । ତା ଅର୍ଥ, ସ୍ୱୟଂ ବସ୍ତୁଗତ ବାସ୍ତବତାରେ ସାର୍ବିକ ବିମୂର୍ତ୍ତତା ହିସାବରେ ସାମାଜିକ-ଐତିହାସିକ ପ୍ରୟୋଗ ଏବଂ ଅବଗତିରେ ମଣିଷ ଦ୍ୱାରା ସ୍ଥିରିକୃତ ପଦାର୍ଥସମୂହର ସାର୍ବିକ ସଂପର୍କରାଜି ଏବଂ ଧର୍ମସକଳ ବାସ୍ତବରେ ଅବସ୍ଥିତ । ଦୃଷ୍ଟାନ୍ତ ସ୍ୱରୂପ, କାରଣ ନାମକ ପ୍ରବର୍ଗଟି ପ୍ରପଞ୍ଚର ଏକ ପ୍ରକାଶନ ଉପରେ ଦେଖା ଦେଇଥିଲା, ଯଦ୍ୱାରା କେତେକ ଘଟନା ଅନିବାର୍ଯ୍ୟ ଭାବେ ଅନ୍ୟ କେତେକ ଘଟନା ପଛରେ ଘଟିଥାଏ, ପ୍ରଥମଟିକୁ ଜନ୍ମ ଦିଏ, ମଣିଷ ଏ ପ୍ରପଞ୍ଚଟିକୁ ଅସଂଖ୍ୟ ବାର ଦେଖିବାକୁ ପାଇଛି । ଏଥି ସଙ୍ଗେ ସଙ୍ଗେ ବସ୍ତୁଗତ ଭାବେ ପ୍ରତିଷ୍ଠିତ ଯୋଗସୂତ୍ର ଏବଂ ପଦାର୍ଥସମୂହ ମଧ୍ୟରେ ସଂପର୍କରାଜିର ପ୍ରତିଫଳନ ହିସାବରେ ରୂପ ଦୃଷ୍ଟିରୁ ଭାବଗତ । ଅନ୍ୟ କଥାରେ,

---

* ରବୀନ୍ଦ୍ରନାଥ ଠାକୁର, "*Stray Birds*", ପୃ : ୧୨୬ ।

ସେସବୁ ହେଉଛି ଅବଧାରଣାସମୂହ ଏବଂ ତେଣୁ କରି ବାସ୍ତବତାର ମାନସିକ ଏବଂ ମନୋଗତ ପ୍ରତିବିମ୍ବ । ସେଗୁଡ଼ିକ ମଧ୍ୟ ମନୋଗତ, ଏହି ଦୃଷ୍ଟିରୁ ଯେ, ମଣିଷ ସମାଜର ଅବଗତିମୂଳକ ଏବଂ ବାସ୍ତବ କ୍ରିୟାକଳାପର ପ୍ରତ୍ୟେକଟି ପର୍ଯ୍ୟାୟରେ ସେଗୁଡ଼ିକ ବସ୍ତୁଗତ ଜଗତ ସଂପର୍କରେ ମଣିଷ ଜ୍ଞାନର ନିର୍ଦ୍ଦିଷ୍ଟ ଏକ ସ୍ତରକୁ ପ୍ରକାଶ କରିଥାଏ । ଅବଗତିରେ ଆଉରି ଅଧିକ ଅଗ୍ରଗତି ପ୍ରବର୍ଗସମୂହର ଆଧେୟକୁ ସମୃଦ୍ଧତର ଏବଂ ଗଭୀରତର କରିଥାଏ, ଏବଂ ବସ୍ତୁଗତ ଭାବେ ଗୁରୁତ୍ୱପୂର୍ଣ୍ଣ ଯୋଗସୂତ୍ରସମୂହର ପ୍ରବର୍ଗରେ ପୁନଃସୃଷ୍ଟି ଏବଂ ପ୍ରକୃତ ପ୍ରପଞ୍ଚରାଜି ମଧ୍ୟରେ ସଂପର୍କସମୂହ ମଧ୍ୟରେ ସମତାଳିକତାର ମାତ୍ରା ବଢ଼ିବାରେ ଲଗିଛି । ନୂଆ ପ୍ରବର୍ଗସମୂହ ଜନ୍ମ ନେଉଛି, ଯିଏକି ଗତିମାନ ବସ୍ତୁର ପ୍ରଥମେ ଅଜ୍ଞାତ ଦିଗଗୁଡ଼ିକୁ ଦର୍ଶାଇ ଦେଉଛି ।

ନିର୍ଦ୍ଦିଷ୍ଟ ଭାବେ କାରଣତ୍ୱ ସମସ୍ୟା ପ୍ରତି ସଠିକ ଆଭିମୁଖ୍ୟ ହେଉଛି ମଣିଷର ବ୍ୟାବହାରିକ କ୍ରିୟାରେ ବିରାଟ ଗୁରୁତ୍ୱପୂର୍ଣ୍ଣ । କାରଣ ଏବଂ ଫଳ ମଧ୍ୟରେ ଯୋଗସୂତ୍ରଟି ହେଉଛି ପଦାର୍ଥସକଳ ମଧ୍ୟରେ ଅତୀବ ଆବଶ୍ୟକୀୟ ବହୁରୂପକ ସଂପର୍କ । ବସ୍ତୁବାଦୀ ଦ୍ୱନ୍ଦ୍ୱମୂଳକ ଦର୍ଶନରେ "କାରଣ" ପ୍ରବର୍ଗଟି ପ୍ରକାଶ କରେ (କ) ପଦାର୍ଥସମୂହର ପରସ୍ପର ଉପରେ କ୍ରିୟାର ଚରିତ୍ର ହେଉଛି ବସ୍ତୁଗତ; (ଖ) ପ୍ରପଞ୍ଚସମୂହ ମଧ୍ୟରେ ଜନ୍ମଗତ ଯୋଗସୂତ୍ର, ଅର୍ଥାତ୍, କାରଣ ଆବଶ୍ୟକ ଭାବେ ଏକ ଫଳ ସୃଷ୍ଟି କରେ; (ଗ) କାରଣଗତ କ୍ରିୟାର ଅପଶ୍ଚାଦ୍‌ଗମନତା, ଅର୍ଥାତ୍, କାରଣ ହିସାବରେ ତା'ର ନିଜସ୍ୱ ପରିଣାମର ଫଳ ହୋଇ ପାରେ ନାହିଁ; (ଘ) କାରଣ ଏବଂ ପରିଣାମର ପାର୍ଥିବ ଅନୁକ୍ରମ ।

କାରଣତ୍ୱର ବସ୍ତୁଗତ ଏବଂ ସାର୍ବିକ ଚରିତ୍ରର ସ୍ୱୀକୃତି ବିଭିନ୍ନ ପ୍ରପଞ୍ଚରାଜି ଏବଂ ଘଟନାବଳୀ ମଧ୍ୟରେ ସଂପର୍କ ବିଭିନ୍ନ ଭାବେ ହେବାର ସମ୍ଭାବନାକୁ ଉଡ଼ାଇ ଦିଏ ନାହିଁ: ଆବଶ୍ୟକୀୟ ଏବଂ ଆକସ୍ମିକ । "ଆବଶ୍ୟକୀୟ" ପ୍ରବର୍ଗ ପ୍ରକାଶ କରେ ପ୍ରପଞ୍ଚରାଜି ମଧ୍ୟରେ ଦୃଢ଼ ଯୋଗସୂତ୍ରକୁ; ସେଭଳି ଏକ ଯୋଗସୂତ୍ର ଯେତେବେଳେ ପ୍ରତିଷ୍ଠିତ, ତାହା ବାଧ୍ୟତାମୂଳକ ହୋଇଥାଏ; ଏକ ଆବଶ୍ୟକୀୟ ପ୍ରପଞ୍ଚ ବା ଘଟଣା ସବୁବେଳେ ନିର୍ଦ୍ଦିଷ୍ଟ ଏକ ବ୍ୟବସ୍ଥା ମଧ୍ୟରେ ପ୍ରକଟିତ ହୁଏ ଏବଂ ଅସନ୍ଦିଗ୍ଧ ଭାବେ ଘଟିଥାଏ । ଏହାର ବିପରୀତ ପ୍ରବର୍ଗ, "ଆକସ୍ମିକତା" ସେଇସବୁ ଘଟନା ଏବଂ ପ୍ରପଞ୍ଚରାଜି ପ୍ରତି ପ୍ରଯୋଜ୍ୟ, ଯିଏକି ସନ୍ଦିଗ୍ଧ ଭାବେ ସଂଯୁକ୍ତ । "ଆକସ୍ମିକ" ହିଁ ଏହି ଭାବେ ବା ସେଇ ଭାବେ ଘଟିଥାଏ । ଆବଶ୍ୟକତାଠାରୁ ଭିନ୍ନ, "ଆକସ୍ମିକତା"ର ଚେର ଏବଂ କାରଣ ନିର୍ଦ୍ଦିଷ୍ଟ ବସ୍ତୁଟିର ବାହାର କାରଣମାନଙ୍କରେ ନିହିତ । ତା ସତ୍ତ୍ୱେ ଆବଶ୍ୟକତା ଏବଂ ଆକସ୍ମିକତା ଯେତେ ପରସ୍ପରର ବିପରୀତ ହେଲେ ବି ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ଗ୍ରହେ ସେ ଦୁଇଟିକୁ ମିଳିତ ଭାବେ ଚିନ୍ତା କରିବାକୁ ।

ବସ୍ତୁଗତ ବାସ୍ତବତା ଯେତେ ଆବଶ୍ୟକତା ଏବଂ ଆକସ୍ମିକତାର ଐକ୍ୟ ରୂପେ ଦେଖା ଯାଉ ନା କାହିଁକି, ଅନ୍ୟାନ୍ୟ ପ୍ରବର୍ଗସମୂହ ମଧ୍ୟ ବିକାଶ ଲଭ କରିଛି ସାମାଜିକ-ଐତିହାସିକ ପ୍ରୟୋଗ ଏବଂ ବୈଜ୍ଞାନିକ ଅବଗତି ମଧ୍ୟରେ ତାକୁ ପ୍ରକାଶ

କରିବା ନିମିତ୍ତ । ସେସବୁ ହେଉଛି : ବାସ୍ତବତା ଏବଂ ସମ୍ଭାବନାର, ସାରମର୍ମ ଏବଂ ବହିଃ ପ୍ରକାଶ, ସାମଗ୍ରିକ ଏବଂ ବୈକ୍ତିକ, ଆଧେୟ ଏବଂ ରୂପର ପ୍ରବର୍ଗସମୂହ । ତେଣୁ ସଂକୀର୍ଣ୍ଣ ଅର୍ଥରେ ବାସ୍ତବତାର ଅବଧାରଣାର ଅନ୍ତର୍ଗତ ହେଉଛି ପ୍ରପଞ୍ଚ ଏବଂ ପ୍ରକ୍ରିୟାସମୂହ, ଯିଏକି ଚଳନ୍ତି ଘଟନାବଳୀ ଉପରେ ପ୍ରକୃତ ପ୍ରଭାବ ପକାଇଥାଏ । ପ୍ରକୃତରେ, ଯାହା କିଛି ଅବସ୍ଥିତ, ସେସବୁ ହେଉଛି ବାସ୍ତବ (କାଳ୍ପନିକ ବା ଅବାସ୍ତବ ଅସ୍ତିତ୍ୱ ଅଥବା ସମ୍ଭାବ୍ୟ ମଧ୍ୟସ୍ଥ ସରାଠାରୁ ଭିନ୍ନ । ସମ୍ଭାବନାର ପ୍ରବର୍ଗଟି ବାସ୍ତବ ପ୍ରପଞ୍ଚରେ ପରିବର୍ତ୍ତନମୁଖୀ ନବଜାତ ପ୍ରବଣତାକୁ ପ୍ରକାଶ କରିଥାଏ ଏବଂ ତାହା କେବଳ ସମ୍ଭବ ପ୍ରକୃତ ଅବସ୍ଥା ମଧ୍ୟରେ । ଏହିସବୁ ପ୍ରବଣତା କେତେ ପରିମାଣରେ ବିକାଶ ଲାଭ କରିଛି, ତା ଉପରେ ନିର୍ଭର କରି ବିମୂର୍ତ୍ତ ଏବଂ ପ୍ରକୃତ ସମ୍ଭାବନା ମଧ୍ୟରେ ପାର୍ଥକ୍ୟ ଦର୍ଶାଯାଇ ପାରେ ।

ବାସ୍ତବତାର ପଦାର୍ଥ ଏବଂ ପ୍ରପଞ୍ଚସମୂହ ଦେଖାଯାଏ ବିଭିନ୍ନ ଚରିତ୍ର ଏବଂ ସ୍ତରସମୂହ ବ୍ୟବସ୍ଥାରାଜି ଭଳି, ଅର୍ଥାତ୍, ନିର୍ଦ୍ଦିଷ୍ଟ ଏକ ଉପାୟରେ ଯୁକ୍ତ ଉପାଦାନସମୂହର ସମଗ୍ରତା ହିସାବରେ । ଏହି ଅବସ୍ଥାଟି ପ୍ରତିଫଳିତ ହୋଇଥାଏ "ଆଧେୟ" ଏବଂ "ରୂପର" ପ୍ରବର୍ଗସମୂହରେ । "ଆଧେୟ" ନିର୍ଦ୍ଦିଷ୍ଟ ଏକ ପଦାର୍ଥ ମଧ୍ୟରେ ଥିବା ସମସ୍ତ ଉପାଦାନର ଅଖଣ୍ଡ ସମାହାରକୁ (ଉପାଦାନ, ଦିଗ, ଯୋଗସୂତ୍ର ଏବଂ ସଂପର୍କରାଜି) ଏବଂ ପରସ୍ପର ସହିତ ଆନ୍ତଃକ୍ରିୟାକୁ ସୂଚିତ କରିଥାଏ । "ରୂପ" ପ୍ରବର୍ଗଟି ଆଧେୟର ଅବସ୍ଥିତିର ଢଙ୍ଗ ଏବଂ ଗଢ଼ଣକୁ, ତା'ର ଉପାଦାନସମୂହ ଯେଉଁ ଭାବେ ପାରସ୍ପରିକ କାର୍ଯ୍ୟ କରେ, ତାକୁ ପ୍ରକାଶ କରିଥାଏ ।

ଆଧାର ଏବଂ ଆଧେୟ ପ୍ରବର୍ଗ ଦୁଇଟି ଅବଗତି ପ୍ରକ୍ରିୟାରେ ଏବଂ ସାରମର୍ମ ଏବଂ ଆକୃତିର ବାସ୍ତବ କ୍ରିୟାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥାଏ । "ସାରମର୍ମ" ପ୍ରବର୍ଗଟି କୌଣସି ପଦାର୍ଥର ଆଭ୍ୟନ୍ତରୀଣ ଭିତ୍ତିକୁ, ଏହାର ସ୍ଥିତିଶୀଳ, ସାଧାରଣ, ଆବଶ୍ୟକତା ଏବଂ ନିଷ୍ପରିମୂଳକ ଧର୍ମରାଶି ଏବଂ ସଂପର୍କରାଶିକୁ ଦର୍ଶାଇଥାଏ । ଏହାର ବିପରୀତରେ "ଆକୃତି" ପ୍ରବର୍ଗଟି ପଦାର୍ଥର ବାହ୍ୟିକ ଦିଗଟିକୁ ପୁନଃପ୍ରକାଶ କରିଥାଏ । ଆକୃତି ହେଉଛି ବୈକ୍ତିକ, ପରିବର୍ତ୍ତନଶୀଳ ଏବଂ ବହୁ ପରିମାଣରେ ଆକସ୍ମିକ । ପଦାର୍ଥର ଆଭ୍ୟନ୍ତରୀଣ ବୈଶିଷ୍ଟ୍ୟରାଜି ଉପରେ ଏହାର ଅସ୍ତିତ୍ୱ ନିର୍ଭରଶୀଳ ।

ସାରମର୍ମ ଏବଂ ଆକୃତି ପ୍ରବର୍ଗ ସଂପର୍କରେ ଜାଣିବାକୁ ହେଲେ "ସାର୍ବିକ" ଏବଂ "ବୈକ୍ତିକ" ମଧ୍ୟରେ ଆନ୍ତଃସଂପର୍କକୁ ଜାଣିବାକୁ ହେବ । ପ୍ରଥମ ପ୍ରବର୍ଗଟି ପ୍ରକାଶ କରେ ପଦାର୍ଥସମୂହକୁ ଏକ ଅଖଣ୍ଡ ସମଷ୍ଟିରେ ପରିଣତ କରୁଥିବା ଆବଶ୍ୟକୀୟ ଧର୍ମ ଏବଂ ଆଭ୍ୟନ୍ତରୀଣ ନିୟମବଦ୍ଧତାକୁ, ଏହା ହେଉଛି ସେହି "ସାର୍ବିକ", ଯିଏକି ବହୁ ବା ସମସ୍ତ ପଦାର୍ଥ ମଧ୍ୟରେ ସହଜାତ । "ବ୍ୟକ୍ତିକ" ସେଇସବୁ ବୈଶିଷ୍ଟ୍ୟରାଜିର ସମଗ୍ରତାକୁ ପ୍ରକାଶ କରେ, ଯିଏକି କେବଳ ସେ ନିର୍ଦ୍ଦିଷ୍ଟ ପଦାର୍ଥ ମଧ୍ୟରେ ନିହିତ ଥାଏ । ବ୍ୟକ୍ତିକଟି କୌଣସି ଏକ ପଦାର୍ଥକୁ ଅନ୍ୟ ସମସ୍ତ ପଦାର୍ଥଠାରୁ ପୃଥକ୍ କରିଥାଏ । ଏହାରି ଜରିଆରେ

# ଦ୍ୱନ୍ଦ୍ୱବାଦର ମୌଳିକ ପ୍ରବର୍ଗସମୂହ



ଏହା ନିର୍ଦ୍ଦିଷ୍ଟ କିମ୍ବା ପୃଥକ୍ ବୋଲି ବାରି ହୋଇ ଯାଏ । ଏହା ସତ୍ତ୍ୱେ ଦୁନିଆରେ ଏପରି କୌଣସି ଜିନିଷ ନାହିଁ, ଯିଏକି ସଂପୂର୍ଣ୍ଣ ରୂପେ ବିଚ୍ଛିନ୍ନ । ବ୍ୟକ୍ତିଗତ ବୈଶିଷ୍ଟ୍ୟସମୂହ ବ୍ୟତୀତ ଯେକୌଣସି ନିର୍ଦ୍ଦିଷ୍ଟ ପଦାର୍ଥରେ ସେଇସବୁ ଧର୍ମରାଶି ଥାଏ, ଯିଏକି ଅନ୍ୟାନ୍ୟ ଭୌତିକ ବହୁବିଧ ରୂପ ସହିତ ଅଭିନ୍ନ ।

ବସ୍ତୁଗତ ସାଧାରଣ ସାଦୃଶ୍ୟତାର ଗୁଣଗତ ବହୁବିଧତା ଏବଂ ବୈଜ୍ଞାନିକ ଅବଗତିରେ ସେସବୁର କ୍ରମବର୍ଦ୍ଧମାନ ସଠିକ ପ୍ରତିଫଳନ ଚିନ୍ତନ ପ୍ରବର୍ଗସମୂହର ମଧ୍ୟରେ ଆଭ୍ୟନ୍ତରୀଣ ଯୋଗସୂତ୍ର ଏବଂ ବିକାଶ ମଧ୍ୟରେ ଏକ ଆଭ୍ୟନ୍ତରୀଣ ଯୋଗସୂତ୍ର ପ୍ରକାଶ କରେ । ବାସ୍ତବତାର ସାଧାରଣ ନିୟମାବଳୀ ଦ୍ୱନ୍ଦ୍ୱମୂଳକ ଚିନ୍ତନର ବିଭିନ୍ନ ପ୍ରବର୍ଗସମୂହର ସଂପର୍କ ମଧ୍ୟରୁ ସୃଷ୍ଟି ହୋଇଥାଏ । ଆମେ ସେସବୁ ମଧ୍ୟରୁ କେତେକକୁ ଜାଣିଛେ । ସେସବୁ ହେଉଛି ଦ୍ୱନ୍ଦ୍ୱବାଦର ମୌଳିକ ନିୟମାବଳୀ । ଗତିମାନ ବସ୍ତୁର ସାର୍ବିକ ନିୟମବଦ୍ଧତା ସଂପର୍କରେ ଆମର ଜ୍ଞାନ ଅବଶ୍ୟ ଶେଷ ହୁଏ ନାହିଁ ଦ୍ୱନ୍ଦ୍ୱବାଦର ମୌଳିକ ନିୟମରାଶି ଦ୍ୱାରା । ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ପ୍ରତ୍ୟେକଟି ପ୍ରବର୍ଗ ମଧ୍ୟରେ ଥାଏ, ସତେ ଯେମିତି ଘନିଭୂତ ଆକାରରେ, ଯୁକ୍ତିସଙ୍ଗତ ରୂପେ ବିଗ୍ରହସମୂହ ହିସାବରେ ଅନେକଗୁଡ଼ିଏ ନିୟମ ପ୍ରକାଶ ପାଇଥାଏ । ସେସବୁ ନିୟମରାଶି ମଧ୍ୟରୁ କେତେକ ଦୃଷ୍ଟାନ୍ତ ହେଉଛି : "ଏ ଜଗତରେ ପ୍ରତ୍ୟେକ ଜିନିଷର ଅଛି ଏକ ବସ୍ତୁଗତ କାରଣ", "ଆକସ୍ମିକତା ମଧ୍ୟ ଦେଇ ଆବଶ୍ୟକତା ପ୍ରକଟିତ ଏବଂ ପରିପୂରିତ ହୋଇଥାଏ", "ପ୍ରତ୍ୟେକ ସମ୍ଭାବନା ବାସ୍ତବରେ ପରିଣତ ହୁଏ ନାହିଁ", "ଆଧେୟ ରୂପକୁ ନିର୍ଦ୍ଧାରିତ କରିଥାଏ", "ପ୍ରତ୍ୟେକ ସାରମର୍ମ ନିଜକୁ ପ୍ରକଟିତ କରିଥାଏ ଏବଂ ବହିରୂପ ହେଉଛି ଆବଶ୍ୟକୀୟ", "ନିର୍ଦ୍ଦିଷ୍ଟ ମଧ୍ୟରେ ଏବଂ ମାଧ୍ୟମରେ ସାର୍ବିକ ଅବସ୍ଥାନ କରେ" । ଅମୌଳିକ ନିୟମରାଜି ବୋଲି ବେଳେବେଳେ କଥିତ ନିୟମାବଳୀକୁ ଉଦ୍‌ଘାଟନ କରିବାଟା ବିକାଶର ଦ୍ୱନ୍ଦ୍ୱମୂଳକ ଅବଧାରଣାକୁ ଆଉରି ଅଧିକ ବିଶେଷ କରି ଦିଏ । ବିଭିନ୍ନ ପ୍ରବର୍ଗସମୂହ ମଧ୍ୟରେ ଆନ୍ତଃସଂପର୍କ ଅବଗତି ପ୍ରକ୍ରିୟାରେ ବାସ୍ତବତାର ପ୍ରତିଫଳନକୁ ଆଉରି ନିର୍ଭୁଲ କରିଥାଏ । କାର୍ଯ୍ୟକର କ୍ରିୟାକଳାପର ସମସ୍ତ କ୍ଷେତ୍ରରେ ସାଫଲ୍ୟ ନିର୍ଭର କରେ ମଣିଷର ଦ୍ୱନ୍ଦ୍ୱମୂଳକ ଭାବେ ଚିନ୍ତା କରିବା ଏବଂ କାର୍ଯ୍ୟ କରିବା ଉପରେ ।

## ୨ — ଦ୍ୱନ୍ଦ୍ୱବାଦ, ଜ୍ଞାନ ଏବଂ ଯୁକ୍ତିବିଦ୍ୟାର ତତ୍ତ୍ୱ ମଧ୍ୟରେ ଐକ୍ୟ

ଦ୍ୱନ୍ଦ୍ୱବାଦର ପ୍ରବର୍ଗସମୂହକୁ ନେଇ ଚିନ୍ତା କରିବାଟା ଯୁକ୍ତିବିଦ୍ୟାର ଅନ୍ତର୍ଗତ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ପ୍ରକାଶ କରେ ଜ୍ଞାନ, ଯୁକ୍ତିବିଦ୍ୟା ଏବଂ ଦ୍ୱନ୍ଦ୍ୱମୂଳକ ତତ୍ତ୍ୱର ଐକ୍ୟକୁ । ଏହା ଅର୍ଥ ତେବେ କ'ଣ ? ଏହି ପ୍ରଶ୍ନଟିର ଉତ୍ତର ଦେବାକୁ ଗଲେ ପ୍ରଥମେ ଆବଶ୍ୟକ କରେ ଅତୀତର ଦର୍ଶନରୁ କେତେକ ତଥ୍ୟ ଉଲ୍ଲେଖ କରିବା ।

ମାର୍କସ୍‌ବାଦ ପୂର୍ବରୁ ଦର୍ଶନକୁ ଭାଗଭାଗ କରାଯାଇଥିଲା ତଥାକଥିତ ତତ୍ତ୍ୱବିଦ୍ୟା (ସତ୍ତାର ମତବାଦ), ଆଧ୍ୟାତ୍ମବିଦ୍ୟା (ଜ୍ଞାନତତ୍ତ୍ୱ) ଏବଂ ନ୍ୟାୟ ବା ଯୁକ୍ତିବିଦ୍ୟା (ଚିନ୍ତନର ନିୟମ ଏବଂ ରୂପସମୂହର ବିଜ୍ଞାନ) ରୂପେ । କେତେକ ଦାର୍ଶନିକ ବ୍ୟବସ୍ଥାରେ ଏହିସବୁ ପୃଥକ୍ ପୃଥକ୍ କ୍ଷେତ୍ରଗୁଡ଼ିକ ଦର୍ଶନରେ ସଂପୂର୍ଣ୍ଣ ରୂପେ ବିଚ୍ଛିନ୍ନ ହୋଇ କି ଥିଲା । ଏହା ବିଶେଷ କରି କାଣ୍ଟ୍‌ଙ୍କ କ୍ଷେତ୍ରରେ ସତ୍ୟ । କାଣ୍ଟ୍‌ଙ୍କ ପକ୍ଷରେ ତତ୍ତ୍ୱବିଦ୍ୟା ହେଉଛି "ବସ୍ତୁ ପାଇଁ ବସ୍ତୁର" ମତବାଦ, ଯାହା ସଂପର୍କରେ ଆମର କୌଣସି ଜ୍ଞାନ ନାହିଁ ବୋଲି କହିଲେ ଚଳେ । ଇତିପୂର୍ବରୁ "ସତ୍ତାର ମତବାଦ"କୁ ଉପସ୍ଥାପିତ କରାଯାଉଥିଲା ଅପରିବର୍ତ୍ତନୀୟ ଚିନ୍ତାସମୂହର ବସ୍ତୁଗତ ଅବସ୍ଥିତିର ମତ (ପ୍ଲେଟୋ) ହିସାବରେ, ବ୍ରହ୍ମର ଅନପେକ୍ଷ ଆତ୍ମାର ପ୍ରକୃତ ବାସ୍ତବତା ରୂପେ (ବେଦାନ୍ତ ଦର୍ଶନ), ଦୃଢ଼ ଭୌତିକ ଉପାଦାନ (ସ୍ପିନୋଜା), ଆଦି ହିସାବରେ । ଏହିସବୁ ଆଭିମୁଖ୍ୟ ହେତୁ ତତ୍ତ୍ୱବିଦ୍ୟା ସଂପୂର୍ଣ୍ଣ ଏକ ଅଧିଭୌତିକ ମତବାଦରେ ପରିଣତ ହୋଇଥିଲା ।

ମାର୍କସ୍‌ଙ୍କ ପୂର୍ବବର୍ତ୍ତୀ ଅଧିକାଂଶ ଦାର୍ଶନିକଙ୍କର ଜଗତର ଅବଗତି ପ୍ରତି ଆଭିମୁଖ୍ୟଟା ଥିଲା ଅଦ୍ୱନ୍ଦ୍ୱମୂଳକ ଭଳି । ଜ୍ଞାନତତ୍ତ୍ୱ କ୍ଷେତ୍ରରେ ଅଧିଭୌତିକତାବାଦ ଦେଖା ଦେଇଥିଲା ଅଭିଜ୍ଞତାବାଦୀ ଏବଂ ଯୁକ୍ତିସଂଗତତାବାଦୀମାନଙ୍କ ଦ୍ୱାରା ଅନୁସୃତ ଏକଦର୍ଶୀ ଆଭିମୁଖ୍ୟରେ, ଅବଗତିବାଦୀ ପ୍ରକ୍ରିୟାର ଆପେକ୍ଷୀକରଣରେ ଏବଂ ମତାନ୍ଧତାବାଦ ଏବଂ ଚିନ୍ତନଶୀଳତାରେ । ମାର୍କସ୍‌ଙ୍କ ପୂର୍ବବର୍ତ୍ତୀ ଦର୍ଶନର ତୃତୀୟ ଉପାଦାନ, ଯୁକ୍ତିବିଦ୍ୟା କେବଳ ଗୋଟିଏ ପ୍ରକାର ଜାଣିଥିଲା – ସେ ହେଉଛି ପ୍ରଥାନୁଗତ ଯୁକ୍ତିବିଦ୍ୟା ।

ପ୍ରଥାନୁଗତ ଯୁକ୍ତିବିଦ୍ୟା ଚିନ୍ତନର ଗଠନଗତ ଦିଗଟିକୁ ଅଧ୍ୟୟନ କରିଥାଏ, ସରଳ ଯୁକ୍ତିସଂଗତ ଉପାୟକୁ ବର୍ଣ୍ଣନା କରି ଏବଂ ସେହିସବୁ ନିୟମରାଜିକୁ ପ୍ରକାଶ କରି, ଯଦ୍ୱାରା ଅନ୍ୟ କେତେକଠାରୁ ନିର୍ଦ୍ଦିଷ୍ଟ କେତେକ ବିଗ୍ରହ ଆହରଣ କରାଯାଏ । ଏହା ଛଡ଼ା ବଡ଼ କଥାଟି ହେଉଛି, ଏହା ଚିନ୍ତନର ବିଭିନ୍ନ ରୂପକୁ (ଅବଧାରଣା, ବିଗ୍ରହ ଏବଂ ସିଦ୍ଧାନ୍ତ) ଠିକ୍ ସମୟରେ ସେସବୁର ବିକାଶରୁ, କେତେକ ନିର୍ଦ୍ଦିଷ୍ଟତା, ନିର୍ଦ୍ଦିଷ୍ଟ ଆଧେୟରୁ ବିମୂର୍ତ୍ତକରଣ କରିଥାଏ । ଏକ ଏବଂ ଅଭିନ୍ନ ବିଗ୍ରହ ମଧ୍ୟରେ ଗଠିତ ଚିନ୍ତାଧାରାସମୂହ ମଧ୍ୟରେ ଆବଶ୍ୟକୀୟ ଯୋଗସୂତ୍ରକୁ ପ୍ରଥାନୁଗତ ଯୁକ୍ତିବିଦ୍ୟା ପ୍ରକାଶ କରିଥାଏ । ଏହାର ମୌଳିକ ନିୟମଟି ହେଉଛି (କ) ସାଦୃଶ୍ୟତାର ନିୟମ: "କୌଣସି ପଦାର୍ଥ ସଂପର୍କରେ ଚିନ୍ତା ନିର୍ଦ୍ଦିଷ୍ଟ ଯୁକ୍ତି ମଧ୍ୟରେ ଅପରିବର୍ତ୍ତନୀୟ ରହିବ ଅ-ଅ"; (ଖ) ବିରୋଧସମୂହର ନିୟମ: "ଦୁଇଟି ବିଗ୍ରହ ମଧ୍ୟରୁ ଗୋଟିଏ ଯଦି ଅନ୍ୟଟି ଦ୍ୱାରା ଖଣ୍ଡିତଟିକୁ ସ୍ୱୀକାର କରେ, ତେବେ ଗୋଟିଏ ନିଶ୍ଚିତ ଭାବେ ଭୁଲ ହେବ: କ ହେବନି ଖ ଏବଂ କୌଣସି ମତେ ଏକାବେଳକେ ଖ ହୋଇ ପାରିବ ନାହିଁ"; (ଗ) ବହିର୍ଭୂତ ମଧ୍ୟରେ ନିୟମ: "ଯେଉଁଠି ଦୁଇଟି ବିଗ୍ରହ ଥାଏ ଏବଂ ଗୋଟିଏ ଅନ୍ୟ ଦ୍ୱାରା ଖଣ୍ଡିତ ଯାହା କିଛି, ତାକୁ ସ୍ୱୀକାର କରେ – କ ହେଉଛି ଖ ଏବଂ କ ନୁହଁ ଖ – ଏହା ବ୍ୟତୀତ ଆଉ ତୃତୀୟ, ମଧ୍ୟ ବିଗ୍ରହ ନଥାଇ ପାରେ"; (ଘ) ଯଥେଷ୍ଟ ଯୁକ୍ତିର ନିୟମ: "ଯଥେଷ୍ଟ ଯୁକ୍ତି

ସଂପର୍କରେ ଚିନ୍ତା କରିବା ଦରକାର", ଅର୍ଥାତ୍, ପ୍ରତ୍ୟେକଟି ଚିନ୍ତା, ପ୍ରତ୍ୟେକଟି ବିଷୟର ନିର୍ଦ୍ଦିଷ୍ଟ ଯୁକ୍ତିସଙ୍ଗତ ଭିତ୍ତି ଥିବା ଦରକାର । ଯେହେତୁ ବସ୍ତୁଗତ ଜଗତର ସମସ୍ତ ପ୍ରପଞ୍ଚ ଆପେକ୍ଷିକ ଭାବେ ସ୍ଥାୟୀ ଏବଂ ନିର୍ଦ୍ଦିଷ୍ଟ, ଏହିସବୁ ନିୟମର ଅନୁସରଣ ହେଉଛି ସଠିକ ଚିନ୍ତନର ପୂର୍ବସର୍ତ୍ତ । ଏଥି ସଙ୍ଗେ ସଙ୍ଗେ ପ୍ରଥାସମ୍ମତ ଯୁକ୍ତିବିଦ୍ୟାର ଦାବିଗୁଡ଼ିକୁ କେବଳ ମାତ୍ର ପାଳନ କରିବାଟା ବାସ୍ତବତାକୁ ଅବଗତ ହେବାରେ ସଂପୂର୍ଣ୍ଣ ଅଯଥାର୍ଥ । ଅନ୍ୟ ଯେକୌଣସି ବିଜ୍ଞାନ ଭଳି ପ୍ରଥାସମ୍ମତ ଯୁକ୍ତିବିଦ୍ୟା ଅଧିଭୌତିକ ନୁହେଁ, କିନ୍ତୁ ମାର୍କସ୍‌ଙ୍କ ପୂର୍ବ ଦର୍ଶନରେ ପ୍ରପାଦ୍ୟ ଏବଂ ନିୟମର ଅନାପେକ୍ଷିକକରଣଟା ଚିନ୍ତନର ଅଧିଭୌତିକ ପଦ୍ଧତି ପକ୍ଷରେ, ସତ୍ତା ସଂପର୍କରେ ଅଧିଭୌତିକ ମତର ତାତ୍ତ୍ୱିକ ଭାବେ ଯୁକ୍ତିସମ୍ମତ ବୋଲି ପ୍ରମାଣ କରିବାର ଭିତ୍ତି ରୂପେ କାର୍ଯ୍ୟ କରିଥିଲା ।

ହେଗେଲ୍ ହିଁ ସର୍ବପ୍ରଥମେ ଉଦ୍ୟମ କରିଥିଲେ ତତ୍ତ୍ୱବିଦ୍ୟା, ଜ୍ଞାନତତ୍ତ୍ୱ ଏବଂ ଯୁକ୍ତିବିଦ୍ୟା ମଧ୍ୟରେ ଆନ୍ତଃସଂପର୍କ ପ୍ରତି ଅନ୍ୟ ଏକ ଆଭିମୁଖ୍ୟ ବାହାର କରିବାକୁ ଏବଂ ସେସବୁ ମଧ୍ୟରେ ପଥମେ ଥିବା ତଫାତ୍‌କୁ ଅତିକ୍ରମ କରିବାକୁ । କିନ୍ତୁ ହେଗେଲ୍ ଆଗେଇଥିଲେ ଚିନ୍ତନ ଏବଂ ସତ୍ତାର ସାଦୃଶ୍ୟର ଭାବବାଦୀ ଭାବେ ଅନୁଚିନ୍ତିତ ନୀତି ଦିଗରୁ । ଚିନ୍ତନର ନିୟମରାଜି ଥିଲା ତାଙ୍କ ପକ୍ଷରେ ବାସ୍ତବତାର ନିୟମ । କାରଣ, ତାଙ୍କ ମତାଦର୍ଶ ଅନୁଯାୟୀ, ସବୁ କିଛି ନିର୍ଦ୍ଦିଷ୍ଟ ଏକ ଆଇଡିଆ ଏବଂ ନିଛକ ଚିନ୍ତା ଉପରେ ପ୍ରତିଷ୍ଠିତ । ସତ୍ତାର ସମଗ୍ର ବିକାଶ ଥିଲା, ତେଣୁ ଚିନ୍ତନର ଅବଗତି । ତାଙ୍କ ପକ୍ଷରେ ସମଗ୍ର ଦର୍ଶନଟା ଯୁକ୍ତିବିଦ୍ୟାକୁ ରୂପାନ୍ତରିତ ହୋଇ ଯାଇଥିଲା, ଯେଉଁଥିରେ ସେ ତତ୍ତ୍ୱଜ୍ଞାନ ଏବଂ ଜ୍ଞାନତତ୍ତ୍ୱକୁ ବୁଡ଼େଇ ଦେଇଥିଲେ ।

ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ ଏହି ସମସ୍ୟାଟି ପ୍ରତି ଭିନ୍ନ ଏକ ଆଭିମୁଖ୍ୟ ଗ୍ରହଣ କରିଥାଏ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ସତ୍ତା ଏବଂ ଅବଗତି ମଧ୍ୟରେ ପାର୍ଥକ୍ୟ ବା ସେସବୁର ଅନପେକ୍ଷ ସାଦୃଶ୍ୟ—ଏହି ଚିନ୍ତାଧାରାରୁ ଗତି ନକରି ସେସବୁର ଐକ୍ୟର ଚିନ୍ତାଧାରାରୁ ଗତି କରିଥାଏ । ଏହି ଐକ୍ୟଟା ବସ୍ତୁମୟ ଜଗତର ଦ୍ୱନ୍ଦ୍ୱମୂଳକ ଚରିତ୍ର ଏବଂ ମଣିଷର ଚେତନାରେ ତା'ର ପ୍ରତିଫଳନ ମଧ୍ୟରେ ନିହିତ । ଏହି ଐକ୍ୟ ହିଁ ନିମ୍ନୋକ୍ତ ଥିସିସ୍‌ଟି ରଚନା କରିଥାଏ—ଦ୍ୱନ୍ଦ୍ୱବାଦ, ଯୁକ୍ତିବିଦ୍ୟା ଏବଂ ଜ୍ଞାନତତ୍ତ୍ୱ, ଯଥାଯଥ ଭାବେ କହିବାକୁ ଗଲେ, ହେଉଛି ମାର୍କସ୍‌ବାଦୀ ଦର୍ଶନରେ ଏକ ଏବଂ ଅଭିନ୍ନ ଜିନିଷ । ଅନ୍ୟ ଭାବେ କହିବାକୁ ଗଲେ, ବାସ୍ତବତା କେବଳ ସେତିକିବେଳେ ମଣିଷ ମନରେ ସଠିକ ଭାବେ ପ୍ରତିଫଳିତ ହୁଏ, ଯେତେବେଳେ ତାହା ଦ୍ୱନ୍ଦ୍ୱାତ୍ମକ ଭାବେ ଚିନ୍ତା ଦ୍ୱାରା ପୁନର୍ଗଠିତ ହୁଏ । ଏଥିରୁ ଜଣାଯାଉଛି, ଦ୍ୱନ୍ଦ୍ୱାତ୍ମକବାଦର ସମାପତନ, ଅଥବା ଅଭିନ୍ନତା (ପ୍ରକୃତି, ସମାଜ ଏବଂ ଚିନ୍ତନର ସାର୍ବିକ ନିୟମର ମତବାଦ), ଏବଂ ଜ୍ଞାନତତ୍ତ୍ୱ ଏବଂ ଯୁକ୍ତିବିଦ୍ୟା କେବଳ ଦ୍ୱନ୍ଦ୍ୱାତ୍ମକ ଯୁକ୍ତିବିଦ୍ୟା ସହିତ ସଂପୃକ୍ତ ।

ପରମ୍ପରାଗତ ଯୁକ୍ତିବିଦ୍ୟା ଚିନ୍ତନର ପଦାର୍ଥସମୂହରେ ସ୍ଥିତିଶୀଳତାକୁ ପ୍ରଦର୍ଶନ କଲା ବେଳେ ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା ବିରୋଧସମୂହର ଐକ୍ୟ ମଧ୍ୟରେ ପ୍ରବର୍ଗସମୂହ ଅନୁଯାୟୀ

ଚିନ୍ତା କରିଥାଏ । ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା ହେଉଛି ସୀମାହୀନ ଭାବେ ବିକଶିତ ଏବଂ ପରିବର୍ତ୍ତିତ ହେଉଥିବା ବସ୍ତୁଗତ ଜଗତକୁ ପ୍ରତିଫଳିତ କରୁଥିବା ମାନବିକ ଚିନ୍ତାରାଜି ଏବଂ ଅବଧାରଣାସମୂହର ଏକ ମତବାଦ । ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା ହେଉଛି ମୌଳିକ ଭାବେ ଏକ ଅବଧାରଣାଗତ ଯୁକ୍ତିବିଦ୍ୟା, କାରଣ ଇତିମଧ୍ୟରେ ଥିବା ମୁଖ୍ୟ କଥାଟି ହେଉଛି ଚିନ୍ତନ ମଧ୍ୟରେ ବିକାଶମାନ ବାସ୍ତବତାର ବିଶେଷ ବାସ୍ତବ ଆଧେୟର ସଠିକ ପ୍ରତିଫଳନ । ଶେଷତଃ, ପରମ୍ପରାଗତ ଯୁକ୍ତିବିଦ୍ୟାଠାରୁ ପୃଥକ୍ ହିସାବରେ, ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା ଚିନ୍ତନର ରୂପରାଜି ସଂପର୍କରେ ଚର୍ଚ୍ଚା କରେ, ସେସବୁ ଯେତେବେଳେ ପୂର୍ବପ୍ରସ୍ତୁତ ଅବଧାରଣାସମୂହକୁ ନେଇ ବିକାଶ ଲାଭ କରୁଛି ଏବଂ ଅବଧାରଣାସମୂହ ଯେ ଭାବେ ଦେଖାଦିଏ ଏବଂ ଗତି କରେ । ଗତି ମଧ୍ୟରେ ହିଁ ଚିନ୍ତା ସକ୍ଷମ ହୁଏ ଆବିର୍ଭାବରୁ ସାରମର୍ମକୁ ବହିଃଦେଶରୁ ଅନ୍ତର୍ଦ୍ଦେଶକୁ, ନିର୍ଦ୍ଦିଷ୍ଟତାରୁ ସାଧାରଣକୁ, ଆକସ୍ମିକରୁ ଆବଶ୍ୟକକୁ ଏବଂ ଆପେକ୍ଷିକ ସତ୍ୟରୁ ଅନପେକ୍ଷ ସତ୍ୟକୁ ବିକାଶ ଲାଭ କରିବାକୁ ।

ମାର୍କସ୍‌ବାଦୀ ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା ଚିନ୍ତନ ସଂପର୍କରେ ଅନେକଗୁଡ଼ିଏ ଦାବୀ ରଖିଥାଏ । ସେସବୁ ମଧ୍ୟରୁ ଅନେକକୁ ଲେନିନ୍ ନିମ୍ନମତେ ରଖିଥିଲେ : "କୌଣସି ଏକ ପଦାର୍ଥ ସଂପର୍କରେ ଆମକୁ ପ୍ରକୃତ ଜ୍ଞାନ ଆହରଣ କରିବାକୁ ହେଲେ, ସେସବୁର ସମସ୍ତ ଦିଗକୁ ସଂପର୍କରାଜି ତଥା 'mediacies'କୁ ଆମକୁ ଦେଖିବାକୁ ହେବ ଏବଂ ପରୀକ୍ଷା କରିବାକୁ ହେବ । ଏହା ଏପରି ଏକ ଜିନିଷ, ଯାହାକୁ ସଂପୂର୍ଣ୍ଣ ରୂପେ ହାସଲ କରିବା ପାଇଁ ଆମେ କେବେ ସକ୍ଷମ ହେବା ନାହିଁ । କିନ୍ତୁ ବ୍ୟାପକତାର ନିୟମ ହେଉଛି ଭୁଲ ଏବଂ କଠିନତା ବିରୁଦ୍ଧରେ ପ୍ରତିରକ୍ଷା ଭଳି । ଦ୍ୱିତୀୟତଃ, ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା ଗ୍ରହେଁ, କୌଣସି ପଦାର୍ଥ ସଂପର୍କରେ ଆଲୋଚନା କଲବେଳେ ତାକୁ ବିକାଶ, ପରିବର୍ତ୍ତନ ଏବଂ 'ସ୍ୱଚଳମାନତା' ମଧ୍ୟରେ ଆଲୋଚନା କରିବାକୁ ହେବ ... । ତୃତୀୟତଃ, ଯେକୌଣସି ପଦାର୍ଥର ପୂର୍ଣ୍ଣ ସଂଜ୍ଞା ମଧ୍ୟରେ ସମଗ୍ର ମାନବିକ ଅଭିଜ୍ଞତାକୁ ଅନ୍ତର୍ଭୁକ୍ତ କରିବାକୁ ହେବ, ଉଭୟ ସତ୍ୟର ମାନଦଣ୍ଡ, ମାନବିକ ଆବଶ୍ୟକତାରାଜି ସହିତ ଏହାର ଯୋଗସୂତ୍ରର ପ୍ରୟୋଗଗତ ପ୍ରଦର୍ଶକ । ଚତୁର୍ଥତଃ, ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା କହେ, 'ସତ୍ୟ ହେଉଛି ସର୍ବଦା ନିର୍ଦ୍ଦିଷ୍ଟ, କେବେହେଲେ ବିମୂର୍ତ୍ତ ନୁହେଁ'... ।"* ଏଥିରେ, ଅବଶ୍ୟ, ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟାର କେତେକ ଦିଗ କେବଳ ସୂତ୍ରବଦ୍ଧ ହୋଇଛି, କିନ୍ତୁ ସେସବୁ ପରିଷ୍କାର ଭାବେ ମୁଖ୍ୟ ଜିନିଷଟିକୁ ପ୍ରକାଶ କରେ : ଯଥା ବାସ୍ତବତାର ବୈପ୍ଳବିକ ପୁନଃନିର୍ମାଣରେ ଶ୍ରମିକ ଶ୍ରେଣୀ ତଥା ସମସ୍ତ ଶ୍ରମଜୀବୀ ଜନତାର ତାତ୍ତ୍ୱିକ ହତିଆର ଗଠନ କରିବା ହେଉଛି ମାର୍କସ୍‌ବାଦୀ ଦର୍ଶନର କାର୍ଯ୍ୟ । ଏଙ୍ଗେଲସ୍ କହିଛନ୍ତି, "କିନ୍ତୁ ଏହି ଭାବେ (ମାର୍କସ୍‌ଙ୍କ

---

*V. I. Lenin, "Once Again on the Trade Unions, the Current Situation and the Mistakes of Trotsky and Bukharin", *Collected Works*, Vol. 32, Moscow, 1965, p. 94.

ଦ୍ୱାରା – ସଂପାଦକ) ବସ୍ତୁରାଜିକୁ ଦେଖିବାଟା ଏକ ମତାନ୍ଧତା ନୁହଁ, ଏହା ହେଉଛି ପଦ୍ଧତି । ଏହା ପୂର୍ବପ୍ରସ୍ତୁତ ମତାନ୍ଧତା ଯୋଗାଇ ଦିଏ ନାହିଁ, କିନ୍ତୁ ଆଉରି ଅଧିକ ଗବେଷଣା ଏବଂ ଗବେଷଣାର ପଦ୍ଧତି ଯୋଗାଇ ଦେଇଥାଏ ।"* ବାସ୍ତବତାକୁ ବିଜ୍ଞାନସମ୍ମତ ଭାବେ ବିଚାର କରିବାର ପଦ୍ଧତି ହିସାବରେ ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା ଅଧିଭୌତିକ ଚିନ୍ତାର ସମସ୍ତ ପ୍ରକାରଠାରୁ ପୃଥକ୍ ।

## ୩ – ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା ବନାମ ମାର୍ଜିତତା ଏବଂ ପଣ୍ଡିତମନ୍ୟତା

କିଏ ଅଧିଭୌତିକ ଭାବେ ଚିନ୍ତା କରେ? ଯିଏ ବିମୂର୍ତ୍ତ ଭାବେ ବିଚାର କରେ କୌଣସି ପୁନର୍ଚିନ୍ତା ନକରି ନିର୍ଜୀବ ଆପ୍ତବାକ୍ୟ ବ୍ୟବହାର କରି ଏବଂ ବିଶେଷ ଐତିହାସିକ ଅବସ୍ଥାର ବୈଶିଷ୍ଟ୍ୟରାଜିକୁ ବିଚାରକୁ ନନେଇ । ଆମେ ଇତିପୂର୍ବରୁ ଉଲ୍ଲେଖ କରିଛେ ଯେ, ମାର୍କସ୍‌ବାଦ-ଲେନିନ୍‌ବାଦ ସ୍ୱୀକାର କରେ ଯେ, ଇତିହାସରେ ବିପ୍ଳବୀ ବଳପ୍ରୟୋଗର ଏକ ନିର୍ଦ୍ଦିଷ୍ଟ ଭୂମିକା ରହିଛି । କିନ୍ତୁ ଏ କଥା ଅତୀବ ଭ୍ରମାତ୍ମକ ଏବଂ କ୍ଷତିକାରକ ଯେ, ସାମାଜିକ ପ୍ରଶ୍ନରାଜି ସମସ୍ୟାବଳୀର ସମାଧାନ କ୍ଷେତ୍ରରେ ବଳପ୍ରୟୋଗ ଉପରେ ଏକାନ୍ତ ଭାବେ ଯଦି ଗୁରୁତ୍ୱ ପ୍ରଦାନ କରାଯାଏ ।

ଚିନ୍ତା କ୍ଷେତ୍ରରେ ମତାନ୍ଧତା ନିବିଡ଼ ଭାବେ ବିତଣ୍ଡାବାଦ ଏବଂ ସାରଗ୍ରାହିତା ସହିତ ସଂପୃକ୍ତ, ଯିଏକି ଦ୍ୱନ୍ଦ୍ୱବାଦର ଛଦ୍ମବେଶ ପରିହିତ ଅଧିଭୌତିକତାବାଦର ବହୁବିଧ ରୂପ ।

ବିତଣ୍ଡା ତର୍କ ବୋଇଲେ, ଯେତେବେଳେ ଅପ୍ରାସଙ୍ଗିକ ଭାବେ କେତେକ ଆକସ୍ମିକ ବୈଶିଷ୍ଟ୍ୟକୁ ବାଛି ନେଇ ସମଗ୍ର ପ୍ରପଞ୍ଚର ଚରିତ୍ର ନିର୍ଦ୍ଧାରଣ କରିବାରେ ବ୍ୟବହାର କରାଯାଏ ଏବଂ ଉପରଠାଉରିଆ ସାମଞ୍ଜସ୍ୟକୁ ଭିତ୍ତି କରି ବିଭିନ୍ନ ପଦାର୍ଥ ମଧ୍ୟରେ ଅଭିନ୍ନତାକୁ ପ୍ରମାଣ କରାଯାଏ । ସାରଗ୍ରାହିତା ସେତିକି ବେଳେ ପ୍ରକାଶ ପାଏ, ଯେତେବେଳେ କୌଣସି ପଦାର୍ଥର ସର୍ବାତ୍ମକ ବିଚାରକୁ ବର୍ଜନ କରି ତା ସ୍ଥାନରେ ସେ ପଦାର୍ଥର ବୈଶିଷ୍ଟ୍ୟରାଜିର ସମାହାରକୁ ଉପସ୍ଥାପିତ କରାଯାଏ । ସେସବୁର ସଂପର୍କର ଶ୍ରେଣୀକରଣ ନକରି ଯିଏ ଅତୀବ ଗୁରୁତ୍ୱପୂର୍ଣ୍ଣ ତା'ର ବିଚ୍ଛିନ୍ନକରଣ ନକରି, ବିତଣ୍ଡାବାଦ କ୍ଷେତ୍ରରେ ଯାହା ହୁଏ ନାହିଁ, ଦ୍ୱନ୍ଦ୍ୱାତ୍ମକ ଯୁକ୍ତିବିଦ୍ୟା କ୍ଷେତ୍ରରେ ହୋଇଥାଏ – ଏହା ଆବଶ୍ୟକ କରେ ପଦାର୍ଥସମୂହ ପ୍ରତି ଏକ ବ୍ୟାପକ ଏବଂ ବହୁମୁଖୀ ଆଭିମୁଖ୍ୟ । ଏହା ସାରଗ୍ରାହିତା ଠାରୁ ଭିନ୍ନ ଏହି ଦୃଷ୍ଟିରୁ ଯେ କୌଣସି ପଦାର୍ଥର ସଂଜ୍ଞାରେ କୌଣସି

---

* "Engels to Werner Sombart in Breslau". In: K. Marx and F. Engels, *Selected Correspondence*, Progress Publishers, Moscow, 1975, p. 455.

ବୈଶିଷ୍ଟ୍ୟସମୂହର ଉପର ଠାଉରିଆ ସମାହାରକୁ ବୁଝାଏ ନାହିଁ । ଏହା ଗ୍ରହେ ତା'ର ଆଭ୍ୟନ୍ତରୀଣ ଯୋଗସୂତ୍ରଗୁଡ଼ିକୁ ସ୍ଥାପନ କରିବାକୁ । ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟା ସେଇ ବୈଶିଷ୍ଟ୍ୟଟିକୁ ଅଲଗା କରି ଦର୍ଶାଇବାକୁ ଗ୍ରହେଁ, ଯିଏକି ନିର୍ଦ୍ଦିଷ୍ଟ ବିଶେଷ ଅବସ୍ଥାରାଜିରେ ହେଉଛି ମୌଳିକ ଏବଂ ନିଷ୍ପତ୍ତିମୂଳକ ଏବଂ ଯିଏକି ଲୋକଙ୍କର ବାସ୍ତବ ଲକ୍ଷ୍ୟ ଦ୍ୱାରା ନିର୍ଦ୍ଧାରିତ ହୁଏ ।

ବିତଣ୍ଡାବାଦ ଏବଂ ସାରଗ୍ରାହିତା ସମସ୍ତ ପ୍ରକାରର ପ୍ରତିକ୍ରିୟାଶୀଳ ଅବଧାରଣାର ଦାର୍ଶନିକ ଭିତ୍ତି ରୂପେ କାର୍ଯ୍ୟ କରିଥାଏ । ସେସବୁ ମଧ୍ୟରୁ ଗୋଟିଏ ଉଦାହରଣ ହେଉଛି ସାଂପ୍ରତିକ ବର୍ତ୍ତମାନଙ୍କରେ ବ୍ୟାପକ ଭାବେ ପ୍ରଗ୍ରରିତ "ଧନୀ" ଏବଂ "ଗରିବ" ରାଷ୍ଟ୍ର ତତ୍ତ୍ୱ, ଯିଏକି ଭାରତ ସମେତ କେତେକ ଦେଶରେ ପ୍ରଗ୍ରରିତ ହୋଇଥାଏ । ଏହା ମୁଖ୍ୟ କଥାଟି ହେଉଛି ଯେ, ଧନିକତା ଏବଂ ଦାରିଦ୍ର୍ୟ ନୀତି ଅନୁଯାୟୀ ଦୁଇ ଭାଗରେ – "ଧନୀ ଉତ୍ତର" ଏବଂ "ଗରିବ ଦକ୍ଷିଣ" ମଧ୍ୟରେ ବିଭକ୍ତ । ପ୍ରଥମ ଗୋଷ୍ଠୀଟି ମଧ୍ୟରେ ଯାଏ, ଉତ୍ତର ଆମେରିକାର ତଥା ପଶ୍ଚିମ ୟୁରୋପର ଉନ୍ନତ ପୁଞ୍ଜିବାଦୀ ଦେଶ ସମେତ ସୋଭିଏତ୍ ୟୁନିଅନ୍ ଏବଂ ପୂର୍ବୟୁରୋପୀୟ ସମାଜବାଦୀ ଦେଶସମୂହ । ଦ୍ୱିତୀୟ ଗୋଷ୍ଠୀଟି ଏସିଆ (ଜାପାନ୍‌କୁ ଛାଡ଼ି), ଆଫ୍ରିକା, ଲଟିନ୍ ଆମେରିକାର ଦେଶମାନଙ୍କୁ ନେଇ ଗଠିତ । ଅର୍ଥନୈତିକ ବିକାଶର ସ୍ତର, ମୁଣ୍ଡପିଛା ମୋଟ ଗ୍ରସ୍ ଜାତୀୟ ଉତ୍ପାଦନ ଅନୁଯାୟୀ ଦୁଇଟି ଗୋଷ୍ଠୀ ମଧ୍ୟରେ ବିପୁଳ ପାର୍ଥକ୍ୟ ରହିଥିବା ହେତୁ ସିଦ୍ଧାନ୍ତଟି ହେଉଛି ଯେ, "ଧନୀ" ଏବଂ "ନିର୍ଦ୍ଧନ" ଦେଶ ମଧ୍ୟରେ ବିରୋଧତା ଏବେ ଅନ୍ୟ ସମସ୍ତ ସାମାଜିକ ବିରୋଧକୁ ଢାଙ୍କି ପକାଇଲଣି ।

"ଧନୀ ଉତ୍ତର – ଦରିଦ୍ର ଦକ୍ଷିଣ" ଚିନ୍ତାଧାରାଟା ଅନେକ ସମୟରେ ବ୍ୟବହାର କରାଯାଏ, ବିକାଶଶୀଳ ଦେଶମାନଙ୍କର ପଶ୍ଚାତ୍‌ପଦତା ତଥା ସେମାନଙ୍କ ଜନସାଧାରଣଙ୍କର ଦାରିଦ୍ର୍ୟ ଏବଂ ଦୁଃସ୍ଥତା ନିମିତ୍ତ ସମସ୍ତ "ଧନୀ ଶ୍ୱେତାଙ୍ଗ ଜାତିମାନଙ୍କୁ" ନିନ୍ଦା କରିବା ପାଇଁ । କିନ୍ତୁ ଏଥି ପାଇଁ ଉଭୟ ସାମ୍ରାଜ୍ୟବାଦୀ ଏବଂ ସମାଜବାଦୀ ଦେଶମାନଙ୍କୁ ସମାନ ଭାବେ ଦାୟି କରିବାଟା ହେଉଛି ବିତଣ୍ଡାବାଦରେ ଲିପ୍ତ ହେବା ।

ଏ କଥା ସମସ୍ତଙ୍କୁ ଜଣା ଯେ, ଅନେକ ସମାଜବାଦୀ ଦେଶ ପ୍ରଗତି, ସାମାଜିକ ସଂପଦ ଏବଂ ସଂସ୍କୃତି କ୍ଷେତ୍ରରେ ବିରାଟ ସାଫଲ୍ୟମାନ ଅର୍ଜନ କରିଛନ୍ତି । ତା ମାନେ ଏଇଆ ନୁହଁ ଯେ, ସମାଜବାଦୀ ଏବଂ ସାମ୍ରାଜ୍ୟବାଦୀ ଦେଶମାନେ ହେଉଛନ୍ତି "ସମାନ" ଏବଂ ସେମାନଙ୍କ ସଂପଦ ଦୃଷ୍ଟିରୁ ସେମାନଙ୍କୁ ଗୋଟିଏ ଗୋଷ୍ଠୀର ଅନ୍ତର୍ଭୁକ୍ତ କରାଯିବ ? ଏ କଥା ନିଶ୍ଚିତ ଯେ, କେଉଁ ଦେଶ କେତେ ଧନୀ – ତାହା ମୁଖ୍ୟ କଥା ନୁହଁ, ମୁଖ୍ୟ କଥାଟା ହେଉଛି, କେଉଁ ଦେଶ କେମିତି ଧନୀ ହୋଇଛି ଏବଂ ତା'ର ସଂପଦ କିପରି ବଣ୍ଟିତ ହୁଏ ।

ପୁଞ୍ଜିପତି ଏକଗ୍ରଟିଆମାନଙ୍କ ସଂପଦର ମୂଳ ଉତ୍ସ ହେଉଛି ମଜୁରି ଶ୍ରମର ନିର୍ଦ୍ଦୟ ଶୋଷଣ, ପୂର୍ବତନ ଉପନିବେଶସମୂହର ଶ୍ରମଜୀବୀ ଜନସାଧାରଣଙ୍କର ଲୁଣ୍ଠନ ।

ଊନବିଂଶ ଶତକର ଶେଷରେ ଏବଂ ବିଂଶ ଶତକର ପ୍ରାରମ୍ଭରେ, ଦୃଷ୍ଟାନ୍ତ ସ୍ୱରୂପ, ବ୍ରିଟେନ୍ ଭାରତର ଜାତୀୟ ଆୟର ଶତକଡ଼ା ୨୫-୩୦ ଭାଗ ଲୁଣ୍ଠନ କରି ନେଇଥିଲା। ୧୯୮୧ ମସିହାର ଆରମ୍ଭରେ ଉନ୍ନୟନଶୀଳ ଦେଶମାନଙ୍କର ବିଦେଶୀ ଋଣର ପରିମାଣ ୪୦,୦୦୦ କୋଟି ଡଲାରକୁ ଟପି ଯାଇଥିଲା। ପୁଞ୍ଜିବାଦୀ ଦେଶମାନଙ୍କର ସଂପଦର ବଣ୍ଟନ କଥା ଯଦି ଦେଖିବାକୁ ଚାହାନ୍ତି, ତେବେ ଗୋଟିଏ ଦୃଷ୍ଟାନ୍ତ ଦେଖନ୍ତୁ: ଆମେରିକା ଯୁକ୍ତ ରାଷ୍ଟ୍ରର ମାତ୍ର ଶତକଡ଼ା ୫ ଭାଗ ଲୋକ ଜାତୀୟ ବ୍ୟକ୍ତିଗତ ସଂପଦର ଶତକଡ଼ା ୫୩ ଭାଗକୁ ଆତ୍ମସାତ୍ କରନ୍ତି ଏବଂ ଶତକଡ଼ା ୧ ଭାଗ ଲୋକ ସମସ୍ତ ଶେୟାରର ଶତକଡ଼ା ୭୨ ଭାଗର ମାଲିକ।

ଏଥର ସମାଜବାଦୀ ଦେଶମାନଙ୍କୁ ଦେଖାଯାଉ। ଏହିସବୁ ଦେଶର ଜନସାଧାରଣ ସେମାନଙ୍କ ସଂପଦ ସୃଷ୍ଟି କରିଛନ୍ତି ଏବଂ ସେମାନଙ୍କ କଲ୍ୟାଣର ଉନ୍ନତି ସାଧନ କରିଛନ୍ତି ସେମାନଙ୍କ ଶ୍ରମିକ, କୃଷକ ଏବଂ ସମାଜବାଦୀ ବୁଦ୍ଧିଜୀବୀମାନଙ୍କର ନିସ୍ୱାର୍ଥ ଶ୍ରମ ବଳରେ। ସୋଭିଏତ୍ ୟୁନିଅନ୍‌ର ସମ୍ବିଧାନ କହେ: "ସାମାଜିକ ସଂପଦର ଅଭିବୃଦ୍ଧି ଏବଂ ଜନସାଧାରଣ ତଥା ପ୍ରତ୍ୟେକ ବ୍ୟକ୍ତିର ସାମାଜିକ କଲ୍ୟାଣର ଅଭିବୃଦ୍ଧିର ମୂଳ ଉତ୍ସ ହେଉଛି ସୋଭିଏତ୍ ଜନସାଧାରଣଙ୍କର ଶୋଷଣମୁକ୍ତ ଶ୍ରମ ...। ସାମାଜିକ ଭାବେ ଆବଶ୍ୟକ କର୍ମ ଏବଂ ତା'ର ଫଳରାଜି ସମାଜରେ ବ୍ୟକ୍ତିର ମର୍ଯ୍ୟାଦାକୁ ନିର୍ଦ୍ଧାରଣ କରେ" (୧୪ ଧାରା)। ବିଭିନ୍ନ ଜାତିର ଅର୍ଥନୈତିକ ତଥା ସାଂସ୍କୃତିକ ବିକାଶର ସ୍ତରର ସମାନ କରିବା ପାଇଁ ସମାଜବାଦ ସମସ୍ତ ଅବସ୍ଥା ସୃଷ୍ଟି କରେ। ଏ ଦିଗରେ ହୃଦ୍‌ବୋଧ ହେଲା ଭଳି ସାକ୍ଷ୍ୟ ପ୍ରଦାନ କରିଛି ସୋଭିଏତ୍ ୟୁନିଅନ୍‌ରେ ସମାଜବାଦର ନିର୍ମାଣ।

କାଜାଖସ୍ତାନ ଏବଂ ମଧ୍ୟ ଏସିଆ ଥିଲା ଜାର୍‌ଶାସିତ ରୁଷିଆର ପଶ୍ଚାତ୍‌ପଦ ଉପାନ୍ତ ଅଞ୍ଚଳ। ସମାଜବାଦୀ ବିପ୍ଳବର ବିଜୟ ପରେ ସେସବୁ ଅଞ୍ଚଳରେ ଇତିହାସର ଏକ ସ୍ୱଳ୍ପ ସମୟ ମଧ୍ୟରେ ଅତ୍ୟାଧୁନିକ ବୈଜ୍ଞାନିକ ଭିତ୍ତିରେ ଗଢ଼ି ଉଠିଲା ଉନ୍ନତ ଶିଳ୍ପରାଶି। ଏବେ ଶତକଡ଼ା ଶହେ ଲୋକ ହେଉଛନ୍ତି ସେସବୁ ଅଞ୍ଚଳରେ ସାକ୍ଷର। ଜନସଂଖ୍ୟାର ପ୍ରାୟ ଅର୍ଦ୍ଧେକ ଲୋକ ହେଉଛନ୍ତି ମାଧ୍ୟମିକ ବା ଉଚ୍ଚ ଶିକ୍ଷାପ୍ରାପ୍ତ। ସୋଭିଏତ୍ ମଧ୍ୟ ଏସିଆର ପ୍ରଜାତନ୍ତ୍ରଗୁଡ଼ିକ ବ୍ରିଟେନ୍ ବା ଫେଡେରାଲ ଜର୍ମାନ୍ ପ୍ରଜାତନ୍ତ୍ର ଭଳି ଉନ୍ନତ ପୁଞ୍ଜିବାଦୀ ଦେଶଠାରୁ ଅଧିକ ବିଶେଷଜ୍ଞଙ୍କୁ ତାଲିମ୍ ଦେଉଛନ୍ତି।

ଉପରୋକ୍ତ ଦୃଷ୍ଟାନ୍ତରୁ ଆମେ ଦେଖିଲେ ଯେ, "ଧନୀ ଏବଂ ଗରିବ ଜାତି" – ଏହି ଅବଧାରଣା ଦ୍ୱାରା କିପରି ଆଧୁନିକ ଜଗତର ଭାବମୂର୍ତ୍ତିକୁ ବିକୃତ କରାଯାଉଛି। ବୁର୍ଜୁଆ ଭାବାଦର୍ଶବାଦୀମାନେ ଚେଷ୍ଟା କରୁଛନ୍ତି ଆମ ଯୁଗର ମୁଖ୍ୟ ଦ୍ୱନ୍ଦ୍ୱଟିକୁ, ଦୁଇଟି ସାମାଜିକ– ଅର୍ଥନୈତିକ ବ୍ୟବସ୍ଥା ମଧ୍ୟରେ ଦ୍ୱନ୍ଦ୍ୱକୁ – ଗୋପନ ରଖିବାକୁ ଉନ୍ନୟନଶୀଳ ଦେଶସମୂହ ଏବଂ ସମାଜବାଦୀ ଦେଶସମୂହ ("ଧନୀ" ଦେଶ ହିସାବରେ) ମଧ୍ୟରେ ତଥାକଥିତ "ବୈରିତା" ସଂକ୍ରାନ୍ତ ବିତଣ୍ଡା ଯୁକ୍ତିର ଆଢ଼ୁଆଳରେ। କିନ୍ତୁ ବାସ୍ତବ

କ୍ଷେତ୍ରରେ, ବିଶ୍ୱ ସମାଜବାଦ ଏବଂ ବିକାଶଶୀଳ ଦେଶମାନଙ୍କ ମଧ୍ୟରେ କୌଣସି ବୈରିତାପୂର୍ଣ୍ଣ ଦ୍ୱନ୍ଦ୍ୱ ନାହିଁ । ସେଭଳି ଏକ ଦ୍ୱନ୍ଦ୍ୱ, ଅବଶ୍ୟ, ରହିଛି ସାମ୍ରାଜ୍ୟବାଦ ଏବଂ ତା'ର ପୂର୍ବତନ ଉପନିବେଶଗୁଡ଼ିକ ମଧ୍ୟରେ । ସମାଜବାଦୀ ଦେଶମାନେ କେବେହେଲେ ଏସିଆ, ଆଫ୍ରିକା, ଅଥବା ଲଟିନ୍ ଆମେରିକାର ଦେଶମାନଙ୍କୁ ଶୋଷଣ କରି ନାହାନ୍ତି । ବରଂ, ସେମାନଙ୍କ ସହିତ ଏମାନେ ସମାନତା, ପାରସ୍ପରିକ ସୁବିଧାର ନୀତିରାଜି ଉପରେ ନୂଆ ଧରଣର ଅର୍ଥନୈତିକ ସଂପର୍କ ପ୍ରତିଷ୍ଠା କରିବାକୁ ଉଦ୍ୟମ କରୁଛନ୍ତି ଏବଂ ସାମ୍ରାଜ୍ୟବାଦ ଏବଂ ନବଉପନିବେଶବାଦ ବିରୁଦ୍ଧରେ ସଂଗ୍ରାମରେ ଆନ୍ତର୍ଜାତିକ ସହାୟତା ଅର୍ପଣ କରିଛନ୍ତି ।

ସୋଭିଏତ୍ ୟୁନିଅନ୍‌ର ସହାୟତାରେ ଏସିଆ, ଆଫ୍ରିକା ଏବଂ ଲାଟିନ୍ ଆମେରିକାରେ ହଜାରଟିରୁ ଊର୍ଦ୍ଧ୍ୱ ଶିଳ୍ପ ଏବଂ ଅନ୍ୟାନ୍ୟ ଅର୍ଥନୈତିକ ପ୍ରକଳ୍ପ ନିର୍ମିତ ହୋଇଛି ବା ହେଉଛି । ସୋଭିଏତ୍ ୟୁନିଅନ୍ ଏବଂ ଭାରତୀୟ ପ୍ରଜାତନ୍ତ୍ର ମଧ୍ୟରେ ସଂପର୍କରାଜି ପାରସ୍ପରିକ ସୁବିଧାସଂପନ୍ନ ଏବଂ ନ୍ୟାୟସଂଗତ ସହଯୋଗିତା ଉପରେ ପ୍ରତିଷ୍ଠିତ ଏବଂ ଏହା ଅର୍ଥନୀତି, କାରିଗରି, ବିଜ୍ଞାନ, ସଂସ୍କୃତି ଏବଂ କଳା କ୍ଷେତ୍ରରେ ପ୍ରତିଷ୍ଠିତ । ଉଭୟ ଦେଶ ମଧ୍ୟରେ ବାଣିଜ୍ୟିକ ନେଣଦେଣ ବୃଦ୍ଧି ପାଇଛି ୬୨୦ ଗୁଣରୁ ଅଧିକ – ୧୯୫୩ ମସିହାରେ ୧ କୋଟି ୭୫ ଲକ୍ଷ ରୁବଲ ଥିଲ ବେଳେ ୧୯୭୮ ମସିହାରେ ଏହା ୧୦୯୦ କୋଟି ଟଙ୍କାରେ ପହଞ୍ଚିଛି ।

୧୯୮୦ ମସିହାରେ ଏହି ବାଣିଜ୍ୟିକ ନେଣଦେଣ ୧୯୭୫ ପରିମାଣର ଦୁଇ ଗୁଣରୁ ଅଧିକ ହୋଇ ଯାଇଥିଲା । ସୋଭିଏତ୍ ୟୁନିଅନ୍ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସରେ ଲିଓନିଦ୍ ବ୍ରେଜ୍‌ନେଭ୍ ଗଣତାନ୍ତ୍ରିକ ଭିତ୍ତିରେ ଆନ୍ତର୍ଜାତିକ ଅର୍ଥନୈତିକ ସଂପର୍କରାଜିର ପୁନର୍ଗଠନର ଐତିହାସିକ ଯୁକ୍ତିସଂଗତ ଚରିତ୍ର ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଏଥି ସଙ୍ଗେ ସଙ୍ଗେ ସେ କହିଥିଲେ, "ନିଶ୍ଚିତ ରୂପେ, ସେ ପ୍ରଶ୍ନଟିକୁ, ଅନେକ ସମୟରେ ଯେପରି କରାଯାଇ ଥାଏ, 'ଧନୀ ଉତ୍ତର' ଓ 'ଗରିବ ଦକ୍ଷିଣକୁ' ନ୍ୟୂନ କରି ଅଣା ନଯାଏ" ।

ଏହି ଭାବେ "ଧନୀ ଉତ୍ତର – ଗରିବ ଦକ୍ଷିଣ" ତତ୍ତ୍ୱଟିକୁ ନିରୋଳା ବିତଣ୍ଡାବାଦ ଉପରେ ଗଢ଼ା ଯାଇଛି । ଆଜିକାଲିକାର ଅନ୍ୟାନ୍ୟ ବୁର୍ଜୁଆ ଏବଂ ସଂଶୋଧନବାଦୀ ସାମାଜିକ ତତ୍ତ୍ୱରାଜି ମଧ୍ୟ ସେସବୁର ଚରିତ୍ର ଦୃଷ୍ଟିରୁ ଏହି ଭଳି ଅଧିଭୌତିକ । ଅନେକ ବୁର୍ଜୁଆ ଲେଖକ, ଯେଉଁମାନେ ବୈଜ୍ଞାନିକ ଏବଂ କାରିଗରୀ ବିପ୍ଳବ କାଳରେ ଘଟିଥିବା ସାମାଜିକ ବିକାଶର କେତେକ ବୈଶିଷ୍ଟ୍ୟର ଏକ ଏକପାଖିଆ ବ୍ୟାଖ୍ୟା ପ୍ରଦାନ କରିଥାନ୍ତି, ପୁଞ୍ଜିବାଦ ଏବଂ ସମାଜବାଦର ଏକାଭିମୁଖୀନତାର ତତ୍ତ୍ୱଟି ପ୍ରଦାନ କରିଥାନ୍ତି । ସେମାନେ ଆମକୁ ବିଶ୍ୱାସ କରାଇବାକୁ ଚାହାନ୍ତି ଯେ, ପୂର୍ବ ପରି ଆଧୁନିକ କାରିଗରୀ ଅଗ୍ରଗତି ପୁଞ୍ଜିବାଦର ଚରିତ୍ରକୁ ବଦଳେଇ ଦେଇ ଏହାକୁ ସମାଜବାଦର ନିକଟବର୍ତ୍ତୀ କରାଇ ଦେଇଛି ଏବଂ ସମାଜବାଦରେ ମଧ୍ୟ କେତେକ ପରିବର୍ତ୍ତନ ଘଟୁଛି । ତେଣୁ, ସେମାନେ କହନ୍ତି, ଏ ଦୁଇଟି ଯାକ ସମାଜ ଅନିବାର୍ଯ୍ୟ ରୂପେ ଏକ "ଏକ ଶିଳ୍ପ ସମାଜ"ର କେନ୍ଦ୍ରାଭିମୁଖୀ

ହେବେ, ଯିଏକି ସମାଜବାଦ ଏବଂ ପୁଞ୍ଜିବାଦର ଇତିବାଚକ ଦିଗଗୁଡ଼ିକୁ ଏକତ୍ର କରି ଦେବ । କିନ୍ତୁ ଏହି ଏକାଭିମୁଖୀନତାର ତତ୍ତ୍ୱଟି ହେଉଛି କେବଳ ମାୟା । ଏହି ତତ୍ତ୍ୱର ପ୍ରବକ୍ତାମାନେ ବ୍ୟକ୍ତିଗତ ସଂପତ୍ତି ତଥା ପୁଞ୍ଜିବାଦର ଅନ୍ୟାନ୍ୟ "ଶୁଭ" ଦିଗଗୁଡ଼ିକୁ ରଖିବାକୁ ଏବଂ ବହୁ "ଅଶୁଭ" ଦିଗକୁ ହଟାଇ ଦେବାକୁ ଗ୍ରହାଁନ୍ତି, ଯଥା, ସାମାଜିକ ବୈରିତା, ଉତ୍ପାଦନରେ ଅରାଜକତା, ଶ୍ରେଣୀ ସଂଗ୍ରାମ, ଆଦି । ଏହା ହେଉଛି ଏକେବାରେ ନିରୋଳା ସାରଗହିତାବାଦ । କାରଣ, ପୁଞ୍ଜିବାଦୀ ଭାବାଦର୍ଶବାଦୀଙ୍କ ମତରେ, ବୁର୍ଜୁଆ ସମାଜର ସମସ୍ତ "ଅଶୁଭ" ଦିଗଗୁଡ଼ିକ ହେଉଛି "ଶୁଭ" ଦିଗଗୁଡ଼ିକର ଅନିବାର୍ଯ୍ୟ ଫଳ । ଉତ୍ପାଦନ ଉପାୟ ଉପକରଣ ଉପରେ ବ୍ୟକ୍ତିଗତ ମାଲିକାନା ଜନ୍ମ ଦିଏ ମଣିଷ ଦ୍ୱାରା ମଣିଷର ଶୋଷଣ, ଶ୍ରେଣୀ ବୈରିତା, ବେକାରି, ଅର୍ଥନୈତିକ ସଂକଟ ଏବଂ ପୁଞ୍ଜିବାଦୀ ବ୍ୟବସ୍ଥାର ଅନ୍ୟାନ୍ୟ "ଅଶୁଭ" ବୈଶିଷ୍ଟ୍ୟରାଜି, ସମାଜବାଦ କ୍ଷେତ୍ରରେ ଏହାର ପୂର୍ବସର୍ତ୍ତ ରୂପେ ଆବଶ୍ୟକ ଏକ ଅତୀବ ଉନ୍ନତ ବୈଷୟିକ ଏବଂ କାରିଗରୀ ଭିତ୍ତି, କିନ୍ତୁ, ଆମେ ଜାଣିଛେ, ଏହାକୁ କେବଳ ଏତିକିକୁ ସଂକୁଚିତ କରି ଦେଲେ ହୁଏ ନାହିଁ । ସମାଜବାଦୀ ସଂପର୍କରାଜି ଉତ୍ପାଦନ ଉପାୟ ଉପକରଣର ସାମାଜିକ ସଂପତ୍ତି ଉପରେ ପ୍ରତିଷ୍ଠିତ । ସେସବୁ ସଂପର୍କରାଜି ମଣିଷ ଦ୍ୱାରା ମଣିଷର ଶୋଷଣ ପ୍ରତ୍ୟାଖ୍ୟାନ କରେ ଏବଂ ନିଜକୁ ପ୍ରକାଶିତ କରେ ଅର୍ଥନୀତିର ଯୋଜନାବଦ୍ଧ ଏବଂ ସମାନୁପାତିକ ବିକାଶ ମଧ୍ୟରେ । ଏହା ଦ୍ୱାରା ସମାଜର ସଦସ୍ୟମାନଙ୍କର ବୈଷୟିକ ତଥା ଆତ୍ମିକ ଆବଶ୍ୟକତାସକଳ ସର୍ବାଧିକ ଭାବେ ପୂରଣ ହୋଇ ପାରେ । ସାମାଜିକ ସମାନତା ଏବଂ ଐକ୍ୟ ଯୋଗାଇ ଦେଇ ସେମାନେ ବ୍ୟକ୍ତିର ସର୍ବାଧିକ ବିକାଶ ନିମିତ୍ତ ସମସ୍ତ ପ୍ରକାର ପରିସ୍ଥିତି ସୃଷ୍ଟି କରିଥାନ୍ତି । ସେହିସବୁ ସଂପର୍କରାଜି ଗଢ଼ି ଉଠେ କେବଳ ସେତିକିବେଳେ, ଯେତେବେଳେ ସଂପତ୍ତିର ପୁଞ୍ଜିବାଦୀ ବ୍ୟକ୍ତିଗତ ରୂପଟାକୁ ଉଚ୍ଛେଦ କରି ଦିଆଯାଏ ।

ବୁର୍ଜୁଆ ସାହିତ୍ୟରେ ସମର୍ଥିତ "ସମାଜବାଦର ଅକାଧିକ ମଡେଲର" ଧାରଣାଟି ମଧ୍ୟ କୌଣସି ମତେ ଖାଟୁ ନାହିଁ । ଏ କଥା, ଅବଶ୍ୟ, ସତ ଯେ, ପ୍ରତ୍ୟେକ ଦେଶରେ ସମାଜବାଦ ତା'ର ନିଜସ୍ୱ ନିର୍ଦ୍ଦିଷ୍ଟ ଚରିତ୍ର ଗ୍ରହଣ କରିଥାଏ, ଦୃଷ୍ଟାନ୍ତ ସ୍ୱରୂପ, ତା'ର କୃଷି ସମସ୍ୟା ସମାଧାନ କରିବାରେ, ସର୍ବହରା ଏକାଧିପତ୍ୟ ପ୍ରତିଷ୍ଠା କରିବାର ପଦ୍ଧତିରେ ଏବଂ କେଉଁ କେଉଁ ରୂପ ଧାରଣ କରିବ, ସେସବୁ ଥିରେ । ସଂଶୋଧନବାଦୀମାନେ, କିନ୍ତୁ, ସ୍ୱତନ୍ତ୍ରର ସହିତ ଜାତୀୟ ଏବଂ ଐତିହାସିକ ବୈଶିଷ୍ଟ୍ୟରାଜିକୁ ବଡ଼ କରି ଦେଖାଇଥାନ୍ତି ସମାଜବାଦ ନିର୍ମାଣ କରିବାର ବିଭିନ୍ନ ପଥର ଚରିତ୍ର ପ୍ରଦାନ କଲାବେଳେ ଏବଂ "ସମାଜବାଦର ମଡେଲସମୂହ" ଉପରେ ଏକ ଥିସିସ୍ ମଧ୍ୟ ଉପସ୍ଥାପିତ କରିଥାନ୍ତି, ଯେଉଁ ମଡେଲଗୁଡ଼ିକ ପରସ୍ପରଠାରୁ ମୌଳିକ ଭାବେ ପୃଥକ୍—ଯଥା, ସୋଭିଏତ୍, ଯୁଗୋସ୍ଲାଭିଆ ଏବଂ ଚେକୋସ୍ଲୋଭାକିଆ ମଡେଲ, ଆଦି । ଏହିସବୁ ଧାରଣାଗୁଡ଼ିକ ଅନେକ ସମୟରେ ଧର୍ମୀୟ ଭିତ୍ତିରେ "ଜାତୀୟ ସମାଜବାଦ"

# ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ପ୍ରବର୍ଗସମୂହର ତାତ୍ପର୍ଯ୍ୟ



ଭଳି ଅବଧାରଣାର ରୂପ ("ଇସଲାମୀ ସମାଜବାଦ", ଆଦି) ପରିଗ୍ରହ କରିଥାଏ । ଏହିସବୁ ଅବଧାରଣା ନିର୍ଦ୍ଦିଷ୍ଟଟିକୁ ବେଠିକ ଭାବେ ସାର୍ବିକତାର ବିପରୀତରେ ଉପସ୍ଥାପିତ କରାଯାଇଥାଏ । ସତ୍ୟଟା, ଅବଶ୍ୟ, ହେଉଛି ଯେ, ସାର୍ବିକ ଏବଂ ନିର୍ଦ୍ଦିଷ୍ଟ ଉଭୟେ ଦ୍ୱନ୍ଦ୍ୱମୂଳକ ଭାବେ ପରସ୍ପର ସହିତ ସଂଯୁକ୍ତ । ବିପ୍ଳବର ବିକାଶ ଏବଂ ସମାଜବାଦ ନିର୍ମାଣ କ୍ଷେତ୍ରରେ ସାଧାରଣ ସାଦୃଶ୍ୟସମୂହ ରହିଛି ଏବଂ ସେହିସବୁ ସାଦୃଶ୍ୟ ଉପରେ ନିର୍ଭର କରି ଏବଂ ସୃଜନମୂଳକ ଆଭିମୁଖ୍ୟ ସାଙ୍ଗକୁ ପ୍ରତ୍ୟେକ ଦେଶର ବିଶେଷ ଅବସ୍ଥାରାଜିକୁ ବିଗ୍ରହକୁ ନେବାଟା ହେଉଛି ମାର୍କସ୍‌ବାଦୀ-ଲେନିନ୍‌ବାଦୀମାନଙ୍କର ଏକ ଅବିଚ୍ଛେଦ୍ୟ ବୈଶିଷ୍ଟ୍ୟ । ସେହିସବୁ ସାଧାରଣ ସାଦୃଶ୍ୟ ହେଉଛି — ସର୍ବହରା ବିପ୍ଳବ ସଂପନ୍ନ ଏବଂ କୌଣସି ଏକ ରୂପରେ ସର୍ବହରା ଏକନାୟକତ୍ୱ ପ୍ରତିଷ୍ଠା କରିବାରେ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଶ୍ରମିକ ଶ୍ରେଣୀ ଦ୍ୱାରା ଶ୍ରମଜୀବୀ ଜନସାଧାରଣଙ୍କର ନେତୃତ୍ୱ ; ଅଧିକାଂଶ କୃଷକ ଏବଂ ଶ୍ରମଜୀବୀ ଜନସାଧାରଣଙ୍କର ଅନ୍ୟ ସ୍ତର ସହିତ ଶ୍ରମିକ ଶ୍ରେଣୀର ମେଣ୍ଟ ; ପୁଞ୍ଜିବାଦୀ ସଂପତ୍ତିର ଉଚ୍ଛେଦ ଏବଂ ଉତ୍ପାଦନର ମୂଳ ଉପାୟ ଉପକରଣ ଉପରେ ସାମାଜିକ ମାଲିକାନା ପ୍ରତିଷ୍ଠା ; ସମାଜବାଦୀ ଧାରାରେ କୃଷିର କ୍ରମପରିବର୍ତ୍ତନ ; ସମାଜବାଦ ଏବଂ କମ୍ୟୁନିଜମ୍ ନିର୍ମାଣ ଏବଂ ଲୋକଙ୍କ ଜୀବନଧାରଣ ମାନର ଉନ୍ନୟନ ଲକ୍ଷ୍ୟରେ ପରିଗ୍ରହିତ ଯୋଜନାବଦ୍ଧ ଅର୍ଥନୀତି ; ଭାବାଦର୍ଶବାଦ ଏବଂ ସଂସ୍କୃତି କ୍ଷେତ୍ରରେ ସମାଜବାଦୀ ବିପ୍ଳବ ଏବଂ ଶ୍ରମିକ ଶ୍ରେଣୀ ତଥା ସମସ୍ତ ଶ୍ରମଜୀବୀ ଜନସାଧାରଣ ଆଉ ସମାଜବାଦର ଆଦର୍ଶ ପ୍ରତି ଅନୁଗତ ବେଶ୍ କିଛି ସଂଖ୍ୟକ ବୁଦ୍ଧିଜୀବୀ ସୃଷ୍ଟି ; ଜାତିଗତ ନିର୍ଯାତନର ବିଲୋପ ଏବଂ ଜାତି ଜାତି ମଧ୍ୟରେ ସମାନତା ଏବଂ ଭ୍ରାତୃସୁଲଭ ମୈତ୍ରୀ ପ୍ରତିଷ୍ଠା ; ବହିଃଶତ୍ରୁ ତଥା ଆଭ୍ୟନ୍ତରୀଣ ଶତ୍ରୁମାନଙ୍କ ଆକ୍ରମଣରୁ ସମାଜବାଦର ସାଫଲ୍ୟର ସୁରକ୍ଷା ; ଏବଂ ସର୍ବହରା ଆନ୍ତର୍ଜାତିକତାବାଦ, ଅର୍ଥାତ୍, ନିର୍ଦ୍ଦିଷ୍ଟ ଏକ ଦେଶର ଶ୍ରମିକ ଶ୍ରେଣୀର ଅନ୍ୟ ଦେଶମାନଙ୍କର ଶ୍ରମିକ ଶ୍ରେଣୀ ସହିତ ସଂହତି ।

ଏହି ସମସ୍ତ ଦୃଷ୍ଟାନ୍ତ ଦର୍ଶାଇ ଦେଉଛି, ବାସ୍ତବତାର ସଠିକତାକୁ ବୁଝିବା ପାଇଁ ଦ୍ୱନ୍ଦ୍ୱମୂଳକ ଯୁକ୍ତିବିଦ୍ୟାର ଉପଯୋଗିତାକୁ ମାନି ଚଳିବାର ଗୁରୁତ୍ୱଟା କେତେ ବେଶି, ଏହା ମଧ୍ୟ ସଂପୂର୍ଣ୍ଣ ରୂପେ ଦର୍ଶନ ଏବଂ ବିଶେଷ ବିଜ୍ଞାନସମୂହ ମଧ୍ୟରେ ଆନ୍ତଃସଂପର୍କ ପ୍ରତି ପ୍ରଯୋଜ୍ୟ ।

## ୪ — ପ୍ରାକୃତିକ ଦର୍ଶନ ଏବଂ ପ୍ରତ୍ୟକ୍ଷବାଦ

ଅବଗତିର ଇତିହାସରେ ଦର୍ଶନ ଏବଂ ବିଜ୍ଞାନ ଏକ ଏକକ ବୌଦ୍ଧିକ ପ୍ରକ୍ରିୟା ରଚନା କରିଥାନ୍ତି, ଯଦ୍ୱାରା ମଣିଷ ବସ୍ତୁଗତ ବାସ୍ତବତାକୁ ବୁଝି ପାରେ ଏବଂ ତା'ର ନିଜସ୍ୱ ବିଶ୍ୱଦୃଷ୍ଟିକୋଣ ଗଠନ କରେ । ଏହି ପ୍ରକ୍ରିୟାଟି ପ୍ରୟୋଗ ଉପରେ ପ୍ରତିଷ୍ଠିତ । କିନ୍ତୁ

ଅବଗତି ପ୍ରକ୍ରିୟା ମଧ୍ୟ ଦେଇ ଦର୍ଶନ ଏବଂ ବିଜ୍ଞାନ ମଧ୍ୟରେ ସଂପର୍କ ଉଲ୍ଲେଖନୀୟ ଭାବେ ପରିବର୍ତ୍ତିତ ହୋଇ ପାରିଛି । ସଂସ୍କୃତିର ପ୍ରାଥମିକ ପର୍ଯ୍ୟାୟରେ ଦର୍ଶନ, ପ୍ରାକୃତିକ ବିଜ୍ଞାନ ଏବଂ ସମାଜ ସଂପର୍କରେ ପ୍ରାଥମିକ ଜ୍ଞାନ ଏକ ହୋଇ ଯାଇ ଅଭିନ୍ନ ବିଜ୍ଞାନରେ ପରିଣତ ହୋଇ ଯାଇଥିଲା । ପରବର୍ତ୍ତୀ କାଳରେ ବିଶେଷ ବିଜ୍ଞାନସମୂହ (ଯନ୍ତ୍ରବିଦ୍ୟା, ଗଣିତ ବିଦ୍ୟା, ଜ୍ୟୋତିର୍ବିଦ୍ୟା ଏବଂ ପରବର୍ତ୍ତୀ ଭୂବିଦ୍ୟା, ଶରୀର ବିଜ୍ଞାନ, ପଦାର୍ଥବିଜ୍ଞାନ, ରସାୟନବିଦ୍ୟା, ଇତିହାସ, ଆଦି) ଏହି ଏକକ ବିଜ୍ଞାନର ଏବଂ ତେଣୁ ଦର୍ଶନର ବିଭିନ୍ନ ଶାଖାରେ ପରିଣତ ହେଲା । ଜ୍ଞାନର ଏହି ଶାଖାକରଣଟା ଏପର୍ଯ୍ୟନ୍ତ ଚାଲିଛି ଏବଂ ଏପରିକି ଦ୍ରୁତ ହେବାରେ ଲାଗିଛି । ଏଥି ସଙ୍ଗେ ସଙ୍ଗେ, ଆମ ଯୁଗରେ ବିପରୀତ ପ୍ରବଣତାଟି ଆଉରି ଅଧିକ ପରିଷ୍କାର ଭାବେ ପରିଦୃଷ୍ଟ ହେଉଛି : ବିଜ୍ଞାନର ସଂହତୀକରଣ, ଜ୍ଞାନ ଜଗତର ବିଭିନ୍ନ ସୀମାରେଖାର ଗଠନରେ (ଭୌତିକ ରସାୟନବିଦ୍ୟା, ଭୂରସାୟନବିଦ୍ୟା, ଜୀବ ପଦାର୍ଥ ବିଜ୍ଞାନ, ଆଦି), ବହୁ ସାଧାରଣ ବୈଜ୍ଞାନିକ ଶୃଙ୍ଖଳାରେ ପ୍ରକାଶିତ (ସାଇବେର୍‌ନେଟିକସ୍, ସାଧାରଣ ତନ୍ତ୍ର ବ୍ୟବସ୍ଥା, ତଥ୍ୟ ତନ୍ତ୍ର) ଏବଂ ଦର୍ଶନର କ୍ରମବର୍ଦ୍ଧମାନ ସମନ୍ୱୟକାରକ କାର୍ଯ୍ୟ ।

ଦାର୍ଶନିକ ଏବଂ ବିଶେଷ କରି ବୈଜ୍ଞାନିକ ଜ୍ଞାନ ମଧ୍ୟରେ ଆନ୍ତଃସଂପର୍କର ଐତିହାସିକ ବିବର୍ତ୍ତନ ତାତ୍ତ୍ୱିକ ଭାବେ ବିଭିନ୍ନ ବାଟରେ ବିଶ୍ଳେଷିତ ହୋଇଛି । ଅବଗତିର ବିକାଶରେ ପ୍ରଥମ ପର୍ଯ୍ୟାୟଟି ଦର୍ଶନର ତଥାକଥିତ ପ୍ରାକୃତିକ ଦାର୍ଶନିକ ଅବଧାରଣା ଦ୍ୱାରା ପ୍ରଭାବିତ । ପ୍ରାକୃତିକ ଦର୍ଶନର ଲକ୍ଷ୍ୟ ଥିଲା ଏକ ସର୍ବବ୍ୟାପୀ, ସଂପୂର୍ଣ୍ଣ ଜ୍ଞାନ ସୃଷ୍ଟି କରିବା, ଯିଏକି ଉପରଗତ ଭାବେ ଉଦ୍‌ଘାଟନ କରେ ମଣିଷ ପକ୍ଷରେ ବସ୍ତୁରାଜିର ଅନପେକ୍ଷ ସାରମର୍ମକୁ । ଆନୁମାନିକ ଯୁକ୍ତିକରଣକୁ ଘୋଷଣା କରାଗଲା ଏହି ଅବଗତିର ଏକ ରୂପ ହିସାବରେ । ବିଶେଷ ବିଜ୍ଞାନସମୂହ କଥା କହିବାକୁ ଗଲେ, ଯିଏକି ଅସଂପୂର୍ଣ୍ଣ ଏବଂ ଆପେକ୍ଷିକ ଜ୍ଞାନ ପ୍ରଦାନ କରିଥାଏ ବୋଲି ମନେ ହୁଏ, ଦର୍ଶନ ଥିଲା "ବିଜ୍ଞାନସମୂହର ବିଜ୍ଞାନ", ସତ୍ୟର ସର୍ବୋଚ୍ଚ ମାନଦଣ୍ଡ । ତା ସତ୍ତ୍ୱେ ବି, ଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ଜଣାଗଲା ଯେ, ଦର୍ଶନ ଅନପେକ୍ଷ ସତ୍ୟକୁ ସଂପୂର୍ଣ୍ଣ ଆୟତ୍ତ କରିଛି ବୋଲି ଯେଉଁ ଦାବୀ କରେ, ତାହା ଅକାମୀ ହୋଇ ପଡ଼ିଛି । ପ୍ରାକୃତିକ ଦର୍ଶନ ବିଶେଷ ବିଜ୍ଞାନସମୂହର ବିକାଶରେ ଏକ ବିରତି ରୂପେ କାର୍ଯ୍ୟ କରିଥିଲା, ଯିଏକି ପ୍ରତ୍ୟକ୍ଷବାଦର ଅଭ୍ୟୁଦୟ ଘଟାଇଥିଲା ୧୮୩୦ ଦଶକରେ ।

ଅବଗତିର ଲକ୍ଷ୍ୟ ରୂପେ କାହିଁକି ଘଟୁଛି, ତା'ର କାରଣକୁ ବ୍ୟାଖ୍ୟା କରିବା ପରିବର୍ତ୍ତେ ପ୍ରତ୍ୟକ୍ଷବାଦ ଘୋଷଣା କରିଥିଲା କ'ଣ ଘଟୁଛି ଏବଂ କାହିଁକି ଘଟୁଛି, ତା'ର ବର୍ଣ୍ଣନା । ପ୍ରତ୍ୟକ୍ଷବାଦ ଅନୁସାରେ ଇନ୍ଦ୍ରିୟାନୁଭୂତ ତଥ୍ୟର ବର୍ଣ୍ଣନା ଏବଂ ତଥ୍ୟସମୂହର ଠୁଳୀକରଣ କରାଯାଇଥାଏ ଅଭିଜ୍ଞତା ଲବ୍ଧ ଗବେଷଣା ପଦ୍ଧତିକୁ ଉପଯୋଗ କରି । କେବଳ ନିର୍ଦ୍ଦିଷ୍ଟ ପଦାର୍ଥ ଏବଂ ଘଟଣାବଳୀ ହେଉଛି ବାସ୍ତବ ଏବଂ ବିଜ୍ଞାନ କେବଳ ଜ୍ଞାନ ନେଇ ଚର୍ଚ୍ଚା କରେ, ଯିଏକି ଇନ୍ଦ୍ରିୟସମୂହକୁ ପ୍ରତ୍ୟକ୍ଷ ଭାବେ ପ୍ରଦତ୍ତ ହୋଇଥାଏ । "ସାଧାରଣ"

ବୋଲି କୌଣସି ଜିନିଷ ନାହିଁ ଏବଂ ଅନାପେକ୍ଷିକ ସତ୍ୟ ହେଉଛି ଏକ କଳ୍ପନା । ଏହିସବୁ ପ୍ରପାଦ୍ୟ ଏହି ସିଦ୍ଧାନ୍ତଟିରେ ପହଞ୍ଚାଇ ଦିଏ ଯେ, ବିଶେଷ ବିଜ୍ଞାନସମୂହର ଦର୍ଶନର ଆବଶ୍ୟକତା ନାହିଁ । ତା'ର ପାରମ୍ପାରିକ ସମସ୍ୟାବଳୀ ହେଉଛି ନକଲି ସମସ୍ୟାବଳୀ । ଦର୍ଶନର ଯଦି ତିଷ୍ଠି ରହିବାର ଅଧିକାର ଥାଏ, ସେ ଅଧିକାରଟା କେବଳ ହେଉଛି ବିଶେଷ ବିଜ୍ଞାନସମୂହର ତଥ୍ୟସମୂହକୁ ସଂକ୍ଷିପ୍ତକରଣ ଏବଂ ସମନ୍ୱୟ ସାଧନ କରିବା ।

ବିଜ୍ଞାନ ଏବଂ ଦର୍ଶନ ମଧ୍ୟରେ ସମନ୍ୱୟର ଏକପାଖିଆ ବ୍ୟାଖ୍ୟାର ଏଇ ଦୁଇଟି ଦିଗର ପ୍ରକାଶ ଘଟିଥାଏ ଆଧୁନିକ ବୁର୍ଜୁଆ ଦର୍ଶନ ମଧ୍ୟରେ । ପ୍ରାକୃତିକ ଦାର୍ଶନିକ ଆଭିମୁଖ୍ୟଟା ହେଉଛି ଧର୍ମୀୟ ନିଓଥମିଷ୍ଟ ଦର୍ଶନର ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ । କାଥଲିକ ଗିର୍ଜାର ଏହି ଦର୍ଶନ ଜ୍ଞାନ ଉପରେ ପ୍ରାଥମିକ ବିଶ୍ୱାସ କଥା ଘୋଷଣା କରିଥାଏ । ନିଓଥମିଷ୍ଟମାନଙ୍କ ପକ୍ଷରେ ନୈସର୍ଗିକ ପରିପ୍ରକାଶର ଉପାୟରେ ବିଶ୍ୱାସ ବଳରେ ଅର୍ଜିତ ସତ୍ୟରାଜି ହେଉଛି ସର୍ତ୍ତହୀନ ଏବଂ ଅନାପେକ୍ଷିକ । ମଣିଷର ଯୁକ୍ତିଜ୍ଞାନ ଦ୍ୱାରା ଅର୍ଜିତ ଜ୍ଞାନ ହେଉଛି ନୀଚ ସ୍ତରର ଏବଂ ବିଶ୍ୱାସ ଦ୍ୱାରା ଅବିରାମ ନିୟନ୍ତ୍ରଣରେ ରହିବା ଦରକାର । ଦର୍ଶନ ନିଜେ କାର୍ଯ୍ୟ କରେ ଧର୍ମତତ୍ତ୍ୱର ଦାସ ହିସାବରେ । ନିଓଥମ୍ବାଦ ଏକ କଠୋର ଯାଜକ ନୀତି ପ୍ରତିଷ୍ଠା କରିଛି, ଯଦନୁଯାୟୀ ଧର୍ମତତ୍ତ୍ୱ ହେଉଛି ଜ୍ଞାନର ଚୂଡ଼ା ଦେଶ, ଦର୍ଶନ ହେଉଛି ମଧ୍ୟ ଭାଗ ଏବଂ ଅନ୍ୟାନ୍ୟ ବିଜ୍ଞାନ ହେଉଛନ୍ତି ପାଦଦେଶ ।

ବିଭିନ୍ନ ନବପ୍ରତ୍ୟକ୍ଷବାଦୀ ଗୋଷ୍ଠୀର ବୈଶିଷ୍ଟ୍ୟ ହେଉଛି ଜ୍ଞାନର ବିଜ୍ଞାନସିଦ୍ଧ ବ୍ୟାଖ୍ୟା । ଧର୍ମ କିମ୍ବା ଦର୍ଶନ, କୌଣସିଟି ବିଜ୍ଞାନର ବିଷୟବସ୍ତୁ ରୂପେ ଏଥିରେ ବିବେଚିତ ହୁଏ ନାହିଁ । ଏହା ଫଳରେ, ଗୋଟିଏ ଦିଗରେ ସେସବୁର "ଅବୈଜ୍ଞାନିକ" ଚରିତ୍ର ଆଳରେ ଧର୍ମୀୟ ମତର ବୈଜ୍ଞାନିକ ସମାଲୋଚନାକୁ ଏବଂ ଅନ୍ୟ ଦିଗରେ, ବସ୍ତୁ ଏବଂ ଚେତନା ମଧ୍ୟରେ ସଂପର୍କ ଏବଂ ବସ୍ତୁଗତ ସତ୍ୟର ଅବଗତି, କାର୍ଯ୍ୟକାରଣ ତତ୍ତ୍ୱ, ଆଦି ସଂପର୍କିତ ଦାର୍ଶନିକ ସମସ୍ୟାବଳୀକୁ ପ୍ରତ୍ୟାଖ୍ୟାନ କରେ ବୈଜ୍ଞାନିକ ଭାବେ ମୂଲ୍ୟହୀନ ବୋଲି । ଦର୍ଶନର ଶକ୍ତି କେବଳ ବୈଜ୍ଞାନିକ ପ୍ରପାଦ୍ୟ ଏବଂ ତତ୍ତ୍ୱରାଜିର ଗଠନର ବ୍ୟାଖ୍ୟା ମଧ୍ୟରେ ସୀମିତ । ତେଣୁ ନବପ୍ରତ୍ୟକ୍ଷବାଦ ଦର୍ଶନ ସ୍ଥାନରେ ବହୁବିଧ ଆଧୁନିକ ପ୍ରଚଳିତ ଯୁକ୍ତିବିଦ୍ୟା (ପ୍ରତୀକ) ଏବଂ ଧର୍ମକୁ ଅମାପ ସ୍ୱାଧୀନତା ପ୍ରଦାନ କରିଥାଏ ସୀମା ବାହାରେ କାର୍ଯ୍ୟ କରିବାକୁ ।

ଦର୍ଶନ ଏବଂ ବିଜ୍ଞାନ ମଧ୍ୟରେ ସଂପର୍କ ପ୍ରତି ଅଣବୈଜ୍ଞାନିକ ଆଭିମୁଖ୍ୟଟା ଏବେ ମଧ୍ୟ କେତେକ ପରିମାଣରେ ଜୋରଦାର ହୋଇଛି । କେତେକ ବୁର୍ଜୁଆ ଦାର୍ଶନିକ ମତବାଦ (ଯଥା, ଅସ୍ତିତ୍ୱବାଦ) ବିଜ୍ଞାନକୁ ମଣିଷର ତଥାକଥିତ ଶତ୍ରୁ ଏବଂ ପ୍ରତିକୂଳ ଶକ୍ତି ବୋଲି ବିଚାର କରନ୍ତି, ଯେଉଁ ଶକ୍ତି କି ସାଂସ୍କୃତିକ ମୂଲ୍ୟବୋଧସମୂହକୁ ବିନଷ୍ଟ କରି ଦିଏ । ଅସ୍ତିତ୍ୱବାଦୀମାନେ କହନ୍ତି ବିଜ୍ଞାନ ସହିତ ଦର୍ଶନ ଖାପଖାଏ ନାହିଁ ଏବଂ ସେମାନେ ବିଚାର କରନ୍ତି, ଦର୍ଶନର କର୍ତ୍ତବ୍ୟରାଜି ହେଉଛି କେବଳ ବ୍ୟକ୍ତିର ଆତ୍ମିକ ଜଗତ, ତା'ର ଚେତନା ଏବଂ ଆବେଗସମୂହକୁ ବିଶ୍ଳେଷଣ କରିବା, ମଣିଷ ଜୀବନର

ଲକ୍ଷ୍ୟକୁ ଆବିଷ୍କାର କରିବା, ବୈଜ୍ଞାନିକ ତଥ୍ୟସମୂହ ଦୃଷ୍ଟିରୁ ସେସବୁର ସାଧାରଣୀକରଣ ଏବଂ ସେସବୁ ସହିତ ମିଳାଇ ବାସ୍ତବତାକୁ ବ୍ୟାଖ୍ୟା କରିବା । ଅଣବିଜ୍ଞାନବାଦ ଏହି ଅନୁମାନରୁ ଆରମ୍ଭ କରିଥାଏ ଯେ, ମଣିଷ ଅସ୍ତିତ୍ୱର ମୌଳିକ ସମସ୍ୟାବଳୀର ସମାଧାନ କରିବାକୁ ଗଲାବେଳେ ବିଜ୍ଞାନର ସମ୍ଭାବନାରାଜି ହେଉଛି ସୀମିତ ।

ବହୁ ବୁର୍ଜୁଆ ଦାର୍ଶନିକ ଦର୍ଶନର ବୈଜ୍ଞାନିକ ଚରିତ୍ରକୁ ଅସ୍ୱୀକାର କରନ୍ତି ଏବଂ ଜଗତ ସଂପର୍କରେ ଦାର୍ଶନିକ ଜ୍ଞାନ ଏବଂ ବୈଜ୍ଞାନିକ ଅବଗତି ମଧ୍ୟରେ ଏକ ବିଭେଦର ରେଖା ଟାଣିଥାନ୍ତି ବିଜ୍ଞାନକୁ ଭାବାଦର୍ଶମୁକ୍ତ, ବିଶ୍ୱଦୃଷ୍ଟିକୋଣ ତଥା ଦାର୍ଶନିକ ଉପାଦାନରୁ "ବିଶୁଦ୍ଧ" କରିବା ପାଇଁ ଏବଂ ଏହି ଭାବେ ତାକୁ ସାଂପ୍ରତିକ ସାମାଜିକ ସଂଗ୍ରାମରୁ ପୃଥକ୍ କରିବା ନିମିତ୍ତ । ତା ସତ୍ତ୍ୱେ, ସାମାଜିକ ଜୀବନରେ ବିଜ୍ଞାନର କ୍ରମବର୍ଦ୍ଧମାନ ଭୂମିକା ଫଳରେ ବୈଜ୍ଞାନିକର ସାମାଜିକ ପ୍ରତିଷ୍ଠା ଏବଂ ତା'ର ଦାର୍ଶନିକ ତଥା ପଦ୍ଧତିଗତ ଆଭିମୁଖ୍ୟ ଏବେ ବିଶେଷ ଗୁରୁତ୍ୱ ଅର୍ଜନ କରିବାରେ ଲାଗିଛି । ଏବେ ଏ କଥା କ୍ରମଶଃ ଅଧିକରୁ ଅଧିକ ପରିଷ୍କାର ହେବାରେ ଲାଗିଛି ଯେ, ଦର୍ଶନ ଏବଂ ନିର୍ଦ୍ଦିଷ୍ଟ ବୈଜ୍ଞାନିକ ଗବେଷଣା ମଧ୍ୟରେ ସିଧାସଳଖ ବିଭେଦର ରେଖା ଟାଣିବା ଅଯୌକ୍ତିକ । ତେଣୁ କରି ୧୬ଶ ବିଶ୍ୱ ଦର୍ଶନ କଂଗ୍ରେସର ମୂଳ ଆଲୋଚ୍ୟ ବିଷୟ – "ଦର୍ଶନ ଏବଂ ଆଧୁନିକ ବିଜ୍ଞାନରେ ବିଶ୍ୱଦୃଷ୍ଟିକୋଣର ସମସ୍ୟାବଳୀ" ହେବାଟା କୌଣସି ଆଶ୍ଚର୍ଯ୍ୟ କଥା ନୁହଁ ।

## ୫ – ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଏବଂ ବିଶେଷ ବିଜ୍ଞାନସମୂହ

ଦାର୍ଶନିକ ତଥା ବିଶେଷ ବୈଜ୍ଞାନିକ ଜ୍ଞାନର ବ୍ୟାଖ୍ୟା ସାଧାରଣ ଏବଂ ନିର୍ଦ୍ଦିଷ୍ଟ ମଧ୍ୟରେ, ସ୍ୱୟଂ ବାସ୍ତବତା ଭିତରେ ଐକ୍ୟ ବସ୍ତୁଗତ ଭାବେ ପ୍ରତିଷ୍ଠିତ । ଏହି ଦ୍ୱନ୍ଦ୍ୱମୂଳକ ଐକ୍ୟ ଦର୍ଶନ ଏବଂ ବିଶେଷ ବିଜ୍ଞାନର ପାରସ୍ପରିକ ସ୍ୱାର୍ଥକୁ ନିର୍ଦ୍ଧାରଣ କରିଥାଏ । ପ୍ରପଞ୍ଚ ଏବଂ ପ୍ରକୃତି ତଥା ସମାଜ ସଂପର୍କରେ ନିର୍ଦ୍ଦିଷ୍ଟ ଜ୍ଞାନ ଉପରେ ନିର୍ଭର ନକରି ଦର୍ଶନ ତିଷ୍ଠି ପାରେ ନାହିଁ କି ସଫଳ ଭାବେ ବିକାଶ ଲାଭ କରି ପାରେ ନାହିଁ । ଆମେ ଦେଖିଛେ, ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଅଭ୍ୟୁଦୟ ଘଟିଥିଲା ଯେଉଁସବୁ କାରଣରୁ, ସେସବୁ ମଧ୍ୟରେ ଥିଲା ପ୍ରାକୃତିକ ବିଜ୍ଞାନ କ୍ଷେତ୍ରରେ ୧୯ଶ ଶତକର ଅଗ୍ରଗତି । ଦର୍ଶନ ଏବଂ ବିଶେଷ ବିଜ୍ଞାନସମୂହ ମଧ୍ୟରେ ଚିରନ୍ତନ ଯୋଗସୂତ୍ରଗୁଡ଼ିକ ପ୍ରତି ଦୃଷ୍ଟି ଆକର୍ଷଣ କରି, ଏଙ୍ଗେଲସ୍ ଲେଖିଥିଲେ, "ପ୍ରାକୃତିକ ଏବଂ ଐତିହାସିକ ବିଜ୍ଞାନ କ୍ଷେତ୍ରରେ ପ୍ରତ୍ୟେକଟି ଯୁଗାନ୍ତକାରୀ ଆବିଷ୍କାର ସହିତ ମଧ୍ୟ ଏହାକୁ (ବସ୍ତୁବାଦକୁ) ତା'ର ରୂପ ବଦଳାଇବାକୁ ପଡ଼ିଥାଏ; ଏବଂ ତା ପରେ ଇତିହାସକୁ ମଧ୍ୟ ବସ୍ତୁବାଦୀ ଦୃଷ୍ଟିକୋଣରୁ ବିଚାର କରିବା ପରେ ଏଠାରେ ମଧ୍ୟ

ବିକାଶର ନୂଆ ଏକ ପଥ ଉନ୍‌ମୋଚିତ ହୋଇଛି ।"* ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଅଭ୍ୟୁଦୟ ପରେ ଏହାର ପରବର୍ତ୍ତୀ ବିକାଶ ସର୍ବଦା ନିର୍ଭର କରିଛି ସାମାଜିକ ପ୍ରୟୋଗ ଦୃଷ୍ଟିରୁ ନିର୍ଦ୍ଦିଷ୍ଟ ବୈଜ୍ଞାନିକ ତଥ୍ୟରାଶି ଏବଂ ସାଧାରଣୀକରଣ ଉପରେ । ପ୍ରକୃତି ତଥା ବାସ୍ତବତାର ନିୟମରାଜିର ଅବଗତି କ୍ଷେତ୍ରରେ ଅଗ୍ରଗତି ଦର୍ଶନକୁ ତା'ର ନୂତନ ସମସ୍ୟାବଳୀ ସମେତ ସମୃଦ୍ଧ କରେ, ସେସବୁ ପ୍ରତି ବିଭିନ୍ନ ଆଭିମୁଖ୍ୟ ସୃଷ୍ଟି କରେ ଏବଂ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ପ୍ରବର୍ଗସମୂହ ତଥା ନିୟମାବଳୀକୁ ଆଉରି ଅର୍ଥବହ ଏବଂ ଗୁରୁତ୍ୱସଂପନ୍ନ କରେ ।

ବିଶେଷ ବିଜ୍ଞାନସମୂହ ସହିତ ନିବିଡ଼ ସଂପର୍କ ବିନା ଦର୍ଶନର ଅଧପତନ ଘଟେ ଏକ ପଣ୍ଡିତିଆ ତତ୍ତ୍ୱ ବା ଯୁକ୍ତିହୀନ ଭାବାଦର୍ଶକୁ । କୌଣସି ବୈଜ୍ଞାନିକ ଦର୍ଶନ ପ୍ରତି ଉଦାସୀନ ହୋଇ ରହି ପାରେ ନାହିଁ । ତା'ଛଡ଼ା ପ୍ରତ୍ୟେକଟି ଦର୍ଶନ ତା'ର ବୈଜ୍ଞାନିକ କାର୍ଯ୍ୟକଳାପ ପ୍ରତି ସଠିକ ଦିଗଦର୍ଶନ ହୋଇ ପାରେ ନାହିଁ । ଏ ସଂପର୍କରେ ପାଠକମାନେ ଜାଣିଥିବେ, ଚଳିତ ଶତାବ୍ଦୀର ପ୍ରାରମ୍ଭରେ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଦେଖା ଦେଇଥିବା ସଂକଟ କଥା । ଏହି ସଂକଟ ପଛରେ ତତ୍‌କାଳୀନ ବୈଜ୍ଞାନିକଙ୍କ ମଧ୍ୟରେ କେତେକଙ୍କର ପ୍ରକୃତି ପ୍ରତି ଅଧିଭୌତିକ ମତର ପ୍ରାଧାନ୍ୟ ହେତୁ, ଏହି ସମସ୍ୟାଟି କଥା ମନରେ ରଖି ଲେନିନ୍ ଲେଖିଥିଲେ, "କୌଣସି ପ୍ରାକୃତିକ ବିଜ୍ଞାନ ଏବଂ କୌଣସି ବସ୍ତୁବାଦ ବୁର୍ଜୁଆ ଚିନ୍ତାଧାରା ତଥା ବୁର୍ଜୁଆ ବିଶ୍ୱର ଦୃଷ୍ଟିକୋଣର ଆକ୍ରମଣରୁ ନିଜ ଆସ୍ଥାନକୁ ବଜାଏ ରଖି ପାରିବ ନାହିଁ, ଯଦି ତାହା ଦୃଢ଼ ଦାର୍ଶନିକ ଭୂମିରେ ଦଣ୍ଡାୟମାନ ନହୁଏ । ଏହି ସଂଗ୍ରାମରେ ନିଜ ଆସ୍ଥାନକୁ ରକ୍ଷା କରିବାକୁ ହେଲେ ଏବଂ ବିଜୟର ଶେଷ ସୀମା ପର୍ଯ୍ୟନ୍ତ ତାକୁ ଆଗେଇ ନେବାକୁ ହେଲେ ପ୍ରକୃତି ବିଜ୍ଞାନୀମାନଙ୍କୁ ଆଧୁନିକ ବସ୍ତୁବାଦୀ ଏବଂ ମାର୍କସ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ବସ୍ତୁବାଦର ସଚେତନ ଅନୁଗାମୀ ହେବାକୁ ପଡ଼ିବ, ଅର୍ଥାତ୍, ତାଙ୍କୁ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ ହେବାକୁ ପଡ଼ିବ ।"**

ତେବେ, ବୈଜ୍ଞାନିକ ଗବେଷଣା ପାଇଁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦର୍ଶନ କି ଗୁରୁତ୍ୱ ବହନ କରେ ? ବିଶେଷ ବିଜ୍ଞାନସମୂହ ସହିତ ଦର୍ଶନର ବିଭିନ୍ନ ଯୋଗସୂତ୍ର ରହିଛି । ପ୍ରଥମତଃ, ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ହେଉଛି ବିଜ୍ଞାନୀମାନଙ୍କର ବିଶ୍ୱଦୃଷ୍ଟିକୋଣର ଭିତ୍ତି । ଦର୍ଶନ ଏହି କାର୍ଯ୍ୟଟି ସଂପନ୍ନ କରିଥାଏ ନିର୍ଦ୍ଦିଷ୍ଟ ବିଜ୍ଞାନସମ୍ମତ ଜ୍ଞାନର ଉପସଂହାରଗୁଡ଼ିକୁ ସଂହତ କରି ଏବଂ ବିଶେଷ ମଧ୍ୟରେ ସାଧାରଣକୁ ଉଦ୍‌ଘାଟନ କରି । ଜଗତ ସଂପର୍କରେ

---

*F. Engels, "Ludwig Feuerbach and the End of Classical German Philosophy". In: Karl Marx and Frederick Engels, *Selected Works*, Vol. 3, Progress Publishers, Moscow, 1973, p. 349.

**V. I. Lenin, "On the Significance of Militant Materialism", *Collected Works*, Vol. 33, Moscow, 1966, p. 233.

ମାନବ ଜ୍ଞାନର ଆପେକ୍ଷିକ ସମଗ୍ରତା ଏବଂ ସୁବ୍ୟବସ୍ଥିତକରଣ ପ୍ରତ୍ୟେକଟି ନିର୍ଦ୍ଦିଷ୍ଟ ସମୟରେ ବିଶେଷ ବିଜ୍ଞାନ କ୍ଷେତ୍ରରେ ପ୍ରତିଷ୍ଠିତ ଭିନ୍ନ ଭିନ୍ନ ବାସ୍ତବ ଜ୍ଞାନର କ୍ଷତିପୂରଣ କରେ । ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦ ମଧ୍ୟ ବିଜ୍ଞାନୀମାନଙ୍କ ପକ୍ଷରେ ସାମାଜିକ ମୂଲ୍ୟବୋଧ ତଥା ଭାବାଦର୍ଶଗତ ଏବଂ ରାଜନୈତିକ ଆଭିମୁଖ୍ୟର ବ୍ୟବସ୍ଥା ରୂପେ କାର୍ଯ୍ୟ କରିଥାଏ । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଏହି କାର୍ଯ୍ୟଟିକୁ ସଂପନ୍ନ କରିଥାଏ ଶ୍ରମିକ ଶ୍ରେଣୀର ଭାବାଦର୍ଶ ହିସାବରେ, ଯିଏକି ଇତିହାସ ଦ୍ୱାରା ନିର୍ଦ୍ଦେଶିତ ହୋଇଛି ସାମାଜିକ ସମାନତା, ନ୍ୟାୟ, ଶାନ୍ତି ତଥା ମାନବତାର ନୀତିରାଜି ଅନୁସାରେ ସମାଜର ବୈପ୍ଳବିକ ରୂପାନ୍ତରଣରେ ନିୟୋଜିତ ହେବା ପାଇଁ ।

## ୬ – ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ପଦ୍ଧତିଗତ କ୍ରିୟା

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପଦ୍ଧତିଗତ କାର୍ଯ୍ୟ ସଂପର୍କରେ ବିଶେଷ ଭାବେ ଉଲ୍ଲେଖ କରିବା ଦରକାର । ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ପଦ୍ଧତିଗତ ସମସ୍ୟାରାଜି ହେଉଛି ଅତୀବ ଗୁରୁତ୍ୱପୂର୍ଣ୍ଣ । ଆମେ ଜାଣିଛେ, ଅବଗତିର ପଦ୍ଧତିଟା ହେଉଛି ଗବେଷକ ଦ୍ୱାରା ଗୃହୀତ ଏକ ଲକ୍ଷ୍ୟ ହାସଲ ପାଇଁ ବ୍ୟବହୃତ ବିଭିନ୍ନ ଉପାୟ ଏବଂ କାର୍ଯ୍ୟାନୁଷ୍ଠାନର ସମାହାର । ସେ ଲକ୍ଷ୍ୟଟି ଏକ ତଥ୍ୟର ଆବିଷ୍କାର, କୌଣସି ନିୟମର ସୂତ୍ରାୟନ ବା କୌଣସି ସମସ୍ୟାର ସମାଧାନ ହୋଇ ପାରେ । ପ୍ରତ୍ୟେକ ବିଜ୍ଞାନର ଅଛି ବାସ୍ତବତାକୁ ପ୍ରତିଫଳିତ କଲା ଭଳି ନିଜସ୍ୱ ପଦ୍ଧତି—ପଦାର୍ଥ ବିଜ୍ଞାନରେ ସେ ପଦ୍ଧତିଟି ହେଉଛି ଆଲୋକ ଛଟାର ବିଶ୍ଳେଷଣ; ଗଣିତ କ୍ଷେତ୍ରରେ ବିଶେଷରୁ ସାମାନ୍ୟକରଣ; ରସାୟନ ବିଜ୍ଞାନ କ୍ଷେତ୍ରରେ ଗୁଣାତ୍ମକ ଅନୁଶୀଳନ; ଇତିହାସରେ ମୂଳ ଉତ୍ସସମୂହର ଅନୁଧ୍ୟାନ; ମହାକାଶ ବିଜ୍ଞାନ କ୍ଷେତ୍ରରେ ତେଜସ୍କ୍ରିୟତା ବିକିରଣରେ ହ୍ରାସ; ଧାତୁବିଦ୍ୟା କ୍ଷେତ୍ରରେ ଚାପ ପ୍ରତିରୋଧକାରୀ ମିଶ୍ରଧାତୁର ନିର୍ଦ୍ଧାରଣ; ଇଲେକଟ୍ରନିକ୍ କ୍ଷେତ୍ରରେ ସଂହତ ମାଇକ୍ରୋସିମାଚା, ଆଦି ।

କୌଣସି ଏକ ବିଜ୍ଞାନର ଗଢ଼ଣ ମଧ୍ୟରେ କେତେକ ନିର୍ଦ୍ଦିଷ୍ଟ ପ୍ରକୃତ ପ୍ରପଞ୍ଚକୁ ଅନୁଧ୍ୟାନ କରିବା ନିମିତ୍ତ ବ୍ୟବହୃତ ଏହିସବୁ ପଦ୍ଧତି ବ୍ୟତୀତ ଅବଗତି ପ୍ରକ୍ରିୟାରେ ବ୍ୟବହୃତ ଅନ୍ୟାନ୍ୟ ସାଧାରଣ ବୈଜ୍ଞାନିକ ପଦ୍ଧତି ରହିଛି । ବିଭିନ୍ନ ଆଧୁନିକ ବିଜ୍ଞାନସମୂହ ସେସବୁ ପଦ୍ଧତିର ଉପଯୋଗ କରନ୍ତି, ଅନ୍ୟାନ୍ୟ ପଦ୍ଧତି ସମେତ, ପରୀକ୍ଷା, ବିଶେଷରୁ ସାଧାରଣକୁ ଯିବା, ସାଧାରଣରୁ ବିଶେଷକୁ ଆସିବା, ପର୍ଯ୍ୟବେକ୍ଷଣ, ବିଶ୍ଳେଷଣ ଏବଂ ସଂଶ୍ଲେଷଣ, ପ୍ରତୀକକରଣ ଏବଂ ଆନୁଷ୍ଠାନିକକରଣ, ଆଦି । ପଦାର୍ଥର ନିର୍ଦ୍ଦିଷ୍ଟ ଦିଗଗୁଡ଼ିକୁ ପ୍ରତିଫଳିତ କରିବା ପାଇଁ ଗବେଷଣା ପ୍ରକ୍ରିୟାର କେତେକ ପର୍ଯ୍ୟାୟରେ ବ୍ୟବହୃତ ସାଧାରଣ

ବୈଜ୍ଞାନିକ ପଦ୍ଧତିସମୂହ ମଧ୍ୟରେ ଗାଣିତିକ, ପରିସଂଖ୍ୟାନଗତ, ପଦ୍ଧତି-ଗଢ଼ଣ ସଂକ୍ରାନ୍ତୀୟ ଏବଂ ସାଇବେରନେଟିକ୍ସ ପଦ୍ଧତିଗୁଡ଼ିକ ମଧ୍ୟ ଅନ୍ତର୍ଭୁକ୍ତ । ଏହିସବୁ ପଦ୍ଧତିରାଜି ମଧ୍ୟରୁ କେତେକ ମୁଖ୍ୟତଃ ଅନୁଭୂତିସିଦ୍ଧ ପର୍ଯ୍ୟାୟରେ ବ୍ୟବହୃତ ହେଉଥିଲା ବେଳେ (ପର୍ଯ୍ୟବେକ୍ଷଣ, ପରୀକ୍ଷା, ବିଶ୍ଳେଷଣ, ସାଧାରଣରୁ ବିଶେଷକୁ ଏବଂ ବିଶେଷରୁ ସାଧାରଣରେ ପହଞ୍ଚିବା, ଆଦି), ଅନ୍ୟଗୁଡ଼ିକ ତାତ୍ତ୍ୱିକ ପର୍ଯ୍ୟାୟରେ ବ୍ୟବହୃତ ହୋଇଥାଏ (ଆନୁଷ୍ଠାନିକକରଣ, ସ୍ୱତଃସିଦ୍ଧକରଣ, ଗାଣିତିକ ପଦ୍ଧତି, ଆଦି) ।

ବସ୍ତୁଗତ ସତ୍ୟରେ ପହଞ୍ଚିବା ପାଇଁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ପଦ୍ଧତିର ଆବଶ୍ୟକତା ପଡ଼େ, ଯାହାକୁ ଅବଗତି ପ୍ରକ୍ରିୟାର ସମସ୍ତ ସ୍ତର ଏବଂ ପର୍ଯ୍ୟାୟରେ ଏବଂ ବାସ୍ତବତାର ସମସ୍ତ କ୍ଷେତ୍ରର ଅନୁଧ୍ୟାନ ବେଳେ ପ୍ରୟୋଗ କରିବାକୁ ହୁଏ । ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ପଦ୍ଧତି ହେଉଛି ଏବେ ଆଧୁନିକ ବିଜ୍ଞାନର ସାର୍ବିକ ପଦ୍ଧତି । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପଦ୍ଧତିଗତ କ୍ରିୟାଟି ବିଶ୍ୱଦୃଷ୍ଟିକୋଣ ହିସାବରେ ତା'ର ସାରମର୍ମ ସହିତ ନିବିଡ଼ ଭାବେ ଯୁକ୍ତ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ତତ୍ତ୍ୱ ଏବଂ ପଦ୍ଧତି ଏକ ଏକକ ସମଗ୍ର ରଚନା କରିଥାଏ । ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ସାଧାରଣ ନିୟମସମୂହ ଏବଂ ପ୍ରବର୍ଗରାଜି, ଯିଏକି ଏକ ଦାର୍ଶନିକ ତତ୍ତ୍ୱ ରୂପରେ ଯୁକ୍ତିସଂଗତ ଭାବେ ପ୍ରକାଶ ପାଇଥାଏ, ବିଶେଷ ବିଜ୍ଞାନସମୂହ କ୍ଷେତ୍ରରେ ଗବେଷଣାର ପଦ୍ଧତିଗତ ନୀତିରାଜିରେ ପରିଣତ ହୋଇଥାଏ ।

ବୈଜ୍ଞାନିକ ବିଶ୍ୱଦୃଷ୍ଟିକୋଣ ଗଠନ କରିବାରେ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ନୂଆ ଜ୍ଞାନ ଆହରଣ ପାଇଁ ଏକ ଉପାୟରେ ପରିଣତ ହୋଇଛି । ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ସାହାଯ୍ୟରେ ହିଁ ଆମେ ଆଧୁନିକ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଦେଖା ଦେଉଥିବା ସମସ୍ୟାବଳୀକୁ ସମାଧାନ କରି ପାରିବା । ଦୃଷ୍ଟାନ୍ତ ସ୍ୱରୂପ, ଆପେକ୍ଷିକତାବାଦ ତତ୍ତ୍ୱ ଅନୁଯାୟୀ ନିର୍ଦ୍ଧାରିତ ସ୍ଥାନ ଏବଂ କାଳର ଏକତ୍ରୀକରଣକୁ ଆମେ କିପରି ହୃଦୟଙ୍ଗମ କରି ପାରିବା ? କ୍ୱାଣ୍ଟମ୍ ମେକାନିକସ୍ ମନେ କଲା ଭଳି ଭିନ୍ନ ଭିନ୍ନ ଅଣୁକଣାସମୂହ ଏକତ୍ରିତ ହୁଅନ୍ତି ଧାରାବାହିକ ଢେଉରେ – ଏହା କ'ଣ ଏକ ଉଦ୍‌ଭଟ କଥା ? ଆମେ କିପରି ଚିନ୍ତା କରି ପାରିବା ଯେ, ବସ୍ତୁର ଅଣୁକଣାସମୂହ ଅବସ୍ଥଗତ ଆଲୋକକୁ ରୂପାନ୍ତରିତ କରାଯାଇ ପାରିବ ଏବଂ ଆଲୋକକୁ ଉପାଦାନରେ ପରିଣତ କରି ହେବ, ଯେ ଭଳି କ୍ୱାଣ୍ଟମ୍ ଇଲେକ୍‌ଟ୍ରୋଡାଇନାମିକ୍ସ କ୍ଷେତ୍ରରେ ଘଟିଥାଏ ? ମୌଳିକ ଅଣୁକଣାର ତତ୍ତ୍ୱ ଅନୁଯାୟୀ ବସ୍ତୁର ମୌଳିକ କଣାରାଶିର ପାରସ୍ପରିକ ରୂପାନ୍ତରଣକୁ କିପରି ବା ଆମେ ହୃଦୟଙ୍ଗମ କରି ପାରିବା ? ଆଧୁନିକ ବିଜ୍ଞାନ ଏହିସବୁ ଏବଂ ଅନ୍ୟାନ୍ୟ ସମସ୍ୟାବଳୀକୁ ସମାଧାନ କରିବା ପାଇଁ ଏକ ପଦ୍ଧତି ଖୋଜିଥାଏ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ଭିତରେ । ପ୍ରକୃତି ବିଜ୍ଞାନର ମୁଖ୍ୟ ଲକ୍ଷ୍ୟଟି ହେଉଛି ବିକାଶମାନ ପ୍ରକୃତିର ସର୍ବାତ୍ମକ ସାର୍ବିକ ନିୟମବଦ୍ଧତାକୁ ଅବଗତ ହେବା ସଙ୍ଗେ ସଙ୍ଗେ ସେସବୁକୁ ଏପରି ଏକ ଅବଧାରଣା ମଧ୍ୟରେ ପ୍ରକାଶ କରିବାକୁ ହେବ, ଯାହାକି ଲେନିନ୍‌ଙ୍କ ଭାଷାରେ, "ଏ ଜଗତକୁ ଆଲିଙ୍ଗନ କରିବା ପାଇଁ ନମନୀୟ,

ଗତିଶୀଳ, ଆପେକ୍ଷିକ, ପାରସ୍ପରିକ ଭାବେ ଯୁକ୍ତ, ବିରୋଧଗୁଡ଼ିକ ମଧ୍ୟରେ ଐକ୍ୟବଦ୍ଧ ହେବା ଦରକାର ।"*

ବିଜ୍ଞାନୀମାନେ ଯେତେବେଳେ ସଚେତନ ଭାବେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ପଦ୍ଧତି ବ୍ୟବହାର କରନ୍ତି, ସେମାନେ ପ୍ରକୃତି ବିଜ୍ଞାନର ବିକାଶ ସାଧନ କରିଥାନ୍ତି । ପଲ୍ ଲଙ୍ଗେଭିଁ (ଫ୍ରାନ୍ସ), ଜୋହନ୍ ବେର୍ଣ୍ଣାଲ ଏବଂ ସିସିଲ ଫ୍ରାଙ୍କ୍ ପାଓ୍ୱେଲ (ବ୍ରିଟେନ୍) ଷୋଇଚି ସାକାଟା (ଜାପାନ୍), ଭି. ଏ. ଆମ୍ବାରସୁମ୍ୟାନ୍, ଏସ୍. ଆଇ. ଭାବିଲୋଭ୍ ଏବଂ ଏନ୍. ଏନ୍. ସେମିଓନଭ୍ (ସୋଭିଏତ୍ ୟୁନିଅନ୍) ଭଳି ବିଜ୍ଞାନୀମାନେ ବୈଜ୍ଞାନିକ ଅଗ୍ରଗତି କ୍ଷେତ୍ରରେ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ ପଦ୍ଧତିର ସଂକେତଦାୟୀ ଗୁରୁତ୍ୱ ପରିଷ୍କାର ଭାବେ ପ୍ରଦର୍ଶନ କରିଛନ୍ତି । ଜବାହାରଲାଲ ନେହେରୁ ଐତିହାସିକ ଘଟଣାବଳୀକୁ ହୃଦୟଙ୍ଗମ କରିବା ଦିଗରେ ମାର୍କସ୍‌ବାଦୀ ଦର୍ଶନର ସର୍ବାଧିକ ଗୁରୁତ୍ୱକୁ ନିମ୍ନମତେ ବର୍ଣ୍ଣନା କରିଛନ୍ତି, "ମାର୍କସ୍ ଏବଂ ଲେନିନ୍‌ଙ୍କ ଅଧ୍ୟୟନ ମୋର ମନ ଉପରେ ଶକ୍ତିଶାଳୀ ପ୍ରଭାବ ପାତ କରିଥିଲା ଏବଂ ଇତିହାସ ତଥା ସାଂପ୍ରତିକ ବ୍ୟାପାରାବଳୀକୁ ନୂଆ ଏକ ଆଲୋକରେ ଦେଖିବା ପାଇଁ ମୋତେ ସାହାଯ୍ୟ କରିଥିଲା । ଇତିହାସ ଏବଂ ସାମାଜିକ ବିକାଶର ଦୀର୍ଘ ଜଞ୍ଜିରଟିର କିଛି ଅର୍ଥ ଏବଂ ପରିଣାମ ଅଛି ବୋଲି ଦେଖାଗଲା ଏବଂ ଭବିଷ୍ୟତ ତା'ର କେତେକ ଅସ୍ପଷ୍ଟତାକୁ ହରାଇଲା ।"**

କେଉଁ କେଉଁ ଉପାୟରେ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ପଦ୍ଧତିଗତ କ୍ରିୟାଟା ନିଜକୁ ପ୍ରକାଶ କରିଥାଏ ? ସର୍ବପ୍ରଥମେ, ବୈଜ୍ଞାନିକ ଆବିଷ୍କାରସମୂହର ବ୍ୟାଖ୍ୟା, ଜ୍ଞାନ ପ୍ରଣାଳୀର ସେସବୁର ଭୂମିକାର ବିଶ୍ଳେଷଣ ଏବଂ ସେସବୁର ଦାର୍ଶନିକ ଗୁରୁତ୍ୱର ବ୍ୟାଖ୍ୟା ମଧ୍ୟରେ । ଉଦାହରଣ ସ୍ୱରୂପ, ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଆବିଷ୍କାରସମୂହର ସାରମର୍ମ ସଂପର୍କରେ ଲେନିନ୍‌ଙ୍କ ବିଶ୍ଳେଷଣ – ଏହିସବୁ ଆବିଷ୍କାରର ସାରମର୍ମ ହେଉଛି ବସ୍ତୁର "ଅନ୍ତର୍ଦ୍ଧାନ" ନୁହଁ । ଏହା ହେଉଛି ଗତିସଂପନ୍ନ ବସ୍ତୁର ନୂଆ ରୂପର ଆବିଷ୍କାର । ଆଉ ଏକ ଦୃଷ୍ଟାନ୍ତ ହେଉଛି, ପଦାର୍ଥ ବିଜ୍ଞାନରେ ଅନିର୍ଦ୍ଧାରଣ ନୀତିକୁ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ମନେ କରେ ସମସ୍ତ କାରଣତତ୍ତ୍ୱର ନେତୀକରଣ ବୋଲି, କିନ୍ତୁ ବସ୍ତୁଗତ ନିୟମରାଜି ଦ୍ୱାରା ନୂଆ ଏକ ରୂପର ଆବିଷ୍କାର – ପରିସଂଖ୍ୟାନଗତ ନିୟମବଦ୍ଧତା – ଭଳି, ଆବଶ୍ୟକତା ଏବଂ ଆକସ୍ମିକତାର ଐକ୍ୟର ଦ୍ୱନ୍ଦ୍ୱାତ୍ମକ ନୀତି ଅନୁସାରେ, ଆଦି ।

ଦ୍ୱିତୀୟତଃ, ଦର୍ଶନର ପଦ୍ଧତିଗତ କ୍ରିୟାଟି ପ୍ରକାଶ ପାଇଥାଏ, ବସ୍ତୁବାଦ ଆଉ ଦ୍ୱନ୍ଦ୍ୱବାଦର ଭିତ୍ତିରେ, ବୈଜ୍ଞାନିକ ଅବଗତିର ମୁଖ୍ୟ ପ୍ରବଣତାଗୁଡ଼ିକୁ ପୂର୍ବରୁ କଳ୍ପନା

---

* ଭ୍ଲାଦିମିର୍ ଇଲିଚ୍ ଲେନିନ୍, "Conspectus of Hegel's Book *The Science of Logic*", *Collected Works*, Vol. 38, p. 146.

** ଜବାହାରଲାଲ ନେହେରୁ, "*Discovery of India*", p. 29.

# ଆଧୁନିକ ପ୍ରାଣୀ ରସାୟନବିଦ୍ୟା ଏଙ୍ଗେଲସ୍‌ଙ୍କ ପୂର୍ବ ଦୃଷ୍ଟିର ଉଦ୍‌ଭବ



ପ୍ରଥମ ପଲିମର (polymer) ଉତ୍ପାଦନ, ବୁଟ୍‌ଲେରୋଭ୍, ୧୮୭୦
$(CH_3)_2C=CH_2$
ଆଇସୋବୁଟେଲିନି (isobutylene)

ଭିଟାମିନ୍ ଆବିଷ୍କାର (vitamins), ଲୁନିନ୍, ୧୮୮୦



ଇଲେକ୍‌ଟ୍ରୋନିକ (electronic) ତତ୍ତ୍ୱର ବିକାଶ, ଆବେଗ, ବଦ୍‌ଲାଣ୍ଡେର, ୧୮୯୯

ଜୈବିକ ସମନ୍ୱୟରେ କାଟାଲିସିସ୍‌ର (catalysis) ପ୍ରୟୋଗ। ସାବାଟିଏର, ଇପାଟିଏଭ୍, ୧୯୦୦





ପଲିପେପ୍‌ଟାଇଡ୍ ତତ୍ତ୍ୱ (polypeptide theory) (ପ୍ରୋଟିନ୍‌ର ଗଠନ), ଫିସର, ୧୯୦୦

ଅବହମଣ୍ଡଳୀୟ ନାଇଟ୍ରୋଜେନ୍‌ର ବିଭାଗକରଣ (atmospheric nitrogen), ନେର୍ଣ୍ଣଷ୍ଟ, ହାବେର,
$N_2 + 3H_2 \rightarrow 2NH_3$
୧୯୦୬-୧୯୧୪

କୃତ୍ରିମ ରବର (synthetic rubber), ଲେବେଡେଭ୍, ୧୯୨୮
$2C_2H_5OH \rightarrow [-CH_2-CH=CH-CH_2]_n$

ପେନସିଲିନ୍‌ର ଆବିଷ୍କାର (penicillin), ଫ୍ଲେମିଙ୍ଗ, ୧୯୨୯



ମାଂସପେଶୀ ଗଠନର ରାସାୟନିକ କୃତକୌଶଳ, ଏଙ୍ଗେଲ୍‌ହାର୍ଡ଼ତ୍, ୧୯୪୦





ଇନ୍‌ସୁଲିନ୍‌ର (insulin) ଗଠନ, ସାଂଗେର, ୧୯୫୧

ଡିଆର୍‌ଏ କନ୍‌ଫିଗରେସନ୍ (DRA configuration), କ୍ରିକ୍, ଓ୍ୱାଟ୍‌ସନ୍,



୧୯୫୩

କ୍ଲୋରୋଫିଲ୍‌ର ସମନ୍ୱୟ (synthesis of clorophyll) ଉଡ୍‌ଓ୍ୱାର୍ଡ, ଷ୍ଟ୍ରେଲ୍, କାଲେୟାନୋଭ୍, କୋଲେର, ୧୯୬୦

ଜେନିଟିକ୍ କୋଡର ଷଙ୍କାୟନ (genetic code), ୧୯୬୧-୧୯୬୪

ପ୍ରଥମ ସମନ୍ୱିତ 'ଲିଭ୍' ଡିଆର୍‌ଏ ସୂତ୍ରାଣୁ ('live' DRA), କୋର୍ଣ୍ଣବେର୍ଗ, ୧୯୬୮

ପ୍ରଥମ କୃତ୍ରିମ ଜେନ୍ ସମନ୍ୱିତ ହେଲ, ଖୋରାନା, ୧୯୬୯

ଜେନ୍ ଇଂଜିନିୟରିଂର ପ୍ରଥମ ପଦକ୍ଷେପ, ୧୯୭୦ ଦଶକ

କରିବା ମଧ୍ୟରେ । ଏହିଠାରେ ହିଁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ପଦ୍ଧତିର ଚରିତ୍ର ପ୍ରକାଶ ପାଇଥାଏ । ଦୃଷ୍ଟାନ୍ତ ସ୍ୱରୂପ, ଏଙ୍ଗେଲସ୍ ଭବିଷ୍ୟତ୍‌ବାଣୀ କରି କହିଥିଲେ, ଅଣଜୈବିକ ବସ୍ତୁରୁ କିପରି ଜୈବ ବସ୍ତୁକୁ ଦ୍ୱନ୍ଦ୍ୱାତ୍ମକ ଉତ୍ତରଣ ଘଟେ, ତା'ର ବ୍ୟାଖ୍ୟା କରିବାରେ ରସାୟନ ବିଦ୍ୟାର ବିକାଶ ସହାୟକ ହେବ । ଆଧୁନିକ ବିଜ୍ଞାନ ଏହି ଭବିଷ୍ୟତ୍‌ବାଣୀକୁ ପ୍ରମାଣ କରିଛି । ଇଲେକ୍‌ଟ୍ରନର ଅଫୁରନ୍ତତା ସଂପର୍କରେ ଲେନିନ୍‌ଙ୍କ ଧାରଣାଟି ହେଉଛି ପ୍ରକୃତିକୁ ନେଇ ଗବେଷଣା କରିବାର ସମ୍ଭାବନା ସଂପର୍କରେ ବୈଜ୍ଞାନିକ ଭବିଷ୍ୟତ୍‌ବାଣୀର ଏକ ଜ୍ୱଳନ୍ତ ଉଦାହରଣ ।

ତୃତୀୟତଃ, ବିଶେଷ ବିଜ୍ଞାନସମୂହ ପାଇଁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପଦ୍ଧତିଗତ ଗୁରୁତ୍ୱଟା ପ୍ରକାଶ ପାଇଥାଏ ତା'ର ନୀତିସମୂହର ନିର୍ବାଚିତ ସାରମର୍ମରେ । ଅତୀବ ପ୍ରମାଣସିଦ୍ଧ ଏବଂ ଦୂର ଦୃଷ୍ଟିସଂପନ୍ନ ବୈଜ୍ଞାନିକ ହାଇପଥେସିସ୍‌କୁ ମଧ୍ୟ ନିର୍ବାଚିତ କରାଯାଇ ପାରେ ବସ୍ତୁବାଦ ଆଉ ଦ୍ୱନ୍ଦ୍ୱବାଦର ନୀତିରାଜି ସହିତ ସର୍ବୋତ୍କୃଷ୍ଟ ସମ୍ଭାବନାପୂର୍ଣ୍ଣ ସଂଗତି ରଖି । ଦୃଷ୍ଟାନ୍ତ ସ୍ୱରୂପ, ବିଶ୍ୱ ଜଗତର ବସ୍ତୁଗତ ଐକ୍ୟର ନୀତି, ବସ୍ତୁ ଏବଂ ଗତିର ଐକ୍ୟର ନୀତି ଏବଂ ନିର୍ଦ୍ଧାରଣବାଦର ନୀତି, ଆଦି ଅତୀନ୍ଦ୍ରିୟ ଉପଲବ୍ଧିସମୂହର ଅବସ୍ଥିତିର ଅର୍ଦ୍ଧମନସ୍ତତ୍ତ୍ୱଗତ ହାଇପଥେସିସ୍‌କୁ ଅପ୍ରମାଣ କରିବାର ଭିତ୍ତି ରୂପେ କାର୍ଯ୍ୟ କରିଥାଏ; ଆଦିକାଳରୁ ବିଦ୍ୟମାନ ବସ୍ତୁ ଏବଂ ଚିରନ୍ତନ ଜୀବନ ସଂପର୍କିତ ହାଇପଥେସିସ୍‌ଟି ବସ୍ତୁର ବିକାଶ ସଂପର୍କିତ ଦ୍ୱନ୍ଦ୍ୱମୂଳକ ନୀତିର ବିପରୀତରେ ଯାଇଥାଏ, ଆଦି ।

ବିଶେଷ ବିଜ୍ଞାନସମୂହ ପ୍ରତି ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନର ପଦ୍ଧତିଗତ ଗୁରୁତ୍ୱ ସଂପର୍କରେ ଯୁକ୍ତି କଲାବେଳେ ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ପଦ୍ଧତିର ବାସ୍ତବ ପ୍ରୟୋଗ କ୍ଷେତ୍ରରେ ସମ୍ଭାବ୍ୟ ଭୁଲ ବିରୁଦ୍ଧରେ ସତର୍କ କରି ଦେବା ଦରକାର । ଦୃଷ୍ଟାନ୍ତ ସ୍ୱରୂପ, କେବଳ ସାଧାରଣ ଦାର୍ଶନିକ ନୀତିରାଜିର ଭିତ୍ତିରେ କୌଣସି ନିର୍ଦ୍ଦିଷ୍ଟ ବୈଜ୍ଞାନିକ ସମସ୍ୟାକୁ ସମାଧାନ ବା ବିଶେଷଜ୍ଞ ଅବଧାରଣାର ସତ୍ୟକୁ ପ୍ରମାଣ କରିବା ପାଇଁ ଉଦ୍ୟମ କଲେ ଭୁଲ ହେବ । ତଥ୍ୟସମୂହର ବିଶ୍ଳେଷଣ ସ୍ଥାନରେ ଦ୍ୱନ୍ଦ୍ୱବାଦର ସାଧାରଣ ପ୍ରପାଦ୍ୟସମୂହର ଉଲ୍ଲେଖକୁ ସ୍ଥାପନ କରାଯାଇ ପାରେ ନାହିଁ । ଏହା ହେବ, ବିଜ୍ଞାନ ପ୍ରତି "ପ୍ରାକୃତିକ ଦାର୍ଶନିକ" ଦୃଷ୍ଟିଭଙ୍ଗିର ପୁନର୍ଜାଗରଣ, ଯିଏକି ନୀତିଗତ ଦୃଷ୍ଟିରୁ ବସ୍ତୁଗତ ବାସ୍ତବତାକୁ ମଣିଷ ଯେଉଁ ଭାବେ ଅବଗତ ହୁଏ, ତା'ର ସାରମର୍ମର ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଅବଧାରଣା ସହିତ ଅସଂଗତିଶୀଳ । ଗୋଟିକ ପ୍ରତି ଅନ୍ୟଟିର ଆନୁଗତ୍ୟ ବା ପରସ୍ପର ପ୍ରତି ଅମାନ୍ୟତା ପରିବର୍ତ୍ତେ ନିବିଡ଼ ଐକ୍ୟ ଏବଂ ଅଭିନ୍ନତା ହେଉଛି ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନ ଏବଂ ପ୍ରକୃତି ତଥା ସମାଜର ବିଶେଷ ବିଜ୍ଞାନସମୂହ ମଧ୍ୟରେ ସଂପର୍କର ସାରମର୍ମ ।

## ୭ — କର୍ମର ପଥପ୍ରଦର୍ଶକ

ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପଦ୍ଧତିଗତ କାର୍ଯ୍ୟଟା କେବଳ ବୈଜ୍ଞାନିକ ଅବଗତି ସହିତ ଦେଖିବାକୁ ମିଳେ ନାହିଁ । ଦର୍ଶନ ସଦାସର୍ବଦା ରାଜନୀତି, ଶ୍ରେଣୀସମୂହ ତଥା ଦଳସମୂହ

ମଧ୍ୟରେ ସଂଗ୍ରାମ ସହିତ ସଂପୃକ୍ତ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନର ପ୍ରକୃତ ଅଭିପ୍ରାୟ ଏବଂ ଲକ୍ଷ୍ୟ ହେଉଛି ପୁରାତନର ବୈପ୍ଳବିକ ରୂପାନ୍ତରଣକୁ ତ୍ୱରାନ୍ୱିତ କରିବା ଏବଂ ଏକ ନୂଆ, କମ୍ୟୁନିଷ୍ଟ ସମାଜ ନିର୍ମାଣ କରିବା । କମ୍ୟୁନିଷ୍ଟମାନଙ୍କ ପକ୍ଷରେ, ଲେନିନ୍ ଗୁରୁତ୍ୱ ଦେଇ କହିଥିଲେ, ବିପ୍ଳବ ତତ୍ତ୍ୱ ହେଉଛି "ମୂଳତଃ ଏବଂ ମୁଖ୍ୟତଃ... କର୍ମର ପଥପ୍ରଦର୍ଶକ ।"* କମ୍ୟୁନିଷ୍ଟ ଏବଂ ଶ୍ରମିକ ପାର୍ଟିମାନେ ସେମାନଙ୍କ କାର୍ଯ୍ୟକଳାପକୁ ବସ୍ତୁଗତ ସାମାଜିକ ଦ୍ୱନ୍ଦ୍ୱବାଦ ଉପରେ ପ୍ରତିଷ୍ଠା କରିଥାନ୍ତି । ଆଧୁନିକ ପରିସ୍ଥିତିସମୂହ ମଧ୍ୟରେ ଏହି ଦ୍ୱନ୍ଦ୍ୱବାଦ ବଡ଼ ଜଟିଳ ଏବଂ ବିରୋଧାତ୍ମକ ହୋଇ ପଡ଼ିଛି ଏବଂ କେବଳ ଦ୍ୱନ୍ଦ୍ୱାତ୍ମକ ଏବଂ ଐତିହାସିକ ବସ୍ତୁବାଦର ଆସ୍ଥାନରୁ ଏହାକୁ ବୈଜ୍ଞାନିକ ଭାବେ ବ୍ୟାଖ୍ୟା କରାଯାଇ ପାରେ ।

ଶ୍ରମିକ ଶ୍ରେଣୀର ଅନ୍ତିମ ଲକ୍ଷ୍ୟକୁ ଅବିରାମ ମନରେ ରଖି ଦ୍ରୁତ ପରିବର୍ତ୍ତିତ ପରିସ୍ଥିତିରେ ରାଜନୈତିକ ସଂଗ୍ରାମର ବିଭିନ୍ନ ରୂପ ଏବଂ ପଦ୍ଧତିକୁ ବ୍ୟବହାର କରିବାକୁ ହେଲେ କମ୍ୟୁନିଷ୍ଟ ତଥା ଶ୍ରମିକ ପାର୍ଟିମାନଙ୍କ ପକ୍ଷରେ ଚିନ୍ତା ଏବଂ କାର୍ଯ୍ୟ କ୍ଷେତ୍ରରେ ଆବଶ୍ୟକତା ଅନୁଯାୟୀ ବିରାଟ ପରିବର୍ତ୍ତନ କ୍ଷମତା ଦରକାର । ସେମାନଙ୍କର ଲକ୍ଷ୍ୟ ହାସଲ ପାଇଁ ସର୍ବୋତ୍କୃଷ୍ଟ ପଥ ନିର୍ଦ୍ଧାରଣ କରିବା ଏବଂ ନିର୍ଦ୍ଦିଷ୍ଟ କର୍ତ୍ତବ୍ୟରାଜି ସଂପନ୍ନ କରିବାର କ୍ଷମତା ଥିବା ଦରକାର, ଯିଏକି କ୍ରମେ କ୍ରମେ ବିପ୍ଳବୀ ସଂଗ୍ରାମରେ ସାଫଲ୍ୟକୁ ସୁନିଶ୍ଚିତ କରିବ । ଏହା ଅର୍ଜିତ ହୋଇ ପାରେ କେବଳ ଦ୍ୱନ୍ଦ୍ୱମୂଳକ ପଦ୍ଧତିର ଉପଯୋଗ ଦ୍ୱାରା । ଏଠାରେ ଲକ୍ଷ୍ୟ କରିବାର କଥା ଯେ, ଅବଗତିର ପଦ୍ଧତିଗତ କାର୍ଯ୍ୟ ଏବଂ ସାମାଜିକ କାର୍ଯ୍ୟକୁ ପ୍ରବର୍ଗସମୂହ ତଥା ଦ୍ୱନ୍ଦ୍ୱବାଦକୁ ସଂପୂର୍ଣ୍ଣ ରୂପେ ଗ୍ରହଣ ଦ୍ୱାରା ସଂପନ୍ନ ହୁଏ ନାହିଁ, ସେସବୁର ଭିତ୍ତିରେ ଚିନ୍ତନଶୀଳ ଏବଂ କାର୍ଯ୍ୟରତ ସାମାଜିକ କର୍ତ୍ତାର ଆବଶ୍ୟକତାସମୂହର ନିର୍ଦ୍ଧାରଣ ଦ୍ୱାରା କରିବାକୁ ହେବ ।

ମାର୍କସ୍‌ବାଦୀ ଦ୍ୱନ୍ଦ୍ୱବାଦ, ଅବଶ୍ୟ, ପ୍ରତ୍ୟେକଟି ନିର୍ଦ୍ଦିଷ୍ଟ ସାମାଜିକ କାର୍ଯ୍ୟ ପାଇଁ ନିୟମ ପ୍ରଣୟନ କରେ ନାହିଁ, କାରଣ ଏହା କୌଣସିମତେ ସାର୍ବିକ "ନିର୍ଦ୍ଦେଶନାର" ଭୂମିକା ପାଳନ କରେ ବୋଲି ଦାବୀ କରେ ନାହିଁ । ଦ୍ୱନ୍ଦ୍ୱମୂଳକ ଏବଂ ଐତିହାସିକ ବସ୍ତୁବାଦ "ନିର୍ଦ୍ଦିଷ୍ଟ ଅବସ୍ଥାର ନିର୍ଦ୍ଦିଷ୍ଟ ବ୍ୟାଖ୍ୟା"** ଆବଶ୍ୟକ କରେ । ସେସବୁ ବ୍ୟାଖ୍ୟାର ମୌଳିକ ନୀତିରାଜିକୁ ସେଗୁଡ଼ିକ ସୂତ୍ରାୟନ କରିଥାନ୍ତି ଏବଂ ଫଳତଃ ବିପ୍ଳବୀ ଶ୍ରେଣୀର ବାସ୍ତବ ସାମାଜିକ କ୍ରିୟା ମଧ୍ୟ ସୂତ୍ରବଦ୍ଧ ହୋଇଥାଏ । ସେସବୁ ନୀତିରାଜିକୁ ତିନି

---

* ଭ୍ଲାଦିମିର୍ ଇଲିଚ୍ ଲେନିନ୍, "Letters from Afar", *Collected Works*, Vol. 23, Moscow, 1964, p. 330.

** ଭ୍ଲାଦିମିର୍ ଇଲିଚ୍ ଲେନିନ୍, "*Kommunismus*. Journal of the Communist International for the Countries of South-Eastern Europe (in German)", *Collected Works*, Vol. 31, ମସ୍କୋ, ୧୯୭୪, ପୃ: ୧୬୬ ।

ଭାଗରେ ବିଭକ୍ତ କରାଯାଇ ପାରେ : ସାଧାରଣ ଦାର୍ଶନିକ, ସାଧାରଣ ସମାଜତାତ୍ତ୍ୱିକ ଏବଂ ସାମାଜିକ-ଦାର୍ଶନିକ ।

ବସ୍ତୁବାଦୀ ଦ୍ୱନ୍ଦ୍ୱବାଦର ସମସ୍ତ ନୀତି ସାମାଜିକ କ୍ରିୟାର ସାଧାରଣ ଦାର୍ଶନିକ ନିୟମବଦ୍ଧତା ହିସାବରେ ପଂକ୍ତିବଦ୍ଧ ହେବା ଦରକାର । ସେଗୁଡ଼ିକ ମଧ୍ୟରୁ ସର୍ବାଧିକ ଗୁରୁତ୍ୱସଂପନ୍ନ ନୀତିଟିକୁ ଦ୍ୱନ୍ଦ୍ୱବାଦୀ ଯୁକ୍ତିବିଦ୍ୟାର ଆବଶ୍ୟକତା ହିସାବରେ ଉପରେ ଉଲ୍ଲେଖ କରାଯାଇଛି । ବାସ୍ତବ କ୍ରିୟାକଳାପରେ ସାଫଲ୍ୟ ନିର୍ଦ୍ଧାରିତ ହୋଇଥାଏ ଅନେକଗୁଡ଼ିକ କାରଣ ଦ୍ୱାରା, ଯଥା – ଶ୍ରେଣୀମାନଙ୍କ ମଧ୍ୟରେ ବିଭିନ୍ନ ସଂପର୍କର ସମଗ୍ରତାକୁ ବିପ୍ଳବୀ ଶକ୍ତିସମୂହ କେତେ ପରିମାଣରେ ହିସାବକୁ ନେଇଛନ୍ତି; ସେମାନଙ୍କ ବିକାଶ ପ୍ରକ୍ରିୟାରେ ସେଇସବୁ ସଂପର୍କକୁ ବିଚାରକୁ ନିଆଯାଇଛି କି ନାହିଁ; ବସ୍ତୁନିଷ୍ଠତାର ନୀତି ଉପରେ ସେମାନଙ୍କ ଦ୍ୱାରା ବାସ୍ତବତାର ବ୍ୟାଖ୍ୟା ପ୍ରତିଷ୍ଠିତ କି ନୁହଁ; ବିରୋଧସମୂହର ଐକ୍ୟ ଏବଂ ବିରୋଧିତାକୁ ସେମାନେ ଚିହ୍ନିତ କରିଛନ୍ତି କି ନାହିଁ, ପରିମାଣରୁ ଗୁଣକୁ ଉତ୍ତରଣ, ନେତୀକରଣ ଏବଂ ବିକାଶରେ ପୁନରାବର୍ତ୍ତନ, ଆଧେୟ ଏବଂ ଆଧାରର ଦ୍ୱନ୍ଦ୍ୱବାଦ ପ୍ରତି ସଚେତନ କି ନୁହେଁ ।

କିନ୍ତୁ, ଶ୍ରମିକ ଶ୍ରେଣୀର ରାଜନୈତିକ ସଂଗ୍ରାମକୁ ପରିଚାଳିତ କରିବା ପାଇଁ ଏହା ଯଥେଷ୍ଟ ନୁହେଁ । ସାଧାରଣ ସମାଜତାତ୍ତ୍ୱିକ ଆବଶ୍ୟକତାସମୂହ ଏଠାରେ ଅପରିହାର୍ଯ୍ୟ । ସେସବୁ ହେଉଛି ମାର୍କସ୍‌ବାଦ-ଲେନିନ୍‌ବାଦର ସାଧାରଣ ସମାଜ ତାତ୍ତ୍ୱିକ ମତବାଦ ହିସାବରେ ଐତିହାସିକ ବସ୍ତୁବାଦର ନୀତିସମୂହ । ଏହି ମତାନୁଯାୟୀ ବୈପ୍ଳବିକ ସଂଗ୍ରାମର ବାସ୍ତବ କର୍ମ କ୍ଷେତ୍ରରେ ଏହି ତଥ୍ୟଟିରୁ ଯାତ୍ରାରମ୍ଭ କରିବା ଦରକାର ଯେ, "ବୈଷୟିକ ଜୀବନ ଉତ୍ପାଦନ ପଦ୍ଧତି ସାମାଜିକ, ରାଜନୈତିକ ଏବଂ ବୌଦ୍ଧିକ ଜୀବନର ସାଧାରଣ ପ୍ରକ୍ରିୟାକୁ ନିର୍ଦ୍ଧାରଣ କରି ଥାଏ" *; "ଏ ପର୍ଯ୍ୟନ୍ତ ତିଷ୍ଠି ଆସିଥିବା ସମାଜର ଇତିହାସ (ଆଦିମ ସମାଜ ବ୍ୟତୀତ) ହେଉଛି ଶ୍ରେଣୀ ସଂଗ୍ରାମର ଇତିହାସ" **; "ବିକାଶର ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ସମାଜର ବୈଷୟିକ ଉତ୍ପାଦିକା ଶକ୍ତିସମୂହ ପ୍ରତିଷ୍ଠିତ ଉତ୍ପାଦନ ସଂପର୍କରାଜି ସହିତ ସଂଘର୍ଷରେ ଆସନ୍ତି"; ଅର୍ଥନୈତିକ ଭିତ୍ତିରେ ପରିବର୍ତ୍ତନ "ଶୀଘ୍ର ହେଉ ବା ବିଳମ୍ବରେ ହେଉ ସମଗ୍ର ବିଶାଳ 'ଉପରିଗଢ଼ଣରେ' ପରିବର୍ତ୍ତନ ଘଟାଏ"; ଲୋକେ ହିଁ ନିଜେ ସେମାନଙ୍କ ଇତିହାସ ଗଢ଼ନ୍ତି, କିନ୍ତୁ ବସ୍ତୁନିଷ୍ଠ ଅବସ୍ଥାରାଜିକୁ ଭିତ୍ତି କରି,

---

* କାର୍ଲ ମାର୍କସ୍, "*A Contribution to the Critique of Political Economy*", ପ୍ରଗତି ପ୍ରକାଶନ, ମସ୍କୋ, ୧୯୭୭, ପୃ : ୨୦-୨୧ ।

** କାର୍ଲ ମାର୍କସ୍, ଫ୍ରେଡେରିକ୍ ଏଙ୍ଗେଲସ୍, "କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର", କାର୍ଲ ମାର୍କସ୍ ଏବଂ ଫ୍ରେଡେରିକ୍ ଏଙ୍ଗେଲସ୍, *Collected Works*, ଖଣ୍ଡ ୬, ମସ୍କୋ, ୧୯୭୬, ପୃ : ୪୮୨ ।

ବୈଷୟିକ ଜୀବନର ଉତ୍ପାଦନ ଘଟାଇ, ସେମାନଙ୍କର ସମଗ୍ର ଐତିହାସିକ କ୍ରିୟାକଳାପ ପାଇଁ ଭିତ୍ତି ସୃଷ୍ଟି କରି, ଆଦି ।*

ସମାଜର ପ୍ରଗତିଶୀଳ ଶକ୍ତିମାନଙ୍କର ବାସ୍ତବ କ୍ରିୟାକଳାପରେ ସାମାଜିକ ଦାର୍ଶନିକ ନୀତିରାଜି ମଧ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସାମାଜିକ କ୍ରିୟାର ଏହିସବୁ ପଦ୍ଧତି ଦିଗଦର୍ଶୀ ରେଖାଗୁଡ଼ିକ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଦର୍ଶନ ମଧ୍ୟରେ ସୂତ୍ରବଦ୍ଧ ହୋଇଥାଏ, ସାମାଜିକ ବିକାଶର ଦ୍ୱନ୍ଦ୍ୱବାଦର ବିଶେଷତ୍ୱକୁ ମନରେ ରଖି । ଯେଉଁମାନେ ବୈପ୍ଳବିକ କ୍ରିୟାନୁଷ୍ଠାନ କରିବାକୁ ଚାହାନ୍ତି ମାର୍କସ୍, ଏଙ୍ଗେଲସ୍, ଲେନିନ୍ ସେମାନଙ୍କୁ ଏହିସବୁ ପଦ୍ଧତିଗତ ପରାମର୍ଶ ଦେଇଛନ୍ତି, ଯଥା, "ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ, ଏବଂ ନିର୍ଦ୍ଦିଷ୍ଟ ଅବସ୍ଥାରାଜି ମଧ୍ୟରେ ଏକ ଐତିହାସିକ ପ୍ରକ୍ରିୟାର ବସ୍ତୁନିଷ୍ଠ ଆଧେୟ ପ୍ରତି ଉପଯୁକ୍ତ ଧ୍ୟାନ କିପରି ଦେବାକୁ ପଡ଼େ ଜାଣିବାକୁ ହେବ"**; "ପ୍ରତ୍ୟେକଟି ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଜଞ୍ଜିରର ନିର୍ଦ୍ଦିଷ୍ଟ କଡ଼ିଟିକୁ ଦେଖିବାକୁ ହେବ, ଯାହାକୁ ଆପଣ ସମସ୍ତ ଶକ୍ତି ଦେଇ ବୁଝିବେ ସମସ୍ତ ଜଞ୍ଜିରଟିକୁ ଧରିବା ପାଇଁ ଏବଂ ପରବର୍ତ୍ତୀ କଡ଼ିଟିକୁ ଉତ୍ତରଣ ପାଇଁ ନିଜକୁ ଦୃଢ଼ ଭାବେ ପ୍ରସ୍ତୁତ କରିବା ନିମିତ୍ତ"***; "ସମ୍ଭବରୁ ଗତି କରିବା ଅପେକ୍ଷା ବାସ୍ତବରୁ ଗତି କରିବାକୁ"****, "ବୈପରିତ୍ୟସମୂହକୁ ଏକାଠି କରିବାକୁ"*****, "କୌଣସି ଦୋଦୁଲ୍ୟମାନତା ନରଖି କାମ କରି ଯିବାକୁ"******; "ବିଷୟ ପରିସ୍ଥିତି ଅନୁଯାୟୀ ନିର୍ଦ୍ଦିଷ୍ଟ ଉପାୟ ଅବଲମ୍ବନ କରିବାକୁ", ଆଦି ।

ବୈଜ୍ଞାନିକ ଦର୍ଶନ ହେଉଛି ସାରଗତ ଭାବେ ନିର୍ଦ୍ଦିଷ୍ଟ, ସମାଲୋଚନାମୂଳକ ଏବଂ ବିପ୍ଳବୀ । ଏହା ବେଦବାକ୍ୟ ନୁହେଁ, ଏହା ହେଉଛି ଚିରଚର ବିକାଶମାନ ବୈଜ୍ଞାନିକ

---

* କାର୍ଲ ମାର୍କସ୍, "*A Contribution to the Critique of Political Economy*", ପୃ: ୨୧ ।

** ଭି. ଆଇ. ଲେନିନ୍, "Under a False Flag", *Collected Works*, ୨୧ଶ ଖଣ୍ଡ, ମସ୍କୋ, ୧୯୬୪, ପୃ: ୧୪୩ ।

*** ଭ୍ଲାଦିମିର୍ ଇଲିଚ୍ ଲେନିନ୍, "The Immediate Tasks of the Soviet Government", *Collected Works*, ୨୭ମ ଖଣ୍ଡ, ମସ୍କୋ, ୧୯୬୫, ପୃ: ୨୭୪ ।

**** ଭ୍ଲାଦିମିର୍ ଇଲିଚ୍ ଲେନିନ୍, "Letter to N. D. Kiknadze", *Collected Works*, ୩୫ମ ଖଣ୍ଡ, ମସ୍କୋ, ୧୯୭୩, ପୃ: ୨୪୨-୨୪୪ ।

***** ଭ୍ଲାଦିମିର୍ ଇଲିଚ୍ ଲେନିନ୍, "The Trade Unions, the Present Situation and Trotsky's Mistakes", *Collected Works*, ୩୨ମ ଖଣ୍ଡ, ମସ୍କୋ, ୧୯୬୫, ପୃ: ୨୨ ।

****** ଭ୍ଲାଦିମିର୍ ଇଲିଚ୍ ଲେନିନ୍, "Conspectus of Hegel's Book *The Science of Logic*", *Collected Works*, ୩୮ମ ଖଣ୍ଡ, ମସ୍କୋ, ୧୯୭୨, ପୃ: ୨୨୬ ।

ମତବାଦ । ତେଣୁ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ପଦ୍ଧତିର ଉପଯୋଗ, ନିର୍ଦ୍ଦିଷ୍ଟ ଐତିହାସିକ ପରିସ୍ଥିତିରେ ତା'ର ପ୍ରୟୋଗ ହେଉଛି ପ୍ରକୃତ ଅର୍ଥରେ ଏକ ସୃଜନଶୀଳ କର୍ତ୍ତବ୍ୟ । ବସ୍ତୁବାଦୀ ଦ୍ୱନ୍ଦ୍ୱବାଦ ହେଉଛି ଆଧୁନିକ ବିଜ୍ଞାନ ତଥା ସମାଜର ସମସ୍ତ ପ୍ରଗତିଶୀଳ ଶକ୍ତିସମୂହର ସାମାଜିକ କ୍ରିୟାକଳାପର ସାର୍ବିକ ପଦ୍ଧତି । ତେଣୁ କରି ଏହାକୁ ବିଶେଷ ସାମାଜିକ ପ୍ରପଞ୍ଚ ଏବଂ ପ୍ରତ୍ୟେକ ନିର୍ଦ୍ଦିଷ୍ଟ ଦେଶର ପ୍ରକ୍ରିୟାରେ ସୃଜନମୂଳକ ଭାବେ ପ୍ରୟୋଗ କରିବାକୁ ହେବ । କାରଣ, ସାଧାରଣ କେବଳ ନିର୍ଦ୍ଦିଷ୍ଟ ମଧ୍ୟରେ ତିଷ୍ଠି ରହେ ଏବଂ ଏହା ହୋଇଥାଏ ନିର୍ଦ୍ଦିଷ୍ଟର ସ୍ଥିତି ହେତୁ । ତେଣୁ କରି ପ୍ରତ୍ୟେକଟି ନିର୍ଦ୍ଦିଷ୍ଟ ପ୍ରକ୍ରିୟା ଏବଂ ପ୍ରପଞ୍ଚରେ ସାଧାରଣ ଦ୍ୱନ୍ଦ୍ୱମୂଳକ ତଥା ସମାଜତାତ୍ତ୍ୱିକ ନିୟମଗୁଡ଼ିକର କ୍ରିୟାକୁ ବିଶେଷ ଭାବେ ଦୃଷ୍ଟି ମଧ୍ୟକୁ ଆଣିବା ଦରକାର ଏବଂ ଏଇଥିରୁ ରାଜନୈତିକ ସିଦ୍ଧାନ୍ତଗୁଡ଼ିକରେ ପହଞ୍ଚିବା ଦରକାର ଏବଂ ତଦନୁଯାୟୀ ସାମାଜିକ କ୍ରିୟାର ରଣକୌଶଳ ରଚନା କରିବା ଦରକାର ।

ଐତିହାସିକ ଏକ ଜାତୀୟ ଅବସ୍ଥାରାଜି ବିଭିନ୍ନ ଦେଶରେ ବିଭିନ୍ନ ରୂପ ପରିଗ୍ରହ କରିଥାଏ । ଏଥି ସଙ୍ଗେ ସଙ୍ଗେ ସମାଜ ଜୀବନରେ ପ୍ରଗତିଶୀଳ ବିକାଶ ଆଡ଼କୁ ସାଦୃଶ୍ୟ ଏବଂ କ୍ରମବର୍ଦ୍ଧମାନ ପ୍ରବଣତା ଅନୁଭୂତ ହେଉଛି । ବୁର୍ଜୁଆ ବୈଜ୍ଞାନିକମାନେ ବହୁଦିନ ଧରି ଏକ ତତ୍ତ୍ୱ ଉପସ୍ଥାପିତ କରି ଆସିଛନ୍ତି, ସେ ତତ୍ତ୍ୱଟି ହେଉଛି, ପାଶ୍ଚାତ୍ୟଠାରୁ ପ୍ରାଚ୍ୟ ଏକ ନିର୍ଦ୍ଦିଷ୍ଟ ପଥରେ ବିକାଶ ଲାଭ କରିବ । ଏହି ତତ୍ତ୍ୱଟି ଏବେ ଭୁଲ ପ୍ରମାଣିତ ହୋଇଛି । ପ୍ରାଚ୍ୟ ଦେଶମାନେ – ଭାରତ, ଚୀନ୍, ଜାପାନ୍ ଏବଂ ଇରାନ – ସାମଗ୍ରିକ ଭାବେ ସେଇ ସମାନ ପଥ ଦେଇ ଆସୁଛନ୍ତି, ଯେଉଁ ପଥ ଦେଇ ପାଶ୍ଚାତ୍ୟ ଦେଶମାନେ ଅତିକ୍ରମ କରିଛନ୍ତି । ସେମାନେ ମଧ୍ୟ ଏକ ଆଦିମ ଗୋଷ୍ଠୀ ବ୍ୟବସ୍ଥା ଦେଇ ଯାଇଛନ୍ତି, ଯିଏକି ଦାସମାଲିକାନା ବ୍ୟବସ୍ଥାକୁ ଜନ୍ମ ଦେଇଥିଲା । ପାଶ୍ଚାତ୍ୟ ପରି ସେସବୁ ଦେଶରେ ମଧ୍ୟ ଦାସ-ସଂପର୍କରାଜି ସ୍ଥାନରେ ପ୍ରତିଷ୍ଠା ହୋଇଥିଲା ଭୂମିଦାସ ପ୍ରଥା । କିନ୍ତୁ ପ୍ରାଚ୍ୟ ଦେଶମାନଙ୍କରେ ସାମନ୍ତବାଦ ଅନେକ ଅଧିକତର କାଳ ପର୍ଯ୍ୟନ୍ତ ରହିଥିଲା । ଯଦିଓ ଗତ ଶତାବ୍ଦୀରେ ପ୍ରାଚ୍ୟ ଦେଶମାନଙ୍କରେ ସାମନ୍ତବାଦୀ-ଭୂମିଦାସ ପ୍ରଥା ଅଧିକରୁ ଅଧିକ କ୍ଷୟପ୍ରାପ୍ତ ହୋଇ ତା ସ୍ଥାନରେ ପୁଞ୍ଜିବାଦୀ ବ୍ୟବସ୍ଥା ପ୍ରତିଷ୍ଠିତ ହେଉଛି, କିନ୍ତୁ ବହୁ କ୍ଷେତ୍ରରେ ଆଜି ମଧ୍ୟ ସାମନ୍ତବାଦୀ ଧ୍ୱଂସାବଶେଷର ପ୍ରଭାବ ରହିଛି । ପ୍ରାଚ୍ୟର ଇତିହାସ, ପାଶ୍ଚାତ୍ୟର ଇତିହାସ ଭଳି ଶ୍ରେଣୀ ସଂଗ୍ରାମ ଦ୍ୱାରା ଚିହ୍ନିତ, ଶ୍ରେଣୀସବୁର ଉତ୍ପତ୍ତି ଦିନଠାରୁ । ସମସ୍ତ ଦେଶର ଜାତିମାନେ ଅତ୍ୟାଗ୍ରର ବିରୁଦ୍ଧରେ ସ୍ୱାଧୀନତା ଆଉ ଜାତୀୟ ମୁକ୍ତି ପାଇଁ ସଂଗ୍ରାମ କରୁଛନ୍ତି । ତେଣୁ, ପଶ୍ଚିମ ୟୁରୋପରେ ଯେଉଁ ନିୟମ କାର୍ଯ୍ୟକାରୀ ହୋଇଛି, ସେସବୁ ପ୍ରାଚ୍ୟ ଦେଶମାନଙ୍କ ପାଇଁ ମଧ୍ୟ ନ୍ୟାୟସଂଗତ ।

ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବ ଏବଂ ସୋଭିଏତ୍ ୟୁନିଅନ୍‌ରେ ସମାଜବାଦର ବିଜୟ, ବହୁ ଏସୀୟ ଏବଂ ୟୁରୋପୀୟ ଦେଶ ତଥା ପଶ୍ଚିମ ଗୋଲାର୍ଦ୍ଧରେ କ୍ୟୁବାରେ ଶୋଷକ ସମାଜର ପତନ ଏବଂ ସାଂପ୍ରତିକ କାଳରେ ଅଧିକରୁ ଅଧିକ

ସମାଜବାଦୀ ଅଭିମୁଖୀ ଦେଶମାନଙ୍କର ଅଭ୍ୟୁଦୟ ଦର୍ଶାଇ ଦେଉଛି ଯେ, ପୁଞ୍ଜିବାଦରୁ ସମାଜବାଦକୁ ଉତ୍ତରଣଟା ଏକ ଆକସ୍ମିକ ଘଟଣା ନୁହେଁ । ଏହା ହେଉଛି ମାନବ ସମାଜର ପ୍ରଗତିଶୀଳ ବିକାଶ କ୍ଷେତ୍ରରେ ଏକ ନ୍ୟାୟସଂଗତ ନିୟମାନୁଗ ପର୍ଯ୍ୟାୟ । ସାମାଜିକ ତଥା ବୈଜ୍ଞାନିକ ପ୍ରୟୋଗସମୂହ ଆଜି ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଶିକ୍ଷାର ବସ୍ତୁନିଷ୍ଠ ସତ୍ୟକୁ ସଂପୂର୍ଣ୍ଣ ରୂପେ ପ୍ରମାଣ କରୁଛି । ଏହି ଶିକ୍ଷା ଶୋଷଣ ଏବଂ ଅତ୍ୟାଗ୍ରର ବିରୁଦ୍ଧରେ ସଂଗ୍ରାମରେ ଶ୍ରମଜୀବୀ ଜନସାଧାରଣଙ୍କର ସ୍ୱାର୍ଥରାଜିକୁ ପ୍ରକାଶ କରିଥାଏ ।

ବୈଜ୍ଞାନିକ ଦର୍ଶନ ଅବିରାମ ବୈଜ୍ଞାନିକ ତଥ୍ୟ ଏବଂ ସାମାଜିକ ପ୍ରକ୍ରିୟାସମୂହର ଆନ୍ତଃପ୍ରକ୍ରିୟାର ବ୍ୟାଖ୍ୟା ଉପରେ ଭିତ୍ତି କରି ନୂଆ ନୂଆ ସିଦ୍ଧାନ୍ତ ଏବଂ ସାଧାରଣୀକରଣ ସମେତ ସମୃଦ୍ଧ ହୋଇ ଗ୍ରଲିଛି । ଦୁନିଆର ବୈପ୍ଳବିକ ରୂପାନ୍ତରଣରେ ଏବଂ ଶାନ୍ତି, ଗଣତନ୍ତ୍ର, ଜାତୀୟ ସ୍ୱାଧୀନତା, ସମାଜବାଦ ଏବଂ କମ୍ୟୁନିଜମ୍ ପାଇଁ ଶ୍ରମିକ ଶ୍ରେଣୀ ତଥା ସମସ୍ତ ପ୍ରଗତିଶୀଳ ଶକ୍ତିମାନଙ୍କର ସଂଗ୍ରାମରେ ଏହା ଏକ ଶକ୍ତିଶାଳୀ ଭାବାଦର୍ଶଗତ ଅସ୍ତ୍ର ରୂପେ କାର୍ଯ୍ୟ କରିଥାଏ ।

---

